# ଶ୍ରୀ ଶ୍ରୀ ରାମକୃଷ୍ଣ କଥାମୃତ

ଶ୍ରୀମ–କଥିତ

## ତୃତୀୟ ଭାଗ

"ତବ କଥାମୃତଂ ତପ୍ତ ଜୀବନଂ କବିଭିରୀଡ଼ିତଂ କଲ୍ମଷାପହମ୍ ।
ଶ୍ରବଣମଙ୍ଗଳଂ ଶ୍ରୀମଦାତତଂ ଭୁବି ଗୃଣନ୍ତି ଯେ ଭୂରିଦା ଜନାଃ ॥"
– ଶ୍ରୀମଦ୍ଭାଗବତ, ଗୋପୀଗୀତା




ରାମକୃଷ୍ଣ ମଠ
ଭୁବନେଶ୍ୱର

ପ୍ରକାଶକ
ସ୍ୱାମୀ ଆତ୍ମପ୍ରଭାନନ୍ଦ
ଅଧ୍ୟକ୍ଷ, ରାମକୃଷ୍ଣ ମଠ
ବିବେକାନନ୍ଦ ମାର୍ଗ
ଭୁବନେଶ୍ୱର-୭୫୧୦୦୨
ଫୋନ୍ : (୦୬୭୪) ୨୪୩ ୨୦୨୮, ୨୪୩ ୦୦୫୯
Email : bhubaneswar@rkmm.org



ପ୍ରଥମ ସଂସ୍କରଣ : ମଇ ୧୯୮୪
**ଚତୁର୍ଥ ପୁନର୍ମୁଦ୍ରଣ : ୨୨ ଫେବୃଆରୀ ୨୦୧୬**
ସ୍ୱାମୀ ଅଭୁତାନନ୍ଦ ଜୟନ୍ତୀ
୧୦୦୦

ମୂଲ୍ୟ – ଟ. ୧୧୦.୦୦

ମୁଦ୍ରାକର:
ହିନ୍ଦୁସ୍ଥାନ ପ୍ରିଣ୍ଟିଙ୍ଗ୍ ଏଣ୍ଡ୍ ବାଇଣ୍ଡିଂ ୱାର୍କ୍ସ୍
ଏ/୪୮, ରାମେଶ୍ୱର ପାଟଣା
ଭୁବନେଶ୍ୱର – ୨

***SRI SRI RAMAKRISHNA KATHAMRUTA***, Vol. III; Published by Ramakrishna Math, Vivekananda Marg, Bhubaneswar -751 002; 4th Reprint on 22nd February 2016; **Price: ₹. One Hundred &Ten Only**.

# ପ୍ରଥମ ସଂସ୍କରଣରେ ପ୍ରକାଶକଙ୍କ ନିବେଦନ

ଭଗବାନ ଶ୍ରୀରାମକୃଷ୍ଣଦେବଙ୍କ କୃପାରୁ ତାଙ୍କର ମୁଖନିଃସୃତ ଭାଗବତୀ ବାଣୀ **''ଶ୍ରୀଶ୍ରୀରାମକୃଷ୍ଣ କଥାମୃତ''** ପୁସ୍ତକର ତୃତୀୟ ଭାଗଟି ବର୍ତ୍ତମାନ ପ୍ରକାଶ କରିବାକୁ ସକ୍ଷମ ହେଲୁ । ଏହି ପୁସ୍ତକଟିର ଓଡ଼ିଆ ଅନୁବାଦ ସ୍ୱାମୀ ଭକ୍ତ୍ୟାନନ୍ଦ ବହୁବର୍ଷ ଆଗେ ବ୍ରହ୍ମଚାରୀ ଥିବା ସମୟରେ କରିଥିଲେ । ଏହାର ପାଣ୍ଡୁଲିପିଟି ଓଡ଼ିଶାର ଲବ୍‌ଧପ୍ରତିଷ୍ଠ ପ୍ରକାଶକ ସ୍ୱର୍ଗୀୟ ପଣ୍ଡିତ ଶ୍ରୀ ଆକୁଳି ମିଶ୍ର, କଟକ ସଂଶୋଧନ କରିଥିଲେ ।

ଓଡ଼ିଶାର ଜନସାଧାରଣ ଓ ଭକ୍ତମାନଙ୍କ ନିକଟରେ ଏହା ବିଶେଷଭାବେ ଆଦର ଲାଭ କରିବ ବୋଲି ଆମେ ଆଶାପୋଷଣ କରୁ । ଏହାପରେ କଥାମୃତର ଅନ୍ୟାନ୍ୟ ଭାଗଗୁଡ଼ିକ କ୍ରମେ କ୍ରମେ ପ୍ରକାଶ କରାଯିବ । କାଗଜ, ମୁଦ୍ରଣ ଓ ଆନୁସଙ୍ଗିକ ଖର୍ଚ୍ଚର ପରିମାଣ ବୃଦ୍ଧି ସତ୍ତ୍ୱେ ପୁସ୍ତକର ମୂଲ୍ୟ ଯଥା ସମ୍ଭବ କମ୍ ରଖାଯାଇଛି ।

ସମସ୍ତଙ୍କର କଲ୍ୟାଣ ହେଉ–ଏହା ହିଁ ଭଗବାନଙ୍କ ନିକଟରେ ଆନ୍ତରିକ ପ୍ରାର୍ଥନା । ଇତି ।

ସାବିତ୍ରୀ ଅମାବାସ୍ୟା
ମଇ, ୧୯୮୪

ନାରାୟଣସ୍ମରଣମ୍
**ପ୍ରକାଶକ**

# ସୂଚୀପତ୍ର

# ଶ୍ରୀଶ୍ରୀରାମକୃଷ୍ଣ କଥାମୃତ

## ପ୍ରଥମ ପରିଚ୍ଛେଦ

### ଠାକୁର ଶ୍ରୀରାମକୃଷ୍ଣଙ୍କର ପଣ୍ଡିତ ଦର୍ଶନ

### (୧)

### ଈଶାନଙ୍କ ଘରକୁ ଶୁଭାଗମନ

ଆଜି ରଥଯାତ୍ରା । ବୁଧବାର ୨୫ ତାରିଖ ଜୁନ୍, ୧୮୮୪ ଖ୍ରୀଷ୍ଟାବ୍ଦ, ଆଷାଢ଼ ଶୁକ୍ଳଦ୍ୱିତୀୟା । ସକାଳେ ଶ୍ରୀରାମକୃଷ୍ଣ କଲିକତାରେ ଈଶାନଙ୍କ ଘରକୁ ନିମନ୍ତ୍ରଣ ପାଇ ଆସିଛନ୍ତି । ଠନଠନିଆରେ ଈଶାନଙ୍କର ଭଦ୍ରାସନ ଘର । ସେଠାକୁ ଆସି ଠାକୁର ଶୁଣିଲେ ଯେ, ପଣ୍ଡିତ ଶଶଧର ଅନତିଦୂରରେ କଲେଜ ଷ୍ଟ୍ରୀଟ୍‌ରେ ଥିବା ଚାଟାର୍ଜୀଙ୍କ ଘରେ ରହିଛନ୍ତି । ପଣ୍ଡିତଙ୍କୁ ଦେଖିବାକୁ ତାଙ୍କର ଖୁବ୍ ଇଚ୍ଛା । ଉପରବେଳା ପଣ୍ଡିତଙ୍କ ଘରକୁ ଯିବେ ବୋଲି ସ୍ଥିର ହେଲା ।

ସମୟ ପ୍ରାୟ ଦଶଟା । ଶ୍ରୀରାମକୃଷ୍ଣ ଈଶାନଙ୍କର ତଳ ବୈଠକଖାନାରେ ଭକ୍ତଙ୍କ ସଙ୍ଗରେ ବସିଛନ୍ତି । ଈଶାନଙ୍କ ପରିଚିତ ଭାଟପଡ଼ାର ଜଣେ ଦୁଇଜଣ ବ୍ରାହ୍ମଣ, ସେମାନଙ୍କ ମଧ୍ୟରେ ଜଣେ ଭାଗବତ ପଣ୍ଡିତ । ଠାକୁରଙ୍କ ସଙ୍ଗରେ ହାଜରା ଓ ଆଉ ଜଣେ ଦୁଇଜଣ ଭକ୍ତ ଆସିଛନ୍ତି । ଶ୍ରୀଶ ପ୍ରଭୃତି ଈଶାନଙ୍କ ପୁଅମାନେ ଉପସ୍ଥିତ । ଜଣେ ଭକ୍ତ ଶକ୍ତିର ଉପାସକ ଆସିଛନ୍ତି । କପାଳରେ ସିନ୍ଦୁର ଟୋପା । ଠାକୁର ଆନନ୍ଦମୟ, ସିନ୍ଦୁର ଟୋପା ଦେଖି ହସି ହସି କହୁଛନ୍ତି—'ଇଏତ ମାର୍କାମରା ଲୋକ ।'

କିଛିକ୍ଷଣ ପରେ ନରେନ୍ଦ୍ର ଓ ମାଷ୍ଟର ସେମାନଙ୍କର କଲିକତାସ୍ଥିତ ଘରୁ ଆସିଲେ । ସେମାନେ ଠାକୁରଙ୍କୁ ପ୍ରଣାମ କରି ତାଙ୍କ ନିକଟରେ ବସିଲେ । ଠାକୁର ମାଷ୍ଟରଙ୍କୁ କହିଥିଲେ, 'ମୁଁ ଅମୁକ ଦିନ ଈଶାନଙ୍କ ଘରକୁ ଯିବି, ତୁମେ ମଧ୍ୟ ଯିବ ଓ ନରେନ୍ଦ୍ରଙ୍କୁ ସଙ୍ଗରେ ଆଣିବ ।'

ଠାକୁର ମାଷ୍ଟରଙ୍କୁ କହୁଛନ୍ତି, ''ସେଦିନ ତୁମଘରକୁ ଯାଉଥିଲି—ତୁମ ଘର କେଉଁ ଜାଗାରେ ?''

ମାଷ୍ଟର—ଆଜ୍ଞା, ବର୍ତ୍ତମାନ ଶ୍ୟାମାପୁକୁରର ତେଲି ପଡ଼ାର ସ୍କୁଲ ନିକଟରେ ।

ଶ୍ରୀରାମକୃଷ୍ଣ—ଆଜି ସ୍କୁଲକୁ ଯାଇନାହଁ ?

ମାଷ୍ଟର—ଆଜ୍ଞା, ଆଜି ରଥଯାତ୍ରା ପାଇଁ ଛୁଟି ।

ନରେନ୍ଦ୍ରଙ୍କର ପିତୃବିୟୋଗ ପରେ ଘରେ ଅତ୍ୟନ୍ତ କଷ୍ଟ । ସେ ପିତାଙ୍କର ଜ୍ୟେଷ୍ଠ ପୁତ୍ର—ଛୋଟ ଛୋଟ ଭାଇ-ଭଉଣୀ ଅଛନ୍ତି । ପିତା ଓକିଲ ଥିଲେ, କିଛି ରଖିଯାଇ ନାହାନ୍ତି । ସଂସାର ଚଳାଇବା ପାଇଁ ନରେନ୍ଦ୍ର ଚାକିରୀ ଅନୁସନ୍ଧାନ କରୁଛନ୍ତି । ଠାକୁର ନରେନ୍ଦ୍ରଙ୍କ ଚାକିରୀ ପାଇଁ ଈଶାନ ପ୍ରଭୃତି ଭକ୍ତମାନଙ୍କୁ କହିରଖିଛନ୍ତି । ଈଶାନ Comptroller General (କମ୍ପଟ୍ରୋଲର ଜେନେରାଲ) ଅଫିସରେ କର୍ମଚାରୀମାନଙ୍କର ଜଣେ ଅଧକ୍ଷ ଥିଲେ । ନରେନ୍ଦ୍ରଙ୍କ ଘରର କଷ୍ଟ ଶୁଣି ଠାକୁର ସର୍ବଦା ଚିନ୍ତିତ ଅଛନ୍ତି ।

ଶ୍ରୀରାମକୃଷ୍ଣ(ନରେନ୍ଦ୍ରଙ୍କ ପ୍ରତି)—ମୁଁ ଈଶାନଙ୍କୁ ତୋ କଥା କହିଛି । ଈଶାନ ସେଠାରେ (ଦକ୍ଷିଣେଶ୍ୱର କାଳୀମନ୍ଦିରରେ) ଦିନେ ରହିଥିଲା, ତେଣୁ କହିଥିଲି । ତାଙ୍କର ଅନେକଙ୍କ ସଙ୍ଗରେ ପରିଚୟ ଅଛି ।

ଈଶାନ ଠାକୁରଙ୍କୁ ନିମନ୍ତ୍ରଣ କରି ଆଣିଛନ୍ତି । ସେହି ଉପଲକ୍ଷେ କେତେଜଣ ବନ୍ଧୁମାନଙ୍କୁ ନିମନ୍ତ୍ରଣ କରିଛନ୍ତି । ଗୀତ ହେବ । ପଖୋଜ,ତବଲା ଓ ତାନପୁରାର ଆୟୋଜନ ହୋଇଛି । ଘରର ଜଣେ ବ୍ୟକ୍ତି ଗୋଟିଏ ପାତ୍ରରେ ପଖୋଜ ପାଇଁ କିଛି ମଇଦା ଆଣି ଦେଇଗଲା । ସମୟ ଏଗାରଟା ବାଜିବ । ଈଶାନଙ୍କର ଇଚ୍ଛା ଯେ ନରେନ୍ଦ୍ର ଗୀତ ଗାଆନ୍ତୁ ।

ଶ୍ରୀରାମକୃଷ୍ଣ (ଈଶାନଙ୍କ ପ୍ରତି)—ଏତେବେଳେ ମଇଦା ! ତେବେ ମନେହୁଏ (ଖାଇବା) ଅନେକ ଡେରି !

ଈଶାନ (ସହାସ୍ୟେ)—ଆଜ୍ଞା ନା, ସେତେ ଡେରି ନାହିଁ ।

ଭକ୍ତମାନେ କେହି କେହି ହସୁଛନ୍ତି । ଭାଗବତ ପଣ୍ଡିତ ମଧ୍ୟ ହସି ହସି ଗୋଟିଏ ଉଦ୍ଭଟ ଶ୍ଳୋକ* ବୋଲୁଛନ୍ତି । ଶ୍ଳୋକ ଆବୃତ୍ତି ପରେ ପଣ୍ଡିତ ତାହାର ବ୍ୟାଖ୍ୟା କରୁଅଛନ୍ତି । ଦର୍ଶନାଦି ଶାସ୍ତ୍ର ଅପେକ୍ଷା କାବ୍ୟ ମନୋହର । ଯେତେବେଳେ କାବ୍ୟ ପାଠହୁଏ ବା ଲୋକେ ଶ୍ରବଣ କରନ୍ତି ସେତେବେଳେ ବେଦାନ୍ତ , ସାଂଖ୍ୟ,ନ୍ୟାୟ, ପାତଞ୍ଜଳ ଏହିସବୁ ଦର୍ଶନ ଶୁଷ୍କ ବୋଧହୁଏ । କାବ୍ୟ ଅପେକ୍ଷା ଗୀତ ମନୋହର । ସଂଗୀନରେ ପାଷାଣ ହୃଦୟ ବ୍ୟକ୍ତି ମଧ୍ୟ ତରଳି ଯାଏ; କିନ୍ତୁ ଯଦିଓ ଗୀତର ଏତେ ଆକର୍ଷଣ, ତଥାପି ସୁନ୍ଦରୀ ନାରୀ ନିକଟରେ ଚାଲିଗଲେ,କାବ୍ୟ ମଧ୍ୟ ପଡ଼ିରହେ, ଗୀତ ପର୍ଯ୍ୟନ୍ତ ଭଲ ଲାଗେନା ସମସ୍ତ ମନ ସେହି ନାରୀଆଡ଼କୁ ଚାଲିଯାଏ । ପୁଣି ଯେତେବେଳେ ବୁଭୁକ୍ଷା ହୁଏ, କ୍ଷୁଧା ଲାଗେ, କାବ୍ୟ, ଗୀତ, ନାରୀ କିଛି ହେଲେ ଭଲ ଲାଗେନା । ଅନ୍ନଚିନ୍ତା ଚମତ୍କାରା !

ଶ୍ରୀରାମକୃଷ୍ଣ (ସହାସ୍ୟେ)—ଇଏ ରସିକ ।

ପଖୋଜ ବନ୍ଧା ହେଲା । ନରେନ୍ଦ୍ର ଗୀତ ଗାଉଛନ୍ତି । ଗୀତ ଟିକିଏ ଆରମ୍ଭ ହେଉ

---

*"କାବ୍ୟେନ ଦର୍ଶନଂ ହନ୍ତି,କାବ୍ୟଂ ଗୀତେନ ହନ୍ୟତେ । ଗୀତଞ୍ଚ ସ୍ତ୍ରୀ ବିଳାସେନ, ସର୍ବଂହନ୍ତି ବୁଭୁକ୍ଷୁତା ॥"

ନ ହେଉଣୁ ଠାକୁର ଉପର ବୈଠକଖାନା ଘରକୁ ବିଶ୍ରାମ କରିବା ପାଇଁ ଚାଲି ଆସିଲେ । ସାଙ୍ଗରେ ମାଷ୍ଟର ଓ ଶ୍ରୀଶ । ବୈଠକଖାନା ଘର ରାସ୍ତାର ଉପରେ । ଈଶାନଙ୍କ ଶ୍ୱଶୁର କ୍ଷେତ୍ରନାଥ ଚାଟାର୍ଜୀ ମହାଶୟ ଏହି ବୈଠକଖାନାଟିତ୍ କରିଛନ୍ତି ।

ମାଷ୍ଟର ଶ୍ରୀଶଙ୍କର ପରିଚୟ ଦେଲେ । କହିଲେ—ଇଏ ପଣ୍ଡିତ ଓ ଅତିଶୟ ଶାନ୍ତ ପ୍ରକୃତିର । ବାଲ୍ୟକାଳରୁ ଇଏ ମୋ ସଙ୍ଗରେ ବରାବର ପଢ଼ି ଆସିଛନ୍ତି । ଇଏ ଓକିଲାତି କରନ୍ତି ।

ଶ୍ରୀରାମକୃଷ୍ଣ—ଏପରି ଲୋକ ବି ଓକିଲାତି କରନ୍ତି !

ମାଷ୍ଟର—ଭୁଲରେ ଇଏ ଏ ପଥରେ ଆସିଛନ୍ତି ।

ଶ୍ରୀରାମକୃଷ୍ଣ—ମୁଁ ଗଣେଶ ଓକିଲକୁ ଦେଖିଛି । ସେଠାକୁ (ଦକ୍ଷିଣେଶ୍ୱର କାଳୀମନ୍ଦିରକୁ) ବାବୁମାନଙ୍କ ସଙ୍ଗରେ ମଝିରେ ମଝିରେ ଯାଏ । ପାନ୍ନାବି (ଓକିଲ) ଯାଏ—ସୁନ୍ଦର ନୁହେଁ, କିନ୍ତୁ ଭଲ ଗାଇପାରେ । ମତେ କିନ୍ତୁ ଖୁବ୍ ମାନେ, ସରଳ ।

(ଶ୍ରୀଶଙ୍କ ପ୍ରତି)— "ତୁମେ କ'ଣ ସାର ବୋଲି ମନେ କରିଛ?"

ଶ୍ରୀଶ—ଈଶ୍ୱର ଅଛନ୍ତି,ଆଉ ସେ ସବୁ କରୁଛନ୍ତି । ତେବେ ତାଙ୍କର ଗୁଣ (Attributes) ଆମେ ଯାହା ଧାରଣା କରୁ ତାହା ଠିକ୍ ନୁହେଁ । ମନୁଷ୍ୟ ତାଙ୍କ ବିଷୟରେ କ'ଣ ଧାରଣା କରିପାରିବ ? ଅନନ୍ତ କାଣ୍ଡ !

ଶ୍ରୀରାମକୃଷ୍ଣ—ବଗିଚାରେ କେତେ ଗଛ ଅଛି, ଗଛରେ କେତେ ଡାଳ, ଏସବୁରେ ହିସାବ ଲଗାଇବା ତୁମର କ'ଣ ଦରକାର ? ତୁମେ ବଗିଚାକୁ ଆମ୍ବ ଖାଇବାକୁ ଆସିଛ, ଆମ୍ବ ଖାଇଯାଅ । ତାଙ୍କ ଠାରେ ଭକ୍ତି ପ୍ରେମ ହେବା ପାଇଁ ମନୁଷ୍ୟ ଜନ୍ମ । ତୁମେ ଆମ୍ବ ଖାଇ ଚାଲିଯାଅ ।

"ତୁମେ ମଦ ଖାଇବାକୁ ଆସିଛ, ଶୁଣ୍ଡି ଦୋକାନରେ କେତେ ମହଣ ମଦ ଅଛି, ଏ ଖବରରେ ତୁମର ଦରକାର କ'ଣ ? ଗ୍ଲାସେ ହେଲେ ତୁମର ହୋଇଯାଏ ।"

" ତୁମର ଅନନ୍ତ କାଣ୍ଡ ଜାଣିବାର କ'ଣ ପ୍ରୟୋଜନ ?"

"ତାଙ୍କର ଗୁଣ କୋଟି କୋଟି ବର୍ଷ ବିଚାର କଲେ ମଧ୍ୟ କିଛି ଜାଣିପାରିବ ନାହିଁ ।"

ଠାକୁର ଟିକିଏ ଚୁପ୍ କରି ବସିଛନ୍ତି । ପୁଣି କଥା କହୁଅଛନ୍ତି, ଭାଟପଡ଼ାର ଜଣେ ବ୍ରାହ୍ମଣ ମଧ୍ୟ ବସିଛନ୍ତି ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—ଏ ସଂସାରରେ କିଛି ନାହିଁ । ଏହାଙ୍କର (ଈଶାନଙ୍କର) ସଂସାର ଭଲ,—ନ ହେଲେ ଯଦି ତାଙ୍କର ପିଲାମାନେ ବ୍ୟଭିଚାରୀ, ଗଞ୍ଜୋଡ଼, ମଦ୍ୟପ ବା ଅବାଧ ହୋଇଥାନ୍ତେ, ତା'ହେଲେ ତାଙ୍କର କଷ୍ଟର ସୀମା ନ-ଥାନ୍ତା । ସମସ୍ତଙ୍କର ଈଶ୍ୱରଙ୍କ ଆଡ଼କୁ ମନ—ବିଦ୍ୟାର ସଂସାର,ଏପରି ପ୍ରାୟ ଦେଖାଯାଏ-ନାହିଁ । ଏପରି ଦୁଇ ଚାରିଟା ପରିବାର ଦେଖିଲି । କେବଳ ଝଗଡ଼ା, ମନୋମାଳିନ୍ୟ, ହିଂସା, ତା ଉପରେ ପୁଣି ରୋଗ, ଶୋକ,ଦାରିଦ୍ର୍ୟ ଅଛି । ଦେଖି କହିଲି—'ମା' ଏଥର

ଗତି ବଦଳାଇ ଦିଅ । ଦେଖ ତ, ନରେନ୍ଦ୍ର କିପରି ମୁସ୍କିଲରେ ପଡ଼ିଛି । ବାପ ମରିଯାଇଛି, ଘରେ ଖାଇବାକୁ ପାଉନାହାନ୍ତି— କାମଦାମ ପାଇଁ ଏତେ ଚେଷ୍ଟା କରୁଛି, ଜୁଟୁନାହିଁ— ବର୍ତ୍ତମାନ କିପରି ବୁଲୁଛି ଦେଖ ।

"ମାଷ୍ଟର, ତୁମେ ଆଗେ ଏତେ ଏତେ ଯାଉଥିଲ,— ଆଜିକାଲି ସେତେ ଯାଅନାହିଁ କାହିଁକି ? ମନେହୁଏ ପରିବାର ସଙ୍ଗରେ ବେଶୀ ଭାବ ହୋଇଯାଇଛି ।

ଏଥିରେ ଦୋଷ ବା କ'ଣ, ଚାରିଆଡ଼େ କାମିନୀ-କାଞ୍ଚନ ! ତେଣୁ କହେ, ମା ଯଦି କେତେବେଳେ ଶରୀର ଧାରଣ କରେ, ଯେପରି ସଂସାରୀ କର ନାହିଁ ।"

ଭାଟପଡ଼ାର ବ୍ରାହ୍ମଣ— କ'ଣ ! ଗୃହସ୍ଥ ଧର୍ମର ସୁଖ୍ୟାତି ଅଛି ।

ଶ୍ରୀରାମକୃଷ୍ଣ— ହଁ, କିନ୍ତୁ ବଡ଼ କଠିନ ।

ଠାକୁର ଅନ୍ୟ କଥା ପକାଉଅଛନ୍ତି ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)— ଆମେ କ'ଣ ଅନ୍ୟାୟ କଲୁ ? ସେମାନେ ଗାଉଛନ୍ତି— ନରେନ୍ଦ୍ର ଗାଉଛି— ଆଉ ଆମେ ସବୁ ଚାଲି ଆସିଲୁ !

## (୨)

## କଳିରେ ଭକ୍ତିଯୋଗ— କର୍ମଯୋଗ ନୁହେଁ ।

ପ୍ରାୟ ଅପରାହ୍ନ ଚାରିଟା ସମୟରେ ଠାକୁର ଗାଡ଼ିରେ ଉଠିଲେ । ତାଙ୍କ ଅଙ୍ଗପ୍ରତ୍ୟଙ୍ଗ ଅତି କୋମଳ । ଅତି ସାବଧାନରେ ଦେହ ରକ୍ଷା କରିବାକୁ ହୁଏ । ତେଣୁ ପଥରେ ଚାଲିବାକୁ କଷ୍ଟ ହୁଏ— ଅଳ୍ପଦୂର ବି ଗାଡ଼ି ନ ହେଲେ ଯାଇପାରନ୍ତି ନାହିଁ । ଗାଡ଼ିରେ ଉଠି ଭାବ-ସମାଧିରେ ମଗ୍ନ ହେଲେ । ସେତେବେଳେ ଟପ୍ ଟପ୍ କରି ବର୍ଷାପାଣି ପଡୁଛି । ବର୍ଷାକାଳ, ଆକାଶରେ ମେଘ,କାଦୁଆରାସ୍ତା । ଭକ୍ତମାନେ ଗାଡ଼ି ପଛେ ପଛେ ପଦବ୍ରଜରେ ଯାଉଅଛନ୍ତି । ସେମାନେ ରାସ୍ତା ଦେଖିଲେ, ରଥଯାତ୍ରା ଉପଲକ୍ଷେ ପିଲାମାନେ ତାଳପତ୍ରର ପେଁକାଳି ବଜାଉଛନ୍ତି ।

ଗାଡ଼ି ଘର ସମ୍ମୁଖରେ ପହଞ୍ଚିଲା । ଦ୍ୱାରଦେଶରେ ଗୃହସ୍ୱାମୀ ଓ ତାଙ୍କର ଆତ୍ମୀୟଗଣ ଆସି ଅଭ୍ୟର୍ଥନା କଲେ ।

ଉପରକୁ ଯିବାକୁ ସିଡ଼ି । ତା'ପରେ ବୈଠକଖାନା । ଉପରକୁ ଉଠି ଶ୍ରୀରାମକୃଷ୍ଣ ଦେଖିଲେ ଯେ, ଶଶଧର ତାଙ୍କୁ ଅଭ୍ୟର୍ଥନା କରିବାକୁ ଆସିଛନ୍ତି । ପଣ୍ଡିତଙ୍କୁ ଦେଖି ବୋଧହେଲା ଯେ, ସେ ଯୌବନ ଅତିକ୍ରମ କରି ପ୍ରୌଢ଼ାବସ୍ଥା ପ୍ରାପ୍ତ ହୋଇଛନ୍ତି । ବର୍ଣ୍ଣ ସଫା ଗୋରା କହିଲେ ଚଳେ । ଗଳାରେ ରୁଦ୍ରାକ୍ଷର ମାଳା । ସେ ଅତି ବିନୀତ ଭାବରେ ଭକ୍ତିରେ ଠାକୁର ରାମକୃଷ୍ଣଙ୍କୁ ପ୍ରଣାମ କଲେ । ତା'ପରେ ସଙ୍ଗରେ ନେଇ ଘରେ ବସାଇଲେ । ଭକ୍ତଗଣ ପଛେ ପଛେ ଯାଇ ଆସନ ଗ୍ରହଣ କଲେ । ସମସ୍ତେ ଉତ୍ସୁକ ଯେ, ତାଙ୍କ ନିକଟରେ ବସନ୍ତେ ଓ ତାଙ୍କର ଶ୍ରୀମୁଖ ନିଃସୃତ କଥାମୃତ ପାନ କରନ୍ତେ । ନରେନ୍ଦ୍ର,

ରାଖାଲ, ରାମ, ମାଷ୍ଟର ଓ ଅନ୍ୟାନ୍ୟ ଅନେକ ଭକ୍ତ ଉପସ୍ଥିତ ଥିଲେ । ହାଜରାଦି ଶ୍ରୀରାମକୃଷ୍ଣଙ୍କ ସଙ୍ଗରେ ଦକ୍ଷିଣେଶ୍ୱର କାଳୀମନ୍ଦିରରୁ ଆସିଛନ୍ତି । ପଣ୍ଡିତଙ୍କୁ ଦେଖୁ ଦେଖୁ ଠାକୁର ଭାବାବିଷ୍ଟ ହେଲେ । କିୟତ୍‌କ୍ଷଣ ପରେ ସେହି ଅବସ୍ଥାରେ ହସି ହସି ପଣ୍ଡିତଙ୍କ ଆଡ଼କୁ ଅନାଇ କହିଲେ, ବେଶ୍ ! ବେଶ୍ ! ପରେ ପଣ୍ଡିତଙ୍କୁ କହିଲେ, ଆଚ୍ଛା, ତୁମେ କିପରି ଲେକ୍‌ଚର୍ ଦିଅ ?

ଶଶଧର—ମହାଶୟ, ମୁଁ ଶାସ୍ତ୍ରର କଥା ବୁଝାଇବାକୁ ଚେଷ୍ଟା କରେ ।

ଶ୍ରୀରାମକୃଷ୍ଣ—କଳିଯୁଗ ପକ୍ଷରେ ନାରଦୀୟ ଭକ୍ତି । ଶାସ୍ତ୍ରରେ ଯେଉଁ ସମସ୍ତ କର୍ମର କଥା ଅଛି, ତାହାର ସମୟ କାହିଁ ? ଆଜିକାଲିର ଜ୍ୱରରେ ଦଶମୂଳ ପାଞ୍ଚନ ଚଳେ ନାହିଁ । ଦଶମୂଳ ପାଞ୍ଚନ ଦେଲେ ରୋଗୀର ଏଣେ ହୋଇଯାଏ । ଆଜିକାଲି ଫିଭର୍ ମିକ୍‌ସଚର୍ । କର୍ମ କରିବାକୁ ଯଦି କହ ତାହାହେଲେ ଲାଞ୍ଜ-ମୁଣ୍ଡ ବାଦ ଦେଇ କହିବ । ମୁଁ ଲୋକମାନଙ୍କୁ କହେ ତୁମମାନଙ୍କୁ 'ଆପୋଧନ୍ୟନ୍ୟା' ଏସବୁ ଏତେ କହିବାକୁ ହେବନାହିଁ । ତୁମମାନଙ୍କର ଗାୟତ୍ରୀ ଜପିଲେ ହେବ । କର୍ମ କଥା ଯଦି କେବଳ କହ ତାହାହେଲେ ଇଶାନଙ୍କ ପରି କର୍ମୀ ଜଣେ ଦୁଇଜଣଙ୍କୁ କହିପାର ।

## ବିଷୟୀ ଲୋକ ଓ ଲେକ୍‌ଚର

ଶ୍ରୀରାମକୃଷ୍ଣ—ହଜାରେ ଲେକ୍‌ଚର୍ ଦିଅ, ବିଷୟୀ ଲୋକଙ୍କର କିଛି କରିପାରିବ ନାହିଁ । ପଥର କାନ୍ଥରେ କ'ଣ କଣ୍ଟା ମରାଯାଏ ? କଣ୍ଟାର ମୁନ ଭାଙ୍ଗିଯିବ ପଛେ କାନ୍ଥର କିଛି ହେବ ନାହିଁ । ତରବାରୀ ଚୋଟ ମାରିଲେ କୁମ୍ଭୀରର କ'ଣ ହେବ ? ସାଧୁର କମଣ୍ଡଳୁ (ତୁମ୍ବା) ଚାରିଧାମ କରିଆସେ, କିନ୍ତୁ ଯେପରି ପିତାକୁ ସେପରି ପିତା । ତୁମର ଲେକ୍‌ଚର୍‌ରେ ବିଷୟୀ ଲୋକଙ୍କର ବେଶୀ କିଛି ହେବନାହିଁ । ତେବେ, ତୁମେ କ୍ରମେ କ୍ରମେ ଜାଣିପାରିବ । ବାଛୁରୀ ଏକାବେଳକେ ଠିଆ ହୋଇପାରେ ନାହିଁ । ମଝିରେ ମଝିରେ ପଡ଼ିଯାଏ, ପୁଣି ଉଠେ; —ତେବେ ତ ଠିଆହେବା ଓ ଚାଲିବାକୁ ଶିଖେ ।

## ନବାନୁରାଗ ଓ ବିଚାର

''କିଏ ଭକ୍ତ କିଏ ବିଷୟୀ ତୁମେ ଚିହ୍ନିପାର ନାହିଁ । ତାହା ତୁମର ଦୋଷ ନୁହେଁ । ପ୍ରଥମ ଝଡ଼ ଉଠିଲେ କେଉଁଟା ତେନ୍ତୁଳି ଗଛ, କେଉଁଟା ଆମ୍ବ ଗଛ, ବୁଝାଯାଏ ନାହିଁ ।''

### କର୍ମତ୍ୟାଗ ଓ ଈଶ୍ୱର ଲାଭ ; ଯୋଗ ଓ ସମାଧି

''ଏକଥା ସତ୍ୟ, ଈଶ୍ୱର ଲାଭ ନ ହେଲେ କେହି ଏକାବେଳକେ କର୍ମତ୍ୟାଗ କରିପାରେ ନାହିଁ । ସନ୍ଧ୍ୟାଦି କର୍ମ କେତେଦିନ ? ଯେତେଦିନ ଈଶ୍ୱରଙ୍କ ନାମରେ ଅଶ୍ରୁ

ଆଉ ପୁଲକ ନହୁଏ । ଥରେ 'ଓଁ ରାମ' କହିଲେ ଯଦି ଚକ୍ଷୁରେ ଜଳ ଆସେ, ତାହାହେଲେ ନିଶ୍ଚୟ ଜାଣ ଯେ, ତୁମର କର୍ମ ଶେଷ ହୋଇଛି । ଆଉ ସନ୍ଧ୍ୟାଦି କର୍ମ କରିବାକୁ ହେବନାହିଁ ।''

ଫଳ ହେଲେ ଫୁଲ ପଡ଼ିଯାଏ । ଭକ୍ତିଫଳ କର୍ମଫୁଲ । ଗୃହସ୍ଥର ବୋହୂ, ଗର୍ଭାବସ୍ଥାରେ ବେଶୀକର୍ମ କରିପାରେ ନାହିଁ । ଶାଶୁ ଦିନକୁ ଦିନ ତାହାର କର୍ମ କମାଇ ଦିଏ । ଦଶମାସ ହେଲେ, ଶାଶୁ ପ୍ରାୟ କର୍ମ କରିବାକୁ ଦିଏ ନାହିଁ । ପିଲା ହେଲେ ପିଲାକୁ ନେଇ କେବଳ ଖେଳାଖେଳି କରେ, ଆଉ କର୍ମ କରିବାକୁ ହୁଏନାହିଁ ।

''ସନ୍ଧ୍ୟା, ଗାୟତ୍ରୀରେ ଲୟ ହୁଏ । ଗାୟତ୍ରୀ, ପ୍ରଣବରେ ଲୟ ହୁଏ । ପ୍ରଣବ ସମାଧିରେ ଲୟ ହୁଏ । ଯେପରି ଘଣ୍ଟାର ଶବ୍ଦ ଟଂ-ଟ-ଅ-ମ୍ । ଯୋଗୀ ନାଦ ଭେଦ କରି ପରବ୍ରହ୍ମଙ୍କ ଠାରେ ଲୟ ହୁଅନ୍ତି ।''

''ସମାଧି ମଧ୍ୟରେ ସନ୍ଧ୍ୟାଦି କର୍ମର ଲୟ ହୁଏ । ଏହିପରି ଜ୍ଞାନୀମାନଙ୍କର କର୍ମତ୍ୟାଗ ହୁଏ ।''

## (୩)

## ପାଣ୍ଡିତ୍ୟ ଓ ସାଧନ । ପାଣ୍ଡିତ୍ୟ ଓ ବିବେକ ବୈରାଗ୍ୟ ।

ସମାଧି କଥା କହୁ କହୁ ଠାକୁରଙ୍କର ଭାବାନ୍ତର ହେଲା ! ତାଙ୍କ ଚନ୍ଦ୍ରମୁଖରୁ ସ୍ୱର୍ଗୀୟ ଜ୍ୟୋତିଃ ବହିର୍ଗତ ହେଉଛି । ଆଉ ବାହ୍ୟଜ୍ଞାନ ନାହିଁ । ମୁହଁରେ ଗୋଟିଏ କଥା ନାହିଁ । ଚକ୍ଷୁ ସ୍ଥିର ହୋଇଯାଇଛି । ନିଶ୍ଚୟ ଜଗତର ନାଥଙ୍କୁ ଦର୍ଶନ କରୁଥିଲେ । ଅନେକକ୍ଷଣ ପରେ ପ୍ରକୃତିସ୍ଥ ହୋଇ ବାଳକଙ୍କ ପରି କହିଲେ, ମୁଁ ପାଣି ପିଇବି ।

ଠାକୁର ସମାଧି ପରେ ଯେତେବେଳେ ପାଣି ପିଇବାକୁ ଚାହୁଁଥିଲେ, ସେତେବେଳେ ଭକ୍ତମାନେ ଅନୁମାନ କରୁଥିଲେ ଯେ, ଏଥର ସେ କ୍ରମଶଃ ବାହ୍ୟଜ୍ଞାନ ଲାଭ କରିବେ ।

ଠାକୁର ଭାବାବସ୍ଥାରେ କହିଲେ, 'ମା ! ସେ ଦିନ ଈଶ୍ୱର ବିଦ୍ୟାସାଗରଙ୍କୁ ଦେଖାଇଲୁ । ତା'ପରେ ମୁଁ ପୁଣି କହିଥିଲି, 'ମା ! ମୁଁ ଆଉ ଜଣେ ପଣ୍ଡିତଙ୍କୁ ଦେଖିବି'; ସେଥିପାଇଁ ତୁ ମୋତେ ଏଠାକୁ ଆଣିଛୁ ।

ପରେ ଠାକୁର ଶଶଧରଙ୍କ ଆଡ଼କୁ ଅନାଇ କହିଲେ, ''ବାବା ! ଆଉ ଟିକିଏ ଶକ୍ତି ବଢ଼ାଅ । ଆଉ କିଛିଦିନ ସାଧନ ଭଜନ କର । ଗଛକୁ ନ ଉଠୁଣୁ କାନ୍ଦିଏ ? ତେବେ ତୁମେ ଲୋକମାନଙ୍କର ଭଲ ପାଇଁ ଏସବୁ କରୁଛ । ଏହାକହି ଠାକୁର ଶଶଧରଙ୍କୁ ମୁଣ୍ଡ ନୁଆଁଇ ନମସ୍କାର କଲେ ।''

ଠାକୁର ଆଉ ମଧ କହିଲେ, ''ଯେତେବେଳେ ପ୍ରଥମେ ତୁମ କଥା ଶୁଣିଲି, ସେତେବେଳେ ପଚାରିଲି ଯେ, ଏହି ପଣ୍ଡିତ କ'ଣ ଖାଲି ପଣ୍ଡିତ, ନା ବିବେକ ବୈରାଗ୍ୟ ଅଛି ?''

## ଆଦେଶ ଓ ଆଚାର୍ଯ୍ୟ

"ଯେଉଁ ପଣ୍ଡିତଙ୍କର ବିବେକ ନାହିଁ, ସେ ବ୍ୟକ୍ତି ପଣ୍ଡିତ ନୁହନ୍ତି ।"

"ଯଦି ଆଦେଶ ହୋଇଥାଏ, ତାହାହେଲେ ଲୋକ-ଶିକ୍ଷାରେ ଦୋଷ ନାହିଁ । ଆଦେଶ ପାଇ ଯଦି କେହି ଲୋକ-ଶିକ୍ଷା ଦିଏ, ତାଙ୍କୁ କେହି ହରାଇପାରେ ନାହିଁ ।"

"ବାଗ୍‌ବାଦିନୀଙ୍କ ପାଖରୁ କାହା ପାଖକୁ ଯଦି ଟିକିଏ କିରଣ ଆସେ, ତାହାହେଲେ ଏପରି ଶକ୍ତି ହୁଏ ଯେ, ବଡ଼ ବଡ଼ ପଣ୍ଡିତମାନେ ତାଙ୍କ ସମ୍ମୁଖରେ ନତମସ୍ତକ ହୋଇ ରହନ୍ତି ।"

ପ୍ରଦୀପ ଜଳିଲେ, ଝଡ଼ିପୋକଗୁଡ଼ାକ ଗଦା ଗଦା ହୋଇ ଆପେ ଆସନ୍ତି—ଡାକିବାକୁ ହୁଏନାହିଁ । ସେହିପରି ଯେ ଆଦେଶ ପାଇଛନ୍ତି, ତାଙ୍କର ଲୋକ ଡାକିବାକୁ ହୁଏନାହିଁ । ଅମୁକ ସମୟରେ ଲେକ୍‌ଚର୍ ହେବ ବୋଲି, ଖବର ପଠାଇବାକୁ ହୁଏ ନାହିଁ । ତାଙ୍କର ନିଜର ଏପରି ଆକର୍ଷଣ ଯେ, ଲୋକମାନେ ତାଙ୍କ ପାଖକୁ ନିଜେ ଆସନ୍ତି । ସେତେବେଳେ ରାଜା, ବାବୁ, ସମସ୍ତେ ଦଳ ଦଳ ହୋଇ ଆସନ୍ତି । ଆଉ କହୁଥାଆନ୍ତି, ଆପଣ କ'ଣ ନେବେ ? ଆମ୍ବ, ସନ୍ଦେଶ, ଟଙ୍କା, କଉଡ଼ି, ଶାଲ ଏସବୁ ଆଣିଛୁ, ଆପଣ କଅଣ ନେବେ ? ମୁଁ ସେହି ଲୋକମାନଙ୍କୁ କହେ, 'ପଳାଇଯାଅ ମୋତେ ସେ ସବୁ ଭଲ ଲାଗେ ନାହିଁ, ମୁଁ କିଛି ଚାହେଁ ନାହିଁ ।

"ଚୁମ୍ବକ ପଥର କ'ଣ ଲୁହାକୁ କହେ, ତୁମେ ମୋ ପାଖକୁ ଆସ ? କହିବାକୁ ହୁଏ ନାହିଁ—ଲୁହା ନିଜେ ଚୁମ୍ବକ ପଥରର ଆକର୍ଷଣରେ ଛୁଟିଆସେ ।"

"ଏପରି ଲୋକ, ପଣ୍ଡିତ ନୁହନ୍ତି ସତ, ତାହା ବୋଲି ମନେ କର ନା ଯେ, ତାଙ୍କ ଜ୍ଞାନ କିଛି କମ୍ । ବହି ପଢ଼ି କ'ଣ ଜ୍ଞାନ ହୁଏ ? ଯେ ଆଦେଶ ପାଇଛନ୍ତି, ତାଙ୍କର ଜ୍ଞାନର ଶେଷ ନାହିଁ । ସେ ଜ୍ଞାନ ଈଶ୍ୱରଙ୍କ ପାଖରୁ ଆସେ; କେବେହେଲେ ଶେଷ ହୁଏ ନାହିଁ ।"

"ସେ ଦେଶରେ ଧାନ ମାପିବା ସମୟରେ ଜଣେ ମାପେ, ଆଉ ଜଣେ ଗଦା ଠେଲିଦିଏ ; ସେହିପରି ଯେ ଆଦେଶ ପାଏ, ସେ ଯେତେ ଲୋକ-ଶିକ୍ଷା ଦେଉଥାନ୍ତି, ମା' ତାଙ୍କ ଆଡ଼କୁ ସେତେ ଜ୍ଞାନ-ରାଶି ଠେଲିଦିଅନ୍ତି, ସେ ଜ୍ଞାନ ଆଉ ସରେ ନାହିଁ ।"

"ମା'ଙ୍କର ଯଦି ଥରେ କଟାକ୍ଷ ହୁଏ, ତାହାହେଲେ କ'ଣ ଜ୍ଞାନର ଅଭାବ ରହେ ? ସେଥିପାଇଁ ପଚାରୁଛି, କୌଣସି ଆଦେଶ ପାଇଛ କି ନାହିଁ ?"

ହାଜରା—ହଁ, ଅବଶ୍ୟ ଆଦେଶ ପାଇଛନ୍ତି । କଅଣ ମହାଶୟ ?

ପଣ୍ଡିତ— ଆଦେଶ ! ନା ଏପରି କିଛି ପାଇନାହିଁ ।

ଗୃହସ୍ୱାମୀ—ଆଦେଶ ପାଇନାହାନ୍ତି ସତ । କର୍ତ୍ତବ୍ୟବୋଧରେ ଲେକ୍‌ଚର୍ ଦେଉଛନ୍ତି ।

ଶ୍ରୀରାମକୃଷ୍ଣ—ଯେ ଆଦେଶ ପାଇନାହିଁ, ତାହାର ଲେକ୍‌ଚରରେ କଅଣ ହେବ ?

"ଜଣେ (ବ୍ରାହ୍ମ) ଲେକ୍‌ଚର୍ ଦେଉ ଦେଉ କହିଲେ, "ଭାଇରେ, ମୁଁ କେତେ ମଦ ଖାଉଥିଲି, ଏହା କରୁଥିଲି, ତାହା କରୁଥିଲି ।" ଏହି କଥା ଶୁଣି, ଲୋକମାନେ କୁହାକୁହି

ହେବାକୁ ଲାଗିଲେ, "ଶଳା କଅଣ କହୁଛିରେ ମଦ ଖାଉଥିଲା !" ଏହି କଥା କହିବାରୁ ଓଲଟା ଉତ୍ପାତ ହେଲା । ସେଥିପାଇଁ ଭଲ ଲୋକ ନ ହେଲେ ଲେକ୍‌ଚର୍‌ରେ କୌଣସି ଉପକାର ହୁଏନାହିଁ ।

"ବରିଶାଲରେ ଘର, ଜଣେ ସବ୍‌ଜଜ୍ କହିଲେ, "ମହାଶୟ, ଆପଣ ପ୍ରଚାର କରିବାକୁ ଆରମ୍ଭ କରନ୍ତୁ । ତାହାହେଲେ ମୁଁ ମଧ୍ୟ ଅଣ୍ଟା ଭିଡ଼ିବି । ମୁଁ କହିଲି, ଆହେ ଗୋଟିଏ ଗଳ୍ପ ଶୁଣ । ସେ ଦେଶରେ ହାଲ୍‌ଦାରପୁକୁର ବୋଲି ଗୋଟିଏ ପୋଖରୀ ଅଛି । ଲୋକମାନେ ସେହି ପୋଖରୀ ହୁଡ଼ାରେ ଝାଡ଼ା ଫେରନ୍ତି । ସକାଳବେଳା ଯେଉଁମାନେ ପୋଖରୀକୁ ଆସନ୍ତି, ସେମାନେ ଝାଡ଼ା ଫେରିଥିବା ଲୋକମାନଙ୍କୁ ଗାଳି ଦିଅନ୍ତି । ଗାଳି ଗୁଲଜରେ କୌଣସି କାର୍ଯ୍ୟ ହୁଏନାହିଁ; ପୁଣି ତାହାର ପରଦିନ ସକାଳେ ହୁଡ଼ାରେ ଝାଡ଼ା ଫେରିବାର, ଦେଖାଯାଏ ! କିଛିଦିନ ପରେ ଜଣେ ଚପରାସି ଗୋଟିଏ ନୋଟିସ୍ ପୋଖରୀ ପାଖରେ ମାରିଦେଲା । କି ଆଶ୍ଚର୍ଯ୍ୟ ! ଏକାବେଳକେ ଝାଡ଼ାଫେରିବା ବନ୍ଦ ହୋଇଗଲା !

"ସେଥିପାଇଁ କହେ ଏଣୁତେଣୁ ଲୋକ ଲେକ୍‌ଚର ଦେଲେ କୌଣସି କାର୍ଯ୍ୟ ହୁଏ ନାହିଁ । ହୁଦା ଥିଲେ ଲୋକମାନେ ମାନିବେ । ଈଶ୍ୱରଙ୍କର ଆଦେଶ ନଥିଲେ ଲୋକ-ଶିକ୍ଷା ହୁଏ ନାହିଁ । ଯେ ଲୋକ-ଶିକ୍ଷା ଦେବ, ତାହାର ଖୁବ୍ ଶକ୍ତିଥିବା ଦରକାର । କଲିକତାରେ ଅନେକ ହନୁମାନପୁରୀ* ଅଛନ୍ତି—ସେମାନଙ୍କ ସଙ୍ଗରେ ତୁମକୁ ଲଢ଼ିବାକୁ ହେବ । ଏମାନେ ତ (ଯେଉଁମାନେ ସଭାରେ ଚାରିଆଡ଼େ ବସିଛନ୍ତି) ବୋଦା !"

"ଚୈତନ୍ୟଦେବ ନିଜେ ଅବତାର । ସେ ଯାହା କରିଗଲେ ତାହାର ଆଉ କଅଣ ରହିଛି କହ ଦେଖି ? ଆଉ ଯେ ଆଦେଶ ପାଇନାହିଁ, ତା'ର ଲେକ୍‌ଚର୍‌ରେ କ'ଣ ଉପକାର ହେବ ?"

## ଆଦେଶ କିପରି ମିଳେ

ଶ୍ରୀରାମକୃଷ୍ଣ-ସେଥିପାଇଁ କହେ ଈଶ୍ୱରଙ୍କ ପାଦପଦ୍ମରେ ମଗ୍ନ ହୁଅ । ଏହିକଥା କହି ଠାକୁର ପ୍ରେମରେ ଭୋଳ ହୋଇ ଗୀତ ଗାଇଲେ ।

—ଗୀତ—

ବୁଡ଼ଦିଅ ରୂପସାଗରେ ମୋହର ମନ ।
ତଳେ, ପାତାଳେ ପାଇବ ପ୍ରେମ-ରତ୍ନଧନ ॥
ଖୋଜିଲେ ପାଇବ ଅନ୍ତରରେ ବୃନ୍ଦାବନ ।
ଦିକ୍ ଦିକ୍ କରି ହୃଦୟ ଜଳିବ ଜ୍ଞାନବତୀ ଅନୁକ୍ଷଣ ॥
ମାଟି ଉପରେ ଚଳାଏ ଡଙ୍ଗା କିଏ ସେ ଜନ ।
କୁବୀର କହେ ଶୁଣ ଶୁଣ, ଧ୍ୟାୟ ଗୁରୁ ଶ୍ରୀଚରଣ ॥

ଶ୍ରୀରାମକୃଷ୍ଣ—ଏ ସାଗରରେ ବୁଡ଼ିଲେ ମରନ୍ତି ନାହିଁ—ଏ ଯେ ଅମୃତର ସାଗର ।

* ସେ ସମୟର ଜଣେ ବିଖ୍ୟାତ ପହିଲିମାନ ।

## ନରେନ୍ଦ୍ର ଓ ଅମୃତର ସାଗର

"ମୁଁ ନରେନ୍ଦ୍ରଙ୍କୁ କହିଥିଲି—ଈଶ୍ୱର ରସର ସମୁଦ୍ର, ତୁ ଏ ସମୁଦ୍ରରେ ବୁଡ଼ ଦେବୁ କି ନାହିଁ କହିଲୁ ! ଆଚ୍ଛା ମନେକର, ସରାରେ ଧରାଏ ରସ ଅଛି, ଆଉ ତୁ ମାଛି ହୋଇଛୁ । ତୁ କେଉଁଠାରେ ବସି ଖାଇବୁ କହ ? ନରେନ୍ଦ୍ର କହିଲା, 'ମୁଁ ସରାର କଡ଼ରେ ବସି ମୁହଁ ବଢ଼ାଇ ଖାଇବି । କାହିଁକି ନା ବେଶୀ ଦୂର ଗଲେ ବୁଡ଼ିଯିବି' । ସେତେବେଳେ ମୁଁ କହିଲି ବାବା, ଏ ସଚ୍ଚିଦାନନ୍ଦ ସାଗର—ଏଥିରେ ମରଣର ଭୟ ନାହିଁ, ଏ ସାଗର ଅମୃତର ସାଗର । ଯେଉଁମାନେ ଅଜ୍ଞାନ ସେମାନେ କହନ୍ତି ଯେ,ଅତିଶୟ ଭକ୍ତିପ୍ରେମ କରିବା ଠିକ୍ ନୁହେଁ । ଈଶ୍ୱର ପ୍ରେମରେ କ'ଣ ଆତିଶଯ୍ୟ ଅଛି ? ସେଥିପାଇଁ ତୁମକୁ କହେ, ସଚ୍ଚିଦାନନ୍ଦ ସାଗରରେ ମଗ୍ନ ହୁଅ । ଈଶ୍ୱର ଲାଭ ହେଲେ ଭାବନା କଅଣ ? ସେତେବେଳେ ଆଦେଶ ହେବ, ଲୋକ-ଶିକ୍ଷା ମଧ୍ୟ ହେବ ।"

## ଈଶ୍ୱର ଲାଭର ନାନା ପଥ

ଶ୍ରୀରାମକୃଷ୍ଣ—ଦେଖ ଅମୃତସାଗରକୁ ଯିବାର ଅନନ୍ତ ପଥ ।

"ଯେକୌଣସି ପ୍ରକାରରେ ହେଉ ଏ ସାଗରରେ ପଡ଼ି ପାରିଲେ ହେଲା ! ମନେକର, ଅମୃତର ଗୋଟିଏ କୁଣ୍ଡ ଅଛି । କୌଣସି ମତେ ଏଇ ଅମୃତ ଟିକିଏ ମୁଖରେ ପଡ଼ିଲେ ହିଁ ଅମର ହେବ—ତାହା ତୁମେ ନିଜେ ଡେଇଁପଡ଼ି କର ବା ସିଡ଼ିରେ ଆସ୍ତେ ଆସ୍ତେ ଓହ୍ଲାଇ ଖାଅ, ବା ତୁମକୁ କେହି ଧକ୍କା ମାରି ପେଲିଦେଉ । ଏକା ଫଳ । ଟିକିଏ ଅମୃତ ଆସ୍ୱାଦନ କଲେ ମଧ୍ୟ ତୁମେ ଅମର ହେବ ।"

ଅନନ୍ତ ପଥ—ତା' ମଧ୍ୟରେ ଜ୍ଞାନ, କର୍ମ, ଭକ୍ତି ଯେଉଁ ପଥ ଦେଇ ଯାଅ, ଆନ୍ତରିକ ହେଲେ ଈଶ୍ୱରଙ୍କୁ ପାଇବ ।

ମୋଟାମୋଟି ଯୋଗ ତିନି ପ୍ରକାର—'ଜ୍ଞାନଯୋଗ', 'କର୍ମଯୋଗ' ଆଉ 'ଭକ୍ତିଯୋଗ' ।

୧—ଜ୍ଞାନଯୋଗ—ଜ୍ଞାନୀ, ବ୍ରହ୍ମଙ୍କୁ ଜାଣିବାକୁ ଚାହେଁ । ନେତି ନେତି ବିଚାର କରେ । ବ୍ରହ୍ମ ସତ୍ୟ, ଜଗତ୍ ମିଥ୍ୟା ଏଇ ବିଚାର କରେ । ସଦସତ୍ ବିଚାର କରେ । ବିଚାରର ଶେଷ ଯେଉଁଠାରେ, ସେଠାରେ ସମାଧି ହୁଏ, ଆଉ ବ୍ରହ୍ମଜ୍ଞାନ ଲାଭ ହୁଏ ।

୨—କର୍ମଯୋଗ—କର୍ମ ଦ୍ୱାରା ଈଶ୍ୱରଙ୍କଠାରେ ମନ ରଖିବା । ତୁମେ ଯାହା ଶିଖାଉଛ । ଅନାସକ୍ତ ହୋଇ ପ୍ରାଣାୟାମ୍, ଧ୍ୟାନ ଧାରଣାଦି କରିବା କର୍ମଯୋଗ । ସଂସାରୀ ଲୋକମାନେ ଯଦି, ଅନାସକ୍ତ ହୋଇ, ଈଶ୍ୱରଙ୍କଠାରେ ଫଳ ସମର୍ପଣ କରି, ତାଙ୍କ ଠାରେ ଭକ୍ତି ରଖି, ସଂସାର କର୍ମ କରନ୍ତି, ତାହାହିଁ କର୍ମଯୋଗ । ଈଶ୍ୱରଙ୍କଠାରେ ଫଳ ସମର୍ପଣ କରି ପୂଜା, ଜପ, ଏଇସବୁ କରିବାର ନାମ କେବଳ କର୍ମଯୋଗ । ଈଶ୍ୱର ଲାଭ କର୍ମଯୋଗର ଉଦ୍ଦେଶ୍ୟ ।

୩—ଭକ୍ତିଯୋଗ—ଈଶ୍ୱରଙ୍କ ନାମଗୁଣ କୀର୍ତ୍ତନ, ଏଇସବୁ କରି, ତାଙ୍କଠାରେ ମନ ରଖିବା । କଳିଯୁଗରେ ଭକ୍ତିଯୋଗ ସହଜ ପଥ । ଭକ୍ତିଯୋଗ ହିଁ ଯୁଗଧର୍ମ । କର୍ମଯୋଗ ବଡ଼ କଠିନ । ପ୍ରଥମତଃ, ମୁଁ ଆଗରୁ କହୁଛି, ସମୟ କାହିଁ ? ଶାସ୍ତ୍ରରେ ଯେଉଁସବୁ କର୍ମ କରିବାକୁ କହିଛି, ତାହାପାଇଁ ସମୟ କାହିଁ ? କଳିରେ ଆୟୁ କମ୍ ।

ତା'ପରେ ଅନାସକ୍ତ ହୋଇ ଫଳ କାମନା ନକରି, କର୍ମ କରିବା ଭାରି କଠିନ । ଈଶ୍ୱର ଲାଭ ନ କଲେ ଠିକ୍ ଅନାସକ୍ତ ହେବା ଅସମ୍ଭବ । ତୁମେ ହୁଏତ ଜାଣନା, କିନ୍ତୁ କେଉଁଠାରୁହେଲେ ଆସକ୍ତି ଆସି ଯାଏ ।

ଆଉ ଜ୍ଞାନଯୋଗ ମଧ ଏ ଯୁଗରେ ଭାରି କଠିନ । ଜୀବର ଏକେ ତ ଅନ୍ନଗତ ପ୍ରାଣ । ସେଥିରେ ପୁଣି ଆୟୁ କମ୍ । ତା'ପରେ ଆଉ ଦେହ ବୁଦ୍ଧି କୌଣସି ମତେ ଯାଏ ନାହିଁ । ଏଣେ ଦେହ ବୁଦ୍ଧି ନ ଗଲେ ଏକାବେଳକେ ଜ୍ଞାନ ହେବ ନାହିଁ । ଜ୍ଞାନୀ କହେ, ମୁଁ ସେହି ବ୍ରହ୍ମ । ମୁଁ ଶରୀର ନୁହେଁ । ମୁଁ କ୍ଷୁଧା, ତୃଷ୍ଣା, ରୋଗ, ଶୋକ, ଜନ୍ମ, ମୃତ୍ୟୁ, ସୁଖ, ଦୁଃଖ, ଏ ସମସ୍ତଙ୍କ ଉର୍ଦ୍ଧ୍ୱରେ ।

ଯଦି ରୋଗ, ଶୋକ, ସୁଖ, ଦୁଃଖ ଏସବୁ ବୋଧ ଥାଏ, ତୁମେ ଜ୍ଞାନୀ କିପରି ହେବ ? ଏଣେ କଣ୍ଟାରେ ହାତ କଟିଯାଇଛି, ଝର ଝର କରି ରକ୍ତ ପଡୁଛି, ଖୁବ୍ ପୋଡୁଛି—ଅଥଚ କହୁଛି, କାହିଁ ହାତ ତ କଟିନାହିଁ ! ମୋର କଅଣ ହୋଇଛି ?

## ଭକ୍ତିଯୋଗ ହିଁ ଯୁଗଧର୍ମ; ଜ୍ଞାନଯୋଗ ବା କର୍ମଯୋଗ ନୁହେଁ।

ତେଣୁ ଏ ଯୁଗ ପକ୍ଷରେ ଭକ୍ତିଯୋଗ । ଏଥିରେ ଅନ୍ୟାନ୍ୟ ପଥ ଅପେକ୍ଷା ସହଜରେ ଈଶ୍ୱରଙ୍କ ନିକଟକୁ ଯିବା ସମ୍ଭବ । ଜ୍ଞାନଯୋଗ ବା କର୍ମଯୋଗ ଏବଂ ଅନ୍ୟାନ୍ୟ ପଥ ଦେଇ ମଧ ଈଶ୍ୱରଙ୍କ ନିକଟକୁ ଯିବା ସମ୍ଭବ, କିନ୍ତୁ ଏସବୁ ପଥ ଭାରି କଠିନ ।

ଭକ୍ତିଯୋଗ ଯୁଗଧର୍ମ—ତା'ର ଏ ଅର୍ଥ ନୁହେଁ ଯେ, ଭକ୍ତ ଗୋଟିଏ ଜାଗାକୁ ଯିବ; ଜ୍ଞାନୀ ବା କର୍ମୀ ଆଉ ଗୋଟିଏ ଜାଗାକୁ ଯିବ । ଏହାର ଅର୍ଥ, ଯେ ବ୍ରହ୍ମଜ୍ଞାନ ଚାହେଁ, ସେ ଯଦି ଭକ୍ତିପଥ ଧରି ଯାଏ, ତାହାହେଲେ ବି ସେହି ଜ୍ଞାନ ଲାଭ କରିବ । ଭକ୍ତବତ୍ସଳ ମନେକଲା ମାତ୍ରେ ବ୍ରହ୍ମଜ୍ଞାନ ଦେଇପାରନ୍ତି ।

## ଭକ୍ତଙ୍କର କ'ଣ ବ୍ରହ୍ମଜ୍ଞାନ ହୁଏ ?

ଭକ୍ତ ଈଶ୍ୱରଙ୍କର ସାକାର ରୂପ ଦେଖିବାକୁ ଚାହେଁ ଓ ତାଙ୍କ ସଙ୍ଗେ ଆଳାପ କରିବାକୁ ଚାହେଁ—ପ୍ରାୟ ବ୍ରହ୍ମଜ୍ଞାନ ଚାହେଁନାହିଁ । ତେବେ ଈଶ୍ୱର ଇଚ୍ଛାମୟ ; ତାଙ୍କର ଯଦି ଖୁସି ହୁଏ, ସେ ଭକ୍ତଙ୍କୁ ସକଳ ଐଶ୍ୱର୍ଯ୍ୟର ଅଧିକାରୀ କରନ୍ତି, ଭକ୍ତି ଦିଅନ୍ତି, ଜ୍ଞାନ ବି ଦିଅନ୍ତି ।

କଲିକତାରେ ଯଦି କେହି ଥରେ ଆସି ପହଞ୍ଚେ; ତାହାହେଲେ ଗଡ଼ପଡ଼ିଆ, ସୋସାଇଟି (Asiatic Society's Museum) ସବୁ ଦେଖିବାକୁ ପାଏ ।

କଥାଟା ଏହି ଯେ, ବର୍ତ୍ତମାନ କଲିକତାକୁ କିପରି ଆସିବି । ଜଗତର ମାଆଙ୍କୁ ପାଇଲେ, ଭକ୍ତି ପାଇବ ଆଉ ଜ୍ଞାନ ବି ପାଇବ । ଭାବ ସମାଧିରେ ରୂପଦର୍ଶନ ହୁଏ, ଆଉ ନିର୍ବିକଳ୍ପ ସମାଧିରେ ଅଖଣ୍ଡ ସଚ୍ଚିଦାନନ୍ଦ ଦର୍ଶନ ହୁଏ, ସେତେବେଳେ ଅହଂ, ନାମ, ରୂପ ରହେନାହିଁ ।

## ଭକ୍ତ ଓ କର୍ମ ; ଭକ୍ତଙ୍କ ପ୍ରାର୍ଥନା

ଭକ୍ତ କହେ, 'ମା, ସକାମ କର୍ମରେ ମୋର ବଡ଼ ଭୟ ହୁଏ । ସେ କର୍ମରେ କାମନା ଅଛି । ସେ କର୍ମ କରିବା ମାତ୍ରେ ଫଳ ପାଇବାକୁ ହେବ । ଆଉ ଅନାସକ୍ତ ହୋଇ କର୍ମ କରିବା ବଡ଼ କଠିନ । ସକାମ କର୍ମ କରିବାକୁ ଗଲେ, ତୁମ୍ଭଙ୍କୁ ଭୁଲିଯିବି । ତେବେ ଏପରି କର୍ମରେ ପ୍ରୟୋଜନ ନାହିଁ । ଯେତେଦିନ ପର୍ଯ୍ୟନ୍ତ ତୁମକୁ ଲାଭ ନ କରିଛି, ସେତେଦିନ ପର୍ଯ୍ୟନ୍ତ ଯେପରି କର୍ମ କମିଯାଏ । ଯେଉଁ ଟିକିଏ କର୍ମ ରହିବ, ସେ କର୍ମ ଟିକକ ଯେପରି ଅନାସକ୍ତ ହୋଇ କରିପାରେ, ଆଉ ସଙ୍ଗେ ସଙ୍ଗେ ଯେପରି ଖୁବ୍ ଭକ୍ତି ହୁଏ । ଆଉ ଯେତେଦିନ ପର୍ଯ୍ୟନ୍ତ ତୁମକୁ ଲାଭ ନ କରିଛି, ସେତେଦିନ ଯେପରି ନୂତନ କର୍ମରେ ଲାଗିବାକୁ ମନ ନ ଯାଏ । ତେବେ ଯେତେବେଳେ ତୁମେ ଆଦେଶ କରିବ, ସେତେବେଳେ ତୁମର କର୍ମ କରିବି, ନୋହିଲେ ନାହିଁ ।'

## (୫)

## ତୀର୍ଥଯାତ୍ରା ଓ ଠାକୁର ଶ୍ରୀରାମକୃଷ୍ଣ

ପଣ୍ଡିତ—ମହାଶୟଙ୍କର ତୀର୍ଥାଟନ ପାଇଁ କେତେଦୂର ଯିବା ହୋଇଥିଲା ?

ଶ୍ରୀରାମକୃଷ୍ଣ—ହଁ, କେତେକ ସ୍ଥାନ ଦେଖିଛି । (ସହାସ୍ୟେ) ହାଜରା ଅନେକ ଦୂର ଯାଇଥିଲା, ଆଉ ଖୁବ୍ ଉଚ୍ଚକୁ ଉଠିଥିଲା । ସେ ହୃଷୀକେଶ ଯାଇଥିଲା । ମୁଁ ଏତେଦୂର ଯାଇନାହିଁ । ଏତେ ଉଚ୍ଚକୁ ଉଠିନାହିଁ । (ସମସ୍ତଙ୍କର ହାସ୍ୟ)

''ଚିଲ ଶାଗୁଣା ମଧ୍ୟ ଅନେକ ଉଚ୍ଚକୁ ଉଠନ୍ତି, କିନ୍ତୁ ନଜର ମଡ଼ ପଡ଼ିଆ ଉପରେ । (ସମସ୍ତଙ୍କର ହାସ୍ୟ) ମଡ଼ ପଡ଼ିଆ କ'ଣ ଜାଣ ? କାମିନୀ ଓ କାଞ୍ଚନ !''

''ଯଦି ଏଠାରେ ବସି ଭକ୍ତି ଲାଭ କରିପାର, ତାହାହେଲେ ତୀର୍ଥ ଯିବାର କଅଣ ଦରକାର ? କାଶୀ ଯାଇ ଦେଖିଲି ସେହି ଗଛ ! ସେହି ତେନ୍ତୁଳି ପତ୍ର ।''

''ତୀର୍ଥ ଯାଇ ଯଦି ଭକ୍ତିଲାଭ ନହେଲା, ତାହା ହେଲେ ତୀର୍ଥ ଯିବାର ଆଉ ଫଳ ହେଲାନାହିଁ । ଆଉ ଭକ୍ତି ହିଁ ସାର, ଏକମାତ୍ର ପ୍ରୟୋଜନ । ଚିଲ ଶାଗୁଣା କ'ଣ ଜାଣ ? ଅନେକ ଲୋକ ଅଛନ୍ତି, ସେମାନେ ବଡ଼ ବଡ଼ କଥା କହନ୍ତି । ଆଉ କହନ୍ତି

ଯେ, ଶାସ୍ତ୍ରରେ ଯେଉଁ ସବୁ କର୍ମ କରିବାକୁ କହିଛି, ଆମେମାନେ ଅନେକ କରିଛୁ । ଏଣେ ସେମାନଙ୍କର ମନ ଭାରି ବିଷୟାସକ୍ତ—ଟଙ୍କା, କଉଡ଼ି, ମାନ, ସମ୍ଭ୍ରମ, ଦେହସୁଖ, ଏସବୁ ନେଇ ବ୍ୟସ୍ତ ।''

ପଣ୍ଡିତ—ଆଜ୍ଞା ହଁ ମହାଶୟ, ତୀର୍ଥ ଯିବା ଯାହା, ଆଉ କୌସ୍ତୁଭ ମଣି ଫିଙ୍ଗି ଅନ୍ୟ ହୀରା ମାଣିକ ଖୋଜି ବୁଲିବା ତାହା ।

ଶ୍ରୀରାମକୃଷ୍ଣ— ଆଉ ତୁମେ ଏଇଟି ଜାଣ, ହଜାରେ ଶିକ୍ଷା ଦିଅ, ସମୟ ନହେଲେ ଫଳ ହେବନାହିଁ । ପିଲା ବିଛଣାରେ ଶୋଇବା ସମୟରେ ମାଆକୁ କହିଲା, 'ମା, ମୋତେ ଯେତେବେଳେ ଝାଡ଼ା ମାଡ଼ିବ, ସେତେବେଳେ ତୁ ମୋତେ ଉଠାଇଦେବୁ ।' ମା' ଉତ୍ତର କଲେ, 'ବାବା' ଝାଡ଼ା ତୋତେ ଉଠାଇଦେବ, ଏଥିପାଇଁ ତୁ କିଛି ଭାବନା କରନାହିଁ ।

''ସେହିପରି ଭଗବାନଙ୍କ ପାଇଁ ବ୍ୟାକୁଳ ହେବା, ଠିକ୍ ସମୟ ହେଲେ ହୁଏ ।''

## ଆଚାର୍ଯ୍ୟମାନେ ତିନି ଶ୍ରେଣୀର । ପାତ୍ରାପାତ୍ର ।

ତିନି ପ୍ରକାର ବୈଦ୍ୟ ଅଛନ୍ତି, ଏକ ପ୍ରକାର ଅଛନ୍ତି ସେମାନେ ନାଡ଼ି ଦେଖନ୍ତି, ଔଷଧ ବ୍ୟବସ୍ଥା କରି ଚାଲିଯାଆନ୍ତି । କେବଳ ଗଲାବେଳେ କହିଯାଆନ୍ତି, ଔଷଧ ଖାଅ ହେ । ଏମାନେ ଅଧମ ସ୍ତରର ବୈଦ୍ୟ ।

ସେହିପରି କେତେଗୁଡ଼ିଏ ଆଚାର୍ଯ୍ୟ ଉପଦେଶ ଦେବାକୁ ଯାଆନ୍ତି, କିନ୍ତୁ ତାଙ୍କର ଉପଦେଶରେ ଲୋକଙ୍କର ଭଲ ହେଲା କି ମନ୍ଦ ହେଲା, ତାହା ଦେଖନ୍ତି ନାହିଁ । ତାହାପାଇଁ ଭାବନ୍ତି ନାହିଁ ।

କେତେଗୁଡ଼ିଏ ବୈଦ୍ୟ ଅଛନ୍ତି, ସେମାନେ ଔଷଧ ବ୍ୟବସ୍ଥା କରନ୍ତି, ରୋଗୀକୁ ଔଷଧ ଖାଇବାକୁ କହନ୍ତି । ରୋଗୀ ଯଦି ଖାଇବାକୁ ନ ଚାହେଁ, ତାଙ୍କୁ ଅନେକ ବୁଝାନ୍ତି । ଏମାନେ ମଧ୍ୟମ ସ୍ତରର ବୈଦ୍ୟ । ସେହିପରି ମଧ୍ୟମ ସ୍ତରର ଆଚାର୍ଯ୍ୟ ମଧ୍ୟ ଅଛନ୍ତି । ସେମାନେ ଉପଦେଶ ଦିଅନ୍ତି, ଆଉ ଅନେକ ପ୍ରକାରେ ଲୋକଙ୍କୁ ବୁଝାନ୍ତି, ଯେଉଁଥିରେ ସେମାନେ ଉପଦେଶ ଅନୁସାରେ ଚଳନ୍ତି ।

ପୁଣି ଉତ୍ତମ ସ୍ତରର ବୈଦ୍ୟ ଅଛନ୍ତି । ଯଦି ମିଷ୍ଟ କଥାରେ ରୋଗୀ ନ ବୁଝେ, ତାହାହେଲେ ସେମାନେ ଜୋର୍ ମଧ୍ୟ କରନ୍ତି । ଯଦି ଦରକାର ହୁଏ, ରୋଗୀର ଛାତିରେ ଆଣ୍ଠୁ ଦେଇ ରୋଗୀକୁ ଔଷଧ ଗିଳାଇ ଦିଅନ୍ତି । ସେହିପରି ପୁଣି ଉତ୍ତମ ସ୍ତରର ଆଚାର୍ଯ୍ୟ ଅଛନ୍ତି । ସେମାନେ ଈଶ୍ୱରଙ୍କ ପଥକୁ ଆଣିବା ପାଇଁ ଶିଷ୍ୟଙ୍କ ଉପରେ ଜୋର୍ କରନ୍ତି ।

ପଣ୍ଡିତ—ମହାଶୟ, ଯଦି ଉତ୍ତମ ସ୍ତରର ଆଚାର୍ଯ୍ୟ ଥାଆନ୍ତି, ତେବେ କାହିଁକି ଆପଣ, ସମୟ ନ ହେଲେ ଜ୍ଞାନ ହୁଏନାହିଁ, ଏ କଥା କହିଲେ ?

ଶ୍ରୀରାମକୃଷ୍ଣ- ସତ୍ୟ,କିନ୍ତୁ ମନେ କର, ଯଦି ଔଷଧାଦି ପେଟକୁ ନ ଯାଏ ଯଦି ମୁହଁରୁ ପଡ଼ିଯାଏ, ତାହାହେଲେ ବୈଦ୍ୟ କଅଣ କରିବେ ? ଉତ୍ତମ ବୈଦ୍ୟ ମଧ୍ୟ କିଛି କରି ପାରିବେ ନାହିଁ ।

ଶ୍ରୀରାମକୃଷ୍ଣ—ପାତ୍ର ଦେଖି ଉପଦେଶ ଦେବାକୁ ହେବ । ତୁମେମାନେ ପାତ୍ର ଦେଖି ଉପଦେଶ ଦିଅନାହିଁ । ମୋ ପାଖକୁ କୌଣସି ପିଲା ଆସିଲେ ମୁଁ ପ୍ରଥମେ ପଚାରେ, 'ତୋର କିଏ ଅଛି ? ମନେକର, ବାପ ନାହିଁ, ହୁଏତ ବାପର ଋଣ ଅଛି, ତାହାହେଲେ ସେ କିପରି ଈଶ୍ୱରଙ୍କଠାରେ ମନ ଦେବ ? ଶୁଣୁଛ ବାବା ?

ପଣ୍ଡିତ—ଆଜ୍ଞା ହଁ, ମୁଁ ସବୁ ଶୁଣୁଛି ।

## ଈଶ୍ୱରଙ୍କର ଦୟା

ଶ୍ରୀରାମକୃଷ୍ଣ—ଦିନେ ଠାକୁର ମନ୍ଦିରକୁ କେତେଗୁଡ଼ିଏ ଶିଖ୍ ସିପାହୀ ଆସିଥିଲେ । ମା' କାଳୀ ମନ୍ଦିର ସମ୍ମୁଖରେ ତାଙ୍କ ସଙ୍ଗରେ ଦେଖାହେଲା । ଜଣେ କହିଲେ, 'ଈଶ୍ୱର ଦୟାମୟ ।' ମୁଁ କହିଲି, 'ସତେ ! କିପରି ଜାଣିଲ ? ସେମାନେ କହିଲେ, 'କାହିଁକି ମହାଶୟ, ଈଶ୍ୱର ଆମମାନଙ୍କୁ ଖୁଆଉଛନ୍ତି । ଏତେ ଯତ୍ନ କରୁଛନ୍ତି ! ମୁଁ କହିଲି, ସେ କ'ଣ ଆଶ୍ଚର୍ଯ୍ୟ ? ଈଶ୍ୱର ଯେ ସମସ୍ତଙ୍କର ବାପ ! ବାପ ପିଲାମାନଙ୍କୁ ଦେଖିବେ ନାହିଁ ତ କିଏ ଦେଖିବ ? ସେ ସାହିର ଲୋକ ଆସି ଦେଖିବେ ନା କଅଣ ?

ନରେନ୍ଦ୍ର—ତେବେ ଈଶ୍ୱରଙ୍କୁ ଦୟାମୟ କହିବୁ ନାହିଁ ?

ଶ୍ରୀରାମକୃଷ୍ଣ—ତାଙ୍କୁ କ'ଣ ମୁଁ ଦୟାମୟ କହିବାକୁ ବାରଣ କରୁଛି ? ମୋର କହିବାର ଅର୍ଥ ଏହି ଯେ, ଈଶ୍ୱର ଆମମାନଙ୍କର ଆପଣାର ଲୋକ, ପର ନୁହନ୍ତି ।

ପଣ୍ଡିତ—କଥା ଅମୂଲ୍ୟ !

## (୬)

## ବିଦାୟ

ଠାକୁର ପାଣି ପିଇବାକୁ ଚାହିଁଲେ । ତାଙ୍କ ପାଖରେ ଗ୍ଲାସେ ପାଣି ରଖା ହୋଇଥିଲା । ସେ ପାଣି ପିଇପାରିଲେ ନାହିଁ, ଆଉ ଗ୍ଲାସେ ଜଳ ଆଣିବାକୁ କହିଲେ । ପରେ ଶୁଣାଗଲା ଯେ, କୌଣସି ଘୋର ଇନ୍ଦ୍ରିୟାସକ୍ତ ବ୍ୟକ୍ତି ଏହି ଜଳ ସ୍ପର୍ଶ କରିଥିଲା ।

ପଣ୍ଡିତ (ହାଜରାଙ୍କ ପ୍ରତି)—ଆପଣମାନେ ଏହାଙ୍କ ସଙ୍ଗରେ ରାତିଦିନ ରହନ୍ତି—ଆପଣମାନେ ମହାନନ୍ଦରେ ଅଛନ୍ତି ।

ଶ୍ରୀରାମକୃଷ୍ଣ (ହସି ହସି)—ଆଜି ମୋର ଶୁଭଦିନ ! ମୁଁ ଦ୍ୱିତୀୟାର ଚାନ୍ଦ ଦେଖିଲି । (ସମସ୍ତଙ୍କର ହାସ୍ୟ) । ଦ୍ୱିତୀୟାର ଚାନ୍ଦ କାହିଁକି କହିଲି ଜାଣ ?

''ସୀତା ରାବଣକୁ କହିଥିଲେ, 'ରାବଣ ପୂର୍ଣ୍ଣଚନ୍ଦ୍ର, ଆଉ ରାମଚନ୍ଦ୍ର ମୋର ଦ୍ୱିତୀୟାର ଚାନ୍ଦ !' ରାବଣ ଅର୍ଥ ବୁଝିପାରି ନାହିଁ, ସେଥିପାଇଁ ଭାରି ଖୁସି । ସୀତାଙ୍କର କହିବା ଉଦ୍ଦେଶ୍ୟ ଏହି ଯେ, ରାବଣର ସମ୍ପଦ ଯେତେଦୂର ହେବାର ହୋଇଛି, ଏଥର ଦିନକୁ ଦିନ ପୂର୍ଣ୍ଣଚନ୍ଦ୍ରଙ୍କ ପରି ହ୍ରାସ ପାଇବ । ରାମଚନ୍ଦ୍ର ଦ୍ୱିତୀୟାର ଚାନ୍ଦ, ତାଙ୍କର ଦିନକୁ ଦିନ ବୃଦ୍ଧି ହେବ ।''

ଏହା କହି ଠାକୁର ଉଠିଲେ । ପଣ୍ଡିତ ବନ୍ଧୁବାନ୍ଧବଙ୍କ ସଙ୍ଗରେ ଭକ୍ତିଭାବରେ ପ୍ରଣାମ କଲେ । ଠାକୁରଙ୍କ ଭକ୍ତଗଣ ମଧ୍ୟ ବିଦାୟ ଗ୍ରହଣ କଲେ ।

## (୭)
## ଈଶାନଙ୍କ ଘରକୁ ପୁନରାଗମନ

ଠାକୁର ଭକ୍ତଙ୍କ ସଙ୍ଗରେ ଈଶାନଙ୍କ ଘରକୁ ଫେରିଲେ । ସନ୍ଧ୍ୟା ହୋଇନାହିଁ । ଈଶାନଙ୍କର ତଳ ବୈଠକଖାନାରେ ଆସି ବସିଲେ । ଭକ୍ତମାନେ କେହି କେହି ଅଛନ୍ତି । ଭାଗବତ ପଣ୍ଡିତ, ଈଶାନ ଓ ତାଙ୍କ ପୁଅ ସବୁ ଉପସ୍ଥିତ ଅଛନ୍ତି ।

ଶ୍ରୀରାମକୃଷ୍ଣ (ସହାସ୍ୟେ)— ଶଶଧରଙ୍କୁ କହିଲି, ଗଛରେ ଉଠୁ ନ ଉଠୁଣୁ ଏକକାନ୍ଦି— ଆଉ କିଛି ସାଧନ ଭଜନ କର; ତା'ପରେ ଲୋକ-ଶିକ୍ଷା ଦିଅ ।

ଈଶାନ — ସମସ୍ତେ ମନେ କରନ୍ତି ଯେ, ମୁଁ ଲୋକ-ଶିକ୍ଷା ଦେଉଛି । ଜୁଳୁଜୁଳିଆ ପୋକ ମନେକରେ ସେ ଜଗତକୁ ଆଲୋକିତ କରୁଛି । ତେଣୁ ଜଣେ କହିଥିଲା, ହେ ଜୁଳୁଜୁଳିଆ ପୋକ, ତୁ ଆଉ କଅଣ ଆଲୋକ ଦେବୁ ! ବରଂ ତୁ ଅନ୍ଧକାରକୁ ଅଧିକ ପ୍ରକାଶ କରୁଛୁ ।'

ଶ୍ରୀରାମକୃଷ୍ଣ (ଈଷତ୍ ହସି)— କିନ୍ତୁ କେବଳ ଯେ ପଣ୍ଡିତ, ତା' ନୁହେଁ,— ଟିକିଏ ବିବେକ ବୈରାଗ୍ୟ ଅଛି ।

ଭାଟପଡ଼ାର ଭାଗବତପଢ଼ା ପଣ୍ଡିତ ଏବେ ସୁଦ୍ଧା ବସିଛନ୍ତି । ବୟସ ୭୦/୭୫ ବର୍ଷ ହେବ । ସେ ଠାକୁରଙ୍କୁ ଏକ ଦୃଷ୍ଟିରେ ଦେଖୁଛନ୍ତି ।

ଭାଗବତ ପଣ୍ଡିତ (ଶ୍ରୀରାମକୃଷ୍ଣଙ୍କ ପ୍ରତି)— ଆପଣ ମହାତ୍ମା ।

ଶ୍ରୀରାମକୃଷ୍ଣ— ଏକଥା ନାରଦ, ପ୍ରହ୍ଲାଦ, ଶୁକଦେବ ପ୍ରଭୃତିଙ୍କୁ କହିପାରନ୍ତି; ମୁଁ ଆପଣଙ୍କର ସନ୍ତାନ ସଦୃଶ ।

''ତେବେ ଏକ ହିସାବରେ କହିପାରନ୍ତି । ଏପରି ଅଛି ଯେ, ଭଗବାନଙ୍କ ଠାରୁ ଭକ୍ତ ବଡ଼— କାହିଁକି ନା ଭକ୍ତ ଭଗବାନଙ୍କୁ ହୃଦୟରେ ବହନ କରି ଚଳେ (ସମସ୍ତଙ୍କର ଆନନ୍ଦ) । ଭକ୍ତ ଭଗବାନଙ୍କୁ ଦେଖେ ଛୋଟ, ନିଜକୁ ଦେଖେ ବଡ଼ । ଯଶୋଦା କୃଷ୍ଣଙ୍କୁ ବାନ୍ଧିବାକୁ ଯାଇଥିଲେ । ଯଶୋଦାଙ୍କର ବିଶ୍ୱାସ, ସେ କୃଷ୍ଣଙ୍କୁ ନ ଦେଖିଲେ ତାଙ୍କୁ କିଏ ଦେଖିବ । କେତେବେଳେ ଭଗବାନ ଚୁମ୍ବକ, ଭକ୍ତ ଛୁଞ୍ଚି— ଭଗବାନ ଆକର୍ଷଣ କରି ଭକ୍ତକୁ ଟାଣି ନିଅନ୍ତି । ପୁଣି କେତେବେଳେ ଭକ୍ତ ଚୁମ୍ବକ ପଥର ହୁଅନ୍ତି, ଭଗବାନ ଛୁଞ୍ଚି ହୁଅନ୍ତି । ଭକ୍ତର ଏତେ ଆକର୍ଷଣ ଯେ ତା'ର ପ୍ରେମରେ ମୁଗ୍ଧ ହୋଇ ଭଗବାନ ତା' ନିକଟକୁ ଆସିଯାଆନ୍ତି ।''

ଠାକୁର ଦକ୍ଷିଣେଶ୍ୱରକୁ ପ୍ରତ୍ୟାବର୍ତ୍ତନ କରିବେ । ତଳ ବୈଠକଖାନାର ଦକ୍ଷିଣ ଦିଗ ବାରଣ୍ଡାରେ ଆସି ଠିଆହେଲେ । ଈଶାନ ପ୍ରଭୃତି ଭକ୍ତମାନେ ଠିଆ ହୋଇଛନ୍ତି । ଈଶାନଙ୍କୁ କଥାଛଳରେ ଅନେକ ଉପଦେଶ ଦେଉଛନ୍ତି ।

ଶ୍ରୀରାମକୃଷ୍ଣ (ଈଶାନଙ୍କ ପ୍ରତି)—ସଂସାରରେ ରହି ଯେ ଡାକେ ସେ ବୀର ଭକ୍ତ । ଭଗବାନ କହନ୍ତି, ଯେ ସଂସାର ଛାଡ଼ି ଦେଇଛି ସେ ତ ମୋତେ ନିଶ୍ଚୟ ଡାକିବ, ମୋର ସେବା କରିବ—ସେଥିରେ ବାହାଦୂରୀ କଅଣ ? ସେ ଯଦି ମୋତେ ନ ଡାକିବ, ସମସ୍ତେ ଛି ଛି କରିବେ । ବରଂ ଯେ ସଂସାରରେ ରହି ମୋତେ ଡାକେ ଏବଂ କୋଡ଼ିଏ ମହଣ ଓଜନ ପଥର ମୁଣ୍ଡରେ ରଖି ଯେ ମୋତେ ଦେଖେ **ସେ ହିଁ ବୀର ପୁରୁଷ ।**

ଭାଗବତ ପଣ୍ଡିତ—ଶାସ୍ତ୍ରରେ ତ ଏହିକଥା ଅଛି । ଧର୍ମବ୍ୟାଧର କଥା ଓ ପତିବ୍ରତାର କଥା । ତପସ୍ୱୀ ମନେ କରିଥିଲା ଯେ, ସେ କାକ ଆଉ ବକକୁ ଭସ୍ମ କରିଛି, ତେଣୁ ସେ ଖୁବ୍ ବଡ଼ ହୋଇଛି । ସେ ପତିବ୍ରତାର ଘରକୁ ଯାଇଥିଲା । ତା'ର ସ୍ୱାମୀ ଉପରେ ଏତେ ଭକ୍ତି ଯେ ସେ ଦିନରାତି ସ୍ୱାମୀର ସେବା କରୁଥିଲା । ସ୍ୱାମୀ ଘରକୁ ଆସିଲେ ପାଦ ଧୋଇବା ପାଇଁ ଜଳ ଦିଏ; ଏପରିକି ମୁଣ୍ଡର କେଶ ଦ୍ୱାରା ତା'ର ପାଦ ପୋଛିଦିଏ । ତପସ୍ୱୀ ଅତିଥି, ଭିକ୍ଷା ପାଇବାରେ ଡେରି ହେଉଥିଲା । ତେଣୁ ଚିତ୍କାର କରି କହିଲା, ତୋର ଭଲ ହେବ ନାହିଁ । ପତିବ୍ରତା ହଠାତ୍ ଦୂରରୁ କହିଲା, ଏହା ତ ବକ ଭସ୍ମ ହେବା ପରି କଥା ନୁହେଁ । ବାବା ଟିକିଏ ଅପେକ୍ଷା କର, ମୁଁ ସ୍ୱାମୀଙ୍କ ସେବା ଶେଷ କରି ତୁମର ପୂଜା କରିବି ।

''ଧର୍ମବ୍ୟାଧ ନିକଟକୁ ବ୍ରହ୍ମଜ୍ଞାନ ଲାଭ କରିବା ପାଇଁ ଗଲା । ବ୍ୟାଧ ପଶୁ ମାଂସ ବିକ୍ରି କରେ, କିନ୍ତୁ ଦିନ-ରାତି ଈଶ୍ୱର ଜ୍ଞାନରେ ବାପ ମା'ଙ୍କର ସେବା କରୁଥିଲା । ଯିଏ ବ୍ରହ୍ମଜ୍ଞାନ ଲାଭ କରିବାକୁ ତା' ପାଖକୁ ଯାଇଥିଲା, ସେ ଏହା ଦେଖି ଅବାକ୍—ଭାବିଲା, ଏହି ବ୍ୟାଧ ମାଂସ ବିକ୍ରି କରେ, ଆଉ ସଂସାରୀ ଲୋକ ! ଏ ମୋତେ କଅଣ ବ୍ରହ୍ମଜ୍ଞାନ ଦେବେ । କିନ୍ତୁ ସେହି ବ୍ୟାଧ ପୂର୍ଣ୍ଣଜ୍ଞାନୀ ।''

ଠାକୁର ଏଥର ଗାଡ଼ିରେ ଉଠିବେ । ପାର୍ଶ୍ୱସ୍ଥ ଘରର (ଈଶାନଙ୍କ ଶ୍ୱଶୁରଙ୍କ ଘର) ବାରଣ୍ଡାରେ ଠିଆ ହୋଇଛନ୍ତି । ଈଶାନ ଓ ଭକ୍ତମାନେ ସେଠାରେ ଅଛନ୍ତି—ଗାଡ଼ିରେ ତାହାଙ୍କୁ ଉଠାଇଦେବେ । ଠାକୁର ପୁଣି କଥାଛଳରେ ଈଶାନଙ୍କୁ ଉପଦେଶ ଦେଉଛନ୍ତି—'ପିମ୍ପୁଡ଼ି ପରି ସଂସାରରେ ରହ, ଏହି ସଂସାରରେ ନିତ୍ୟ ଅନିତ୍ୟ ମିଶି ରହିଛି । ବାଲିରେ ଚିନି ମିଶିଲା ପରି—ପିମ୍ପୁଡ଼ି ହୋଇ ଚିନି ଟିକକ ନେବ ।

''ଜଳରେ ଦୁଧ ମିଶି ରହିଛି । ଚିଦାନନ୍ଦରସ ଆଉ ବିଷୟ ରସ । ହଂସ ପରି ଦୁଧକୁ ଗ୍ରହଣ କରି ଜଳକୁ ତ୍ୟାଗ କରିବ ।''

''ଆଉ ପାଣିକୁଆ ପରି । ଦେହରେ ପାଣି ଲାଗୁଛି, ଝାଡ଼ି ପକାଏ । ପୁଣି ପଙ୍କୁଆ ମାଛ ପରି । ପଙ୍କରେ ରହେ, କିନ୍ତୁ ଦେହକୁ ଦେଖିବ ପରିଷ୍କାର ଉଜ୍ଜ୍ୱଳ ।''

''ଗୋଲମାଲରେ ମାଲ୍ ଅଛି—''ଗୋଳ ଛାଡ଼ି ମାଲ୍‌କୁ ନେବ ।'' ଠାକୁର ଗାଡ଼ିରେ ଉଠି ଦକ୍ଷିଣେଶ୍ୱରକୁ ଯାତ୍ରା କରୁଛନ୍ତି ।''



# ଦ୍ୱିତୀୟ ପରିଚ୍ଛେଦ

## (୧)

## ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱରରେ ପଣ୍ଡିତ ଶଶଧରାଦି ଭକ୍ତଙ୍କ ସଙ୍ଗରେ

## (କାଳୀ ବ୍ରହ୍ମ। ବ୍ରହ୍ମ ଓ ଶକ୍ତି ଅଭେଦ)

ଶ୍ରୀରାମକୃଷ୍ଣ ଭକ୍ତମାନଙ୍କ ସଙ୍ଗରେ ସେହି ପୂର୍ବ ପରିଚିତ ଘରେ ତଳେ ବସିଛନ୍ତି,—ପାଖରେ ପଣ୍ଡିତ ଶଶଧର । ତଳେ ସଉପ ପଡ଼ିଛି,—ତାହା ଉପରେ ଠାକୁର, ପଣ୍ଡିତ ଶଶଧର ଏବଂ କେତୋଟି ଭକ୍ତ ବସିଛନ୍ତି । କେତେଜଣ ଭକ୍ତ ତଳେ ମଧ ବସିଛନ୍ତି । ସୁରେନ୍ଦ୍ର,ବାବୁରାମ, ମାଷ୍ଟର, ହରିଶ,ଲାଟୁ, ହାଜରା ମଣି ମଲ୍ଲିକ ପ୍ରଭୃତି ଭକ୍ତମାନେ ଉପସ୍ଥିତ ଅଛନ୍ତି । ଠାକୁର ପଣ୍ଡିତ ପଦ୍ମଲୋଚନଙ୍କ କଥା କହୁଛନ୍ତି । ପଦ୍ମଲୋଚନ ବର୍ଦ୍ଧମାନ ରାଜାଙ୍କର ସଭା ପଣ୍ଡିତ ଥିଲେ । ସମୟ ଅପରାହ୍ନ—ପ୍ରାୟ ୪ଟା ।

ଆଜି ସୋମବାର, ୩୦ ତାରିଖ, ଜୁନ୍ ୧୮୮୪ ଖ୍ରୀଷ୍ଟାବ୍ଦ । ଛଅଦିନ ପୂର୍ବରୁ ଶ୍ରୀଶ୍ରୀ ରଥଯାତ୍ରା ଦିବସରେ ପଣ୍ଡିତ ଶଶଧରଙ୍କ ସହିତ ଠାକୁରଙ୍କର କଲିକତାରେ ଦେଖା ଓ ଆଳାପ ହୋଇଥିଲା । ଆଜି ପୁଣି ପଣ୍ଡିତ ଆସିଛନ୍ତି । ସଙ୍ଗରେ ଶ୍ରୀଯୁକ୍ତ ଭୂଧର (ଚଟ୍ଟୋପାଧ୍ୟାୟ) ଓ ତାଙ୍କର ଜ୍ୟେଷ୍ଠ ସହୋଦର । କଲିକତାରେ ସେହିମାନଙ୍କ ଘରେ ପଣ୍ଡିତ ଶଶଧର ଅଛନ୍ତି ।

ପଣ୍ଡିତ ଜ୍ଞାନ ମାର୍ଗର ପନ୍ଥୀ । ଠାକୁର ତାଙ୍କୁ ବୁଝାଉଛନ୍ତି—ଯାହାଙ୍କର ନିତ୍ୟ ତାଙ୍କରି ଲୀଳା—ଯେ ଅଖଣ୍ଡ ସଚ୍ଚିଦାନନ୍ଦ ସେହି  କେବଳ ଲୀଳା ପାଇଁ ନାନାରୂପ ଧରି ଅଛନ୍ତି । ଈଶ୍ୱରଙ୍କ ଲୀଳା କହୁ କହୁ ଠାକୁର ବେହୋସ ହେଉଛନ୍ତି । ଭାବରେ ମତୁଆଲା ହୋଇ କଥା କହୁଛନ୍ତି । ପଣ୍ଡିତଙ୍କୁ କହୁଛନ୍ତି—"ବାବୁ, ବ୍ରହ୍ମ ଅଟଳ, ଅଚଳ, ସୁମେରୁବତ୍ । କିନ୍ତୁ 'ଅଚଳ' ଯାହାର ଅଛି ତାହାର ଚଳ ମଧ ଅଛି ।

ଠାକୁର ପ୍ରେମାନନ୍ଦରେ ମତ୍ତ ହୋଇଛନ୍ତି । ସେହି ଗନ୍ଧର୍ବ ବିନିନ୍ଦିତ କଣ୍ଠରେ ଗୀତ ଗାଉଛନ୍ତି । ଗୀତ ପରେ ଗୀତ ଗାଉଛନ୍ତି ।

ଗୀତ—କେ ଜାନେ,କାଳୀ କେମନ, ଷଡ଼ଦର୍ଶନେ ନା ପାୟ ଦର୍ଶନ। ଇତ୍ୟାଦି ।

ଗୀତ—ମା କି ଏମ୍‌ନି ମାୟେର ମେୟେ । ଯାର ନାମ ଜପିଲେ ମହେଶବାଁଚେନ ହଳାହଳ ଖାଇୟେ ।। ସୃଷ୍ଟିସ୍ଥିତି ପ୍ରଳୟ ଯାର କଟାକ୍ଷେ ହେରିୟେ । ସେ ଯେ ଅନନ୍ତ ବ୍ରହ୍ମାଣ୍ଡ ରାଜେ ଉଦର ପୂରିୟେ ।। ଯେ ଚରଣେ ଶରଣ ଲୟେ ଦେବତା ବାଁଚେନ ଦାୟେ । ଦେବେର ଦେବ ମହାଦେବ ଯାଁର ଚରଣେ ଲୁଟାୟେ ।।

ଗୀତ—ମା' କି ଶୁଧୁଇ ଶିବେର ସତୀ । ଯାରେ କାଲେର କାଲ କରେ ପ୍ରଣତି ।। ନ୍ୟାଂଟାବେଶେ ଶତ୍ରୁ ନାଶେ ମହାକାଲ ହ୍ରିଦୟେ ସ୍ଥିତି । ବଲ ଦେଖି ମନ ସେ ବା କେମନ୍, ନାଥେର ବୁକେ ମାରେ ନାଥି । ପ୍ରସାଦ ବଲେ ମାୟେର ଲୀଳା, ସକଲଇ ଜେନୋ ଡାକାତି । ସାବଧାନେ ମନ କର ଯତନ, ହବେ ତୋମାର ଶୁଦ୍ଧମତି ।।

ଗୀତ—ଆମି ସୁରାପାନ କରି ନା, ସୁଧା ଖାଇ ଜୟ କାଲୀ ବଲେ, ମନ ମାତାଲେ ମାତାଲ କରେ, ମଦ ମାତାଲେ ମାତାଲ ବଲେ । ଗୁରୁଦତ୍ତ ବୀଜ ଲୟେ ପ୍ରବୃତ୍ତି ତାୟ ମଶଲା ଦିୟେ, ଜ୍ଞାନ ଶୁଡ଼ିତେ ଚୋୟାୟ ଭାଁଟି, ପାନ କରେ ମୋର ମନ ମାତାଲେ । ମୂଳ ମନ୍ତ୍ର ଯନ୍ତ୍ର ଭରା, ଶୋଧନ କରି ବଲେ ତାରା, ପ୍ରସାଦ ବଲେ ଏମନ ସୁରା ଖେଲେ ଚର୍ତୁବର୍ଗ ମିଲେ ।

ଗୀତ—ସମସ୍ତେ କି ଶ୍ୟାମା ଧନ ପାଆନ୍ତି, (ସମସ୍ତେ କି କାଳୀ ଧନ ପାଆନ୍ତି)
ଅବୋଧ ମନ ବୁଝେନା ଏଇ କି ଭ୍ରାନ୍ତି ।
ଶିବଙ୍କ ଅସାଧ୍ୟ ସାଧନ ମନ ରଙ୍ଗାପୟରେ ମନାନ୍ତି,

ଠାକୁରଙ୍କର ଭାବାବସ୍ଥା ଟିକିଏ କମିଛି । ତାଙ୍କର ଗୀତ ବନ୍ଦ ହେଲା । ଟିକିଏ ଚୁପ୍ କରିଅଛନ୍ତି । ଛୋଟ ଖଟଟିରେ ଯାଇ ବସିଛନ୍ତି । ପଣ୍ଡିତ ଗୀତ ଶୁଣି ମୋହିତ ହୋଇଛନ୍ତି । ସେ ଅତି ବିନୀତ ଭାବରେ ଠାକୁରଙ୍କୁ କହୁଛନ୍ତି-"ଆଉ ଗୀତ ହେବ କି ?"

ଠାକୁର ଟିକିଏ ପରେ ପୁଣି ଗୀତ ଗାଉଛନ୍ତି—

ଗୀତ—ଶ୍ୟାମାପଦ ଆକାଶରେ, ମନ ଗୁଡ଼ି ମୋର ଉଡୁଥିଲାରେ ।
କଳୁଷ ବତାସ ଶକ୍ତ ଆଘାତେ ଛିଡ଼ି ତଳେ ପଡ଼ିଗଲାରେ ॥ ଇତ୍ୟାଦି ।

ଗୀତ— ଏଥର ମୁହିଁ ଭଲ ଭାବିଛି,ଭଲ ଭାବୀର ପାଖେ ଭାବ ପାଇଛି ।
ଯେ ଦେଶେ ରଜନୀ ନାହିଁ, ସେ ଦେଶେ ଜଣେ ଲୋକ ପାଇଛି ।
ମୁହିଁ କିବା ରାତ୍ର କିବା ଦିବା, ସନ୍ଧ୍ୟାରେ ବନ୍ଧ୍ୟା କରିଛି ।।

ଗୀତ—ଅଭୟ ପଦେ ପ୍ରାଣ ସମ୍ପିଛି, ଯମକୁ ମୁଁ କ'ଣ ଆଉ ଡରିଛି !
କାଳୀନାମ କଳ୍ପତରୁ ହୃଦୟେ ରୋପଣ କରିଛି, ମୁଁ ଦେହ ବିକି ଏ ଭବ ହାଟେ,
ଶ୍ରୀଦୁର୍ଗାନାମ କିଣି ଆଣିଛି ।।

"ଶ୍ରୀଦୁର୍ଗାନାମ କିଣି ଆଣିଛି" ଏହିକଥା ଶୁଣି ପଣ୍ଡିତ ଅଶ୍ରୁବାରି ବିସର୍ଜନ କରୁଛନ୍ତି । ଠାକୁର ପୁଣି ଗାଉଛନ୍ତି-

ଗୀତ—କାଳୀନାମ କଳ୍ପତରୁ ହୃଦୟେ ରୋପଣ କରିଛି,
ମୁଁ ଦେହ ବିକି ଏ ଭବ ହାଟେ, ଶ୍ରୀଦୁର୍ଗାନାମ କିଣି ଆଣିଛି ।
ଦେହ ମଧ୍ୟେ ଅଛି ଯେ ସୁଜନ ତା' ସହିତ ମୁଁ ଘର କରିଛି,
ଯମ ଆସିଲେ ହୃଦ ଦେଇ ଖୋଲି ଦେଖାଇବି ବୋଲି ବସି ରହିଛି
ରାମପ୍ରସାଦ କହେ ଶ୍ରୀଦୁର୍ଗା ଜପି ଯାତ୍ରା ପାଇଁ ଗୋଡ଼ କାଢ଼ିଛି ॥

ଗୀତ—ଆପନାତେ ଆପନି ଥେକୋ ମନ ଯେଓ ନାକୋ କାରୁ ଘରେ । ଯା ଚାବି ତା ବସେ ପାବି (ଓରେ) ଖୋଜ ନିଜ ଅନ୍ତଃପୁରେ ॥ ଇତ୍ୟାଦି ।

ଠାକୁର ଗୀତ ଗାଇ କହୁଛନ୍ତି—ମୁକ୍ତି ଅପେକ୍ଷା ଭକ୍ତି ବଡ଼ ।

ଗୀତ—ଆମି ମୁକ୍ତି ଦିତେ କାତର ନଇ, ଶୁଦ୍ଧାଭକ୍ତି ଦିତେ କାତର ହଇ ଗୋ । ଆମାର ଭକ୍ତି ଯେବା ପାୟ, ସେ ଯେ ସେବା ପାୟ, ତାରେ କେବା ପାୟ ସେ ଯେ ତ୍ରିଲୋକଜୟୀ ॥ ତାରେ କେବା ପାୟ ସେ ଯେ ତ୍ରିଲୋକଜୟୀ ॥ ଶୁଦ୍ଧା ଭକ୍ତି ଏକ ଆଛେ ବୃନ୍ଦାବନେ, ଗୋପଗୋପୀ ଭିନ୍ନ ଅନ୍ୟେ ନାହି ଜାନେ । ଭକ୍ତିର କାରଣେ ନନ୍ଦେର ଭବନେ, ପିତା ଜ୍ଞାନେ ନନ୍ଦେର ବାଧା ମାଥାୟ ବଇ ॥

## (୨)

## ଶାସ୍ତ୍ର ପାଠ ଓ ପାଣ୍ଡିତ୍ୟ ମିଥ୍ୟା—ତପସ୍ୟା ଚାହି । ବିଜ୍ଞାନୀ

ପଣ୍ଡିତ ବେଦାଦି ଶାସ୍ତ୍ର ପଢ଼ିଛନ୍ତି ଓ ଜ୍ଞାନ ଚର୍ଚ୍ଚା କରନ୍ତି । ଠାକୁର ଛୋଟ ଖଟଟିରେ ବସି ତାଙ୍କୁ ଦେଖୁଛନ୍ତି ଓ ଗଳ୍ପଛଳରେ ନାନା ଉପଦେଶ ଦେଉଛନ୍ତି ।

ଶ୍ରୀରାମକୃଷ୍ଣ (ପଣ୍ଡିତଙ୍କ ପ୍ରତି)—ବେଦାଦି ଅନେକ ଶାସ୍ତ୍ର ଅଛି, କିନ୍ତୁ ସାଧନ ନ କଲେ—ତପସ୍ୟା ନ କଲେ ଈଶ୍ୱର ଲାଭ ହୁଏ ନାହିଁ । କେବଳ ଷଡ଼୍‌ଦର୍ଶନ, ବେଦ ତନ୍ତ୍ରଶାସ୍ତ୍ର ପଢ଼ିଲେ ଈଶ୍ୱର ଦର୍ଶନ ହୁଏ ନାହିଁ ।

"ତେବେ ଶାସ୍ତ୍ରରେ ଯାହାଅଛି, ସେହିସବୁ ଜାଣିନେଇ ସେହି ଅନୁସାରେ କାର୍ଯ୍ୟ କରିବାକୁ ହୁଏ ! ଜଣେ ଖଣ୍ଡେ ଚିଠି ହଜାଇ ଦେଇଥିଲେ । କେଉଁଠାରେ ରଖିଛନ୍ତି ମନେ ନାହିଁ । ସେତେବେଳେ ସେ ପ୍ରଦୀପ ନେଇ ଖୋଜିବାକୁ ଲାଗିଲେ । ଦୁଇ ତିନି ଜଣ ମିଳି ଚିଠି ଖଣ୍ଡ ଖୋଜି ପାଇଲେ । ସେଥିରେ ଲେଖାଥିଲା ପାଞ୍ଚସେର ସନ୍ଦେଶ, ଖଣ୍ଡେ ଲୁଗା ପଠାଇବ । ସେତେକ ପଢ଼ିନେଇ ସେ ପୁଣି ଚିଠିଖଣ୍ଡ ଫିଙ୍ଗିଦେଲେ । ସେତେବେଳେ ଚିଠିର କଅଣ ଦରକାର । ବର୍ତ୍ତମାନ ପାଞ୍ଚସେର ସନ୍ଦେଶ ଆଉ ଖଣ୍ଡେ ଲୁଗା କିଣି ପଠାଇଲେ ହେବ ।"

[The Art of Teaching : ପଠନ, ଶ୍ରବଣ ଓ ଦର୍ଶନର ତାରତମ୍ୟ ]

"ପଢ଼ିବା ଠାରୁ ଶୁଣିବା ଭଲ,—ଶୁଣିବା ଠାରୁ ଦେଖିବା ଭଲ । ଗୁରୁମୁଖରୁ ବା ସାଧୁ ମୁଖରୁ ଶୁଣିଲେ ଧାରଣା ବେଶୀ ହୁଏ, —ଆଉ ଶାସ୍ତ୍ରର ଅସାର ଭାଗ ଚିନ୍ତା କରିବାକୁ ହୁଏ ନାହିଁ । ହନୁମାନ କହିଥିଲେ, 'ଭାଇ ମୁଁ ତିଥି ନକ୍ଷତ୍ର ଏତେ ସବୁ ଜାଣେ ନାହିଁ; —ମୁଁ କେବଳ ରାମଚିନ୍ତା କରେ ।"

"ଶୁଣିବା ଅପେକ୍ଷା ଦେଖିବା ଆହୁରି ଭଲ । ଦେଖିଲେ ସବୁ ସନ୍ଦେହ ଚାଲିଯାଏ । ଶାସ୍ତ୍ରରେ ଅନେକ କଥା ତ ଅଛି, ଈଶ୍ୱରଙ୍କର ସାକ୍ଷାତ୍‌କାର ନ ହେଲେ—ତାଙ୍କ ପାଦ

ପଦ୍ମରେ ଭକ୍ତି ନ ହେଲେ,—ଚିତ୍ତ ଶୁଦ୍ଧି ନ ହେଲେ—ସବୁ ବୃଥା । ପାଞ୍ଜିରେ ଏତେ ଭାଗ ଜଳ;—କିନ୍ତୁ ପାଞ୍ଜି ଚୁପୁଡ଼ିଲେ ଟୋପାଏ ମଧ୍ୟ ପଡ଼େ ନାହିଁ ! ଟୋପାଏ ପଡ଼, ତାହା ବି ନୁହେଁ ।''

## ବିଚାର କେତେଦିନ । ଈଶ୍ୱର ଦର୍ଶନ ପର୍ଯ୍ୟନ୍ତ । ବିଜ୍ଞାନୀ କିଏ ?

''ଶାସ୍ତ୍ର ବିଚାର କେତେଦିନ ? ଯେତେଦିନ ଈଶ୍ୱରଙ୍କର ସାକ୍ଷାତ୍କାର ନ ହୁଏ । ଭ୍ରମର ଗୁଣୁ ଗୁଣୁ କରେ କେତେକ୍ଷଣ ? ଯେତେକ୍ଷଣ ଫୁଲରେ ନ ବସେ । -ଫୁଲରେ ବସି ମଧୁପାନ କରିବାକୁ ଆରମ୍ଭ କଲେ ଆଉ ଶବ୍ଦ ନାହିଁ ।''

''ତେବେ ଗୋଟାଏ କଥା ଅଛି,ଈଶ୍ୱରଙ୍କୁ ଦର୍ଶନ କରିବା ପରେ ମଧ୍ୟ କଥା-ବାର୍ତ୍ତା ଚଳେ । ସେ କଥା କେବଳ ଈଶ୍ୱରୀୟ ଆନନ୍ଦର କଥା:-ଯେପରି ମତୁଆଲାର ଜୟକାଳୀ କହିବା । ଆଉ ଭ୍ରମର -ଫୁଲରେ ବସି ମଧୁପାନ କରିବା ପରେ ଅଧା ଅଧା ସ୍ୱରରେ ଗୁଣୁଗୁଣୁ କରେ ।''

ବିଜ୍ଞାନୀର କଥା କହି ବୋଧହୁଏ ନିଜର ଅବସ୍ଥା ଇଙ୍ଗିତ କରି କହୁଛନ୍ତି ।

''ଜ୍ଞାନୀ 'ନେତି ନେତି' ବିଚାର କରେ । ଏହି ବିଚାର କରୁ କରୁ ଯେଉଁଠାରେ ଆନନ୍ଦ ପାଏ ସେ ହିଁ ବ୍ରହ୍ମ ।''

''ଜ୍ଞାନୀର ସ୍ୱଭାବ କିପରି ? ଜ୍ଞାନୀ ଆଇନ୍ ଅନୁସାରେ ଚଳେ ।''

''ମୋତେ ଚାନକକୁ ନେଇ ଯାଇଥିଲେ । ସେଠାରେ କେତେଗୁଡ଼ିଏ ସାଧୁ ଦେଖିଲି । ସେମାନେ କେହି କେହି ସିଲାଇ କରୁଥିଲେ । (ସମସ୍ତଙ୍କର ହାସ୍ୟ) । ଆମେମାନେ ଯିବାରୁ ସେ ସବୁ କାମ ବନ୍ଦ କରିଦେଲେ । ତା'ପରେ ଗୋଡ଼ ଉପରେ ଗୋଡ଼ ଥୋଇ ଆମମାନଙ୍କ ସଙ୍ଗରେ କଥା କହିବାକୁ ଲାଗିଲେ । (ସମସ୍ତଙ୍କର ହାସ୍ୟ) ।''

'' କିନ୍ତୁ ଈଶ୍ୱରୀୟ କଥା ପ୍ରଶ୍ନ ନ କଲେ ଜ୍ଞାନୀମାନେ ସେସବୁ କଥା କହନ୍ତି ନାହିଁ । ପ୍ରଥମେ ପ୍ରଶ୍ନ କରିବେ, ବର୍ତ୍ତମାନ ତୁମେ କିପରି ଅଛ ! —ବ୍ୟବସା ହାୟ ! —ଘରେ ସବୁ କିପରି ଅଛନ୍ତି ?''

''କିନ୍ତୁ ବିଜ୍ଞାନୀର ସ୍ୱଭାବ ଅଲଗା । ତା'ର ଅଲଗା ସ୍ୱଭାବ—ହୁଏତ ଲୁଗାଟା ଅଲଗା—କିମ୍ବା କାଖତଳେ ରଖା ଅଛି—ପିଲାଙ୍କ ପରି !''

''ଈଶ୍ୱର ଅଛନ୍ତି ଏଇଟି ଜାଣିଛି ଏହାର ନାମ ଜ୍ଞାନୀ । କାଠରେ ନିଶ୍ଚୟ ଅଗ୍ନି ଅଛି, ଯେ ଜାଣିଛି ସେ ଜ୍ଞାନୀ । କିନ୍ତୁ କାଠ ଜାଳି ରାନ୍ଧିବା, ଖାଇପିଇ, ହାକୁଟି ମାରିବା, ଯାହାର ହୁଏ ତାହାର ନାମ ବିଜ୍ଞାନୀ ।''

''କିନ୍ତୁ ବିଜ୍ଞାନୀର ଅଷ୍ଟପାଶ ଖୋଲିଯାଏ,-କାମ କ୍ରୋଧାଦିର ଆକାର ମାତ୍ର ଥାଏ ।''

ପଣ୍ଡିତ—''ଭିଦ୍ୟତେ ହୃଦୟ ଗ୍ରନ୍ଥିଃ ଛିଦ୍ୟନ୍ତେ ସର୍ବ ସଂଶୟାଃ ।''

# ପୂର୍ବକଥା
## କୃଷ୍ଣକିଶୋରଙ୍କ ଘରକୁ ଗମନ ।
## ଠାକୁରଙ୍କର, ବିଜ୍ଞାନୀଙ୍କର ଅବସ୍ଥା !

ଶ୍ରୀରାମକୃଷ୍ଣ—ହଁ: ଗୋଟିଏ ଜାହାଜ ସମୁଦ୍ରରେ ଯାଉଥିଲା । ହଠାତ୍ ତାହାର ଯେତେ ଲୁହା, କାଠ, କଣ୍ଟା, ପେଚ ଉପୁଡ଼ି ଯିବାକୁ ଲାଗିଲା । ପାଖରେ ଚୁମ୍ବକର ପାହାଡ଼ ଥିଲା, ତେଣୁ ସବୁ ଲୁହା ଅଲଗା ହୋଇ ଉପୁଡ଼ି ଯିବାକୁ ଲାଗିଲା । ମୁଁ କୃଷ୍ଣକିଶୋରଙ୍କ ଘରକୁ ଯାଏ । ଦିନେ ଯାଇଛି, ସେ କହିଲେ, ତୁମେ ପାନ ଖାଅ କାହିଁକି ?

ମୁଁ କହିଲି, ମୋର ଖୁସି; ପାନ ଖାଇବି—ଦର୍ପଣରେ ମୁଖ ଦେଖିବି, —ହଜାରେ ସ୍ତ୍ରୀଙ୍କ ଭିତରେ ଲଙ୍ଗଳା ହୋଇ ନାଚିବି ! କୃଷ୍ଣକିଶୋରଙ୍କ ସ୍ତ୍ରୀ ତାଙ୍କୁ ଗାଳି ଦେଲେ—କହିଲେ, ତୁମେ କାହାକୁ କ'ଣ କହୁଛ ? —ରାମକୃଷ୍ଣଙ୍କୁ କ'ଣ କହୁଛ ?

"ଏ ଅବସ୍ଥା ହେଲେ କାମ କ୍ରୋଧାଦି ଦଗ୍ଧ ହୋଇଯାଏ । ଶରୀରର କିଛି ହୁଏ ନାହିଁ । ଦେଖିବାକୁ ଠିକ ଅନ୍ୟ ଲୋକର ଶରୀର ପରି, କିନ୍ତୁ ଭିତର ସବୁ ଖୋଲା ଆଉ ନିର୍ମଳ ।"

ଭକ୍ତ—ଈଶ୍ୱର ଦର୍ଶନ ପରେ ମଧ୍ୟ ଶରୀର ରହେ ?

ଶ୍ରୀରାମକୃଷ୍ଣ—କାହାରି କାହାରି କିଛି କର୍ମ ପାଇଁ ରହେ, ଲୋକ-ଶିକ୍ଷା ପାଇଁ । ଗଙ୍ଗା ସ୍ନାନରେ ପାପ ଯାଏ ଆଉ ମୁକ୍ତି ହୁଏ—କିନ୍ତୁ ଚକ୍ଷୁର ଅନ୍ଧତ୍ୱ ଯାଏନାହିଁ । ତେବେ ପାପ ପାଇଁ ଯେଉଁ କେତେକ ଜନ୍ମ କର୍ମ ଭୋଗ କରିବାକୁ ହୋଇଥାଆନ୍ତା, ସେ କେତେକ ଜନ୍ମ ଆଉ ହୁଏନାହିଁ । ଯେତିକି ଥର ଘୁରାଇବାକୁ ଦିଆଯାଇଛି, ସେତିକିଥର କେବଳ ଘୁରିଯିବ । ବାକିଗୁଡ଼ାକ ଆଉ ହେବନାହିଁ । କାମ କ୍ରୋଧାଦି ସବୁ ଦଗ୍ଧ ହୋଇଯାଏ, —ତେବେ ଶରୀରଟା ରହିଥାଏ କିଛି କର୍ମ ପାଇଁ ।

ପଣ୍ଡିତ—ତାକୁ ହିଁ ସଂସ୍କାର କହନ୍ତି ।

ଶ୍ରୀରାମକୃଷ୍ଣ—ବିଜ୍ଞାନୀ ସର୍ବଦା ଈଶ୍ୱର ଦର୍ଶନ କରେ, —ତେଣୁ ତ ଏପରି ବେହୋସ ଭାବ । ଚକ୍ଷୁ ଦ୍ୱାରା ଚାହିଁ ମଧ୍ୟ ଦର୍ଶନ କରେ । କେତେବେଳେ ନିତ୍ୟରୁ ଆସି ଲୀଳାରେ ଥାଏ, —କେତେବେଳେ ଲୀଳାରୁ ନିତ୍ୟକୁ ଯାଏ ।

ପଣ୍ଡିତ—ଏହିଟି ବୁଝିଲି ନାହିଁ ।

ଶ୍ରୀରାମକୃଷ୍ଣ—ନେତି ନେତି ବିଚାର କରି ସେହି ନିତ୍ୟ ଅଖଣ୍ଡ ସଚ୍ଚିଦାନନ୍ଦରେ ପହଞ୍ଚେ । ସେମାନେ ଏହି ବିଚାର କରନ୍ତି—ସେ ଜୀବ ନୁହେଁ, ଚତୁର୍ବିଂଶତି ତତ୍ତ୍ୱ ନୁହେଁ । ନିତ୍ୟରେ ପହଞ୍ଚି ଦେଖେ ଯେ ସେ ଏହିସବୁ ହୋଇଛନ୍ତି, —ଜୀବ ଜଗତ ଚତୁର୍ବିଂଶତି ତତ୍ତ୍ୱ ।

"ଦୁଧକୁ ଦହି ବସାଇ ମନ୍ଥନ କରି ଲହୁଣୀ ବାହାର କରିବାକୁ ହୁଏ । କିନ୍ତୁ

ଲହୁଣୀ ବାହାର ହେଲେ ଦେଖାଯାଏ, ଯେଉଁ ଘୋଳର ଲହୁଣୀ ସେହି ଲହୁଣୀର ହିଁ ଘୋଳ । ଖୋଳପାର ମଞ୍ଜି, ମଞ୍ଜିର ହିଁ ଖୋଳପା ।''

ପଣ୍ଡିତ (ଭୂଧରଙ୍କ ପ୍ରତି, ସହାସ୍ୟ)—ବୁଝିଲ ? ଏହା ବୁଝିବା ବଡ଼ କଠିନ ।

ଶ୍ରୀରାମକୃଷ୍ଣ—ଲହୁଣୀ ହୋଇଛି ତ ଘୋଳ ମଧ୍ୟ ହୋଇଛି । ଲହୁଣୀ ଭାବିବାକୁ ଗଲେ ସଙ୍ଗେ ସଙ୍ଗେ ଘୋଳକୁ ଭାବିବାକୁ ହୁଏ, —କାହିଁକି ନା ଘୋଳ ନ ଥିଲେ ଲହୁଣୀ ହୁଏ ନାହିଁ । ତେଣୁ ନିତ୍ୟକୁ ମାନିବାକୁ ଗଲେ ଲୀଳାକୁ ମାନିବାକୁ ହୁଏ । ଅନୁଲୋମ ଓ ବିଲୋମ । ସାକାର ନିରାକାର ସାକ୍ଷାତକାର ପରେ ଏହି ଅବସ୍ଥା ! ସାକାର ଚିନ୍ମୟ ରୂପ, —ନିରାକାର ଅଖଣ୍ଡ ସଚ୍ଚିଦାନନ୍ଦ । ସେହି କେବଳ ସବୁ ହୋଇଛନ୍ତି, —ତେଣୁ ବିଜ୍ଞାନୀଙ୍କର ଏହି ସଂସାର ମଜାର କୋଠି ।' ଜ୍ଞାନୀଙ୍କ ପକ୍ଷରେ 'ଏହି ସଂସାର ଧୋକାର ଟାଟି ।' ରାମପ୍ରସାଦ ଧୋକାର ଟାଟି କହିଥିଲେ—

ଏଇ ସଂସାର ମଜାର କୋଠି, ମୁଁ ଯେ ଖାଇ ପିଇ ନିଏ ମଜା ଲୁଟି ॥
ଜନକରାଜା ମହାତେଜା, ତାର କାହିଁରେ ଥିଲା ତ୍ରୁଟି !
ସେ ଯେ ଏପାଖ ସେପାଖ ଦିପାଖ ରଖି, ପିଇଥିଲା ଦୁଧ-ବାଟି ।

(ସମସ୍ତଙ୍କର ହାସ୍ୟ)

''ବିଜ୍ଞାନୀ ଈଶ୍ୱରୀୟ ଆନନ୍ଦ ବିଶେଷ ରୂପରେ ସମ୍ଭୋଗ କରିଛନ୍ତି । କେହି ଦୁଧ ଶୁଣିଛି, କେହି ଦେଖିଛି, କେହି ଖାଇଛି । ବିଜ୍ଞାନୀ ଦୁଧ ଖାଇଛନ୍ତି ଆଉ ଖାଇ ଆନନ୍ଦ ଲାଭ କରିଛନ୍ତି ଓ ହୃଷ୍ଟପୁଷ୍ଟ ହୋଇଛନ୍ତି ।''

ଠାକୁର ଟିକିଏ ଚୁପ ରହିଲେ ଓ ପଣ୍ଡିତଙ୍କୁ ତମାଖୁ ଖାଇବାକୁ କହିଲେ । ପଣ୍ଡିତ ଦକ୍ଷିଣ-ପୂର୍ବ ଲମ୍ବା ବାରଣ୍ଡାରେ ତମାଖୁ ଖାଇବାକୁ ଗଲେ ।

## (୩)

## ଜ୍ଞାନ ଓ ବିଜ୍ଞାନ । ଠାକୁର ଓ ବେଦୋକ୍ତ ଋଷିଗଣ ।

ପଣ୍ଡିତ ଫେରିଆସି ପୁଣି ଭକ୍ତମାନଙ୍କ ସଙ୍ଗରେ ତଳେ ବସିଲେ । ଠାକୁର ଛୋଟ ଖଟଟିରେ ବସି ପୁଣି କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ (ପଣ୍ଡିତଙ୍କ ପ୍ରତି)—ତୁମକୁ ଏଇଟି କହେ । ଆନନ୍ଦ ତିନି ପ୍ରକାର— ବିଷୟାନନ୍ଦ,ଭଜନାନନ୍ଦ ଓ ବ୍ରହ୍ମାନନ୍ଦ । ଯାହା ସଂସାର ସର୍ବଦା ନେଇଅଛି—କାମିନୀ-କାଞ୍ଚନର ଆନନ୍ଦ, ତାହାର ନାମ ବିଷୟାନନ୍ଦ । ଈଶ୍ୱରଙ୍କର ନାମ ଗୁଣ ଗାନକରି ଯେଉଁ ଆନନ୍ଦ,ତାହାର ନାମ ଭଜନାନନ୍ଦ । ଆଉ ଭଗବାନଙ୍କ ଦର୍ଶନରେ ଯେଉଁ ଆନନ୍ଦ ତାହାର ନାମ ବ୍ରହ୍ମାନନ୍ଦ । ବ୍ରହ୍ମାନନ୍ଦ ଲାଭପରେ ଋଷିମାନଙ୍କର ଆଚରଣ ସମସ୍ତ ନିୟମର ଊର୍ଦ୍ଧ୍ୱରେ ରହୁଥିଲା ।

''ଚୈତନ୍ୟଦେବଙ୍କର ତିନି ରକମର ଅବସ୍ଥା ହେଉଥିଲା । ଅନ୍ତର୍ଦଶା, ଅର୍ଦ୍ଧବାହ୍ୟଦଶା

ଓ ବାହ୍ୟଦଶା । ଅନ୍ତର୍ଦ୍ଦଶାରେ ଭଗବାନ ଦର୍ଶନ କରି ସମାଧିସ୍ଥ ହେଉଥିଲେ—ଏହି ସମାଧି ଜଡ଼ ସମାଧି । ଅର୍ଦ୍ଧବାହ୍ୟରେ ଟିକିଏ ବାହାରର ହୋସ୍ ରହୁଥିଲା । ବାହ୍ୟଦଶାରେ ନାମ ଗୁଣ କୀର୍ତ୍ତନ କରି ପାରୁଥିଲେ ।''

ହାଜରା (ପଣ୍ଡିତଙ୍କ ପ୍ରତି)—ଏଥର ସବୁ ସନ୍ଦେହ ଦୂର ହେଲା ।

ଶ୍ରୀରାମକୃଷ୍ଣ (ପଣ୍ଡିତଙ୍କ ପ୍ରତି)—ସମାଧି କାହାକୁ କହନ୍ତି ? —ଯେଉଁଠାରେ ମନର ଲୟ ହୁଏ । ଜ୍ଞାନୀଙ୍କର ଜଡ଼ ସମାଧି ହୁଏ, —'ମୁଁ' ରହେ ନାହିଁ । ଭକ୍ତି ଯୋଗରେ ସମାଧିକୁ ଚେତନ ସମାଧି କହନ୍ତି । ଏଥିରେ ସେବ୍ୟ ସେବକର 'ମୁଁ' ରହେ, —ରସ ରସିକର 'ମୁଁ' —ଆସ୍ୱାଦ୍ୟ ଆସ୍ୱାଦକର 'ମୁଁ' । ଈଶ୍ୱର ସେବ୍ୟ, —ଭକ୍ତ ସେବକ : ଈଶ୍ୱର ରସ ସ୍ୱରୂପ, —ଭକ୍ତ ରସିକ ଈଶ୍ୱର ଆସ୍ୱାଦ, —ଭକ୍ତ ଆସ୍ୱାଦକ । ଚିନି ହେବି ନାହିଁ; ଖାଇବାକୁ ଭଲପାଏ ।

ପଣ୍ଡିତ—ସେ ଯଦି ସବୁ 'ମୁଁ' ଲୟ କରନ୍ତି, ତାହାହେଲେ କ'ଣ ହେବି ? ଚିନି ଯଦି କରି ଦିଅନ୍ତି ।

ଶ୍ରୀରାମକୃଷ୍ଣ (ସହାସ୍ୟ)—ତୁମ ମନର କଥା,ଖୋଲି କହ । 'ମା କୌଶଲ୍ୟା, ଥରେ ପ୍ରକାଶ କରି କହ ! (ସମସ୍ତଙ୍କର ହାସ୍ୟ) ତେବେ କ'ଣ ନାରଦ, ସନକ, ସନାତନ, ସନନ୍ଦ, ସନତ କୁମାରଙ୍କ କଥା ଶାସ୍ତ୍ରରେ ନାହିଁ ?

ପଣ୍ଡିତ—ଆଜ୍ଞା ହଁ, ଶାସ୍ତ୍ରରେ ଅଛି ।

ଶ୍ରୀରାମକୃଷ୍ଣ—ସେମାନେ ଜ୍ଞାନୀ ହୋଇ ମଧ୍ୟ ଭକ୍ତ 'ମୁଁ' ରଖି ଦେଇଥିଲେ । ତୁମେ ଭାଗବତ ପଢ଼ିନାହଁ ?

ପଣ୍ଡିତ—କିଛିଟା ପଢିଛି; —ସମ୍ପୂର୍ଣ୍ଣ ନୁହେଁ ।

ଶ୍ରୀରାମକୃଷ୍ଣ—ପ୍ରାର୍ଥନା କର । ସେ ଦୟାମୟ । ସେ କ'ଣ ଭକ୍ତଙ୍କ କଥା ଶୁଣନ୍ତି ନାହିଁ ? ସେ କଳ୍ପତରୁ ! ତାଙ୍କ ପାଖକୁ ଯାଇ ଯିଏ ଯାହା ଚାହିଁବେ ତାହା ପାଇବେ ।

ପଣ୍ଡିତ—ମୁଁ ଏହିସବୁ ଚିନ୍ତା ସେତେ କରେ ନାହିଁ । ବର୍ତ୍ତମାନ ସବୁ ବୁଝୁଛି !

ଶ୍ରୀରାମକୃଷ୍ଣ—ବ୍ରହ୍ମଜ୍ଞାନ ପରେ ମଧ୍ୟ ଈଶ୍ୱର ଟିକିଏ 'ମୁଁ' ରଖିଦିଅନ୍ତି । ସେହି 'ମୁଁ' —ଭକ୍ତ 'ମୁଁ', ବିଦ୍ୟାର 'ମୁଁ'; ତଦ୍ୱାରା ଏ ଅନନ୍ତ ଲୀଳା ଆସ୍ୱାଦନ କରାଯାଏ । ମୂଷଳ ସବୁ ଘଷିବା ପରେ ଟିକିଏ ପୁଣି ଅନାବନା ବଣରେ ପଡ଼ି କୁଳନାଶନ—ଯଦୁବଂଶ ଧ୍ୱଂସ ହେଲା । ବିଜ୍ଞାନୀ ତେଣୁ ଏହି ଭକ୍ତ 'ମୁଁ' ବିଦ୍ୟାର 'ମୁଁ' ରଖନ୍ତି ଆସ୍ୱାଦନ ପାଇଁ, ଲୋକଶିକ୍ଷା ପାଇଁ ।

## ଋଷିମାନେ ଭୟତ୍ରସ୍ତ । A new light–on the Vedanta.

ଋଷିମାନେ ଭୟତ୍ରସ୍ତ । ସେମାନଙ୍କର ଭାବ କ'ଣ ଜାଣ ? ମୁଁ କୌଣସି ପ୍ରକାରେ ଯାଉଛି, ଯଦି କେହି ଆସେ ? ଖଣ୍ଡିଏ ଛୋଟ କାଠ ନିଜେ କୌଣସି ପ୍ରକାରେ ଭାସିଯାଏ;

—ତାହା ଉପରେ ଗୋଟିଏ ପକ୍ଷୀ ବସିଲେ ବୁଡ଼ିଯାଏ । ନାରଦାଦି ବଡ଼ ବଡ଼ ଗଡ଼କାଠ, ନିଜେ ଭାସିଯାଏ, ପୁଣି ଅନେକ ଜୀବଜନ୍ତୁ ବି ନେଇ ଯାଇପାରେ । Steam boat (କଳର ଜାହାଜ)—ଆପେ ପାର ହୋଇଯାଏ ଏବଂ ଅପରଙ୍କୁ ପାର କରି ନେଇଯାଏ ।

''ନାରଦାଦି ଆଚାର୍ଯ୍ୟ ବିଜ୍ଞାନୀ—ଅନ୍ୟ ଋଷିମାନଙ୍କ ଅପେକ୍ଷା ସାହସୀ । ଯେପରି ପକ୍କା ଖେଳାଳୀ ଛକବନ୍ଧା ଖେଳ ଖେଳେ । କଅଣ ଚାହଁ, ଛଅ ନା ପାଞ୍ଚ ? ପ୍ରତିଥର ଠିକ୍ ପଡୁଛି ! —ଏପରି ଖେଳାଳୀ ! ସେ ପୁଣି ମଝିରେ ମଝିରେ ନିଶରେ ହାତ ମାରେ ।''

''ତୁଚ୍ଛା ଜ୍ଞାନୀ ଯେଉଁମାନେ ସେମାନେ ଭୟତ୍ରସ୍ତ । ସତରଞ୍ଚ ଖେଳରେ ଯେପରି କଞ୍ଚା ଖେଳାଳୀ ସବୁ, ଯେଣୁ ତେଣୁ କରି ଥରେ ଗୋଟିକୁ ଉଠାଇବାକୁ ଇଚ୍ଛା କରନ୍ତି । ବିଜ୍ଞାନୀର କୌଣସିଥିରେ ଭୟ ନାହିଁ । ସେ ସାକାର—ନିରାକାର ଉଭୟ ସାକ୍ଷାତ୍‌କାର କରିଛି ! ଈଶ୍ୱରଙ୍କ ସଙ୍ଗରେ କଥାବାର୍ତ୍ତା କରିଛି ! —ଈଶ୍ୱରୀୟ ଆନନ୍ଦ ସମ୍ଭୋଗ କରିଛି !''

''ତାଙ୍କୁ ଚିନ୍ତା କରି ଅଖଣ୍ଡରେ ମନ ଲୟ ହେଲେ ଆନନ୍ଦ, —ଲୟ ନ ହେଲେ ମଧ୍ୟ ଲୀଳାରେ ମନ ରଖି ଆନନ୍ଦ ।''

''ତୁଚ୍ଛା ଜ୍ଞାନୀର ଏକାଦଶୀ ଭାବ, —'କେବଳ ବିଚାର କରୁଛି, ଏହା ନୁହେଁ, ଏହା ନୁହେଁ—ସମସ୍ତ ସ୍ୱପ୍ନବତ୍ ।' ମୁଁ ଦୁଇହାତ ଛାଡ଼ି ଦେଇଛି, ତେଣୁ ସବୁ ନିଏ ।''

''ଜଣେ ତା'ର ସମୁଦୀ ସଙ୍ଗରେ ଦେଖା କରିବାକୁ ଯାଇଥିଲା । ସମୁଦୀ ସେତେବେଳେ ସୂତା କାଟୁଥିଲା—ନାନା ରକମ ରେଶମର ସୂତା । ସମୁଦୀ ତାହାର ସମୁଦୀକୁ ଦେଖି ଖୁବ୍ ଆନନ୍ଦ କରିବାକୁ ଲାଗିଲା, —ଆଉ କହିଲା—ସମୁଦୀ, ତୁମେ ଆସିଛ ବୋଲି ମୋର ଯେଉଁ ଆନନ୍ଦ ହେଉଛି, ତାହା କହିପାରୁ ନାହିଁ, —ଯାଏ,ତୁମ ପାଇଁ କିଛି ଜଳଖିଆ ଆଣେ ।' ସମୁଦୀ ଜଳଖିଆ ଆଣିବାକୁ ଯାଇଛି, ଏଣେ ନାନା ରଙ୍ଗର ରେଶମ ସୁତା ଦେଖି ଏ ସମୁଦୀର ଲୋଭ ହୋଇଛି । ସେ ବଣ୍ଡୁଲିଏ ସୂତା କାଖରେ ଜାକି ଲୁଚାଇ ପକାଇଲା । ସମୁଦୀ ଜଳଖିଆ ନେଇ ଆସିଲେ, —ଆଉ ଅତି ଆନନ୍ଦର ସହିତ ଜଳଖିଆ ଖୁଆଇବାକୁ ଲାଗିଲେ । କିନ୍ତୁ ସୂତା ଦିଗରେ ଦୃଷ୍ଟିପାତ କରି ବୁଝିପାରିଲେ ଯେ ବଣ୍ଡୁଲିଏ ସୂତା ସମୁଦୀ ନେଇଯାଇଛନ୍ତି ସେତେବେଳେ ସେ ସୂତା ଆଦାୟ କରିବା ପାଇଁ ଗୋଟାଏ ଉପାୟ ଠିକ୍ କଲେ ।''

''ସେ କହିଲେ ସମୁଦୀ ଅନେକ ଦିନ ପରେ ତୁମ ସହିତ ସାକ୍ଷାତ୍ ହେଲା । ଆଜି ବଡ଼ ଆନନ୍ଦର ଦିନ । ମୋର ଖୁବ୍ ଇଚ୍ଛା ହେଉଛି ଯେ ଦୁଇଜଣ ନୃତ୍ୟ କରିବା । ସେ କହିଲେ, 'ଭାଇ ମୋର ମଧ୍ୟ ଭାରି ଆନନ୍ଦ ହେଉଛି ।' ସେତେବେଳେ ଦୁଇ ସମୁଦୀ ନୃତ୍ୟ କଲେ । ସମୁଦୀ ଦେଖିଲେ, ଏ ହାତ ନ ଟେକି ନୃତ୍ୟ କରୁଛନ୍ତି । ସେତେବେଳେ ସେ କହିଲେ ଆସ ସମୁଦୀ ଦୁଇ ହାତ ଟେକି ଆମେମାନେ ନାଚିବା; —ଆଜି ଭାରି ଆନନ୍ଦର

ଦିନ ।' କିନ୍ତୁ ସେ ଗୋଟିଏ ହାତ କାଖରେ ଜାକି ଆଉ ଅନ୍ୟ ଗୋଟିଏ ହାତ ଟେକି ନାଚିଲେ । ସେତେବେଳେ ସମୁଦୀ କହିଲେ, 'ସମୁଦୀ ସେ କ'ଣ ! ଗୋଟାଏ ହାତ ଟେକି ନାଚିବା କଅଣ, ଆସ ଦୁଇହାତ ଟେକି ନାଚିବା । ଆଚ୍ଛା ଦେଖ ମୁଁ ଦୁଇହାତ ଟେକି ନାଚୁଛି ।' କିନ୍ତୁ ସେ କାଖ ଜାକି ହସି ହସି ଗୋଟିଏ ହାତ ଉଠାଇ ନାଚିଲେ, ଆଉ କହିଲେ,'ଯେ ଯେପରି ନାଚି ଜାଣେ ସମୁଦୀ' !''

ମୁଁ କାଖରେ ହାତ ଜାକେନା:—ମୁଁ ଦୁଇହାତ ଛାଡ଼ି ଦେଇଛି;—ମୋର ଭୟ ନାହିଁ ! ତେଣୁ ମୁଁ ନିତ୍ୟଲୀଳା ଦୁଇକୁ ନିଏ—

ଠାକୁର କ'ଣ କହୁଛନ୍ତି ଯେ ଜ୍ଞାନୀର ଲୋକମାନ୍ୟ ହେବାର କାମନା, ଜ୍ଞାନୀର ମୁକ୍ତି କାମନା, ଏହିସବୁ ଥାଏ ବୋଲି, ଦୁଇହାତ ଟେକି ନାଚିପାରେ ନାହିଁ ? ନିତ୍ୟଲୀଳା ଦୁଇଟିକୁ ନେଇପାରେ ନା ? ଆଉ ଜ୍ଞାନୀର ଭୟ ଅଛି, ପରେ ବଦ୍ଧ ହୁଏ,—ବିଜ୍ଞାନୀର ଭୟ ନାହିଁ ?

ଶ୍ରୀରାମକୃଷ୍ଣ—କେଶବ ସେନ୍‌କୁ କହିଲି ଯେ 'ମୁଁ' ତ୍ୟାଗ ନ କଲେ କିଛି ହେବ ନାହିଁ । ସେ କହିଲା ତାହାହେଲେ ମହାଶୟ ଦଳଫଳ ରହିବ ନାହିଁ । ସେତେବେଳେ ମୁଁ କହିଲି, 'କଞ୍ଚା ମୁଁ ', 'ବଜ୍ଜାତ୍ ମୁଁ'—ତ୍ୟାଗ କରିବାକୁ କହୁଛି, କିନ୍ତୁ 'ପକ୍‌କା ମୁଁ'—'ବାଳକ ମୁଁ '—ଈଶ୍ୱରଙ୍କର 'ଦାସ ମୁଁ'—'ବିଦ୍ୟାର ମୁଁ' ଏଥିର ଦୋଷ ନାହିଁ । 'ସଂସାରୀର ମୁଁ'—'ଅବିଦ୍ୟା ମୁଁ' 'କଞ୍ଚା ମୁଁ' ଗୋଟାଏ ମୋଟା ଠେଙ୍ଗା ପରି । ସଚ୍ଚିଦାନନ୍ଦ ସାଗରର ଜଳକୁ ଏହି ଠେଙ୍ଗା ଯେପରି ଦୁଇଭାଗ କରୁଛି । କିନ୍ତୁ 'ଈଶ୍ୱରଙ୍କର 'ଦାସ ମୁଁ', 'ବାଳକର ମୁଁ' 'ବିଦ୍ୟା ମୁଁ' ଜଳ ଉପରେ ରେଖା ପରି । ଜଳ ଏକ, ବେଶ ଦେଖା ଯାଉଛି, କେବଳ ମଝିରେ ଗୋଟାଏ ରେଖା, ଯେପରି ଦୁଇ ଭାଗ ଜଳ । ବସ୍ତୁତଃ ଏକ ଜଳ, —ଦେଖାଯାଉଛି ।

''ଶଙ୍କରାଚାର୍ଯ୍ୟ 'ବିଦ୍ୟାର ମୁଁ', ରଖିଥିଲେ—ଲୋକଶିକ୍ଷା ପାଇଁ ।''

## ବ୍ରହ୍ମଜ୍ଞାନ ଲାଭ ପରେ 'ଭକ୍ତ ମୁଁ' । ଗୋପୀଭାବ ।

''ବ୍ରହ୍ମଜ୍ଞାନ ଲାଭ ପରେ ମଧ୍ୟ ଅନେକଙ୍କ ଭିତରେ ସେ 'ବିଦ୍ୟା ମୁଁ'—'ଭକ୍ତ ମୁଁ' ରଖି ଦିଅନ୍ତି । ହନୁମାନ ସାକାର ଓ ନିରାକାର ସାକ୍ଷାତ୍‌କାର କରିବାପରେ ସେବ୍ୟ ସେବକ ଭାବରେ, ଭକ୍ତ ଭାବରେ ରହୁଥିଲେ, ସେ ରାମଚନ୍ଦ୍ରଙ୍କୁ କହିଥିଲେ 'ରାମ ! ଯେତେବେଳେ ଭାବେ ତୁମେ ପୂର୍ଣ୍ଣ ମୁଁ ଅଂଶ ସେତେବେଳେ ଭାବେ, ତୁମେ ସେବ୍ୟ ମୁଁ ସେବକ, ଆଉ ରାମ, ଯେତେବେଳେ ତତ୍ତ୍ୱଜ୍ଞାନ ହୁଏ ସେତେବେଳେ ଦେଖେ 'ତୁମେ ମୁଁ, ମୁଁ ତୁମେ ।''

''ଯଶୋଦା କୃଷ୍ଣଙ୍କ ବିରହରେ କାତର ହୋଇ ଶ୍ରୀମତୀଙ୍କ ପାଖକୁ ଗଲେ । ତାଙ୍କର କଷ୍ଟ ଦେଖି ଶ୍ରୀମତୀ ତାଙ୍କୁ ନିଜ ରୂପରେ ଦେଖାଦେଲେ,—ଆଉ କହିଲେ **'କୃଷ୍ଣ ଚିଦାତ୍ମା ଆଉ ମୁଁ ଚିଦ୍ ଶକ୍ତି ।** ମା' ତୁମେ ମୋ ପାଖରୁ ବର ନିଅ ।' ଯଶୋଦା କହିଲେ, ମା ମୋର ବ୍ରହ୍ମଜ୍ଞାନ ଦରକାର ନାହିଁ, —କେବଳ ଏହି

ବର ଦିଅ ଯେପରି ଧ୍ୟାନରେ ଗୋପାଳର ରୂପ ସର୍ବଦା ଦର୍ଶନ କରିବି ଆଉ କୃଷ୍ଣଭକ୍ତ ସଙ୍ଗ ଯେପରି ସର୍ବଦା ମିଳେ; ଆଉ ଭକ୍ତମାନଙ୍କର ଯେପରି ମୁଁ ସେବା କରିପାରେ: —ଆଉ ତାଙ୍କର ଗୁଣ କୀର୍ତ୍ତନ ଯେପରି ମୁଁ ସର୍ବଦା କରିପାରେ ।''

''ଗୋପୀମାନଙ୍କର ଇଚ୍ଛା ହୋଇଥିଲା ଭଗବାନଙ୍କର ଈଶ୍ୱରୀୟ ରୂପ ଦର୍ଶନ କରନ୍ତେ । କୃଷ୍ଣ ସେମାନଙ୍କୁ ଯମୁନାରେ ବୁଡ଼ିବାକୁ କହିଲେ । ବୁଡ଼ିବା ସଙ୍ଗେ ସଙ୍ଗେ ବୈକୁଣ୍ଠରେ ସମସ୍ତେ ଉପସ୍ଥିତ; —ଭଗବାନଙ୍କର ସେହି ଷଡ଼ୈଶ୍ୱର୍ଯ୍ୟ ପୂର୍ଣ୍ଣରୂପ ଦର୍ଶନ ହେଲା, କିନ୍ତୁ ଭଲ ଲାଗିଲା ନାହିଁ । ସେତେବେଳେ କୃଷ୍ଣଙ୍କୁ ସେମାନେ କହିଲେ, 'ଆମମାନଙ୍କର ଗୋପାଳକୁ ଦର୍ଶନ, ଗୋପାଳର ସେବା, ଏହା ଯେପରି ରହେ ଆଉ ଆମେମାନେ କିଛି ଚାହୁଁ ନା ।''

''ମଥୁରା ଯିବା ଆଗରୁ କୃଷ୍ଣ ବ୍ରହ୍ମଜ୍ଞାନ ଦେବାର ଉଦ୍‌ଯୋଗ କରିଥିଲେ । କହିଥିଲେ, ମୁଁ ସର୍ବଭୂତର ଅନ୍ତରେ ଓ ବାହାରେ ଅଛି । ତୁମେମାନେ କ'ଣ ଗୋଟିଏ ରୂପ କେବଳ ଦେଖୁଛ ? ଗୋପୀମାନେ କହିଲେ,ଉଠଲୋ 'କୃଷ୍ଣ ତେବେ କ'ଣ ଆମମାନଙ୍କୁ ତ୍ୟାଗ କରିଯିବେ ତେଣୁ ବ୍ରହ୍ମଜ୍ଞାନର ଉପଦେଶ ଦେଉଛନ୍ତି ?''

''ଗୋପୀମାନଙ୍କର ଭାବ କ'ଣ ଜାଣ ? ଆମେମାନେ ରାଧାଙ୍କର, ରାଧା ଆମମାନଙ୍କର !''

ଜଣେ ଭକ୍ତ—ଏହି 'ଭକ୍ତ ମୁଁ' କ'ଣ ଏକାବେଳକେ ଯାଏ ନାହିଁ ?

### [Sri Ramakrishna and the Vedanta]

ଶ୍ରୀରାମକୃଷ୍ଣ—ସେ 'ମୁଁ' ଥରେ ଥରେ ଯାଏ । ସେତେବେଳେ ବ୍ରହ୍ମଜ୍ଞାନ ହୋଇ ସମାଧି ହୁଏ । ମୋର ମଧ ଯାଏ । କିନ୍ତୁ ବରାବର ନୁହେଁ । ସା ରେ ଗା ମା ପା ଧା ନି:- କିନ୍ତୁ ''ନିତ୍ୟରେ ଅନେକ କ୍ଷଣ ରହି ହୁଏ ନାହିଁ —ପୁଣି ତଳ ପର୍ଦ୍ଦାକୁ ଖସିବାକୁ ହୁଏ । ମୁଁ କହେ 'ମା ମୋତେ ବ୍ରହ୍ମଜ୍ଞାନ ଦିଅନା ।' ଆଗେ ସାକାରବାଦୀମାନେ ଖୁବ୍ ଆସୁଥିଲେ । ତା'ପରେ ଇଦାନୀଂ ବ୍ରହ୍ମଜ୍ଞାନୀମାନେ ଆସିବାକୁ ଆରମ୍ଭ କଲେ ! ସେତେବେଳେ ପ୍ରାୟ ଏହିପରି ବେହୋସ ହୋଇ ସମାଧିସ୍ଥ ହୋଇଥିଲି;ଆଉ ହୋସ ହେଲେ କହୁଥିଲି, ମା' ମୋତେ ବ୍ରହ୍ମଜ୍ଞାନ ଦିଅନା ।

ପଣ୍ଡିତ—ଆମେମାନେ ଡାକିଲେ ସେ ଶୁଣିବେ ?

ଶ୍ରୀରାମକୃଷ୍ଣ—**ଈଶ୍ୱର କଳ୍ପତରୁ** ! ଯେ ଯାହା ଚାହିଁବେ, ସେ ତାହା ପାଇବେ ! କିନ୍ତୁ କଳ୍ପତରୁ ପାଖରେ ରହି ଚାହିଁବାକୁ ହୁଏ, ତେବେ କଥା ରହେ ।

''ତେବେ ଗୋଟିଏ କଥା ଅଛି—ସେ ଭାବଗ୍ରାହୀ । ଯେ ଯାହା ମନେକରି ସାଧନା କରେ ତାହାର ସେହିପରି ହୁଏ । ଯେପରି ଭାବ ସେପରି ଲାଭ । ଜଣେ ଯାଦୁକର ରାଜାଙ୍କ ସମ୍ମୁଖରେ ଖେଳ ଦେଖାଉଛି । ଆଉ ମଝିରେ ମଝିରେ କହୁଛି,ରାଜା ଟଙ୍କା ଦିଅ, ଲୁଗା ଦିଅ । ଏପରି ସମୟରେ ତାହାର ଜିଭ ତାଳୁ ମୂଳରେ ଅଟକି ଗଲା । ସଙ୍ଗେ ସଙ୍ଗେ କୁମ୍ଭକ ହୋଇଗଲା । ଆଉ କଥା ନାହିଁ, ଶବ୍ଦ ନାହିଁ କି ସ୍ପନ୍ଦନ ନାହିଁ !

ସେତେବେଳେ ସମସ୍ତେ ତାହାକୁ ଇଟାରେ କବର ତିଆରି କରି ସେହି ଭାବରେ ପୋତି ରଖିଲେ । ହଜାର ବର୍ଷ ପରେ ସେହି କବରକୁ ଖୋଳିଲେ । ସେତେବେଳେ ଲୋକେ ଦେଖନ୍ତି ଯେ ଜଣେ ଯେପରି ସମାଧିସ୍ଥ ହୋଇ ବସିଅଛି । ସେମାନେ ତାହାକୁ ସାଧୁ ମନେ କରି ପୂଜା କରିବାକୁ ଲାଗିଲେ । ଏପରି ସମୟରେ ହଲ୍‌ଚଲ୍ କରୁ କରୁ ତାହାର ଜିଭ ତାଳୁରୁ ଛାଡ଼ିଗଲା । ସେତେବେଳେ ତାହାର ଚୈତନ୍ୟ ହେଲା; ସେ ଚିତ୍କାର କରି କହିବାକୁ ଲାଗିଲା, "ଲାଗ୍ ଭେଲ୍‌କୀ ଲାଗ୍ ! ରାଜା ଟଙ୍କା ଦିଅ, ଲୁଗା ଦିଅ ।"

"ମୁଁ କାନ୍ଦୁଥିଲି ଆଉ କହୁଥିଲି, **ମା ବିଚାର ବୁଦ୍ଧିରେ ବଜ୍ରାଘାତ ହେଉ !"**

ପଣ୍ଡିତ — ଆପଣଙ୍କର ମଧ୍ୟ (ବିଚାର ବୁଦ୍ଧି) ଥିଲା ।

ଶ୍ରୀରାମକୃଷ୍ଣ — ହଁ, ଏକ ସମୟରେ ଥିଲା ।

ପଣ୍ଡିତ — ତେବେ କହନ୍ତୁ, ଆମମାନଙ୍କର ମଧ୍ୟ ଯିବ । ଆପଣଙ୍କର କିପରି ଭାବରେ ଗଲା ?

ଶ୍ରୀରାମକୃଷ୍ଣ — ଏହିପରି କିଛି କରୁକରୁ ଗଲା ।

## (୪)

## ଈଶ୍ୱର ଦର୍ଶନ ଜୀବନର ଉଦ୍ଦେଶ୍ୟ । ତାହାର ଉପାୟ ।

### (ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟ । କେହିକେହି ଐଶ୍ୱର୍ଯ୍ୟ ଜ୍ଞାନ ଚାହାନ୍ତି ନାହିଁ ।)

ଠାକୁର କିୟତ୍‌କ୍ଷଣ ଚୁପ୍ ହୋଇ ବସିଛନ୍ତି । ପରେ କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ **ଈଶ୍ୱର କଳ୍ପତରୁ** । ତାଙ୍କ ପାଖରେ ଚାହିଁବାକୁ ହୁଏ । ସେତେବେଳେ ଯେ ଯାହା ଚାହେଁ ତାହା ପାଏ ।

"ଈଶ୍ୱର କେତେ କଅଣ କରିଛନ୍ତି । ତାଙ୍କର ଅନନ୍ତ ବ୍ରହ୍ମାଣ୍ଡ,ତାଙ୍କର ଅନନ୍ତ ଐଶ୍ୱର୍ଯ୍ୟର ଜ୍ଞାନ ଆମର ଦରକାର କ'ଣ । ଯଦି ଜାଣିବାକୁ ଇଚ୍ଛାହୁଏ, ଆଗେ ତାଙ୍କୁ ଲାଭ କରିବାକୁ ହେବ, ତା'ପରେ ସେ କହିଦେବେ । ଯଦୁ ମଲ୍ଲିକଙ୍କର କେତୋଟି ଘର, କେତେ କମ୍ପାନୀର କାଗଜ ଅଛି ଏସବୁ କଥାରେ ମୋର କି ଦରକାର । ମୋର ଦରକାର ଯେମିତି ସେମିତି କରି ବାବୁଙ୍କ ସଙ୍ଗରେ କଥାବାର୍ତ୍ତା କରିବାକୁ ହେବ । ତାହା ସୀମାନା ଲଙ୍ଘନ କରି ହେଉ — ପ୍ରାର୍ଥନା କରି ହେଉ — ବା ଦରୁଆନ୍‌ର ଧକ୍‌କା ଖାଇ ହେଉ — କଥାବାର୍ତ୍ତା ପରେ କେତେ କଅଣ ଅଛି ଥରେ ପ୍ରଶ୍ନ କଲେ ବାବୁ କହିଦେବେ । ବାବୁଙ୍କ ସଙ୍ଗରେ ଆଳାପ ହେଲେ, ଅମଲାମାନେ ମଧ୍ୟ ମାନନ୍ତି । (ସମସ୍ତଙ୍କର ହାସ୍ୟ) ।"

"କେହି କେହି ଐଶ୍ୱର୍ଯ୍ୟର ଜ୍ଞାନ ଚାହାନ୍ତି ନାହିଁ । ଶୁଣ୍ଡି ଦୋକାନରେ କେତେ ମହଣ ମଦ ଅଛି ମୋର କି ଦରକାର । ମୋର ବୋତଲେ ହେଲେ ଯଥେଷ୍ଟ । ଐଶ୍ୱର୍ଯ୍ୟ ଜ୍ଞାନ ଚାହିଁବି କଅଣ । ଯେଉଁ ଟିକକ ମଦ ଖାଇଛି ସେତିକିରେ ମତ୍ତ ।"

## ଜ୍ଞାନ ଯୋଗ ବଡ଼ କଠିନ । ଅବତାରାଦି ନିତ୍ୟସିଦ୍ଧ ।

''ଭକ୍ତିଯୋଗ ଜ୍ଞାନଯୋଗ ଏ ସବୁ ହେଉଛି ପଥ । ଯେଉଁ ପଥ ଦେଇ ଯାଅ ତାଙ୍କୁ ପାଇବ । ଭକ୍ତିର ପଥ ସହଜ ପଥ । ଜ୍ଞାନ ବିଚାରର ପଥ କଠିନ ପଥ ।''

''କେଉଁ ପଥଟି ଭଲ ଏତେ ବିଚାର କରିବା କଅଣ ଦରକାର । ବିଜୟ ସଙ୍ଗରେ ଅନେକ ଦିନ କଥା ହୋଇଥିଲା;ବିଜୟକୁ କହିଲି, ଜଣେ ପ୍ରାର୍ଥନା କରୁଥିଲା, 'ହେ ଈଶ୍ୱର ! ତୁମର ସ୍ୱରୂପ କଅଣ, ତୁମେ କିଏ, କିପରି ଥାଅ ଦୟାକରି ମୋତେ ଦେଖାଦିଅ ।''

''ଜ୍ଞାନ ବିଚାରର ପଥ କଠିନ । ପାର୍ବତୀ ଗିରିରାଜଙ୍କୁ ନାନା ଈଶ୍ୱରୀୟ ରୂପରେ ଦେଖା ଦେଇ କହିଲେ, 'ପିତା ! ଯଦି ବ୍ରହ୍ମଜ୍ଞାନ ଚାହଁ ତେବେ ସାଧୁସଙ୍ଗ କର ।''

''ବ୍ରହ୍ମ ଯେ କଅଣ ମୁହଁରେ କୁହାଯାଏ ନାହିଁ । ରାମଗୀତାରେ ଅଛି, କେବଳ ତଟସ୍ଥ ଲକ୍ଷଣ ଦ୍ୱାରା ତାଙ୍କୁ ବୁଝାଯାଏ; ଯେପରି ଗଙ୍ଗା ଉପରେ ଗୋପାଳମାନଙ୍କର ଗ୍ରାମ । ସୁତରାଂ ଗ୍ରାମଟି ଗଙ୍ଗା ତଟ ଉପରେ ଅଛି ବୋଲି ବୁଝିବାକୁ ହେବ ।''

''ନିରାକାର ବ୍ରହ୍ମ ସାକ୍ଷାତ୍କାର ହେବ ନାହିଁ କାହିଁକି ? ତେବେ ବଡ଼ କଠିନ । ବିଷୟ ବୁଦ୍ଧିର ଲେଶ ରହିଲେ ହେବ ନାହିଁ । ଇନ୍ଦ୍ରିୟର ଯେତେ ବିଷୟ ବସ୍ତୁ ଅଛି, ଅର୍ଥାତ୍ ରୂପ, ରସ ଗନ୍ଧ,ସ୍ପର୍ଶ,ଶବ୍ଦ ଏ ସମସ୍ତ ତ୍ୟାଗ ହେଲେ, —ମନର ଲୟ ହେଲେ—ତେବେ ଅନୁଭବରେ ବୋଧରେ ବୋଧହୁଏ । ଆଉ ଅସ୍ତିମାତ୍ର ଜଣାଯାଏ ।''

ପଣ୍ଡିତ—ଅସ୍ତିତ୍ୱୋପଲବ୍ଧବ୍ୟ ଇତ୍ୟାଦି ।

ଶ୍ରୀରାମକୃଷ୍ଣ—ତାଙ୍କୁ ପାଇବାକୁ ଗଲେ ଗୋଟିଏ ଭାବ ଆଶ୍ରୟ କରିବାକୁ ହୁଏ,—ସଖୀଭାବ ବା ଦାସୀଭାବ କିମ୍ବା ସନ୍ତାନ ଭାବ ।

ମଣି ମଲ୍ଲିକ—ତେବେ ଆଣ୍ଟ ଆସିବ ।

ଶ୍ରୀରାମକୃଷ୍ଣ—ମୁଁ ସଖୀ ଭାବରେ ଅନେକ ଦିନ ଥିଲି । କହୁଥିଲି, ମୁଁ ଆନନ୍ଦମୟୀ ବ୍ରହ୍ମମୟୀଙ୍କର ଦାସୀ—ଆହେ ଦାସୀମାନେ ମୋତେ ମଧ୍ୟ ତୁମ ପରି ଦାସୀକରି ନିଅ, ମୁଁ ଗର୍ବ କରି କହି କହି ଚାଲିଯିବି, ଯେ 'ମୁଁ ବ୍ରହ୍ମମୟୀଙ୍କର ଦାସୀ ।'

''କାହାରି କାହାରି ସାଧନା ନ କରି ଈଶ୍ୱର ଲାଭହୁଏ, —ସେମାନଙ୍କୁ ନିତ୍ୟସିଦ୍ଧ କହନ୍ତି । ଯେଉଁମାନେ ଜପ ତପାଦି ସାଧନା କରି ଈଶ୍ୱର ଲାଭ କରିଅଛନ୍ତି ସେମାନଙ୍କୁ କହନ୍ତି ସାଧନ ସିଦ୍ଧ । ପୁଣି କେହି କୃପା ସିଦ୍ଧ, —ଯେପରି ହଜାର ବର୍ଷର ଅନ୍ଧକାର ଘର, ପ୍ରଦୀପ ନେଇଗଲେ କ୍ଷଣକରେ ଆଲୁଅ ହୋଇଯାଏ ।''

''ପୁଣି ଅଛନ୍ତି ହଠାତ୍ ସିଦ୍ଧ, —ଯେପରି ଗରୀବର ପୁଅ ବଡ଼ଲୋକର ନଜରରେ ପଡ଼ିଯାଇଛି । ବାବୁ ତାଙ୍କୁ ନିଜ ଝିଅ ସହିତ ବିବାହ ଦେଲେ, —ତାହା ସାଙ୍ଗକୁ ଘର, ଯାନବାହନ ଦାସଦାସୀ ସବୁ ହୋଇଗଲା ।''

''ଆହୁରି ଅଛନ୍ତି ସ୍ୱପ୍ନସିଦ୍ଧ, —ସ୍ୱପ୍ନରେ ଦର୍ଶନ ହେଲା ।''

ସୁରେନ୍ଦ୍ର (ସହାସ୍ୟ)—ଆମେମାନେ ବର୍ତ୍ତମାନ ଶୋଉ ପରେ ବାବୁ ହୋଇଯିବୁ ।

ଶ୍ରୀରାମକୃଷ୍ଣ—(ସସ୍ନେହ) ତୁମେ ତ ବାବୁ ଅଛ । କ'ରେ ଆକାର ଦେଲେ 'କା' ହୁଏ;– ଆଉ ଗୋଟାଏ ଆକାର ଦେବା ବୃଥା; —ଦେଲେ ସେହି 'କା' ହେବ । (ସମସ୍ତଙ୍କର ହାସ୍ୟ) ।

ନିତ୍ୟସିଦ୍ଧ ଅନ୍ୟ ପ୍ରକାର, —ଯେପରି ଅରଣି କାଠ, ଟିକିଏ ଘସିଲା ମାତ୍ରେ ଅଗ୍ନି—ଆଉ ନ ଘସିଲେ ମଧ୍ୟ ହୁଏ । ଟିକିଏ ସାଧନା କଲେ ନିତ୍ୟସିଦ୍ଧ ଭଗବାନଙ୍କୁ ଲାଭକରେ, ପୁଣି ସାଧନା ନ କଲେ ମଧ୍ୟ ପାଏ ।

"ତେବେ ନିତ୍ୟସିଦ୍ଧ ଭଗବାନ ଲାଭ କରିବା ପରେ ସାଧନା କରେ । ଯେପରି ଲାଉ କଖାରୁ ଗଛରେ ଆଗ ଫଳ ହୁଏ ତା'ପରେ –ଫୁଲ ।"

ପଣ୍ଡିତ ଲାଉ କଖାରୁର ଫଳ ଆଗ ହୁଏ ଶୁଣି ହସୁଛନ୍ତି ।

ଶ୍ରୀରାମକୃଷ୍ଣ—ପୁଣି ନିତ୍ୟସିଦ୍ଧ ହୋମା ପକ୍ଷୀ ସଦୃଶ୍ୟ । ତାହାର ମା ଆକାଶରେ ଅତି ଉଚ୍ଚରେ ଥାଏ । ସେ ଆକାଶରେ ଅଣ୍ଡା ଦିଏ । ଅଣ୍ଡା –ଫୁଟି ଛୁଆ ପୃଥିବୀ ଆଡ଼କୁ ପଡୁଥାଏ । ପଡୁ ପଡୁ ଡେଣା ଉଠେ ଓ ଆଖି ଫିଟେ । କିନ୍ତୁ ତଳେ ପଡ଼ିବା ପୂର୍ବରୁ ମାଆ ଆଡ଼କୁ ଶୀଘ୍ର ଉଡ଼ିଯାଏ । କେଉଁଠାରେ ମା କେଉଁଠାରେ ମା ! ଦେଖନା ପ୍ରହ୍ଲାଦଙ୍କର 'କ' ଲେଖୁ ଲେଖୁ ଚକ୍ଷୁରେ ଲୋତକଧାରା ।

ଠାକୁର ନିତ୍ୟସିଦ୍ଧ କଥାରେ ଅରଣି କାଷ୍ଠ ଓ ହୋମା ପକ୍ଷୀର ଦୃଷ୍ଟାନ୍ତ ଦ୍ୱାରା କଅଣ ନିଜର ଅବସ୍ଥା ବୁଝାଉଛନ୍ତି ?

ଠାକୁର ପଣ୍ଡିତଙ୍କର ବିନୀତ ଭାବ ଦେଖି ସନ୍ତୁଷ୍ଟ ହୋଇଛନ୍ତି ଓ ପଣ୍ଡିତଙ୍କ ସ୍ୱଭାବ ବିଷୟରେ ଭକ୍ତମାନଙ୍କୁ କହୁଛନ୍ତି ।

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)—ଏହାଙ୍କର ସ୍ୱଭାବ ଭଲ । ମାଟି କାନ୍ଥରେ କଣ୍ଟା ମାରିଲେ କୌଣସି କଷ୍ଟ ହୁଏ ନାହିଁ । ପଥରରେ କଣ୍ଟାର ମୁନ ଭାଙ୍ଗିଯାଏ ତେବେ ମଧ୍ୟ ପଥରର କିଛି ହୁଏ ନାହିଁ । ଏପରି ସବୁ ଲୋକ ଅଛନ୍ତି ହଜାର ଈଶ୍ୱର–କଥା ଶୁଣନ୍ତୁ କୌଣସି ମତେ ଚୈତନ୍ୟ ହୁଏ ନାହିଁ; —ଯେପରି କୁମ୍ଭୀର ଦେହରେ ତରବାରୀର ଚୋଟ ଲାଗେ ନାହିଁ ।

## ପାଣ୍ଡିତ୍ୟ ଅପେକ୍ଷା ସାଧନା ଉତ୍କୃଷ୍ଟ । ବିବେକ ।

ପଣ୍ଡିତ—କୁମ୍ଭୀର ପେଟରେ ବର୍ଚ୍ଛା ମାରିଲେ ହୁଏ (ସମସ୍ତଙ୍କର ହାସ୍ୟ) ।

ଶ୍ରୀରାମକୃଷ୍ଣ (ସହାସ୍ୟ)—ଗୁଡ଼ିଏ ଶାସ୍ତ୍ର ପଢ଼ିଲେ କଅଣ ହେବ । ଫିଲୋସଫୀ (ଦର୍ଶନ) (ସମସ୍ତଙ୍କର ହାସ୍ୟ) ।

ପଣ୍ଡିତ (ସହାସ୍ୟ)—ଠିକ୍ କହିଲେ ଫ୍ୟାଲୋଜଫି ।

ଶ୍ରୀରାମକୃଷ୍ଣ—ଲମ୍ବା ଲମ୍ବା କଥା କହିଲେ କଅଣ ହେବ ? ଧନୁର୍ବାଣ ଶିକ୍ଷା କରିବାକୁ ହେଲେ ଆଗେ କଦଳୀ ଗଛକୁ ଲକ୍ଷ୍ୟ କରିବାକୁ ହୁଏ, —ତା' ପରେ ସରୁ ବାଉଁଶ, ତା'ପରେ ଜଳୁଥିବା ଦୀପଶିଖା, ତା'ପରେ ଉଡ଼ିଯାଉଛି ଯେଉଁ ପକ୍ଷୀ ।

''ତେଣୁ ଆଗେ **ସାକାରରେ** ମନ ସ୍ଥିର କରିବାକୁ ହୁଏ ।''

''ପୁଣି ତ୍ରିଗୁଣାତୀତ ଭକ୍ତ ଅଛନ୍ତି; — ନିତ୍ୟ ଭକ୍ତ ଯେପରି ନାରଦାଦି । ସେ ଭକ୍ତିରେ ଚିନ୍ମୟ ଶ୍ୟାମ, ଚିନ୍ମୟ ଧାମ, ଚିନ୍ମୟ ସେବକ;ନିତ୍ୟ ଈଶ୍ୱର, ନିତ୍ୟ ଭକ୍ତ, ନିତ୍ୟ ଧାମ ।''

''ଯେଉଁମାନେ ନେତି ନେତି ଦ୍ୱାରା ଜ୍ଞାନ ବିଚାର କରୁଛନ୍ତି, ସେମାନେ ଅବତାର ମାନନ୍ତି ନାହିଁ । ହାଜରା ବେଶ୍ କହେ, — ଭକ୍ତଙ୍କ ପାଇଁ କେବଳ ଅବତାର, — ଜ୍ଞାନୀମାନଙ୍କ ପାଇଁ ଅବତାର ନୁହେଁ, — ସେମାନେ ତ ସୋଽହଂ ହୋଇ ବସିଛନ୍ତି ।

ଠାକୁର ଓ ସମସ୍ତ ଭକ୍ତମାନେ କିଛି ସମୟ ଚୁପ୍ ହୋଇ ବସିଛନ୍ତି । ଏଥର ପଣ୍ଡିତ କଥା କହୁଅଛନ୍ତି ।

ପଣ୍ଡିତ — ଆଜ୍ଞା, ନିଷ୍ଠୁର ଭାବଟା କିପରି ଯାଏ ? ହାସ୍ୟ ଦେଖିଲେ ମାଂସପେଶୀ (Muscles) ମନେପଡ଼େ । ଶୋକ ଦେଖିଲେ ସ୍ନାୟବିକ କ୍ରିୟା (Nurves system) ମନେପଡ଼େ ।

ଶ୍ରୀରାମକୃଷ୍ଣ (ସହାସ୍ୟ) — ନାରାୟଣ ଶାସ୍ତ୍ରୀ ତେଣୁ କହୁଥିଲେ, 'ଶାସ୍ତ୍ର ପଢ଼ାର ଦୋଷ — ତର୍କ ବିଚାର ଏହିସବୁ ଆଣିଦିଏ ।'

ପଣ୍ଡିତ — ଆଜ୍ଞା, ଉପାୟ କ'ଣ କିଛି ନାହିଁ ? ଟିକିଏ ମାର୍ଦ୍ଦବ —

ଶ୍ରୀରାମକୃଷ୍ଣ — ଆଛା; — ବିବେକ । ଗୋଟିଏ ଗୀତ ଅଛି —

''ବିବେକ ନାମେ ତା'ର ବେଟାରେ ତତ୍ତ୍ୱ କଥା ତାୟ ସୁଧାବି ।''

''ବିବେକ ନ ହେଲେ କଥା କେତେବେଳେ ଠିକ୍ ଠିକ୍ ହୁଏନାହିଁ । ସାମାଧ୍ୟାୟୀ ଅନେକ ବ୍ୟାଖ୍ୟା ପରେ କହିଲେ, 'ଈଶ୍ୱର ନୀରସ' । ଜଣେ କହିଥିଲେ, ମୋ ମାମୁଁଙ୍କ ଗୁହାଳରେ ଅନେକ ଘୋଡ଼ା ଅଛନ୍ତି । ଗୁହାଳରେ କ'ଣ ଘୋଡ଼ା ରୁହନ୍ତି ? (ସହାସ୍ୟ) ତୁମେ ଛେନାବରା ହୋଇଛ । ବର୍ତ୍ତମାନ ଚାରିପାଞ୍ଚ ଦିନ ରସରେ ପଡ଼ି ରହିଲେ, ତୁମ ପକ୍ଷେ ଭଲ, ଅନ୍ୟର ମଧ୍ୟ ଭଲ । ଚାରିପାଞ୍ଚ ଦିନ ।''

ପଣ୍ଡିତ (ଈଷତ୍ ହସି) — ଛେନାବରା ପୋଡ଼ି ଅଙ୍ଗାର ହୋଇଯାଇଛି ।

ଶ୍ରୀରାମକୃଷ୍ଣ (ସହାସ୍ୟ) — ନା, ନା, ଅସର୍ପାର ରଙ୍ଗ ହୋଇଛି ।

ହାଜରା — ବେଶ୍ ଭଜା ହୋଇଛି, — ବର୍ତ୍ତମାନ ରସ ଖାଇବ ବେଶ୍ ।

## ପୂର୍ବକଥା — ତୋତାପୁରୀଙ୍କ ଉପଦେଶ । ଗୀତାର ଅର୍ଥ । ବ୍ୟାକୁଳ ହୁଅ ।

ଶ୍ରୀରାମକୃଷ୍ଣ — କଅଣ ଜାଣ, — ଶାସ୍ତ୍ର ବେଶି ପଢ଼ିବା ଦରକାର ନାହିଁ । ବେଶି ପଢ଼ିଲେ ତର୍କ ବିଚାର ଆସିପଡ଼େ । ଲଙ୍ଗୁଳୀ ମୋତେ ଶିଖାଉଥିଲେ — ଉପଦେଶ ଦେଉଥିଲେ — ଗୀତା ଦଶଥର କହିଲେ ଯାହା ହୁଏ ତାହା ହିଁ ଗୀତାର ସାର । — ଅର୍ଥାତ୍ 'ଗୀତା', 'ଗୀତା' ଦଶଥର କହୁ କହୁ 'ତ୍ୟାଗୀ', 'ତ୍ୟାଗୀ' ହୋଇଯାଏ ।''

"ଉପାୟ—ବିବେକ, ବୈରାଗ୍ୟ, ଆଉ ଈଶ୍ୱରଙ୍କ ଠାରେ ଅନୁରାଗ । କିପରି ଅନୁରାଗ ? ଈଶ୍ୱରଙ୍କ ପାଇଁ ପ୍ରାଣ ବ୍ୟାକୁଳ;—ଯେପରି ବ୍ୟାକୁଳ ହୋଇ 'ବତ୍ସ ପଛରେ ଗାଭୀ ଧାଏଁ ।"

ପଣ୍ଡିତ—ବେଦରେ ଠିକ୍ ଏହିପରି ଅଛି; ଗାଭୀ ଯେପରି ବତ୍ସ ପାଇଁ ଡାକେ, ତୁମକୁ ଆମେ ସେହିପରି ଡାକୁଛୁ ।

ଶ୍ରୀରାମକୃଷ୍ଣ—ବ୍ୟାକୁଳ ହୋଇ କାନ୍ଦ । ବିବେକ ବୈରାଗ୍ୟ ସହ ଯଦି କେହି ସର୍ବତ୍ୟାଗ କରିପାରେ, —ତାହାହେଲେ ସାକ୍ଷାତ୍କାର ହେବ ।

"ସେ ବ୍ୟାକୁଳତା ଆସିଲେ ଉନ୍ମାଦର ଅବସ୍ଥା ହୁଏ—ଜ୍ଞାନ ପଥରେ ରହ, ଅଥବା ଭକ୍ତି ପଥରେ ରହ । ଦୁର୍ବାସାଙ୍କର ଜ୍ଞାନୋନ୍ମାଦ ହୋଇଥିଲା ।"

"ସଂସାରୀର ଜ୍ଞାନ ଆଉ ସର୍ବତ୍ୟାଗୀର ଜ୍ଞାନ:—ଅନେକ ତଫାତ୍ । ସଂସାରୀର ଜ୍ଞାନ-ଦୀପର ଆଲୋକ ପରି ଘର ଭିତରଟି ଆଲୁଅ ହୁଏ; —ନିଜର ଦେହ, ଘରେ ଥିବା କିଛି ଜିନିଷ ଛଡ଼ା ଆଉ କିଛି ଦେଖିହୁଏ ନାହିଁ । ସର୍ବତ୍ୟାଗୀର ଜ୍ଞାନ, ସୂର୍ଯ୍ୟଙ୍କ ଆଲୋକ ପରି । ସେ ଆଲୋକରେ ଘରର ଭିତର ବାହାର ସବୁ ଦେଖାଯାଏ । ଚୈତନ୍ୟଦେବଙ୍କର ଜ୍ଞାନ ସୌରଜ୍ଞାନ-ଜ୍ଞାନ ସୂର୍ଯ୍ୟଙ୍କର ଆଲୋକ । ତାଙ୍କ ଭିତରେ ଓ ବାହାରେ ଭକ୍ତି ଚନ୍ଦ୍ରର ଶୀତଳ ଆଲୋକ ଥିଲା । ବ୍ରହ୍ମଜ୍ଞାନ, ଭକ୍ତି-ପ୍ରେମ, ଉଭୟ ଥିଲା ।

ଠାକୁର କ'ଣ ଚୈତନ୍ୟଦେବଙ୍କର ଅବସ୍ଥା ବର୍ଣ୍ଣନା କରି ନିଜର ଅବସ୍ଥା କହୁଛନ୍ତି ?

## ଜ୍ଞାନଯୋଗ । ଭକ୍ତିଯୋଗ । କଳିରେ ନାରଦୀୟ ଭକ୍ତି ।

ଶ୍ରୀରାମକୃଷ୍ଣ—ଅଭାବମୁଖ ଚୈତନ୍ୟ ଆଉ ଭାବମୁଖ ଚୈତନ୍ୟ । ଭାବଭକ୍ତିର ପଥ ଏକ ପ୍ରକାର; ଆଉ ଅଭାବର ପଥ (ନେତି ନେତି-ଜ୍ଞାନ ବିଚାର) ଅନ୍ୟ ପ୍ରକାର ଅଟେ । ତୁମେ ଅଭାବର କଥା କହୁଛ । କିନ୍ତୁ "ସେ ବଡ଼ କଠିନ ଠାଇଁ ଗୁରୁ ଶିଷ୍ୟର ଦେଖାନାହିଁ ।" ଜନକ ରାଜାଙ୍କ ପାଖକୁ ଶୁକଦେବ ବ୍ରହ୍ମଜ୍ଞାନ ଶିକ୍ଷା କରିବା ପାଇଁ ଗଲେ । ଜନକ କହିଲେ, "ଆଗେ ଦକ୍ଷିଣା ଦେବାକୁ ହେବ; —ତୁମର ବ୍ରହ୍ମଜ୍ଞାନ ହେଲେ ଆଉ ଦକ୍ଷିଣା ଦେବ ନାହିଁ—କାହିଁକି ନା ସେତେବେଳେ ଗୁରୁଶିଷ୍ୟଙ୍କର ଭେଦ ରହେ ନାହିଁ ।

"ଭାବ ଅଭାବ ଉଭୟ ହିଁ ପଥ । ଅନନ୍ତ ମତ ଅନନ୍ତ ପଥ । କିନ୍ତୁ ଗୋଟିଏ କଥା ଅଛି । **କଳିରେ ନାରଦୀୟ ଭକ୍ତି**—ଏହି ବିଧାନ । ଏହି ପଥରେ ପ୍ରଥମେ ଭକ୍ତି, ଭକ୍ତି ପାଚିଲେ ଭାବ, ଭାବ ଅପେକ୍ଷା ଉତ୍କୃଷ୍ଟ ମହାଭାବ ଆଉ ପ୍ରେମ । ମହାଭାବ, ପ୍ରେମ ଜୀବର ହୁଏନାହିଁ । ଯାହାଙ୍କର ତାହା ହୋଇଛି ତାଙ୍କର ବସ୍ତୁଲାଭ ଅର୍ଥାତ୍ ଈଶ୍ୱର ଲାଭ ହୋଇଛି ।"

ପଣ୍ଡିତ—ଆଜ୍ଞା, କହିବାକୁ ଗଲେ ତ ଅନେକ କଥା ଦେଇ ବୁଝାଇବାକୁ ହୁଏ ।

ଶ୍ରୀରାମକୃଷ୍ଣ—ତୁମେ ଲାଞ୍ଜ ମୁଣ୍ଡ ବାଦ ଦେଇ କହିବ ହେ ।

## (୫)

## କାଳୀ ବ୍ରହ୍ମ । ବ୍ରହ୍ମଶକ୍ତି ଅଭେଦ । ସର୍ବଧର୍ମ ସମନ୍ୱୟ ।

ଶ୍ରୀଯୁକ୍ତ ମଣି ମଲ୍ଲିକଙ୍କ ସଙ୍ଗରେ ପଣ୍ଡିତ କଥା କହୁଛନ୍ତି । ମଣି ମଲ୍ଲିକ ବ୍ରାହ୍ମସମାଜର ଲୋକ । ପଣ୍ଡିତ ବ୍ରାହ୍ମସମାଜର ଦୋଷ ଗୁଣ ବିଷୟରେ ଘୋର ତର୍କ କରୁଛନ୍ତି । ଠାକୁର ଛୋଟ ଖଟଟିରେ ବସି ଦେଖୁଛନ୍ତି ଓ ହାସ୍ୟ କରୁଛନ୍ତି । ମଝିରେ ମଝିରେ କହୁଛନ୍ତି, ''ଏହା ସତ୍ତ୍ୱର ତମଃ—ବୀରର ଭାବ । ଏହିସବୁ ଦରକାର । ଅନ୍ୟାୟ ଅସତ୍ୟ ଦେଖିଲେ ଚୁପ୍ ହୋଇ ରହିବା ଉଚିତ୍ ନୁହେଁ । ମନେକର ନଷ୍ଟା ସ୍ତ୍ରୀ ପରମାର୍ଥ ହାନି କରିବାକୁ ଆସୁଛି, ସେତେବେଳେ ଏହିପରି ବୀରର ଭାବ ଦେଖାଇବାକୁ ହୁଏ । ସେତେବେଳେ କହିବ, କ'ଣ ଶାଳୀ, ମୋର ପରମାର୍ଥ ହାନି କରିବୁ ! —ଏହିକ୍ଷଣି ତୋର ଦେହ ଚିରି ଦେବି ।''

ପୁଣି ହସି କହୁଛନ୍ତି, ''ମଣି ମଲ୍ଲିକଙ୍କର ବ୍ରାହ୍ମସମାଜର ମତ ଅନେକ ଦିନରୁ— ତାଙ୍କ ଭିତରେ ତୁମର ମତ ପ୍ରବେଶ କରାଇପାରିବ ନାହିଁ । ପୁରୁଣା ସଂସ୍କାର କିପରି ଜାଣ ? ଜଣେ ହିନ୍ଦୁ ବଡ଼ ଭକ୍ତ ଥିଲେ—ସର୍ବଦା ଜଗଦମ୍ବାଙ୍କର ପୂଜା ଆଉ ନାମ କରୁଥିଲେ । ମୁସଲମାନ୍‌ମାନଙ୍କର ଯେତେବେଳେ ରାଜ୍ୟ ହେଲା, ସେତେବେଳେ ସେହି ଭକ୍ତଙ୍କୁ ଧରି ମୁସଲମାନ୍ କରିଦେଲେ, ଆଉ କହିଲେ, ତୁମେ ବର୍ତ୍ତମାନ ମୁସଲମାନ୍ ହୋଇଛ । କହିବ ଆଲ୍ଲା ! କେବଳ ଆଲ୍ଲା ନାମ ଜପ କର । ସେ ଅନେକ କଷ୍ଟରେ ଆଲ୍ଲା, ଆଲ୍ଲା କହିବାକୁ ଲାଗିଲା । କିନ୍ତୁ ଥରେ ଥରେ କହି ପକାଏ 'ଜଗଦମ୍ବା' ସେତେବେଳେ ମୁସଲମାନ୍‌ମାନେ ତାଙ୍କୁ ମାରିବାକୁ ଗଲେ । ସେ କହିଲେ, ରାଣ ଅଛି ସେଖ୍‌ଜୀ ! ମୋତେ ମାରିବ ନାହିଁ;ମୁଁ ତୁମ୍ଭର ଆଲ୍ଲାଙ୍କର ନାମ କରିବାକୁ ଖୁବ୍ ଚେଷ୍ଟା କରୁଛି, କିନ୍ତୁ ଆମର ଜଗଦମ୍ବା ମୋର କଣ୍ଠ ପର୍ଯ୍ୟନ୍ତ ରହିଛନ୍ତି, ତୁମର ଆଲ୍ଲାଙ୍କୁ ଠେଲି ଠେଲି ଦେଉଛନ୍ତି (ସମସ୍ତଙ୍କର ହାସ୍ୟ) ।

(ପଣ୍ଡିତଙ୍କ ପ୍ରତି ସହାସ୍ୟ)—''ମଣି ମଲ୍ଲିକଙ୍କୁ କିଛି କହ ନାହିଁ ।''

''ଜାଣ ! ରୁଚି ଭେଦ—ଯାହାର ଯାହା ପେଟରେ ସହେ । ସେ ନାନା ଧର୍ମ ନାନା ମତ କରିଛନ୍ତି—ଅଧିକାରୀ ବିଶେଷଙ୍କ ପାଇଁ । ସମସ୍ତେ ବ୍ରହ୍ମଜ୍ଞାନର ଅଧିକାରୀ ନୁହନ୍ତି, ତେଣୁ ସେ ସାକାର ପୂଜାର ବ୍ୟବସ୍ଥା କରିଛନ୍ତି । ମା ପିଲାମାନଙ୍କ ପାଇଁ ଘରକୁ ମାଛ ଆଣିଛନ୍ତି । ସେହି ମାଛରେ ଝୋଳ, ଖଟା, ଭଜା ପୁଣି ପଲାଉ ମଧ୍ୟ କଲେ । ସମସ୍ତଙ୍କ ପେଟରେ କିନ୍ତୁ ପଲାଉ ସହେ ନାହିଁ; ତେଣୁ କାହା କାହା ପାଇଁ ମାଛର ଝୋଳ କରିଛନ୍ତି,—ସେମାନେ ପେଟ ରୋଗା । କାହାର ଇଚ୍ଛା ଖଟା ଖାଇବାକୁ ବା ମାଛଭଜା ଖାଇବାକୁ । ପ୍ରକୃତି ଅଲଗା—ଅଧିକାରୀ ଭେଦ ବି ଅଛି ।

ସମସ୍ତେ ଚୁପ୍ କରିଅଛନ୍ତି । ଠାକୁର ପଣ୍ଡିତଙ୍କୁ କହୁଛନ୍ତି, 'ଏଥର ଠାକୁର ଦର୍ଶନ କର, ଆଉ ଉଦ୍ୟାନରେ ଟିକିଏ ବୁଲ ।'

ସମୟ ସାଢ଼େ ପାଞ୍ଚଟା ବାଜିଛି । ପଣ୍ଡିତ ଓ ତାଙ୍କର ବନ୍ଧୁମାନେ ଗାତ୍ରୋତ୍‌ଥାନ

କଲେ, ଠାକୁର ମନ୍ଦିର ଦେଖିବେ । ଭକ୍ତମାନେ ମଧ୍ୟ କେହି କେହି ସେମାନଙ୍କ ସଙ୍ଗରେ ଗଲେ ।

କିୟତ୍‌କ୍ଷଣ ପରେ ଠାକୁର ମାଷ୍ଟରଙ୍କ ସହ ବୁଲୁ ବୁଲୁ ଗଙ୍ଗାତୀରରେ ବନ୍ଧାଘାଟ ଆଡ଼କୁ ଯାଉଛନ୍ତି । ଠାକୁର ମାଷ୍ଟରଙ୍କୁ କହୁଛନ୍ତି, 'ବାବୁରାମ ବର୍ତ୍ତମାନ ମଧ୍ୟ କହେ, — ପଢ଼ାଶୁଣା କରି କ'ଣ ହେବ !'

ଗଙ୍ଗାତୀରରେ ପଣ୍ଡିତଙ୍କ ସହିତ ଠାକୁରଙ୍କର ପୁଣି ଦେଖାହେଲା । ଠାକୁର କହୁଛନ୍ତି, 'କାଳୀ ମନ୍ଦିରକୁ ଯିବ ନାହିଁ ? ସେଥିପାଇଁ ମୁଁ ଆସିଲି । ପଣ୍ଡିତ ବ୍ୟସ୍ତ ହୋଇ କହିଲେ— 'ଆଜ୍ଞା, ଚାଲନ୍ତୁ ଦର୍ଶନ କରିବାକୁ ଯିବା ।'

ଠାକୁର ସହାସ୍ୟ ବଦନ । ଚାନ୍ଦିନୀ ବାଟ ଦେଇ ମନ୍ଦିରକୁ ଯାଉ ଯାଉ ଗୋଟିଏ ଗୀତର କଥା ଉଲ୍ଲେଖ କରି ତାହା ମଧୁର ସ୍ୱରରେ ଗାଉଛନ୍ତି,—

''ମା କି ମୋର କଳାରେ,
କଳାରୂପ ଦିଗମ୍ବରୀ ହୃଦପଦ୍ମ କରେ ଉଜ୍ଜ୍ୱଳରେ ।''

ଚାନ୍ଦିନୀଠାରୁ ପ୍ରାଙ୍ଗଣକୁ ଆସି କହୁଛନ୍ତି, ଆଉ ଗୋଟାଏ ଗୀତରେ ଅଛି,—

''ଜ୍ଞାନାଗ୍ନି ଜ୍ୱେଲେ ଘରେ, ବ୍ରହ୍ମମୟୀର ରୂପ ଦେଖନା ।''

ମନ୍ଦିରକୁ ଆସି ଠାକୁର ଭୂମିଷ୍ଠ ହୋଇ ପ୍ରଣାମ କଲେ । ମାଆଙ୍କର ଶ୍ରୀପାଦପଦ୍ମରେ ଜବା ବିଲ୍ୱପତ୍ର; ତ୍ରୀନୟନୀ ଭକ୍ତମାନଙ୍କୁ କେତେ ସ୍ନେହ ଚକ୍ଷୁରେ ଦେଖୁଛନ୍ତି । ହସ୍ତରେ ବରାଭୟ । ମା' ବନାରସୀ ଶାଢ଼ୀ ଓ ବିବିଧ ଅଳଙ୍କାର ପିନ୍ଧିଛନ୍ତି । ଶ୍ରୀମୂର୍ତ୍ତି ଦର୍ଶନ କରି ଭୂଧରଙ୍କ ବଡ଼ଭାଇ କହୁଅଛନ୍ତି, 'ଶୁଣିଛି ନବୀନ ଭାସ୍କରର ନିର୍ମାଣ ।' ଠାକୁର କହୁଛନ୍ତି, ''ତାହା ଜାଣେ ନାହିଁ— କିନ୍ତୁ ଜାଣେ ଏ ଚିନ୍ମୟୀ !''

ଭକ୍ତଙ୍କ ସଙ୍ଗରେ ଠାକୁର ନାଟ ମନ୍ଦିରରେ ବୁଲୁ ବୁଲୁ ଦକ୍ଷିଣାଭିମୁଖ ହୋଇ ଆସୁଛନ୍ତି । ବଳିଦାନର ସ୍ଥାନ ଦେଖି ପଣ୍ଡିତ କହୁଛନ୍ତି, 'ମା' ବୋଦା କଟା ଦେଖିପାରନ୍ତି ନାହିଁ ।' (ସମସ୍ତଙ୍କର ହାସ୍ୟ) ।

## (୬)

ଠାକୁର ଏଥର ଫେରୁଛନ୍ତି । ବାବୁରାମଙ୍କୁ କହିଲେ, 'ଆରେ ଆ !' ମାଷ୍ଟର ମଧ୍ୟ ସାଙ୍ଗରେ ଆସିଲେ ।

ସନ୍ଧ୍ୟା ହୋଇଛି । ଘରର ପଶ୍ଚିମରେ ଗୋଲାକାର ବାରଣ୍ଡାରେ ଆସି ଠାକୁର ବସିଅଛନ୍ତି । ଭାବସ୍ଥ, —ଅର୍ଦ୍ଧବାହ୍ୟ । ପାଖରେ ବାବୁରାମ ଓ ମାଷ୍ଟର ।

ଆଜିକାଲି ଠାକୁରଙ୍କ ସେବାରେ କଷ୍ଟ ହେଉଛି । ରାଖାଲ ଆଜିକାଲି ରହନ୍ତି ନାହିଁ । କେହି କେହି ଅଛନ୍ତି, —କିନ୍ତୁ ସେମାନେ ଠାକୁରଙ୍କର ସବୁ ଅବସ୍ଥାରେ ଛୁଇଁ ପାରନ୍ତି ନାହିଁ । ଠାକୁର ସଙ୍କେତ କରି ବାବୁରାମଙ୍କୁ କହୁଛନ୍ତି— ''ହ-ଛୁ-ନା-ରା-ଛୁ'' ଏ ଅବସ୍ଥାରେ ଅନ୍ୟ କାହାକୁ ଛୁଇଁବାକୁ ଦେଇପାରେ ନାହିଁ । ତୁ ଥାଆ— ତାହାହେଲେ ଠିକ୍ ହେବ ।''

## ଈଶ୍ୱର ଲାଭ ଓ କର୍ମତ୍ୟାଗ ।
## ନୂତନ ହାଣ୍ଡି—ଗୃହୀ ଭକ୍ତ ଓ ନଷ୍ଟା ସ୍ତ୍ରୀ ।

ପଣ୍ଡିତ ମନ୍ଦିର ଦର୍ଶନ କରି ଠାକୁରଙ୍କ ଘରକୁ ଫେରିଛନ୍ତି । ଠାକୁର ପଶ୍ଚିମର ଗୋଲ ବାରଣ୍ଡାରୁ କହୁଛନ୍ତି, ତୁମେ ଟିକିଏ ଜଳପାନ କର । ପଣ୍ଡିତ କହିଲେ ମୁଁ ସନ୍ଧ୍ୟା କରି ନାହିଁ । ହଠାତ୍ ଠାକୁର ଭାବରେ ମତୁଆଲା ହୋଇ ଗୀତ ଗାଉଛନ୍ତି, —ତା'ପରେ ଠିଆ ହୋଇପଡ଼ିଲେ—

ଗୀତ— ଗୟାଗଙ୍ଗା ପ୍ରଭାସାଦି, କାଶୀକାଞ୍ଚି କେବା ଚାୟ ।
କାଲୀ କାଲୀ, ବଲେ ଆମାର ଅଜପା ଯଦି -ଫୁରାୟ ।।
ତ୍ରୀସନ୍ଧ୍ୟା ଯେ ବଲେ କାଲୀ, ପୂଜା ସନ୍ଧ୍ୟା ସେ କି ଚାୟ ।
ସନ୍ଧ୍ୟା ତା'ର ସନ୍ଧାନେ ଫେରେ କଭୁ ସନ୍ଧି ନାହିଁ ପାୟ ।।
ପୂଜା ହୋମ ଜପ ଯଜ୍ଞ ଆର କିଛୁନା ମନେ ଲୟ ।
ମଦନେରଇ ଯାଗଯଜ୍ଞ ବ୍ରହ୍ମମୟୀର ରାଙ୍ଗାପାୟ ।।

ଠାକୁର ପ୍ରେମୋନ୍ମତ୍ତ ହୋଇ ପୁଣି କହୁଅଛନ୍ତି କେତେଦିନ ସନ୍ଧ୍ୟା ? ଯେତେଦିନ ଓଁ କହି ମନ ଲୟ ନ ହୁଏ ।

ପଣ୍ଡିତ—ତେବେ ଜଳପାନ କରୁଛି, ତା'ପରେ ସନ୍ଧ୍ୟା କରିବି ।

ଶ୍ରୀରାମକୃଷ୍ଣ—ମୁଁ ତୁମର ସ୍ରୋତରେ ବାଧା ଦେବି ନାହିଁ । ସମୟ ନ ହେଲେ ତ୍ୟାଗ ଭଲ ନୁହେଁ । ଫଳ ପାଚିଲେ -ଫୁଲ ଆପେ ଖସିପଡ଼େ । କଞ୍ଚା ସମୟରେ ନଡ଼ିଆର ବାହୁଙ୍ଗାକୁ ଟଣାଟଣି କରିବା ଠିକ୍ ନୁହେଁ—ସେପରି କଲେ ଗଛ ଖରାପ ହୁଏ ।

ସୁରେନ୍ଦ୍ର ଘରକୁ ଯିବାକୁ ଉଦ୍ୟମ କରୁଛନ୍ତି । ବନ୍ଧୁବର୍ଗଙ୍କୁ ଆହ୍ୱାନ କରୁଛନ୍ତି— ତାଙ୍କର ଗାଡ଼ିରେ ନେଇଯିବେ ।

ସୁରେନ୍ଦ୍ର—ମହେନ୍ଦ୍ରବାବୁ ଯିବେ ?

ଠାକୁର ବର୍ତ୍ତମାନ ମଧ ଭାବସ୍ଥ;—ସଂପୂର୍ଣ୍ଣ ପ୍ରକୃତିସ୍ଥ ହୋଇ ନାହାନ୍ତି । ସେ ସେହି ଅବସ୍ଥାରେ ସୁରେନ୍ଦ୍ରଙ୍କୁ କହୁଛନ୍ତି, —ତୁମର ଘୋଡ଼ା ଯେତିକି ବୋହିପାରେ, ତାହାଠାରୁ ବେଶୀ ନିଅ ନାହିଁ । ସୁରେନ୍ଦ୍ର ପ୍ରଣାମ କରି ଚାଲିଗଲେ ।

ପଣ୍ଡିତ ସଂଧ୍ୟା କରିବାକୁ ଗଲେ । ମାଷ୍ଟର ଓ ବାବୁରାମ କଲିକତା ଯିବେ, ଠାକୁରଙ୍କୁ ପ୍ରଣାମ କରୁଛନ୍ତି । ଠାକୁର ବର୍ତ୍ତମାନ ସୁଦ୍ଧା ଭାବସ୍ଥ ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—କଥା ବାହାରୁ ନାହିଁ;—ଟିକିଏ ରହ । ମାଷ୍ଟର ବସିଲେ—ଠାକୁର କଅଣ ଆଜ୍ଞା କରିବେ—ଅପେକ୍ଷା କରୁଛନ୍ତି । ଠାକୁର ବାବୁରାମଙ୍କୁ ସଙ୍କେତ କରି ବସିବାକୁ କହିଲେ । ବାବୁରାମ କହିଲେ, ଆଚ୍ଛା ଟିକିଏ ବସନ୍ତୁ । ଠାକୁର କହୁଛନ୍ତି, ଟିକିଏ ପଙ୍ଖା କର । ବାବୁରାମ ପଙ୍ଖା କରୁଛନ୍ତି, —ମାଷ୍ଟର ମଧ ପଙ୍ଖା କରୁଛନ୍ତି ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କୁ ସସ୍ନେହରେ) —ଏବେ ସେତେ ଆସୁନାହଁ କାହିଁକି ?

ମାଷ୍ଟର—ଆଜ୍ଞା, ବିଶେଷ କାରଣ ନାହିଁ: —ଘରେ କାର୍ଯ୍ୟ ଥିଲା ।

ଶ୍ରୀରାମକୃଷ୍ଣ—ବାବୁରାମ କିପରି ଆଧାର, କାଲି ଟେର୍ ପାଇଛି । ତେଣୁ ତ ବର୍ତ୍ତମାନ ତାହାକୁ ରଖିବା ପାଇଁ ଏତେ କହୁଛି । ପକ୍ଷୀ ସମୟ ବୁଝି ଡିମ୍ବ -ଫୁଟାଏ । କାହିଁକି ଜାଣ, ଏମାନେ ଶୁଦ୍ଧ ଆତ୍ମା, —ବର୍ତ୍ତମାନ ମଧ୍ୟ କାମିନୀ କାଞ୍ଚନ ସଂସ୍ପର୍ଶରେ ଆସି ନାହାନ୍ତି । କଅଣ କହୁଛ ?

ମାଷ୍ଟର—ଆଜ୍ଞା ହଁ । ବର୍ତ୍ତମାନ ମଧ୍ୟ କୌଣସି ଦାଗ ଲାଗିନାହିଁ ।

ଶ୍ରୀରାମକୃଷ୍ଣ—ନୂଆ ହାଣ୍ଡି, —ଦୁଧ ରଖିଲେ ଖରାପ ହେବନାହିଁ ।

ମାଷ୍ଟର—ଆଜ୍ଞା ହଁ ।

ଶ୍ରୀରାମକୃଷ୍ଣ—ବାବୁରାମଙ୍କର ଏଠାରେ ରହିବା ଦରକାର ପଡ଼ିଛି । ମୋର ଅବସ୍ଥା ସେହିପରି ହୋଇଛି, ତେଣୁ ଏହିସବୁ ଲୋକଙ୍କର ରହିବା ପ୍ରୟୋଜନ । ସେ କହିଛି, କ୍ରମେ କ୍ରମେ ରହିବ, ନ ହେଲେ ହେଙ୍ଗାମା ହେବ—ଘରେ ଗଣ୍ଡଗୋଳ କରିବେ । ମୁଁ କହିଛି, ଶନିବାର ରବିବାର ଆସିବ ।

ଏଣେ ପଣ୍ଡିତ ସନ୍ଧ୍ୟା କରିସାରି ଆସିଛନ୍ତି । ତାଙ୍କ ସଙ୍ଗରେ ଭୂଧର ଓ ତାଙ୍କର ଜ୍ୟେଷ୍ଠ ଭ୍ରାତା ।* ପଣ୍ଡିତ ଏଥର ଜଳପାନ କରିବେ । ଭୂଧରଙ୍କର ବଡ଼ଭାଇ କହୁଛନ୍ତି, ''ଆମମାନଙ୍କର କଅଣ ହେବ, —ଟିକିଏ କହିଦିଅନ୍ତୁ ଆମମାନଙ୍କର ଉପାୟ କଅଣ !''

ଶ୍ରୀରାମକୃଷ୍ଣ—ତୁମେମାନେ ମୁମୁକ୍ଷୁ ; ବ୍ୟାକୁଳତା ଥିଲେ ଈଶ୍ୱରଙ୍କୁ ପାଇହୁଏ । ଶ୍ରାଦ୍ଧର ଅନ୍ନ ଖାଅ ନାହିଁ । ସଂସାରରେ ନଷ୍ଟା ସ୍ତ୍ରୀ ପରି ରହିବ । ନଷ୍ଟା ସ୍ତ୍ରୀ ଘରର ସବୁ କାର୍ଯ୍ୟ ଯେପରି ଖୁବ୍ ମନଦେଇ କରେ, —କିନ୍ତୁ ତା'ର ମନ ଉପପତି ଉପରେ ରାତି ଦିନ ପଡ଼ିରହେ । ସଂସାରରେ କାର୍ଯ୍ୟ କର, କିନ୍ତୁ ମନ ସର୍ବଦା ଈଶ୍ୱରଙ୍କ ଠାରେ ରଖିବ ।

ପଣ୍ଡିତ ଜଳପାନ କରୁଛନ୍ତି । ଠାକୁର କହୁଛନ୍ତି, ଆସନରେ ବସି ପିଅ ।

ଖାଇବା ପରେ ପଣ୍ଡିତଙ୍କୁ କହୁଛନ୍ତି—''ତୁମେ ତ ଗୀତା ପଢ଼ିଛ; —ଯାହାଙ୍କୁ ସମସ୍ତେ ଗଣ୍ୟମାନ୍ୟ ବୋଲି ମାନନ୍ତି, ତାଙ୍କ ଠାରେ ଈଶ୍ୱରଙ୍କର ବିଶେଷ ଶକ୍ତି ଅଛି ।''

ପଣ୍ଡିତ—ଯଦ୍ ଯଦ୍ ବିଭୂତିମତ୍ ସତ୍ତ୍ୱମ୍ ଶ୍ରୀମଦୂର୍ଜିତମେବବା ।

ଶ୍ରୀରାମକୃଷ୍ଣ—ତୁମ ଭିତରେ ଅବଶ୍ୟ ତାଙ୍କର ଶକ୍ତି ଅଛି ।

ପଣ୍ଡିତ—ଆଜ୍ଞା, ଯେଉଁ ବ୍ରତ ନେଇଛି ତାହା ଅଧ୍ୟବସାୟର ସହିତ କରିବି କି ?

ଠାକୁର ଯେପରି ଉପରୋଧରେ ପଡ଼ି କହିଲେ 'ହଁ' । ତାହାପରେ ଅନ୍ୟ କଥା ଦ୍ୱାରା ସେ କଥାକୁ ଚାପା ଦେଲେ ।

---

* ଭୂଧରଙ୍କର ଜ୍ୟେଷ୍ଠ ଭ୍ରାତା ଶେଷ ଜୀବନ ଏକାକୀ ଅତି ପବିତ୍ର ଭାବରେ କାଶୀଧାମରେ କଟାଇଥିଲେ । ଠାକୁରଙ୍କୁ ସର୍ବଦା ଚିନ୍ତା କରୁଥିଲେ ।

ଶ୍ରୀରାମକୃଷ୍ଣ— ଶକ୍ତି ମାନିବାକୁ ହୁଏ । ବିଦ୍ୟାସାଗର କହିଥିଲେ, ଈଶ୍ୱର କ'ଣ କାହାକୁ ବେଶୀ ଶକ୍ତି ଦେଇଛନ୍ତି ? ମୁଁ କହିଲି ତେବେ ଜଣେ ଲୋକ ଶହେ ଲୋକଙ୍କୁ ମାରିପାରେ କିପରି ? କୁଇନ୍ ଭିକ୍ଟୋରିଆଙ୍କର ଏତେ ମାନସମ୍ମାନ କାହିଁକି— ଯଦି ଶକ୍ତି ନ ଥାଆନ୍ତା ! ମୁଁ ପଚାରିଲି, ତୁମେ ଏହା ମାନ କି ନାହିଁ ? ସେତେବେଳେ କହିଲେ, 'ହଁ ମାନେ ।'

ପଣ୍ଡିତ ବିଦାୟ ନେଇ ଗାତ୍ରୋତ୍ଥାନ କଲେ ଓ ଠାକୁରଙ୍କୁ ଭୂମିଷ୍ଠ ହୋଇ ପ୍ରଣାମ କଲେ । ସଙ୍ଗୀ ବନ୍ଧୁମାନେ ମଧ୍ୟ ପ୍ରଣାମ କଲେ ।

ଠାକୁର କହୁଛନ୍ତି, ''ପୁଣି ଆସିବ, ଗଞ୍ଜେଇ ଖୋର ଗଞ୍ଜେଇ ଖୋରକୁ ଦେଖିଲେ ଆନନ୍ଦ କରେ—ହୁଏତ ତାହା ସଙ୍ଗରେ କୋଳାକୋଳି କରେ— ଅନ୍ୟଲୋକ ଦେଖିଲେ ମୁହଁ ଲୁଚାଏ । ଗୋରୁ ଗାଈ ନିଜ ସାଥି ଗାଈକୁ ଦେଖିଲେ ଦେହ ଚାଟେ, ଅପରକୁ ମୁଣ୍ଡିଆ ମାରେ ।'' (ସମସ୍ତଙ୍କର ହାସ୍ୟ) । ପଣ୍ଡିତ ଚାଲିଗଲାରୁ ଠାକୁର ହସି କହୁଛନ୍ତି— ଦିନକରେ ଡାଇଲିଉଟ୍ (Dilute) ହୋଇଯାଇଛି ! —ଦେଖିଲ କିପରି ବିନୟୀ— ସବୁ କଥା ବୁଝି ଗ୍ରହଣ କରେ ।

ଆଷାଢ଼ ଶୁକ୍ଳ ସପ୍ତମୀ ତିଥି । ପଶ୍ଚିମ ବାରଣ୍ଡାରେ ଚନ୍ଦ୍ରର ଆଲୋକ ପଡ଼ିଛି । ଠାକୁର ସେଠାରେ ବର୍ତ୍ତମାନ ସୁଦ୍ଧା ବସିଛନ୍ତି । ମାଷ୍ଟର ପ୍ରଣାମ କରୁଛନ୍ତି । ଠାକୁର ସ୍ନେହରେ କହୁଛନ୍ତି, ''ଯିବ ?''

ମାଷ୍ଟର— ଆଜ୍ଞା, ହଁ ଯାଉଛି ।

ଶ୍ରୀରାମକୃଷ୍ଣ— ଦିନେ ମନେ କରିଛି, ସମସ୍ତଙ୍କ ଘରକୁ ଥରେ ଥରେ ଯିବି— ତୁମ ଘରକୁ ବି ଥରେ ଯିବି; —ନା କଅଣ ?

ମାଷ୍ଟର— ଆଜ୍ଞା ବେଶ ତ !



# ତୃତୀୟ ପରିଚ୍ଛେଦ
## (୧)

### ବଳରାମଙ୍କ ମନ୍ଦିରରେ ରଥର ବାହୁଡ଼ା ଯାତ୍ରାରେ ଭକ୍ତଙ୍କ ସଙ୍ଗରେ ।

ଠାକୁର ଶ୍ରୀରାମକୃଷ୍ଣ ବଳରାମଙ୍କ ବୈଠକଖାନାରେ ଭକ୍ତଙ୍କ ସହିତ ମଜଲିସ୍ କରି ବସିଅଛନ୍ତି । ଆନନ୍ଦମୟ ମୂର୍ତ୍ତି! —ଭକ୍ତମାନଙ୍କ ସହିତ କଥା କହୁଛନ୍ତି । ୩ ତାରିଖ, ଜୁଲାଇ ୧୮୮୪ ଖ୍ରୀଷ୍ଟାବ୍ଦ । ଆଜି ବାହୁଡ଼ା ଯାତ୍ରା ବୃହସ୍ପତିବାର । ଆଷାଢ଼ ଶୁକ୍ଳା ଦଶମୀ । ଶ୍ରୀଯୁକ୍ତ ବଳରାମଙ୍କ ଘରେ ଶ୍ରୀଶ୍ରୀ ଜଗନ୍ନାଥଙ୍କର ସେବା ପୂଜା ଅଛି, ଖଣ୍ଡେ ଛୋଟ ରଥ ମଧ୍ୟ ଅଛି । ତେଣୁ ସେ ଠାକୁରଙ୍କୁ, ବାହୁଡ଼ା ଯାତ୍ରା ଉପଲକ୍ଷେ ନିମନ୍ତ୍ରଣ କରିଛନ୍ତି । ଏହି ଛୋଟ ରଥଟି ବାହାର ଘର ଦୋତାଲାର ଚକବନ୍ଦୀ ବାରଣ୍ଡାରେ ଟଣା ହେବ ।

ଗତ ୨୫ ତାରିଖ ଜୁନ୍ ବୁଧବାର ଶ୍ରୀଶ୍ରୀ ରଥଯାତ୍ରା ଦିନ, ଠାକୁର ଈଶାନ ମୁଖୋପାଧ୍ୟାୟଙ୍କ ଠନ୍‌ଠନିଆ ଘରକୁ ଆସି ନିମନ୍ତ୍ରଣ ଗ୍ରହଣ କରିଥିଲେ । ସେହିଦିନ ଉପରବେଳା କଲେଜ ଷ୍ଟ୍ରୀଟ୍‌ରେ ଭୂଧରଙ୍କ ଘରେ ପଣ୍ଡିତ ଶଶଧରଙ୍କ ସହିତ ପ୍ରଥମ ସାକ୍ଷାତ ହୋଇଥିଲା । ତିନି ଦିନ ପୂର୍ବେ ଗତ ସୋମବାର ଦିନ ଶଶଧର ତାଙ୍କୁ ଦକ୍ଷିଣେଶ୍ୱର କାଳୀମନ୍ଦିରରେ ଦ୍ୱିତୀୟଥର ଦର୍ଶନ କରିବାକୁ ଯାଇଥିଲେ । ଠାକୁରଙ୍କ ଆଦେଶରେ ବଳରାମ ଶଶଧରଙ୍କୁ ଆଜି ନିମନ୍ତ୍ରଣ କରିଛନ୍ତି । ପଣ୍ଡିତ ହିନ୍ଦୁଧର୍ମ ବିଷୟରେ ବ୍ୟାଖ୍ୟା କରି ଲୋକଶିକ୍ଷା ଦେଉଛନ୍ତି । ତେଣୁ କଅଣ ଶ୍ରୀରାମକୃଷ୍ଣ ତାଙ୍କ ଭିତରେ ଶକ୍ତି ସଞ୍ଚାର କରିବା ପାଇଁ ଏତେ ଉତ୍ସୁକ ହୋଇଛନ୍ତି ?

ଠାକୁର ଭକ୍ତଙ୍କ ସହିତ କଥା କହୁଛନ୍ତି । ନିକଟରେ ରାମ, ମାଷ୍ଟର, ବଳରାମ, ମନମୋହନ, କେତେଜଣ ଯୁବକ ଭକ୍ତ ଓ ବଳରାମଙ୍କର ପିତା ପ୍ରଭୃତି ବସିଛନ୍ତି । ବଳରାମଙ୍କର ପିତା ଅତି ନିଷ୍ଠାବାନ୍ ବୈଷ୍ଣବ । ସେ ପ୍ରାୟ ଶ୍ରୀବୃନ୍ଦାବନ ଧାମରେ ତାଙ୍କ ପ୍ରତିଷ୍ଠିତ କୁଞ୍ଜରେ ଏକାକୀ ବାସ କରନ୍ତି ଓ ଶ୍ରୀଶ୍ରୀ ଶ୍ୟାମସୁନ୍ଦର ବିଗ୍ରହଙ୍କର ସେବା ପୂଜା ତତ୍ତ୍ୱାବଧାନ କରନ୍ତି । ଶ୍ରୀବୃନ୍ଦାବନରେ ସେ ସମସ୍ତ ଦିନ ଠାକୁରଙ୍କ ସେବା ନେଇ ରହନ୍ତି । କେତେବେଳେ ମଧ୍ୟ ଶ୍ରୀ ଶ୍ରୀ ଚୈତନ୍ୟ ଚରିତାମୃତାଦି ଭକ୍ତି ଗ୍ରନ୍ଥ ପଢ଼ନ୍ତି । କେତେବେଳେ କେତେବେଳେ ଭକ୍ତି ଗ୍ରନ୍ଥ ନେଇ ତାହାର ପ୍ରତିଲିପି ପ୍ରସ୍ତୁତ କରନ୍ତି । କେତେବେଳେ ମଧ୍ୟ ବସି ବସି ନିଜେ -ଫୁଲର ମାଳା ଗୁନ୍ଥନ୍ତି । କେତେବେଳେ ବା ବୈଷ୍ଣବମାନଙ୍କୁ ନିମନ୍ତ୍ରଣ କରି ସେବା କରନ୍ତି । ଠାକୁରଙ୍କୁ ଦର୍ଶନ କରାଇବା ପାଇଁ, ବଳରାମ ତାଙ୍କୁ ପତ୍ର ପରେ ପତ୍ର ଲେଖି କଲିକତାକୁ ଅଣାଇଛନ୍ତି । 'ସବୁଧର୍ମରେ ସାମ୍ପ୍ରଦାୟିକ ଭାବ, ବିଶେଷତଃ ବୈଷ୍ଣବମାନଙ୍କ ମଧ୍ୟରେ ଭିନ୍ନ ମତର ଲୋକ ପରସ୍ପର ବିରୋଧ କରନ୍ତି, ସମନ୍ୱୟ କରିବା ଜାଣନ୍ତି ନାହିଁ— ଏହି କଥା ଠାକୁର ଭକ୍ତମାନଙ୍କୁ କହୁଛନ୍ତି ।'

## ବଳରାମଙ୍କ ପିତାଙ୍କ ପ୍ରତି ସର୍ବଧର୍ମ ସମନ୍ୱୟ ଉପଦେଶ । ଭକ୍ତମାଳ, ଶ୍ରୀଭାଗବତ । ପୂର୍ବକଥା—ମଥୁରଙ୍କ ପାଖରେ ବୈଷ୍ଣବଚରଣଙ୍କର ଆଚାର ଓ ଶାକ୍ତମାନଙ୍କର ନିନ୍ଦା ।

ଶ୍ରୀରାମକୃଷ୍ଣ (ବଳରାମଙ୍କ ପିତା ପ୍ରଭୃତି ଭକ୍ତମାନଙ୍କ ପ୍ରତି)—ବୈଷ୍ଣବମାନଙ୍କର ଗୋଟିଏ ଗ୍ରନ୍ଥ ଭକ୍ତମାଳା । ବେଶ୍ ବହି, —ଭକ୍ତମାନଙ୍କର ଅନେକ କଥା ଅଛି । ତେବେ ଗୋଟିଏ ଭାବର । ଏକଜାଗାରେ ଭଗବତୀଙ୍କୁ ବିଷ୍ଣମନ୍ତ୍ର ପର୍ଯ୍ୟନ୍ତ ଦିଆଇ ତେବେ ଛାଡ଼ିଛି !

''ମୁଁ ବୈଷ୍ଣବଚରଣର ଅନେକ ପ୍ରଶଂସା କରି ମଥୁରବାବୁଙ୍କ ପାଖକୁ ଆଣିଥିଲି । ମଥୁରବାବୁ ଖୁବ୍ ଆଦର ଯତ୍ନ କଲେ । ରୂପାର ବାସନ ବାହାର କରି ଜଳଖିଆ ଖୁଆଇବା ପର୍ଯ୍ୟନ୍ତ । ତାହାପରେ ମଥୁରବାବୁଙ୍କ ସାମନାରେ କହିଲେ କଅଣ—'ଆମର କେଶବ ମନ୍ତ୍ର ନ ନେଲେ କିଛି ହେବ ନାହିଁ !'' ମଥୁରବାବୁ ଶାକ୍ତ, ଭଗବତୀଙ୍କର ଉପାସକ । ମୁଖ ରଙ୍ଗା ହୋଇଉଠିଲା । ମୁଁ ସେତେବେଳେ ବୈଷ୍ଣବଚରଣଙ୍କ ଦେହରେ ହାତ ମାରିଲି ।''

''ଶ୍ରୀମଦ୍ଭାଗବତ—ସେଥିରେ ମଧ କ'ଣ ଏହି ରକମ କଥା ଅଛି, 'କେଶବମନ୍ତ୍ର ନ ନେଇ ଭବସାଗର ପାରହେବା ଯାହା, ଆଉ କୁକୁରର ଲାଞ୍ଜ ଧରି ମହାସମୁଦ୍ର ପାରହେବା ତାହା !' ସବୁମତର ଲୋକମାନେ ଆପଣାର ମତକୁ ହିଁ ବଡ଼ କରିଯାଇଛନ୍ତି ।''

''ଶାକ୍ତମାନେ ମଧ ବୈଷ୍ଣବମାନଙ୍କୁ ନିକୃଷ୍ଟ କରିବାକୁ ଚେଷ୍ଟା କରନ୍ତି । ଶ୍ରୀକୃଷ୍ଣ ଭବନଦୀର କାଣ୍ଡାରୀ, ପାର କରି ଦିଅନ୍ତି, —ଶାକ୍ତମାନେ କହନ୍ତି, 'ତାହା ତ ଠିକ୍, କିନ୍ତୁ ମା' ରାଜରାଜେଶ୍ୱରୀ—ସେ କ'ଣ ନିଜେ ଆସି ପାର କରିବେ ? —ଏଇ କୃଷ୍ଣଙ୍କୁ ରଖି ଦେଇଛନ୍ତି ପାର କରିବା ପାଇଁ (ସମସ୍ତଙ୍କର ହାସ୍ୟ) ।''

## ପୂର୍ବକଥା—ଠାକୁରଙ୍କର ଜନ୍ମଭୂମି ଦର୍ଶନ *୧୮୮୦ ଫୁଲୁଇ ଶ୍ୟାମାବଜାରର ତନ୍ତୀ ବୈଷ୍ଣବମାନଙ୍କର ଅହଙ୍କାର । ସମନ୍ୱୟ ଉପଦେଶ ।

''ନିଜ ନିଜର ମତ ନେଇ କେତେ ଅହଙ୍କାର ! ସେ ଦେଶରେ, ଶ୍ୟାମବଜାର ପ୍ରଭୃତି ଜାଗାମାନଙ୍କରେ, ତନ୍ତୀମାନେ ଅଛନ୍ତି । ଅନେକ ବୈଷ୍ଣବ, ତାଙ୍କର ଲମ୍ବା ଲମ୍ବା

*ଶ୍ରୀରାମକୃଷ୍ଣ ୧୮୮୦ ଖ୍ରୀଷ୍ଟାବ୍ଦରେ ଶେଷଥର ଜନ୍ମଭୂମି ଦର୍ଶନ କରିବା ସମୟରେ -ଫୁଲୁଇ ଶ୍ୟାମବଜାରକୁ ହୃଦୟଙ୍କ ସହିତ ଶୁଭାଗମନ କରି ନଟବର ଗୋସ୍ୱାମୀ, ଈମାନ ମଲ୍ଲିକ ଓ ସଦୟ ବାବାଜୀ ପ୍ରଭୃତି ଭକ୍ତଗଣଙ୍କ ସଙ୍ଗରେ ସଂକୀର୍ତ୍ତନ କରିଥିଲେ ।

କଥା କହନ୍ତି, 'ଏ କେଉଁ ବିଷ୍ଣୁଙ୍କୁ ମାନନ୍ତି ? ପାଳକ ବିଷ୍ଣୁ ! (ଅର୍ଥାତ୍ ଯେ ପାଳନ କରନ୍ତି ।) ତାଙ୍କୁ ଆମେ ଛୁଉଁ ନାହୁଁ ! କେଉଁ ଶିବ ? —ଆମେମାନେ ଆତ୍ମାରାମ ଶିବ, ଆତ୍ମାରାମେଶ୍ୱର ଶିବଙ୍କୁ ମାନୁ ।' କେହି କହନ୍ତି, 'ତୁମେମାନେ ବୁଝାଇଦିଅନା, କେଉଁ ହରିଙ୍କୁ ମାନ ।' ସେଥିରେ କେହି କେହି କହନ୍ତି—'ନା, ଆମେ କାହିଁକି, ତୁମେ କହନା ।' ଏଣେ ଲୁଗା ବୁଣନ୍ତି; କିପରି ଲମ୍ବା ଲମ୍ବା କଥା !''

## ଲାଲାବାବୁଙ୍କ ରାଣୀ କାତ୍ୟାୟନୀଙ୍କର ପ୍ରିୟପାତ୍ରୀ ରତିର ମା ଓ ତାଙ୍କର ବାଛବିଚାର ।

ରତିର ମା' କାତ୍ୟାୟନୀଙ୍କର ପ୍ରିୟପାତ୍ରୀ;—ବୈଷ୍ଣବଚରଣଙ୍କ ଦଳର ଲୋକ, ଆଚାରୀ ବୈଷ୍ଣବୀ । ଏଠାକୁ ଅନେକ ଯିବା ଆସିବା କରୁଥିଲେ । ଭକ୍ତି ଦେଖେ କିଏ ! ଯହୁଁ ଦେଖିଲେ ମୁଁ ମା' କାଳୀଙ୍କ ପ୍ରସାଦ ଖାଉଛି, ସଙ୍ଗେ ସଙ୍ଗେ ପଳାଇଲେ !

''**ଯେ ସମନ୍ୱୟ କରିଛି, ସେହି ଠିକ୍ ଲୋକ** । ଅନେକ ଲୋକ ଗୋଟିଏ ମତକୁ ମାନନ୍ତି । ମୁଁ କିନ୍ତୁ ଦେଖେ—ସବୁ ଏକ । ଶାକ୍ତ, ବୈଷ୍ଣବ, ବେଦାନ୍ତ , ମତ ସବୁ ସେହି ଏକକୁ ନେଇ । ଯେ ନିରାକାର, ସେହି ସାକାର, ତାଙ୍କରି ନାନା ରୂପ ।''

'ନିର୍ଗୁଣ ମେରା ବାପ୍, ସଗୁଣ ମାହତାରି, କାରେ ନିନ୍ଦୋ କାରେ ବନ୍ଦୋ,
ଦୋନୋ ପାଲ୍ଲାଭାରୀ ।'

''ବେଦରେ ଯାହାଙ୍କର କଥା, ତନ୍ତ୍ରରେ ତାଙ୍କରି ହିଁ କଥା, ପୁରାଣରେ ମଧ ତାଙ୍କରି କଥା । **ସେହି ଏକ ସଚ୍ଚିଦାନନ୍ଦଙ୍କର କଥା** । ଯାହାଙ୍କର ନିତ୍ୟ, ତାଙ୍କରି ଲୀଳା ।''

''ବେଦରେ କହିଛି, ଓଁ ସଚ୍ଚିଦାନନ୍ଦ ବ୍ରହ୍ମ । ତନ୍ତ୍ରରେ କହିଛି, ଓଁ ସଚ୍ଚିଦାନନ୍ଦଃ ଶିବଃ—ଶିବଃ କେବଳଃ, —କେବଳଃ ଶିବଃ । ପୁରାଣରେ କହିଛି, ଓଁ ସଚ୍ଚିଦାନନ୍ଦଃ କୃଷ୍ଣଃ । ସେହି ଏକ ସଚ୍ଚିଦାନନ୍ଦଙ୍କର କଥା ହିଁ ବେଦ, ପୁରାଣ, ତନ୍ତ୍ରରେ ଅଛି । ବୈଷ୍ଣବ ଶାସ୍ତ୍ରରେ ଅଛି, —କୃଷ୍ଣ ହିଁ କାଳୀ ହୋଇଥିଲେ ।''

## (୨)

## ଠାକୁର ଶ୍ରୀରାମକୃଷ୍ଣଙ୍କର ପରମହଂସ ଅବସ୍ଥା । ବାଳକବତ୍—ଉନ୍ମାଦବତ୍ ।

ଠାକୁର ବାରଣ୍ଡା ଆଡ଼କୁ ଟିକିଏ ଯାଇ ପୁଣି ଘରକୁ ଫେରି ଆସିଲେ । ବାହାରକୁ ଯିବା ସମୟରେ ଶ୍ରୀଯୁକ୍ତ ବିଶ୍ୱମ୍ଭରଙ୍କ ବାଳିକା କନ୍ୟା ତାଙ୍କୁ ନମସ୍କାର କଲା, ତାହାର ବୟସ ୬/୭ ବର୍ଷ ହେବ । ଠାକୁର ଘରକୁ ଫେରି ଆସିଲା ପରେ କନ୍ୟାଟି ତାଙ୍କ ସହିତ କଥା କହୁଛି । ତା' ସଙ୍ଗରେ ଆଉ ଜଣେ ଦୁଇଜଣ ସମବୟସ୍କ ବାଳକ ବାଳିକା ଅଛନ୍ତି ।

ବିଶ୍ୱମ୍ଭରଙ୍କ କନ୍ୟା (ଠାକୁର ଶ୍ରୀରାମକୃଷ୍ଣଙ୍କ ପ୍ରତି)—ମୁଁ ତୁମକୁ ନମସ୍କାର କଲି, ଦେଖିଲ ନାହିଁ !

ଶ୍ରୀରାମକୃଷ୍ଣ (ସହାସ୍ୟ)—କାହିଁ, ଦେଖି ନାହିଁ ତ !

କନ୍ୟା—ତେବେ ରୁହ, ଆଉଥରେ ନମସ୍କାର କରେ ;—ଠିଆହୁଅ, ଏ ପାଦଛୁଇଁ କରେ ! ଠାକୁର ହସି ହସି ଉପବେଶନ କଲେ ଓ ଭୂମି ପର୍ଯ୍ୟନ୍ତ ମସ୍ତକ ନତ କରି କନ୍ୟାଟିକୁ ପ୍ରତି ନମସ୍କାର କଲେ । ଠାକୁର ତାକୁ ଗୀତ ଗାଇବାକୁ କହିଲେ ! କନ୍ୟାଟି କହିଲା,—'ସତ କହୁଛି ଗୀତ ଜାଣେ ନାହିଁ ।'

ତାକୁ ପୁଣି ଅନୁରୋଧ କରିବାରେ, କହିଲା, "ସତକଥା କହିବା ପରେ ଆଉ କଅଣ ଅନୁରୋଧ ଚଳେ ?" ଠାକୁର ସେମାନଙ୍କୁ ନେଇ ଆନନ୍ଦ କରୁଛନ୍ତି ଓ ଗୀତ ଶୁଣାଉଛନ୍ତି । ପ୍ରଥମେ କେଲୁଆର୍ ଗୀତ, ତାହାପରେ ଆୟଲୋ ତୋର ଖୋପା ବେଁଧେ ଦି, ତୋର ଭାତାର ଏଲେ ବଲ୍‌ବେ କି !'

(ବାଳକ ଓ ଭକ୍ତମାନେ ଗୀତ ଶୁଣି ହସୁଛନ୍ତି ।)

## ପୂର୍ବକଥା

## ଜନ୍ମଭୂମି ଦର୍ଶନ* ୧୮୬୯-୭୦ । ବାଳକ ଶିବରାମଙ୍କର ଚରିତ୍ର । ସିହୋଡ଼ରେ ହୃଦୟଙ୍କ ଘରେ ଦୁର୍ଗାପୂଜା । ଠାକୁରଙ୍କ ଉନ୍ମାଦ ଅବସ୍ଥାରେ ଲିଙ୍ଗ ପୂଜା ।

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)—ପରମହଂସ ଠିକ୍ ପାଞ୍ଚବର୍ଷ ବାଳକପରି । ସବୁ ଚୈତନ୍ୟମୟ ଦେଖନ୍ତି ।

ଯେତେବେଳେ ମୁଁ ସେ ଦେଶରେ (କାମାରପୁକୁରରେ) ଥିଲି, ରାମଲାଲ୍‌ର ଭାଇ (ଶିବରାମ)ର ସେତେବେଳେ ୪/୫ ବର୍ଷ ବୟସ, —ପୋଖରୀ ଧାରରେ ଝିଣ୍ଟିକା ଧରିବାକୁ ଯାଉଛି । ପତ୍ର ହଲୁଛି, କାଳେ ପତ୍ରର ଶବ୍ଦ ହେବ, ତେଣୁ ପତ୍ରକୁ କହୁଛି, 'ଚୁପ୍' ! ମୁଁ ଝିଣ୍ଟିକା ଧରିବି ! ଝଡ଼ ବର୍ଷା ହେଉଛି, ମୋ ସଙ୍ଗରେ ସେ ଘର ଭିତରେ ଅଛି; ବିଦ୍ୟୁତ୍ ଚମକୁଛି, —ତେବେ ମଧ ଦ୍ୱାର ଖୋଲି ଖୋଲି ବାହାରକୁ ଯିବାକୁ ଚାହେଁ । ବକିବା ପରେ ଆଉ ବାହାରକୁ ଗଲାନାହିଁ, ଉଙ୍କିମାରି ଥରେ ଥରେ ଦେଖୁଛି, ବିଦ୍ୟୁତ୍, —ଆଉ କହୁଛି, 'କକେଇ ପୁଣି ଚକମକି ମାରୁଛି ।'

---

* ଶ୍ରୀଯୁକ୍ତ ଶିବରାମଙ୍କର୍ ଜନ୍ମ—୧୮ ଦିନ ଚୈତ୍ର, ବ ଦୋଳପୂର୍ଣ୍ଣିମା ଦିନରେ, ୩୦ ତାରିଖ ମାର୍ଚ୍ଚ ୧୮୬୬ ଖ୍ରୀଷ୍ଟାବ୍ଦ । ଠାକୁରଙ୍କର ଏଥର ଜନ୍ମଭୂମି ଦର୍ଶନ ସମୟରେ ଶିବରାମଙ୍କ ବୟସ ତିନି ଚାରି ବର୍ଷ ଅର୍ଥାତ୍ ୧୮୬୯-୭୦ ଖ୍ରୀଷ୍ଟାବ୍ଦ ।

''ପରମହଂସ ବାଳକ ପରି, — ଆତ୍ମପର ନାହିଁ, ଐହିକ ସମ୍ବନ୍ଧର ଆଣ୍ଟ ନାହିଁ । ରାମଲାଲ୍‌ର ଭାଇ ଦିନେ କହୁଛି, 'ତୁମେ କକେଇ, ନା ପିଉସା' ।''

''ପରମହଂସଙ୍କର, ବାଳକପରି ଗତିବିଧିର ହିସାବ ନାହିଁ । ସବୁ ବ୍ରହ୍ମମୟ ଦେଖନ୍ତି, — କେଉଁଠାକୁ ଯାଉଛି — କେଉଁଠାରେ ଚାଲୁଛି, — ହିସାବ ନାହିଁ । ରାମଲାଲ୍‌ର ଭାଇ ହୃଦୁ ଘରକୁ ଦୁର୍ଗାପୂଜା ଦେଖିବାକୁ ଯାଇଥିଲା । ହୃଦୁର ଘରୁ ଝଟ୍ କରି ଆପେ ଆପେ କେଉଁଆଡ଼େ ଚାଲିଯାଇଛି ! ଚାରି ବର୍ଷର ବାଳକ — ବାଟର ଲୋକ ଦେଖି ପଚାରୁଛନ୍ତି, ତୁ କେଉଁଠାରୁ ଆସିଲୁ ? ସେତେବେଳେ କିଛି କହିପାରେ ନାହିଁ । କେବଳ କହେ — 'ଚାଳ ।' (ଅର୍ଥାତ୍ ଯେଉଁ ଚାଳଘରେ ପୂଜା ହେଉଛି) । ଯେତେବେଳେ ପ୍ରଶ୍ନ କଲେ, 'କାହାଘରୁ ଆସିଛୁ ?' ସେତେବେଳେ କେବଳ କହେ — 'କକେଇ' ।''

'ପରମହଂସଙ୍କର ଉନ୍ମାଦ ଅବସ୍ଥା ହୁଏ । ଯେତେବେଳେ ଉନ୍ମାଦ ହେଲା, ଶିବଲିଙ୍ଗ ବୋଧରେ ନିଜର ଲିଙ୍ଗକୁ ପୂଜା କଲି । ଜୀବନ୍ତ — ଲିଙ୍ଗ ପୂଜା । ପୁଣି ଗୋଟିଏ ମୁକ୍ତା ପିନ୍ଧା ହୁଏ ! ବର୍ତ୍ତମାନ ଆଉ ପିନ୍ଧେ ନାହିଁ ।'

## ପ୍ରତିଷ୍ଠା ପରେ (ପ୍ରତିଷ୍ଠା ୧୮୫୫)
## ପୂର୍ଣ୍ଣଜ୍ଞାନୀ ପାଗଳ ସଙ୍ଗରେ ଦେଖା !

''ଦକ୍ଷିଣେଶ୍ୱର ମନ୍ଦିର ପ୍ରତିଷ୍ଠାର କିଛିଦିନ ପରେ ଜଣେ ପାଗଳ ଆସିଥିଲା, — ପୂର୍ଣ୍ଣଜ୍ଞାନୀ । ଛିଣ୍ଡା ଜୋତା, ହାତରେ କଞ୍ଚି — ଏକ ହାତରେ ଗୋଟିଏ ଭାଣ୍ଡ, ଆମ୍ବଚାରା, ଗଙ୍ଗାରେ ବୁଡ଼ି ଉଠିଲା, କୌଣସି ସନ୍ଧ୍ୟା ଆହ୍ନିକ ନାହିଁ, ଅଣ୍ଟିରେ କଅଣ ଥିଲା ତାହା ଖାଇଲା । ତାହାପରେ କାଳୀଘରକୁ ଯାଇ ସ୍ତବ କରିବାକୁ ଲାଗିଲା । ମନ୍ଦିର କମ୍ପି ଯାଇଥିଲା । ହଳଧାରୀ ସେତେବେଳେ କାଳୀଘରେ ଥିଲା । ଅତିଥିଶାଳାରେ ଏମାନେ ତାକୁ ଭାତ ଦେଲେ ନାହିଁ — ସେଥିପ୍ରତି ଭ୍ରୂକ୍ଷେପ ନାହିଁ । ପତ୍ରରୁ ଗୋଟାଇ ଖାଇବାକୁ ଲାଗିଲା — ଯେଉଁଠାରେ କୁକୁରଗୁଡ଼ାକ ଖାଉଛନ୍ତି । ମଝିରେ ମଝିରେ କୁକୁରଗୁଡ଼ାଙ୍କୁ ହଟାଇ ନିଜେ ଖାଇବାକୁ ଲାଗିଲା, — ତେବେ କୁକୁରଗୁଡ଼ାକ କିଛି କଲେ ନାହିଁ । ହଳଧାରୀ ପଛରେ ପଛରେ ଯାଇଥିଲା, ଆଉ ପ୍ରଶ୍ନ କରିଥିଲା, 'ତୁମେ କିଏ ? ତୁମେ କ'ଣ ପୂର୍ଣ୍ଣଜ୍ଞାନୀ ?' ସେତେବେଳେ ସେ କହିଲା, 'ମୁଁ ପୂର୍ଣ୍ଣଜ୍ଞାନୀ' ! ଚୁପ୍ !''

''ମୁଁ ହଳଧାରୀ ପାଖରୁ ଯେତେବେଳେ ଏକଥା ଶୁଣିଲି, ମୋର ଛାତି ଧଡ଼ପଡ଼ ହେଲା, ଭୟରେ ହୃଦୁକୁ କୁଣ୍ଢେଇ ଧରିଲି । ମା'ଙ୍କୁ କହିଲି, 'ମା', ତେବେ ମୋର କ'ଣ ଏହି ଅବସ୍ଥା ହେବ !' ଆମେମାନେ ଦେଖିବାକୁ ଗଲୁ — ଆମମାନଙ୍କ ପାଖରେ ଖୁବ୍ ଜ୍ଞାନର କଥା — ଅନ୍ୟ କେହି ଆସିଲେ ପାଗଳାମୀ । ଯେତେବେଳେ ଚାଲିଗଲା, ହଳଧାରୀ ଅନେକ ଦୂର ସଙ୍ଗରେ ଯାଇଥିଲା । ଫାଟକ ପାର ହେଲାରୁ ହଳଧାରୀକୁ କହିଥିଲା, 'ତୋତେ ଆଉ କଅଣ କହିବି । ଏହି ଗାଡ଼ିଆ ଜଳ ଆଉ ଗଙ୍ଗା ଜଳରେ ଯେତେବେଳେ କୌଣସି ଭେଦ

ବୁଦ୍ଧି ରହିବ ନାହିଁ, ସେତେବେଳେ ଜାଣିବୁ ପୂର୍ଣ୍ଣଜ୍ଞାନ ହୋଇଛି ।' ତାହାପରେ ଶୀଘ୍ର ଶୀଘ୍ର ଚାଲିଗଲା ।''

## (୩)

## ପାଣ୍ଡିତ୍ୟ ଅପେକ୍ଷା ତପସ୍ୟାର ଅଧିକ ପ୍ରୟୋଜନ । ସାଧସାଧନା ।

ଠାକୁର ଶ୍ରୀରାମକୃଷ୍ଣ ମାଷ୍ଟରଙ୍କ ସହିତ କଥା କହୁଛନ୍ତି । ଭକ୍ତମାନେ ମଧ୍ୟ ପାଖରେ ବସିଛନ୍ତି ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—ଶଶଧରଙ୍କୁ ତୁମର କିପରି ମନେହୁଏ ?

ମାଷ୍ଟର—ଆଜ୍ଞା, ବେଶ୍ ।

ଶ୍ରୀରାମକୃଷ୍ଣ—ଖୁବ୍ ବୁଦ୍ଧିମାନ୍ ନା ?

ମାଷ୍ଟର—ଆଜ୍ଞା, ପାଣ୍ଡିତ୍ୟ ବେଶ୍ ଅଛି ।

ଶ୍ରୀରାମକୃଷ୍ଣ—ଗୀତାରେ ଅଛି—ଯାହାଙ୍କୁ ଅନେକ ଲୋକ ମାନନ୍ତି, ତାଙ୍କ ଭିତରେ ଈଶ୍ୱରଙ୍କର ଶକ୍ତି ଅଛି । ତେବେ ତାଙ୍କର କିଛି କାର୍ଯ୍ୟ ବାକି ଅଛି ।

''କେବଳ ପାଣ୍ଡିତ୍ୟରେ କ'ଣ ହେବ, **କିଛି ତପସ୍ୟା ଦରକାର**, — କିଛି ସାଧସାଧନା ଦରକାର ।''

## ପୂର୍ବକଥା–ଗୌରୀ ପଣ୍ଡିତ ଓ ନାରାୟଣ ଶାସ୍ତ୍ରୀଙ୍କର ସାଧନା । ବେଲଘର ଉଦ୍ୟାନରେ କେଶବଙ୍କ ସହିତ ସାକ୍ଷାତ୍ ୧୮୭୫ । କପ୍ତାନଙ୍କର ଆଗମନ ୧୮୭୫–୭୬ ।

''ଗୌରୀ ପଣ୍ଡିତ ସାଧନା କରିଥିଲେ । ଯେତେବେଳେ ସ୍ତବ କରୁଥିଲେ, 'ହାରେ ରେ ନିରାଲମ୍ବ ଲମ୍ବୋଦର !' —ସେତେବେଳେ ପଣ୍ଡିତମାନେ କେଞ୍ଚୁଆ ପରି ହୋଇଯାଆନ୍ତି ।''

''ନାରାୟଣ ଶାସ୍ତ୍ରୀ କେବଳ ପଣ୍ଡିତ ନ ଥିଲେ, ସାଧସାଧନା କରିଥିଲେ ।''

''ନାରାୟଣ ଶାସ୍ତ୍ରୀ ପଚିଶ ବର୍ଷ କ୍ରମାନ୍ୱୟରେ ପଢ଼ାପଢ଼ି କରିଥିଲେ, ସାତବର୍ଷ ନ୍ୟାୟ ପଢ଼ିଥିଲେ, —ତେବେ ମଧ୍ୟ 'ହର ହର' କହୁ କହୁ ଭାବ ହୁଏ । ଜୟପୁରର ରାଜା ସଭା ପଣ୍ଡିତ କରିବାକୁ ଇଚ୍ଛା କରିଥିଲେ । ତଥାପି ସେ କାର୍ଯ୍ୟ ସ୍ୱୀକାର କଲେ ନାହିଁ । ଦକ୍ଷିଣେଶ୍ୱରକୁ ପ୍ରାୟ ଆସି ରହୁଥିଲେ । ବଶିଷ୍ଠାଶ୍ରମକୁ ଯିବାର ଭାରି ଇଚ୍ଛା, —ସେଠାରେ ତପସ୍ୟା କରିବେ । ଯିବା କଥା ପ୍ରାୟ ମୋତେ କହୁଥିଲେ । ମୁଁ ତାଙ୍କୁ ସେଠାକୁ ଯିବାକୁ ବାରଣ କଲି । —ସେତେବେଳେ କହିଲେ 'କେଉଁଦିନ ମରିଯିବି, ସାଧନା କେବେ କରିବି—

ଡୁବ୍‌କି କବ୍ ଫଟ୍ ଯାଏଗା !' ଅନେକ ଜିଦ୍ କରିବାରୁ ମୁଁ ଯିବାକୁ କହିଲି ।''

''ଶୁଣିବାକୁ ପାଏ, କେହି କେହି କହନ୍ତି, ନାରାୟଣ ଶାସ୍ତ୍ରୀ ଶରୀର ତ୍ୟାଗ କରିଛନ୍ତି, ତପସ୍ୟା କରିବା ସମୟରେ ଭୈରବୀଙ୍କୁ କୁଆଡ଼େ ଚାପୁଡ଼ା ମାରିଥିଲେ । ଆଉ କେହି କେହି କହନ୍ତି, ବଞ୍ଚି ଅଛନ୍ତି, —ହେଇ ଆମ୍ଭେମାନେ ତାଙ୍କୁ ରେଳରେ ଉଠାଇ ଦେଇ ଆସିଲୁ ।''

''କେଶବସେନ୍‌ଙ୍କୁ ଦେଖିବା ପୂର୍ବରୁ ନାରାୟଣ ଶାସ୍ତ୍ରୀଙ୍କୁ କହିଲି, ତୁମେ ଥରେ ଯାଅ, ଦେଖିଆସ କିପରି ଲୋକ । ସେ ଦେଖିଆସି କହିଲେ, ଲୋକଟା ଜପରେ ସିଦ୍ଧ । ସେ ଜ୍ୟୋତିଷ ଜାଣନ୍ତି—କହିଲେ, 'କେଶବସେନ୍‌ଙ୍କର ଭାଗ୍ୟ ଭଲ' । ମୁଁ ସଂସ୍କୃତରେ, ସେ ବଙ୍ଗଳା ଭାଷାରେ କଥା କହିଲେ ।''

''ସେତେବେଳେ ମୁଁ ହୃଦୁକୁ, ସଙ୍ଗରେ ଘେନି ବେଲଘର ଉଦ୍ୟାନକୁ ଯାଇ କେଶବଙ୍କୁ ଦେଖିଲି । ଦେଖି କହିଲି, 'ଏହାଙ୍କର ଲାଞ୍ଜ ଖସିଛି, —ଏ ଜଳରେ ରହିପାରନ୍ତି, ସ୍ଥଳରେ ମଧ ରହିପାରନ୍ତି' ।''

''ମୋତେ ପରଖ କରିବା ପାଇଁ କେଶବସେନ୍ ବ୍ରାହ୍ମସମାଜର ତିନିଜଣ ଲୋକଙ୍କୁ କାଳୀ ମନ୍ଦିରକୁ ପଠାଇ ଦେଲେ । ତାହା ଭିତରେ ପ୍ରସନ୍ନ ମଧ ଥିଲା । ରାତିଦିନ ମୋତେ ଦେଖିବେ, ଦେଖି କେଶବଙ୍କ ପାଖକୁ ଖବର ଦେବେ । ମୋ ଘର ଭିତରେ ରାତ୍ରରେ ଥିଲେ, —କେବଳ 'ଦୟାମୟ, ଦୟାମୟ' କରିବାକୁ ଲାଗିଲେ, —ଆଉ ମୋତେ କହିଲେ 'ତୁମେ କେଶବ ବାବୁଙ୍କୁ ଧର ତାହାହେଲେ ତୁମର ଭଲ ହେବ ।' ମୁଁ କହିଲି, 'ମୁଁ ସାକାର ମାନେ ।' ତେବେ ମଧ 'ଦୟାମୟ, ଦୟାମୟ' କହିଲେ । ତା'ପରେ ମୋର ଅନ୍ୟ ପ୍ରକାର ଅବସ୍ଥା ହେଲା, କହିଲି, 'ଏଠାରୁ ଯାଅ ।' ଘର ମଧରେ କୌଣସି ମତେ ରହିବାକୁ ଦେଲି ନାହିଁ । ସେମାନେ ବାରଣ୍ଡାରେ ଯାଇ ଶୋଇ ରହିଲେ ।''

''କପ୍ତାନ ମଧ ଯେଉଁ ଦିନ ମୋତେ ପ୍ରଥମେ ଦେଖିଲା, ସେଦିନ ରାତ୍ରିରେ ରହିଥିଲା ।''

## ମାଇକେଲ ମଧୁସୂଦନ* ନାରାୟଣ ଶାସ୍ତ୍ରୀଙ୍କ ସଙ୍ଗେ କଥା ।

''ନାରାୟଣ ଶାସ୍ତ୍ରୀ ଯେତେବେଳେ ଥିଲେ ମାଇକେଲ ଆସିଥିଲେ । ମଥୁରବାବୁଙ୍କର ବଡ଼ପୁଅ ଦ୍ୱାରିକାବାବୁ ତାଙ୍କୁ ସଙ୍ଗରେ ନେଇଆସିଥିଲେ । ମ୍ୟାଗାଜିନ୍‌ର ସାହେବମାନଙ୍କ ସଙ୍ଗରେ ମୋକଦ୍ଦମା ହେବାର ଯୋଗାଡ଼ ହୋଇଥିଲା । ତେଣୁ ମାଇକେଲଙ୍କୁ ଆଣି ବାବୁମାନେ ପରାମର୍ଶ କରିଥିଲେ ।''

---

* ଶ୍ରୀମଧୁସୂଦନ କବି—ଜନ୍ମ ସାଗରଦାଁଡ଼ି ୧୮୨୪, ଇଂଲଣ୍ଡରେ ଅବସ୍ଥିତ ୧୮୬୨-୬୭; ଦେହତ୍ୟାଗ, ୧୮୭୩ । ଠାକୁରଙ୍କୁ ଦର୍ଶନ ୧୮୬୮ର ପରେ ହେବ ।

''ଦପ୍ତରଖାନା ପାଖରେ ଗୋଟିଏ ବଡ଼ ଘର ଥିଲା । ସେଠାରେ ମାଇକେଲଙ୍କ ସଙ୍ଗରେ ଦେଖା ହୋଇଥିଲା । ମୁଁ ନାରାୟଣ ଶାସ୍ତ୍ରୀଙ୍କୁ କଥା କହିବାକୁ କହିଲି । ସଂସ୍କୃତରେ କଥା ଭଲକରି କହିପାରିଲେ ନାହିଁ । ଭୁଲ ଭାଲ ହେଲା । ସେତେବେଳେ ନିଜ ଭାଷାରେ କଥା ହେଲା ।''

''ନାରାୟଣ ଶାସ୍ତ୍ରୀ କହିଲେ, 'ତୁମେ ନିଜର ଧର୍ମ କାହିଁକି ଛାଡ଼ିଲ ? ମାଇକେଲ ପେଟ ଦେଖାଇ କହିଲେ, 'ପେଟ ପାଇଁ—ଛାଡ଼ିବାକୁ ହୋଇଛି' ।''

''ନାରାୟଣ ଶାସ୍ତ୍ରୀ କହିଲେ, 'ଯେ ପେଟ ପାଇଁ ଧର୍ମ ଛାଡ଼େ, ତା' ସଙ୍ଗରେ କଥା କ'ଣ କହିବି !' ସେତେବେଳେ ମାଇକେଲ ମୋତେ କହିଲେ, 'ଆପଣ କିଛି କହନ୍ତୁ' ।''

''ମୁଁ କହିଲି, କେଜାଣି କାହିଁକି ମୋର କିଛି କହିବାକୁ ଇଚ୍ଛା ହେଉନାହିଁ । ମୋ ମୁଖ କିଏ ଯେପରି ଚାପି ଧରୁଛି ।''

## କାମିନୀ କାଞ୍ଚନ ପଣ୍ଡିତଙ୍କୁ ମଧ ହୀନବୁଦ୍ଧି କରେ । ବିଷୟୀମାନଙ୍କର ପୂଜାଦି

''ଚୌଧୁରୀ ବାବୁଙ୍କର ଠାକୁରଙ୍କୁ ଦର୍ଶନ କରିବାକୁ ଆସିବାର ଥିଲା ।''

ମନମୋହନ—ଚୌଧୁରୀ ଆସିବେ ନାହିଁ । ସେ କହିଲେ, ଫରିଦ୍‌ପୁରର ସେହି ବାଙ୍ଗାଲ (ଶଶଧର) ଆସିବେ, —ତେଣୁ ଯିବି ନାହିଁ ।

ଶ୍ରୀରାମକୃଷ୍ଣ-କି ହୀନବୁଦ୍ଧି ! —ବିଦ୍ୟାର ଅହଂକାର, ପୁଣି ଦ୍ୱିତୀୟ ପକ୍ଷ ସ୍ତ୍ରୀ ବିବାହ କରିଛି, —ଧରାକୁ ସରା ମନେ କରୁଛି ।

ଚୌଧୁରୀ ଏମ୍.ଏ. ପାଶ୍ କରିଛନ୍ତି । ପ୍ରଥମ ସ୍ତ୍ରୀଙ୍କର ମୃତ୍ୟୁ ପରେ ଖୁବ୍ ବୈରାଗ୍ୟ ହୋଇଥିଲା । ଠାକୁରଙ୍କ ପାଖକୁ ଦକ୍ଷିଣେଶ୍ୱରକୁ ପ୍ରାୟ ଯାଆନ୍ତି । ଦ୍ୱିତୀୟଥର ସେ ବିବାହ କରିଛନ୍ତି । ମାସିକ ତିନି ଚାରିଶତ ଟଙ୍କା ପାଆନ୍ତି ।

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)—ଏହି କାମିନୀ କାଞ୍ଚନରେ ଆସକ୍ତି ମନୁଷ୍ୟକୁ ହୀନ-ବୁଦ୍ଧି କରେ । ହରମୋହନ ଯେତେବେଳେ ପ୍ରଥମେ ଗଲା, ସେତେବେଳେ ଭଲ୍ ଲକ୍ଷଣ ଥିଲା । ଦେଖିବା ପାଇଁ ମୁଁ ବ୍ୟାକୁଳ ହୁଏ । ସେତେବେଳେ ବୟସ ୧୭/୧୮ ହେବ । ପ୍ରାୟ ଡାକି ପଠାଏ, ଆଉ ଯାଏ ନାହିଁ । ବର୍ତ୍ତମାନ ସ୍ତ୍ରୀଙ୍କୁ ଆଣି ଅଲଗା ବସା କରିଛି । ମାମୁଁ ଘରେ ଥିଲା, ଭଲ ଥିଲା । ସଂସାରର କୌଣସି ଝିନ୍‌ଝଟ୍ ନ ଥିଲା । ବର୍ତ୍ତମାନ ଅଲଗା ବସା କରି ସ୍ତ୍ରୀ ପାଇଁ ରୋଜ ବଜାର କରେ (ସମସ୍ତଙ୍କର ହାସ୍ୟ); ସେଦିନ ସେଠାକୁ ଯାଇଥିଲା । ମୁଁ କହିଲି, 'ଯାଆ ! ଏଠାରୁ ଚାଲିଯାଆ—ତୋତେ ଛୁଇଁବାକୁ ମୋର ଦେହ କିପରି ହେଉଛି ।'

କର୍ତ୍ତାଭଜା ଚନ୍ଦ୍ର (ଚାଟାର୍ଜୀ) ଆସିଛନ୍ତି । ବୟକ୍ରମ ଷାଠିଏ ପଅଁଷଠି । ମୁଖରେ କେବଳ କର୍ତ୍ତାଭଜାଙ୍କର ଶ୍ଳୋକ । ଠାକୁରଙ୍କର ପଦସେବା କରିବାକୁ ଯାଉଛନ୍ତି । ଠାକୁର

ପାଦସ୍ପର୍ଶ କରିବାକୁ ଦେଲେ ନାହିଁ । ହସି କହିଲେ 'ବର୍ତ୍ତମାନ ତ ବେଶ୍ ହିସାବି କଥା କହୁଛି ।' ଭକ୍ତମାନେ ହସିଲେ ।

ଏଥର ଠାକୁର ଶ୍ରୀରାମକୃଷ୍ଣ ବଳରାମଙ୍କର ଅନ୍ତଃପୁରକୁ ଶ୍ରୀଶ୍ରୀଜଗନ୍ନାଥ ଦର୍ଶନ କରିବାକୁ ଯାଉଛନ୍ତି । ଅନ୍ତଃପୁରରେ ସ୍ତ୍ରୀ ଭକ୍ତମାନେ ତାଙ୍କୁ ଦର୍ଶନ କରିବାକୁ ବ୍ୟାକୁଳ ହୋଇଛନ୍ତି ।

ଠାକୁର ପୁଣି ବୈଠକଖାନାକୁ ଆସିଛନ୍ତି । ସହାସ୍ୟ ବଦନ କହିଲେ, 'ମୁଁ ପାଇଖାନାରେ ବ୍ୟବହୃତ ଲୁଗା ବଦଳି ଜଗନ୍ନାଥଙ୍କୁ ଦର୍ଶନ କଲି । ତା'ପରେ କିଛି ଫୁଲ ଦେଲି ।'

''ବିଷୟୀଙ୍କର ପୂଜା, ଜପ ତପ ଯେତେବେଳେ କରନ୍ତି ମାତ୍ର ସେତିକିବେଳେ । ଯେଉଁମାନେ ଭଗବାନଙ୍କ ବ୍ୟତୀତ କିଛି ଜାଣନ୍ତି ନାହିଁ, ସେମାନେ ନିଶ୍ୱାସ ପ୍ରଶ୍ୱାସ ସଙ୍ଗରେ ତାଙ୍କର ନାମ କରନ୍ତି । କେହି ମନେ ମନେ ସର୍ବଦା 'ରାମ ଓଁ ରାମ' ଜପ କରନ୍ତି । ଜ୍ଞାନ ପଥର ଲୋକମାନେ ମଧ୍ୟ 'ସୋଽହଂ' ଜପ କରନ୍ତି । କାହାରି ସର୍ବଦା ଜିଭ ହଲେ ।''

**''ସର୍ବଦା ସ୍ମରଣ ମନନ ଥିବା ଉଚିତ୍ ।''**

## (୪)

## ବଳରାମଙ୍କର ଘର, ଶଶଧର ପ୍ରଭୃତି ଭକ୍ତଗଣ । ଠାକୁରଙ୍କର ସମାଧି ।

ଶ୍ରୀଯୁକ୍ତ ଶଶଧର ଜଣେ ଦୁଇଜଣ ବନ୍ଧୁଙ୍କ ସହିତ ଘରେ ପ୍ରବେଶ କଲେ ଓ ଠାକୁରଙ୍କୁ ପ୍ରଣାମ କରି ଉପବିଷ୍ଟ ହେଲେ ।

ଶ୍ରୀରାମକୃଷ୍ଣ (ସହାସ୍ୟ) — ଆମେମାନେ ସମସ୍ତେ ମଧୁଶଯ୍ୟା କରି ଅନାଇ ରହିଛୁ— କେତେବେଳେ ବର ଆସିବ । ପଣ୍ଡିତ ହସୁଛନ୍ତି । ଭକ୍ତଙ୍କର ମଜଲିସ୍ । ବଳରାମଙ୍କ ବଡ଼ବାପା ଉପସ୍ଥିତ ଅଛନ୍ତି । ଡାକ୍ତର ପ୍ରତାପ ମଧ୍ୟ ଆସିଛନ୍ତି । ଠାକୁର ପୁଣି କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ (ଶଶଧରଙ୍କ ପ୍ରତି) — ଜ୍ଞାନର ଲକ୍ଷଣ, ପ୍ରଥମ ଶାନ୍ତ ସ୍ୱଭାବ, ଦ୍ୱିତୀୟ ଅଭିମାନ ଶୂନ୍ୟ ସ୍ୱଭାବ । ତୁମର ଉଭୟ ଲକ୍ଷଣ ଅଛି ।

''ଜ୍ଞାନୀଙ୍କର ଆଉ କେତେଗୁଡ଼ିଏ ଲକ୍ଷଣ ଅଛି । ସାଧୁଙ୍କ ପାଖରେ ତ୍ୟାଗୀ, କର୍ମସ୍ଥଳରେ — ଯଥା ଲେକ୍‌ଚର୍ ଦେବା ସମୟରେ ସିଂହତୁଲ୍ୟ, ସ୍ତ୍ରୀଙ୍କ ପାଖରେ ରସରାଜ, ରସ ପଣ୍ଡିତ ।'' (ପଣ୍ଡିତ ଓ ଅନ୍ୟମାନଙ୍କର ହାସ୍ୟ) ।

''ବିଜ୍ଞାନୀଙ୍କର ସ୍ୱଭାବ ଅଲଗା । ଯେପରି ଚୈତନ୍ୟଦେବଙ୍କର ଅବସ୍ଥା । ବାଳକବତ୍, ଉନ୍ମାଦବତ୍, ଜଡ଼ବତ୍, ପିଶାଚବତ୍ ।''

ବାଳକର ଅବସ୍ଥା ଭିତରେ ପୁଣି ବାଲ୍ୟ, କୈଶୋର, ଯୌବନ । କୈଶୋର ଅବସ୍ଥାରେ ଫେଚକାମି । ଉପଦେଶ ଦେବା ସମୟରେ ଯୁବକ ପରି ।

ପଣ୍ଡିତ — ଭକ୍ତିଦ୍ୱାରା ତାଙ୍କୁ କିପରି ଲାଭ କରାଯାଏ ?

## ଶଶଧର ଓ ଭକ୍ତିତତ୍ତ୍ୱ-କଥା । ଜ୍ୱଳନ୍ତ ବିଶ୍ୱାସ ଦରକାର । ବୈଷ୍ଣବମାନଙ୍କର ଦୀନଭାବ ।

ଶ୍ରୀରାମକୃଷ୍ଣ—ପ୍ରକୃତି ଅନୁସାରେ ଭକ୍ତି ତିନି ରକମ ! ଭକ୍ତିର ସତ୍ତ୍ୱ, ଭକ୍ତିର ରଜ, ଭକ୍ତିର ତମଃ ।

''ଭକ୍ତିର ସତ୍ତ୍ୱ— ଈଶ୍ୱର ହିଁ ଜାଣିପାରନ୍ତି । ସେ ପ୍ରକାର ଭକ୍ତ ଗୋପନ ଭଲପାଏ— ହୁଏତ ମଶାରି ଭିତରେ ଧ୍ୟାନ କରେ, କେହି ଜାଣିପାରନ୍ତି ନାହିଁ । ସତ୍ତ୍ୱର ସତ୍ତ୍ୱ— ବିଶୁଦ୍ଧ ସତ୍ତ୍ୱ— ହେଲେ ଈଶ୍ୱର ଦର୍ଶନରେ ଡେରି ନାହିଁ ;— ଯେପରି ଅରୁଣୋଦୟ ହେଲେ ବୁଝାଯାଏ ଯେ, ସୂର୍ଯ୍ୟୋଦୟରେ ଆଉ ଡେରି ନାହିଁ ।''

''ଭକ୍ତିର ରଜଃ ଯାହାଙ୍କର ହୁଏ, ତାଙ୍କର ଟିକିଏ ଇଚ୍ଛା ହୁଏ— ଲୋକେ ଦେଖନ୍ତୁ, ମୁଁ ଭକ୍ତ । ସେ ଷୋଡ଼ଶୋପଚାର ଦେଇ ପୂଜା କରେ, ରେଶମୀ ଲୁଗା ପିନ୍ଧି ଠାକୁରଙ୍କ ଘରକୁ ଯାଏ, — ଗଳାରେ ରୁଦ୍ରାକ୍ଷର ମାଳା, — ମାଳାରେ ମୁକ୍ତା, — ମଝିରେ ମଝିରେ ଗୋଟିଏ ସୁନାର ରୁଦ୍ରାକ୍ଷ ।''

''ଭକ୍ତିର ତମଃ— ଯେପରି ଡକେଇତି ପଡ଼ା ଭକ୍ତି । ଡକାଇତ ଢିଙ୍କି ଉଠାଇ ଡକେଇତି କରେ, ଆଠଟା ଦାରୋଗାକୁ ଭୟ ନାହିଁ, — ମୁହଁରେ 'ମାର ! ଲୁଟ୍ !' ଉନ୍ମାଦ ପରି କହେ— 'ହର, ହର, ହର, ବଂ, ବଂ ! ଜୟ କାଳୀ !' ମନରେ ଖୁବ୍ ଜୋର, **ଜ୍ୱଳନ୍ତ ବିଶ୍ୱାସ** ।''

''ଶାକ୍ତମାନଙ୍କର ସେହିପରି ବିଶ୍ୱାସ । — କଅଣ, ଥରେ କାଳୀ ନାମ ଦୁର୍ଗା ନାମ କରିଛି । ଥରେ ରାମନାମ କରିଛି, **ମୋର ପୁଣି ପାପ** ।''

''ବୈଷ୍ଣବଙ୍କ ବଡ଼ ଦୀନହୀନ ଭାବ । ଯେଉଁମାନେ କେବଳ ମାଳା ଜପନ୍ତି, (ବଳରାମଙ୍କର ପିତାଙ୍କୁ ଲକ୍ଷ୍ୟ କରି) କାନ୍ଦି କଇଁ କଇଁ ହୋଇ କହନ୍ତି, 'ହେ କୃଷ୍ଣ ! ଦୟା କର, — ମୁଁ ଅଧମ, — ମୁଁ ପାପୀ ।''

''ଏପରି ଜ୍ୱଳନ୍ତ ବିଶ୍ୱାସ ଯେ, କହେ ତାଙ୍କର ନାମ କରିଛି ମୋର ପୁଣି ପାପ ! ରାତିଦିନ ହରିନାମ କରେ, କହେ ମୋର ପାପ !''

କଥା କହୁ କହୁ ଠାକୁର ପ୍ରେମରେ ଉନ୍ମତ୍ତ ହୋଇ ଗୀତ ଗାଉଛନ୍ତି । ଗୀତ ଶୁଣି ଶଶଧର କାନ୍ଦୁଛନ୍ତି । ଗୀତ —

ମୁଁ ଦୁର୍ଗା ଦୁର୍ଗା ବୋଲି ମା' ଯଦି ଯାଏ ମରି,
ଅନ୍ତିମ କାଳରେ ଏ ଦୀନ କିପରି ବା ପାରିବ ଜାଣି ଗୋ ଶଙ୍କରୀ,
ବ୍ରାହ୍ମଣ ବିନାଶି ଭ୍ରୂଣ ହତ୍ୟା କରି ସୁରାପାନ ପୁଣି ବିନାଶି ନାରୀ,
ଏ ସବୁ ପାତକ ନଭାବି ତିଳେକ ବ୍ରହ୍ମପଦ ନେଇ ପାରି ॥

ଗୀତ— ଶିବ ସଙ୍ଗେ ସଦା ରଙ୍ଗେ ଆନନ୍ଦେ ମଗନା ।
ସୁଧା ପାନେ ଢଳ ଢଳ ଢଳି କିନ୍ତୁ ପଡ଼େ ନା ମା ॥

ଅଧରଙ୍କର ଗାୟକ ବୈଷ୍ଣବଚରଣ ଏଥର ଗୀତ ଗାଉଛନ୍ତି—

ଦୁର୍ଗାନାମ ଜପ ସଦା ରସନା ଆମାର,
ଦୁର୍ଗମେ ଶ୍ରୀଦୁର୍ଗା ବିନେ କେ କରେ ନିସ୍ତାର ।।
ତୁମି ସ୍ୱର୍ଗ ତୁମି ମର୍ତ୍ତ୍ୟ ତୁମି ସେ ପାତାଲ,
ତୋମା ହତେ ହରି ବ୍ରହ୍ମା ଦ୍ୱାଦଶ ଗୋପାଲ ।
ଦଶ ମହାବିଦ୍ୟା ମାତା ଦଶ ଅବତାର,
ଏବାର କୋନ୍‌ରୂପେ ଆମାୟ କରିତେ ହବେ ପାର ।।
ଚଲ୍ ଅଚଲ୍ ତୁମି ମା ତୁମି ସୂକ୍ଷ୍ମ ସ୍ଥୂଲ,
ସୃଷ୍ଟି ସ୍ଥିତି ପ୍ରଳୟ ତୁମି ତୁମି ବିଶ୍ୱମୂଳ ।
ତ୍ରିଲୋକ ଜନନୀ ତୁମି ତ୍ରିଲୋକ ତାରିଣୀ,
ସକଲେର ଶକ୍ତି ତୁମି (ମା ଗୋ) ତୋମାର ଶକ୍ତି ତୁମି ।।

ଏପରି କେତେ ପଦ ଗୀତ ଶୁଣି ଠାକୁର ଭାବାବିଷ୍ଟ ହୋଇଛନ୍ତି । ଗୀତ ସମାପ୍ତ ହେଲାରୁ ନିଜେ ଗୀତ ଗାଇଲେ—ଯଶୋଦା ନଚାଉଥିଲେ ବୋଲି ନୀଳମଣି,ସେ ବେଶ ଲୁଚାଇଲୁ କାହିଁ କରାଳ ବଦନି !

ବୈଷ୍ଣବଚରଣ ଏଥର କୀର୍ତ୍ତନ ଗାଉଛନ୍ତି । ସୁବଳ-ମିଳନ । ଯେତେବେଳେ ଗାୟକ ତୁହା ଗାଉଛନ୍ତି—'ରା ବେ ଧା ବେରୋୟ ନା ରେ !'—

ଠାକୁର ସମାଧିସ୍ଥ ହେଲେ । ଶଶଧର ପ୍ରେମାଶ୍ରୁ ବିସର୍ଜନ କରୁଛନ୍ତି ।

## (୫)

## ବାହୁଡ଼ା ଯାତ୍ରା । ଠାକୁରଙ୍କର ରଥ ସମ୍ମୁଖରେ ଭକ୍ତଙ୍କ ସଙ୍ଗରେ ନୃତ୍ୟ ଓ ସଂକୀର୍ତ୍ତନ ।

ଠାକୁରଙ୍କର ସମାଧି ଭଙ୍ଗ ହେଲା, ଗୀତ ମଧ୍ୟ ସମାପ୍ତ ହେଲା । ଶଶଧର, ପ୍ରତାପ, ରାମଦୟାଲ, ରାମ, ମନମୋହନ ଯୁବକ ଭକ୍ତ ପ୍ରଭୃତି ଅନେକ ବସିଛନ୍ତି । ଶ୍ରୀରାମକୃଷ୍ଣ ମାଷ୍ଟରଙ୍କୁ କହୁଛନ୍ତି, 'ତୁମେମାନେ କେହି କିଛି କହନା' —ଅର୍ଥାତ୍ ଶଶଧରଙ୍କୁ କିଛି ପ୍ରଶ୍ନ କର ।

ରାମଦୟାଲ (ଶଶଧରଙ୍କ ପ୍ରତି)—ବ୍ରହ୍ମଙ୍କର ରୂପ କଳ୍ପନା ଯାହା ଶାସ୍ତ୍ରରେ ଅଛି, ସେ କଳ୍ପନା କିଏ କରନ୍ତି ?

ପଣ୍ଡିତ—ବ୍ରହ୍ମ ନିଜେ କରନ୍ତି, —ମନୁଷ୍ୟଙ୍କର କଳ୍ପନା ନୁହେଁ ।

ପ୍ରତାପ—କାହିଁକି ରୂପ କଳ୍ପନା କରନ୍ତି ?

ଶ୍ରୀରାମକୃଷ୍ଣ—କାହିଁକି ? ସେ କାହା ସଙ୍ଗରେ ପରାମର୍ଶ କରି କାର୍ଯ୍ୟ କରନ୍ତି ନାହିଁ । ତାଙ୍କର ଖୁସି, ସେ ଇଚ୍ଛାମୟ ! କାହିଁକି ସେ କରନ୍ତି, ଏ ଖବରରେ ଆମର କାର୍ଯ୍ୟ

କଅଣ ? ଉଦ୍ୟାନକୁ ଆମ୍ବ ଖାଇବାକୁ ଆସିଛ, ଆମ୍ବ ଖାଅ :—କେତେଟା ଗଛ, କେତେ ହଜାର ଡାଳ, କେତେ ଲକ୍ଷ ପତ୍ର, —ଏ ସବୁ ହିସାବରେ କାର୍ଯ୍ୟ କଅଣ ? ବୃଥା ତର୍କ ବିଚାର କଲେ ବସ୍ତୁ ଲାଭ ହୁଏ ନାହିଁ ।

ପ୍ରତାପ—ତାହାହେଲେ ବିଚାର କରିବି ନାହିଁ ?

ଶ୍ରୀରାମକୃଷ୍ଣ—ବୃଥା ତର୍କ ବିଚାର କରିବ ନାହିଁ । ତେବେ ସଦସଦ୍ ବିଚାର କରିବ, —କେଉଁଟା ନିତ୍ୟ, କେଉଁଟା ଅନିତ୍ୟ । ଯେପରି କାମ କ୍ରୋଧାଦିଙ୍କର ବା ଶୋକ ସମୟରେ ।

ପଣ୍ଡିତ—ସେ ଅଲଗା କଥା । ତାହାକୁ ବିବେକାତ୍ମକ ବିଚାର କହନ୍ତି ।

ଶ୍ରୀରାମକୃଷ୍ଣ—ହଁ ସଦସଦ୍-ବିଚାର । (ପଣ୍ଡିତଙ୍କ ପ୍ରତି)—"ଆଗେ ବଡ଼ ବଡ଼ ଲୋକ ଆସୁଥିଲେ ।"

ପଣ୍ଡିତ—କ'ଣ ବଡ଼ ଲୋକ ?

ଶ୍ରୀରାମକୃଷ୍ଣ—ନା ବଡ଼ ବଡ଼ ପଣ୍ଡିତ ।

ଏଥିମଧ୍ୟରେ ଛୋଟ ରଥ ଖଣ୍ଡିକୁ ବାହାରର ଦୋତାଲା ବାରଣ୍ଡା ଉପରକୁ ଅଣା ହୋଇଛି । ଶ୍ରୀଶ୍ରୀଜଗନ୍ନାଥଦେବ, ସୁଭଦ୍ରା ଓ ବଳରାମ ନାନା ବର୍ଣ୍ଣର କୁସୁମ ଓ ପୁଷ୍ପମାଳାରେ ସୁଶୋଭିତ ହୋଇଛନ୍ତି ଏବଂ ଅଳଙ୍କାର ଓ ନବବସ୍ତ୍ର ପୀତାମ୍ବର ପରିଧାନ କରିଛନ୍ତି । ବଳରାମଙ୍କ ସାତ୍ତ୍ୱିକ ପୂଜା, କୌଣସି ଆଡ଼ମ୍ବର ନାହିଁ । ବାହାରର ଲୋକେ ମଧ୍ୟ ଜାଣନ୍ତି ନାହିଁ ଯେ, ଘରେ ରଥ ହୋଇଛି ।

ଏଥର ଠାକୁର ଭକ୍ତଙ୍କ ସଙ୍ଗରେ ରଥ ସମ୍ମୁଖକୁ ଆସିଛନ୍ତି । ଏହି ପିଣ୍ଡାରେ ରଥ ଟଣା ହେବ । ଠାକୁର ରଥର ଦୌଡ଼ି ଧରିଲେ ଓ କିୟତ୍‌କ୍ଷଣ ଟାଣିଲେ । ପରେ ଗୀତ ଗାଇଲେ-'ନଦିଆକୁ ଟଳମଳ କରେ ଟଳମଳ କରେ, ଗୌର ପ୍ରେମର ହଲ୍ଲୋଳ ରେ ।।' ଗୀତ- ହରି ବୋଲିଲେ ଯା'ର ନୟନୁ ଅଶ୍ରୁଝରେ, ଆସିଛନ୍ତି ସେହି ଦୁଇଭାଇ ରେ ।। ।

ଠାକୁର ନୃତ୍ୟ କରୁଛନ୍ତି । ଭକ୍ତମାନେ ମଧ୍ୟ ସଙ୍ଗେ ସଙ୍ଗେ ନାଚୁଛନ୍ତି ଓ ଗାଉଛନ୍ତି । କୀର୍ତ୍ତନୀୟା ବୈଷ୍ଣବଚରଣ, ସମ୍ପ୍ରଦାୟ ସହ ଗୀତ ଓ ନୃତ୍ୟରେ ଯୋଗଦାନ କରିଛନ୍ତି ।

ଦେଖୁ ଦେଖୁ ସମସ୍ତ ପିଣ୍ଡା ପରିପୂର୍ଣ୍ଣ ହେଲା । ସ୍ତ୍ରୀଲୋକମାନେ ମଧ୍ୟ ନିକଟସ୍ଥ ଘରଠାରୁ ଏହି ପ୍ରେମାନନ୍ଦ ଦେଖୁଛନ୍ତି । ବୋଧହେଲା, ଯେପରି ଶ୍ରୀବାସ ମନ୍ଦିରରେ ଶ୍ରୀ ଗୌରାଙ୍ଗ ଭକ୍ତ ସଙ୍ଗରେ ହରି ପ୍ରେମରେ ବିଭୋଳ ହୋଇ ନୃତ୍ୟ କରୁଛନ୍ତି ।

ବନ୍ଧୁବର୍ଗଙ୍କ ସଙ୍ଗରେ ପଣ୍ଡିତ ମଧ୍ୟ ରଥ ସମୁଖରେ ଏହି ନୃତ୍ୟ ଗୀତ ଦର୍ଶନ କରୁଛନ୍ତି । ଏପର୍ଯ୍ୟନ୍ତ ସନ୍ଧ୍ୟା ହୋଇ ନାହିଁ । ଠାକୁର ବୈଠକଖାନା ଘରକୁ ଫେରି ଆସିଛନ୍ତି ଓ ଭକ୍ତଙ୍କ ସଙ୍ଗରେ ଉପବେଶନ କରିଛନ୍ତି ।

ଶ୍ରୀରାମକୃଷ୍ଣ (ପଣ୍ଡିତଙ୍କ ପ୍ରତି)—ଏହାର ନାମ ଭଜନାନନ୍ଦ । ସଂସାରୀମାନେ ବିଷୟାନନ୍ଦ ନେଇ ରହନ୍ତି ,—କାମିନୀ କାଞ୍ଚନର ଆନନ୍ଦ । ଭଜନ କରୁ କରୁ ଯେତେବେଳେ କୃପା ହୁଏ, ସେତେବେଳେ ସେ ଦର୍ଶନ ଦିଅନ୍ତି—ସେତେବେଳେ ବ୍ରହ୍ମାନନ୍ଦ ।

ଶଶଧର ଓ ଭକ୍ତମାନେ ଅବାକ୍ ହୋଇ ଶୁଣୁଛନ୍ତି ।

ପଣ୍ଡିତ (ବିନୀତ ଭାବରେ)—ଆଜ୍ଞା,କିପରି ବ୍ୟାକୁଳ ହେଲେ ମନର ଏହି ସରସ ଅବସ୍ଥା ହୁଏ ?

ଶ୍ରୀରାମକୃଷ୍ଣ—ଈଶ୍ୱରଙ୍କୁ ଦର୍ଶନ କରିବାପାଇଁ ଯେତେବେଳେ ପ୍ରାଣ ଛଟପଟ ହୁଏ, ସେତେବେଳେ ଏହି ବ୍ୟାକୁଳତା ଆସେ । ଗୁରୁ ଶିଷ୍ୟଙ୍କୁ କହିଲେ, ଆସ ତୁମକୁ ଦେଖାଇ ଦିଏ, କିପରି ବ୍ୟାକୁଳ ହେଲେ ଈଶ୍ୱରଙ୍କୁ ଦେଖାଯାଏ । ଏହା କହି ଗୋଟିଏ ପୋଖରୀ ନିକଟକୁ ନେଇ ଶିଷ୍ୟକୁ ଜଳରେ ଚାପି ଧରିଲେ । ଉଠାଇବା ପରେ ଶିଷ୍ୟଙ୍କୁ ପ୍ରଶ୍ନ କଲେ, ତୁମର ପ୍ରାଣ କିପରି ହେଉଥିଲା ? ସେ କହିଲେ ପ୍ରାଣ ଛଟପଟ ହେଉଥିଲା ।

ପଣ୍ଡିତ—ହଁ ହଁ, ତାହା ଠିକ୍ ; ଏଥର ବୁଝିଛି ।

ଶ୍ରୀରାମକୃଷ୍ଣ—ଈଶ୍ୱରଙ୍କୁ ଭଲ ପାଇବା ହେଉଛି ସାର କଥା । ଭକ୍ତି ହିଁ ସାର, ନାରଦ ରାମଙ୍କୁ କହିଲେ, ତୁମର ପାଦପଦ୍ମରେ ଯେପରି ସଦା ଶୁଦ୍ଧାଭକ୍ତି ରହେ ; ଆଉ ଯେପରି ତୁମର ଭୁବନମୋହିନୀ ମାୟାରେ ମୁଗ୍ଧ ନ ହୁଏ । ରାମଚନ୍ଦ୍ର କହିଲେ, ଆଉ କିଛି ବର ନିଅ, ନାରଦ କହିଲେ, ଅନ୍ୟ କିଛି ଚାହେଁନାହିଁ,—କେବଳ ଯେପରି ପାଦପଦ୍ମରେ ଭକ୍ତି ରହେ ।

ପଣ୍ଡିତ ବିଦାୟ ନେବେ । ଠାକୁର କହିଲେ,ଏହାଙ୍କ ପାଇଁ ଗାଡ଼ି ଆଣି ଦିଅ ।

ପଣ୍ଡିତ—ଆଜ୍ଞା ନା,ଆମେମାନେ ଏପରି ଚାଲିଯିବୁ ।

ଶ୍ରୀରାମକୃଷ୍ଣ (ସହାସ୍ୟ)—ତାହା କ'ଣ ହୁଏ ! —ବ୍ରହ୍ମା ଯାରେ ନ ପାୟ ଧ୍ୟାନେ—

ପଣ୍ଡିତ—ଯିବାର ପ୍ରୟୋଜନ ନ ଥିଲା, ତେବେ ସନ୍ଧ୍ୟାଦି କରିବାକୁ ହେବ ।

## ଶ୍ରୀରାମକୃଷ୍ଣଙ୍କର ପରମହଂସ ଅବସ୍ଥା ଓ କର୍ମତ୍ୟାଗ । ମଧୁର ନାମ କୀର୍ତ୍ତନ ।

ଶ୍ରୀରାମକୃଷ୍ଣ—ମା' ମୋର ସନ୍ଧ୍ୟାଦି କର୍ମ ଶେଷ କରି ଦେଇଛନ୍ତି । ସନ୍ଧ୍ୟାଦି ଦ୍ୱାରା ଦେହ ମନ ଶୁଦ୍ଧ କରିବା ସେ ଅବସ୍ଥା ବର୍ତ୍ତମାନ ଆଉ ନାହିଁ । ଏହା କହି ଠାକୁର ଗୀତର ଡୁହା ଧରିଲେ —'ଶୁଚି ଅଶୁଚିରେ ଲୟେ ଦିବ୍ୟ ଘରେ କବେ ଶୁବି । ତାଦେର ଦୁଇ ସତୀନେ ପିରୀତ ହଲ ତବେ ଶ୍ୟାମା ମାରେ ପାବି !'

ଶଶଧର ପ୍ରଣାମ କରି ବିଦାୟ ଗ୍ରହଣ କଲେ ।

ରାମ—ମୁଁ କାଲି ଶଶଧରଙ୍କ ପାଖକୁ ଯାଇଥିଲି, ଆପଣ କହିଥିଲେ ।

ଶ୍ରୀରାମକୃଷ୍ଣ—କାହିଁ, ମୁଁ ତ କହି ନାହିଁ । ତେବେ ଭଲ ତ ତୁମେ ଯାଇଥିଲ ।

ରାମ—ଜଣେ ଖବରକାଗଜର (Indian Empire) ସମ୍ପାଦକ ଆପଣଙ୍କର ନିନ୍ଦା କରୁଥିଲେ ।

ଶ୍ରୀରାମକୃଷ୍ଣ—ତାହା କଲେ ବା ।

ରାମ— ତାହା ପରେ ଶୁଣନ୍ତୁ ! ମୋ କଥା ଶୁଣି, ଆଉ ମୋତେ ଛାଡ଼ନ୍ତି ନାହିଁ, ଆପଣଙ୍କର କଥା ଆହୁରି ଶୁଣିବାକୁ ଚାହାନ୍ତି ।

ପ୍ରତାପ ବର୍ତ୍ତମାନ ମଧ୍ଯ ବସିଛନ୍ତି । ଠାକୁର କହୁଛନ୍ତି— ସେଠାକୁ (ଦକ୍ଷିଣେଶ୍ୱରକୁ) ଥରେ ଯାଅ, -ଭୁବନ (ଧାତ୍ରୀ) ଭଡ଼ା ଦେବେ କହିଛନ୍ତି ।

ସନ୍ଧ୍ୟା ହେଲା । ଠାକୁର ଜଗନ୍ମାତାଙ୍କର ନାମ କରୁଛନ୍ତି — ରାମନାମ,କୃଷ୍ଣନାମ, ହରିନାମ କରୁଛନ୍ତି । ଭକ୍ତମାନେ ନିଃଶବ୍ଦରେ ଶୁଣୁଛନ୍ତି । ଏତେ ସୁମିଷ୍ଟ ନାମ କୀର୍ତ୍ତନ, ଯେପରି ମଧୁ ବର୍ଷଣ ହେଉଛି । ଆଜି ବଳରାମଙ୍କର ଘର ଯେପରି ନବଦ୍ୱୀପ ହୋଇଛି । **ବାହାରେ ନବଦ୍ୱୀପ ଭିତରେ ବୃନ୍ଦାବନ ।**

ଆଜି ରାତ୍ରରେ ଠାକୁର ଦକ୍ଷିଣେଶ୍ୱରକୁ ଯାତ୍ରା କରିବେ । ବଳରାମ ତାଙ୍କୁ ଅନ୍ତଃପୁରକୁ ନେଇ ଯାଉଅଛନ୍ତି —ଜଳଖିଆ ଖୁଆଇବେ । ଏହି ସୁଯୋଗରେ ସ୍ତ୍ରୀ ଭକ୍ତମାନେ ମଧ୍ଯ ତାହାଙ୍କୁ ଦର୍ଶନ କରିବେ ।

ଏଣେ ଭକ୍ତମାନେ ବାହାର ବୈଠକଖାନାରେ ତାଙ୍କୁ ଅପେକ୍ଷା କରୁଛନ୍ତି ଓ ଏକସଙ୍ଗରେ ସଂକୀର୍ତ୍ତନ କରୁଛନ୍ତି । ଠାକୁର ବାହାରକୁ ଆସିବା ମାତ୍ରେ ଯୋଗ ଦେଲେ । କୀର୍ତ୍ତନ ଚାଲିଛି— **ଆମାର ଗୌର ନାଚେ !**

ନାଚେ ସଂକୀର୍ତ୍ତନେ, ଶ୍ରୀବାସ ଅଙ୍ଗନେ,ଭକ୍ତଗନ ସଙ୍ଗେ ।।
ହରିବୋଲ ବଲେ ବଦନେ ଗୋରା, ଚାୟ ଗଦାଧର ପାନେ,
ଗୋରାର ଅରୁନ ନୟନେ,ବହିଛେ ସଘନେ,ପ୍ରେମଧାରା ହେମ ଅଙ୍ଗେ ।।

ଠାକୁର ପଦ ଯୋଡ଼ି ଗାଉଛନ୍ତି—
ନାଚେ ସଂକୀର୍ତ୍ତନେ (ଶଚୀର ଦୁଲାଲ ନାଚେରେ) ।
(ଆମାର ଗୋରା ନାଚେରେ) (ପ୍ରାନେର ଗୋରା ନାଚେରେ) ।



# ଚତୁର୍ଥ ପରିଚ୍ଛେଦ

## (୧)

## ଦକ୍ଷିଣେଶ୍ୱର ମନ୍ଦିରରେ ମାଷ୍ଟର, ରାଖାଲ, ଲାଟୁ, ବଳରାମ, ଅଧର, ଶିବପୁର ଭକ୍ତଗଣ ପ୍ରଭୃତିଙ୍କ ସଙ୍ଗରେ । ଶିବପୁର ଭକ୍ତଙ୍କ ସଙ୍ଗରେ ଯୋଗତତ୍ତ୍ୱ କଥା । କୁଣ୍ଡଳିନୀ ଓ ଷଟ୍‌ଚକ୍ର ଭେଦ ।

ଠାକୁର ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱର ମନ୍ଦିରରେ ମଧ୍ୟାହ୍ନ ସେବା ପରେ ଭକ୍ତଙ୍କ ସଙ୍ଗରେ ବସିଛନ୍ତି । ସମୟ ଦୁଇଟା ହେବ । ରବିବାର, ୨୦ ଦିନ ଶ୍ରାବଣ ।

ଶିବପୁରଠାରୁ ବାଉଲର ଦଳ ଓ ଭବାନୀପୁର ଠାରୁ ଭକ୍ତମାନେ ଆସିଛନ୍ତି । ଶ୍ରୀଯୁକ୍ତ ରାଖାଲ, ଲାଟୁ, ହରିଶ ଆଜିକାଲି ସର୍ବଦା ଥାଆନ୍ତି । ଘରେ ବଳରାମ, ମାଷ୍ଟର ମଧ୍ୟ ଅଛନ୍ତି ।

ଆଜି ୩ ତାରିଖ ଅଗଷ୍ଟ, ୧୮୮୪ ଖ୍ରୀଷ୍ଟାବ୍ଦ ; ଶ୍ରାବଣ ଶୁକ୍ଳ-ଦ୍ୱାଦଶୀ: ଆଜି ଝୁଲଣ ଯାତ୍ରାର ଦ୍ୱିତୀୟ ଦିନ । ଗତକାଲି ଠାକୁର ସୁରେନ୍ଦ୍ରଙ୍କ ଘରକୁ ଯାଇଥିଲେ, —ସେଠାରେ ଶଶଧର ପ୍ରଭୃତି ଭକ୍ତମାନେ ତାହାଙ୍କୁ ଦର୍ଶନ କରିଥିଲେ ।

ଠାକୁର ଶିବପୁରର ଭକ୍ତମାନଙ୍କୁ ସମ୍ବୋଧନ କରି କଥା କହୁଛନ୍ତି—

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)—କାମିନୀ କାଞ୍ଚନରେ ମନ ରହିଲେ ଯୋଗ ହୁଏ ନାହିଁ । ସାଧାରଣ ଜୀବଙ୍କର ମନ ଲିଙ୍ଗ ଗୁହ୍ୟ ଓ ନାଭିରେ । ସାଧ୍ୟ-ସାଧନା ପରେ କୁଳକୁଣ୍ଡଳିନୀ ଜାଗ୍ରତ ହୁଏ । ଇଡ଼ା, ପିଙ୍ଗଳା ଆଉ ସୁଷୁମ୍ନା ନାଡ଼ି;—ସୁଷୁମ୍ନା ମଧ୍ୟରେ ଛଅଟି ପଦ୍ମ ଅଛି । ସର୍ବନିମ୍ନରେ ମୂଳାଧାର । ତାହାପରେ ସ୍ୱାଧିଷ୍ଠାନ, ମଣିପୁର, ଅନାହତ, ବିଶୁଦ୍ଧ ଓ ଆଜ୍ଞା । ଏହିଗୁଡ଼ିକୁ ଷଡ଼ଚକ୍ର କହନ୍ତି ।

''କୁଳକୁଣ୍ଡଳିନୀ ଜାଗ୍ରତ ହେଲେ ମୂଳାଧାର, ସ୍ୱାଧିଷ୍ଠାନ, ମଣିପୁର ଏହିସବୁ ପଦ୍ମ କ୍ରମେ ପାର ହୋଇ ହୃଦୟ ମଧ୍ୟରେ ଅନାହତ ପଦ୍ମରେ ଆସି ଅବସ୍ଥାନ କରେ । ସେତେବେଳେ ଲିଙ୍ଗ, ଗୁହ୍ୟ, ନାଭିରୁ ମନ ଉପରକୁ ଗଲେ ଚୈତନ୍ୟ ହୁଏ ଓ ଜ୍ୟୋତିଃ ଦର୍ଶନ ହୁଏ । ସାଧକ ଅବାକ୍ ହୋଇ ଜ୍ୟୋତିଃ ଦର୍ଶନ କରି କହେ, 'ଏ କଅଣ !' 'ଏ କଅଣ' !''

''ଷଡ଼ଚକ୍ର ଭେଦ ହେଲେ କୁଣ୍ଡଳିନୀ ସହସ୍ରା ପଦ୍ମରେ ଯାଇ ମିଳିତ ହୁଏ । କୁଣ୍ଡଳିନୀ ସେଠାକୁ ଗଲେ ସମାଧି ହୁଏ ।''

''ବେଦ ମତରେ ଏସବୁ ଚକ୍ରକୁ—'ଭୂମି' କହନ୍ତି । **ସପ୍ତଭୂମି** । ହୃଦୟ—ଚତୁର୍ଥ ଭୂମି । ଅନାହତ ପଦ୍ମ, ଦ୍ୱାଦଶ ଦଳ ।''

''ବିଶୁଦ୍ଧଚକ୍ର ପଞ୍ଚମ ଭୂମି । ଏଠାକୁ ମନ ଉଠିଲେ କେବଳ ଈଶ୍ୱର କଥା କହିବାକୁ

ଆଉ ଶୁଣିବାକୁ ପ୍ରାଣ ବ୍ୟାକୁଳ ହୁଏ । ଏହି ଚକ୍ରର ସ୍ଥାନ କଣ୍ଠ । ଷୋଡ଼ଶ ଦଳ ପଦ୍ମ । ଯାହାର ଏହି ଚକ୍ରକୁ ମନ ଆସିଛି, ତାହା ସମ୍ମୁଖରେ ବିଷୟ କଥା— କାମିନୀ-କାଞ୍ଚନର କଥା ହେଲେ ଭାରି କଷ୍ଟ ହୁଏ ! ଏପରି କଥା ଶୁଣିଲେ ସେ ସେଠାରୁ ଉଠିଯାଏ ।''

''ତାହାପରେ ଷଷ୍ଠଭୂମି । ଆଜ୍ଞାଚକ୍ର— ଦ୍ୱିଦଳପଦ୍ମ । ଏଠାକୁ କୁଳକୁଣ୍ଡଳିନୀ ଆସିଲେ ଈଶ୍ୱରଙ୍କ ରୂପ ଦର୍ଶନ ହୁଏ । କିନ୍ତୁ ଟିକିଏ ଆଡୁଆଳ ଥାଏ— ଯେପରି ଲଣ୍ଠନ ଭିତରେ ଆଲୁଅ, — ମନେ ହେଲା ଛୁଇଁଲି, କିନ୍ତୁ କାଚ ବ୍ୟବଧାନ ଅଛି ବୋଲି ଛୁଇଁ ହୁଏ ନାହିଁ ।''

''ତାହାପରେ ସପ୍ତମଭୂମି । ସହସ୍ରାର ପଦ୍ମ । ସେଠାକୁ କୁଣ୍ଡଳିନୀ ଗଲେ ସମାଧି ହୁଏ । **ସହସ୍ରାରେ ସଚ୍ଚିଦାନନ୍ଦ ଶିବ ଅଛନ୍ତି**— ସେ ଶକ୍ତି ସହିତ ମିଳିତ ହୁଅନ୍ତି । ଶିବ-ଶକ୍ତିର ମିଳନ !''

''ସହସ୍ରାକୁ ମନ ଆସି ସମାଧିସ୍ଥ ହେଲେ ଆଉ ବାହ୍ୟଜ୍ଞାନ ରହେ ନାହିଁ । ତାହାର ଆଉ ଦେହ ରହିପାରେ ନାହିଁ । ମୁଖରେ ଦୁଧ ଦେଲେ ଦୁଧ ପଡ଼ିଯାଏ । ଏପରି ଅବସ୍ଥାରେ ରହିଲେ ଏକୋଇଶ ଦିନରେ ମୃତ୍ୟୁ ହୁଏ । କଳାପାଣିକୁ ଗଲେ ଜାହାଜ ଆଉ ଫେରେନାହିଁ । ଈଶ୍ୱର କୋଟି— ଅବତାରାଦି— ଏହି ସମାଧି ଅବସ୍ଥାରୁ ଖସି ପାରନ୍ତି । ସେମାନେ ଭକ୍ତି ଭକ୍ତ ନେଇ ରହନ୍ତି, ତେଣୁ ଖସିପାରନ୍ତି । ସେ ତାଙ୍କ ଭିତରେ 'ବିଦ୍ୟାର ମୁଁ' — 'ଭକ୍ତ ମୁଁ' ଲୋକଶିକ୍ଷା ପାଇଁ ରଖିଦିଅନ୍ତି । ତାଙ୍କର ଅବସ୍ଥା— ଯେପରି ଷଷ୍ଠଭୂମି ଆଉ ସପ୍ତଭୂମିର ମଝିରେ ଗମନା ଗମନ ।''

''ସମାଧି ପରେ 'ବିଦ୍ୟାର ମୁଁ' କେହି କେହି ଇଚ୍ଛା କରି ରଖିଦିଅନ୍ତି । ସେ 'ମୁଁ'ର ଆଣ୍ଠ ନାହିଁ— ରେଖା ମାତ୍ର ।''

''ହନୁମାନ ସାକାର ନିରାକାରର ସାକ୍ଷାତ୍କାର ପରେ 'ଦାସ-ମୁଁ' ରଖିଥିଲେ । ନାରଦାଦି— ସନକ, ସନନ୍ଦ, ସନାତନ, ସନତ୍ କୁମାର ଏମାନେ ମଧ୍ୟ ବ୍ରହ୍ମଜ୍ଞାନ ପରେ 'ଦାସ ମୁଁ' 'ଭକ୍ତର ମୁଁ' ରଖିଥିଲେ । ଏମାନେ ଜାହାଜ ପରି ନିଜେ ଅନ୍ୟ ପାରକୁ ଯାଆନ୍ତି, ପୁଣି ଅନେକ ଲୋକଙ୍କୁ ପାର କରି ନେଇଯାଆନ୍ତି ।''

ଠାକୁର ଏହି ରୂପେ କ'ଣ ନିଜର ଅବସ୍ଥା ବର୍ଣ୍ଣନା କରୁଛନ୍ତି ? କହୁପ୍ତପ୍ତପ୍ତଛନ୍ତି—

## ପରମହଂସ— ନିରାକାରବାଦୀ ଓ ସାକାରବାଦୀ । ଠାକୁରଙ୍କର ବ୍ରହ୍ମଜ୍ଞାନ ପରେ ଭକ୍ତି । ନିତ୍ୟ ଲୀଳାଯୋଗ ।

''ପରମହଂସ— ନିରାକାରବାଦୀ ଆଉ ସାକାରବାଦୀ । ନିରାକାରବାଦୀ ଯେପରି ତ୍ରୈଲଙ୍ଗ ସ୍ୱାମୀ । ଏମାନେ ଆପ୍ତସାରା— ନିଜର ହେଲେ ହେଲା ।''

''ବ୍ରହ୍ମଜ୍ଞାନ ପରେ ଯେଉଁମାନେ ସାକାରବାଦୀ, ସେମାନେ ଲୋକଶିକ୍ଷା ପାଇଁ ଭକ୍ତି ନେଇ ରହନ୍ତି । ଯେପରି କୁମ୍ଭ ପରିପୂର୍ଣ୍ଣ କରି ଅନ୍ୟ ପାତ୍ରରେ ଜଳ ଢଳା ଢଳି କରୁଛନ୍ତି ।''

''ଏମାନେ ଯେଉଁସବୁ ସାଧନା କରି ଭଗବାନଙ୍କୁ ଲାଭ କରିଛନ୍ତି, ସେହି ସକଳ

କଥା ଲୋକଶିକ୍ଷା ପାଇଁ କହନ୍ତି, ତାଙ୍କ ହିତ ପାଇଁ । ଜଳ ପାଇବା ପାଇଁ ଅନେକ କଷ୍ଟରେ କୋଡ଼ି ଫାଉଡ଼ା ନେଇ କୂପ ଖନନ କରନ୍ତି । କୂପ ହୋଇଗଲାରୁ କେହି କେହି କୋଡ଼ି ପ୍ରଭୃତି ଯନ୍ତ୍ର ସବୁ ପକାଇ ଦିଅନ୍ତି— ଆଉ କ'ଣ ଦରକାର ! କିନ୍ତୁ କେହି କେହି ଯତ୍ନ କରି ରଖନ୍ତି ପରର ଉପକାର ହେବ ବୋଲି ।"

"କେହି ଆମ୍ବ ଲୁଚାଇ ଖାଇ ମୁଖ ପୋଛି ଦିଅନ୍ତି । କେହି ଅନ୍ୟ ଲୋକକୁ ଦେଇ ଖାଆନ୍ତି— ଲୋକଶିକ୍ଷା ପାଇଁ ଆଉ ତାଙ୍କୁ ଆସ୍ୱାଦନ କରିବା ପାଇଁ । 'ଚିନି ଖାଇବାକୁ ଭଲ ପାଏ' ।"

"**ଗୋପୀମାନଙ୍କର ମଧ୍ୟ ବ୍ରହ୍ମଜ୍ଞାନ** ଥିଲା । କିନ୍ତୁ ସେମାନେ ବ୍ରହ୍ମଜ୍ଞାନ ଚାହୁଁ ନ ଥିଲେ । ସେମାନେ କେହି ବାତ୍ସଲ୍ୟ ଭାବରେ, କେହି ସଖି ଭାବରେ, ଈଶ୍ୱରଙ୍କୁ ସମ୍ଭୋଗ କରିବାକୁ ଚାହୁଁଥିଲେ ।"

## କୀର୍ତ୍ତନାନନ୍ଦରେ । ଶ୍ରୀ ଗୌରାଙ୍ଗଙ୍କର ନାମ ଓ ମାଆଙ୍କର ନାମ ।

ଶିବପୁରର ଭକ୍ତମାନେ ଗୋପୀଯନ୍ତ୍ର ନେଇ ଗୀତ ଗାଉଛନ୍ତି । ପ୍ରଥମରେ ଗାଉଛନ୍ତି 'ଆମ୍ଭେମାନେ ପାପୀ, ଆମ୍ଭମାନଙ୍କୁ ଉଦ୍ଧାର କର ।'

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)— ଭୟ ଦେଖାଇ— ଭୟ ପାଇ— ଭଜନା, ପ୍ରବର୍ତ୍ତକଙ୍କର ଭାବ । ତାଙ୍କୁ ଲାଭ କରିବାର ଗୀତ ଗାଅ । **ଆନନ୍ଦର ଗୀତ** । (ରାଖାଲଙ୍କ ପ୍ରତି) ନବୀନ ନିୟୋଗୀଙ୍କ ଘରେ ସେଦିନ କିପରି ଗୀତ ହୋଇଥିଲା—

'ହରିନାମ ମଦିରାୟ ମତ୍ତ ହଓ—

"କେବଳ ଅଶାନ୍ତିର କଥା ଭଲ ନୁହେଁ । ତାଙ୍କୁ ନେଇ ଆନନ୍ଦ— ତାଙ୍କୁ ନେଇ ଭୋଳ ହେବା ।"

ଶିବପୁରର ଭକ୍ତ— ଆଜ୍ଞା, ଆପଣଙ୍କର ଗୀତ ଗୋଟିଏ ହେବ ନାହିଁ ?

ଶ୍ରୀରାମକୃଷ୍ଣ— ମୁଁ କଅଣ ଗାଇବି ? ଆଚ୍ଛା, ଯେତେବେଳେ ହେବ ଗାଇବି । କିୟତ୍‌କ୍ଷଣ ପରେ ଠାକୁର ଗୀତ ଗାଉଅଛନ୍ତି । ଗାଇବା ସମୟରେ ଊର୍ଦ୍ଧ୍ୱ ଦୃଷ୍ଟି ।

ଗୀତ— କୌପୀନ ଦିଅ କାଙ୍ଗାଳ ବେଶେ ବ୍ରଜେ ଯାଇ ହେ ଭାରତୀ ।

ଗୀତ— ଗୌର ପ୍ରେମେର ଢେଉ ଲାଗିଛି ଦେହେ ।

ଗୀତ— ଦେଖସେ ଆୟ ଗୌର ବରଣ ରୂପଖାନି (ଗୋ ସଜନୀ) । ଆଲତା ଗୋଲା ଦୁଧେର ଛାନା ମାଁଖା ଗୋରାର ଗାୟ, (ଦେଖେ ଭାବେର ଉଦୟ ହୟ) କାରିଗର ଭାଙ୍ଗଡ଼, ମିସ୍ତ୍ରୀ ବୃଷଭାନୁନନ୍ଦିନୀ ।

ଗୀତ— ଡୁବ୍‌ଦିଅ ରୂପସାଗରେ ମୋହର ମନ । ଗୌରାଙ୍ଗଙ୍କର ନାମ ପରେ ଠାକୁର ମାଆଙ୍କ ନାମ କରୁଅଛନ୍ତି ।

ଗୀତ— ସମସ୍ତେ କି ଶ୍ୟାମା ଧନ ପାଆନ୍ତି, ଅବୋଧ ମନ ବୁଝେନା ଏଇ କି ଭ୍ରାନ୍ତି ॥

ଗୀତ—ମଜଲୋ ଆମାର ମନ ଭ୍ରମରା ଶ୍ୟାମାପଦ ନୀଲକମଲେ ।
ଗୀତ—ଶ୍ୟାମା ମା କି କଳ କରିଛି ! କାଳୀ ମା କି କଳ କରିଛି !
ଚଉଦ ପୁଆ କଳ ଭିତରେ କେତେ ରଙ୍ଗ ଦେଖାଉଛି !
କଳ ଭିତରେ ନିଜେ ଥାଏ, କଳ ଡୋରି ଧରି କଳ ଘୂରାଏ !
କଲ ଭାବେ ନିଜେ ଘୂରେ, କେ ଘୂରାଏ ତାହା ଜାଣି ନ ପାରେ !

## (୨)

## ଠାକୁରଙ୍କର ସମାଧି ଓ ଜଗନ୍ମାତାଙ୍କ ସହିତ କଥା । ପ୍ରେମତତ୍ତ୍ୱ ।

ଏହି ଗୀତ ଗାଇ ଗାଇ ଠାକୁର ସମାଧିସ୍ଥ ହେଲେ । ଭକ୍ତମାନେ ସମସ୍ତେ ନିସ୍ତବ୍ଧ ହୋଇ ଦର୍ଶନ କରୁଅଛନ୍ତି । କିୟତ୍‌କ୍ଷଣ ପରେ କିଞ୍ଚିତ୍ ପ୍ରକୃତିସ୍ଥ ହୋଇ **ମାଆଙ୍କ ସଙ୍ଗରେ କଥା କହୁଛନ୍ତି ।**

"ମା' ଉପରୁ (ସହସ୍ରାରୁ ?) ଏଠାକୁ ଓହ୍ଲାଇ ଆସ ! —ଚୁପ୍ କରି ବସ !"

"ମା' ଯାହାଙ୍କର ଯାହା (ସଂସ୍କାର) ଅଛି, ତାହା ତ ହେବ ! ମୁଁ ଏମାନଙ୍କୁ କଅଣ କହିବି । ବିବେକ ବୈରାଗ୍ୟ ନହେଲେ କିଛି ହୁଏ ନାହିଁ ।"

"ବୈରାଗ୍ୟ ଅନେକ ପ୍ରକାର । ଏକ ରକମ ଅଛି ମର୍କଟ-ବୈରାଗ୍ୟ, —ସଂସାର ଜ୍ୱାଳାରେ ଜଳି ବୈରାଗ୍ୟ ! —ସେ ବୈରାଗ୍ୟ ବେଶୀଦିନ ରହେନାହିଁ । ଠିକ୍ ଠିକ୍ ବୈରାଗ୍ୟ—ସବୁ ଅଛି, କିଛି ଅଭାବ ନାହିଁ, ଅଥଚ ସବୁ ମିଥ୍ୟାବୋଧ ।"

"ବୈରାଗ୍ୟ ଏକାବେଳକେ ହୁଏ ନାହିଁ । ସମୟ ନହେଲେ ହୁଏ ନାହିଁ । ତେବେ ଗୋଟିଏ କଥା ଅଛି—ଶୁଣି ରଖିବା ଭଲ । ସମୟ ଯେତେବେଳେ ହେବ, ସେତେବେଳେ ମନେହେବ ଓ ! ତାହା ତ ଶୁଣିଥିଲି !"

"ଆଉ ଗୋଟିଏ କଥା । ଏସବୁ କଥା ଶୁଣୁ ଶୁଣୁ ବିଷୟ ବାସନା ଟିକିଏ ଟିକିଏ କମେ । ମଦର ନିଶା କମିବା ପାଇଁ ଟିକିଏ ଟିକିଏ ଚାଉଳଧୁଆ ପାଣି ପିଇବାକୁ ହୁଏ । ତାହାହେଲେ କ୍ରମେ କ୍ରମେ ନିଶା ଛାଡ଼େ ।"

"ଜ୍ଞାନଲାଭର ଅଧିକାରୀ ଖୁବ୍ କମ୍ । ଗୀତାରେ କହିଛି-ହଜାର ହଜାର ଲୋକଙ୍କ ଭିତରେ ଜଣେ ତାଙ୍କୁ ଜାଣିବାକୁ ଇଚ୍ଛା କରେ । ପୁଣି ଯେଉଁମାନେ ଜାଣିବାକୁ ଇଚ୍ଛା କରନ୍ତି, ସେହିପରି ହଜାର ହଜାର ଲୋକଙ୍କ ଭିତରେ ଜଣେ ଜାଣିପାରେ ।"

ତାନ୍ତ୍ରିକ ଭକ୍ତ—'ମନୁଷ୍ୟାଣାଂ ସହସ୍ରେଷୁ କଶ୍ଚିଦ୍ ଯତତି ସିଦ୍ଧୟେ' ଇତ୍ୟାଦି ।

ଶ୍ରୀରାମକୃଷ୍ଣ—ସଂସାରରେ ଆସକ୍ତି ଯେତେ କମିବ, ସେତେ ଜ୍ଞାନ ବଢ଼ିବ । କାମିନୀ କାଞ୍ଚନରେ ଆସକ୍ତି ଜୀବକୁ ବଦ୍ଧ କରେ ।

## ସାଧୁସଙ୍ଗ, ଶ୍ରଦ୍ଧା, ନିଷ୍ଠା, ଭକ୍ତି, ଭାବ, ମହାଭାବ, ପ୍ରେମ ।

"**ପ୍ରେମ** ସମସ୍ତଙ୍କର ହୁଏନାହିଁ । ଗୌରାଙ୍ଗଙ୍କର ହୋଇଥିଲା । ଜୀବର ଭାବ ହୋଇପାରେ—ଏହି ପର୍ଯ୍ୟନ୍ତ । ଈଶ୍ୱର କୋଟିଙ୍କର—ଯେପରି ଅବତାରାଦିଙ୍କର—ପ୍ରେମ ହୁଏ । ପ୍ରେମ ହେଲେ ଜଗତ୍ ମିଥ୍ୟା ତ ବୋଧ ହେବ, ପୁଣି ଶରୀର-ଯାହାକୁ ଲୋକେ ଏତେ ଭଲ ପାଆନ୍ତି, ତାହାକୁ ମଧ୍ୟ ଭୁଲିଯିବାକୁ ପଡ଼େ ।"

"ପାର୍ଶୀ ବହିରେ (ହାଫେଜ) ଅଛି, ଚମଡ଼ା ଭିତରେ ମାଂସ, ମାଂସ ଭିତରେ ହାଡ଼, ହାଡ଼ ଭିତରେ ମଜ୍ଜା, ତାହାପରେ ଆଉ କେତେ କଅଣ ! ସମସ୍ତଙ୍କ ଭିତରେ ପ୍ରେମ ।"

"ପ୍ରେମରେ କୋମଳ, ନରମ ହୋଇଯାଏ । ପ୍ରେମରେ କୃଷ୍ଣ ତ୍ରିଭଙ୍ଗ ହୋଇଛନ୍ତି ।"

"ପ୍ରେମ ହେଲେ ସଚ୍ଚିଦାନନ୍ଦଙ୍କୁ ବାନ୍ଧିବାର ଦଉଡ଼ା ମିଳିଯାଏ । ଯେତେବେଳେ ଦେଖିବାକୁ ଚାହିଁବ, ଦୌଡ଼ି ଧରି ଟାଣିଲେ ହେଲା । ଯେତେବେଳେ ଡାକିବ ସେତେବେଳେ ପାଇବ ।"

"ଭକ୍ତି ପକ୍ୱ ହେଲେ ଭାବ । ଭାବ ହେଲେ ସଚ୍ଚିଦାନନ୍ଦଙ୍କୁ ଡାକି ମନୁଷ୍ୟ ଅବାକ୍ ହୁଏ । ଜୀବର ଏହି ପର୍ଯ୍ୟନ୍ତ । ପୁଣି ଭାବ ପକ୍ୱ ହେଲେ ମହାଭାବ, —ପ୍ରେମ । ଯେପରି କଞ୍ଚା ଆମ୍ବ ଆଉ ପାଚିଲା ଆମ୍ବ ।"

## ଶୁଦ୍ଧାଭକ୍ତି ହିଁ ସାର ଆଉ ସବୁ ମିଥ୍ୟା ।

"ନାରଦ ସ୍ତବ କରିବାରେ ରାମ କହିଲେ, ତୁମେ ବର ନିଅ । ନାରଦ ଚାହିଁଲେ ଶୁଦ୍ଧା ଭକ୍ତି । ଆଉ କହିଲେ—ରାମ ଯେପରି ତୁମର ଜଗତ୍‌ମୋହିନୀ ମାୟାରେ ମୁଗ୍ଧ ନହୁଏ । ରାମ କହିଲେ, ସେ ତ ହେଲା ; ଆଉ କିଛି ବର ନିଅ !"

"ନାରଦ କହିଲେ—ଆଉ କିଛି ଚାହୁଁନାହିଁ, —କେବଳ ଭକ୍ତି ।"

"ଏହି ଭକ୍ତି କିପରି ହୁଏ ? ପ୍ରଥମରେ ସାଧୁସଙ୍ଗ କରିବାକୁ ହୁଏ । ସତ୍‌ସଙ୍ଗ କଲେ ଈଶ୍ୱରୀୟ ବିଷୟରେ ଶ୍ରଦ୍ଧା ହୁଏ । ଶ୍ରଦ୍ଧା ପରେ ନିଷ୍ଠା, ଈଶ୍ୱରଙ୍କ କଥା ବ୍ୟତୀତ ଆଉ କିଛି ଶୁଣିବାକୁ ଇଚ୍ଛା ହୁଏ ନାହିଁ; —ତାଙ୍କର କାର୍ଯ୍ୟ କରିବାକୁ ଇଚ୍ଛା ହୁଏ ।"

"ନିଷ୍ଠା ପରେ ଭକ୍ତି । ତାହାପରେ ଭାବ, —ମହାଭାବ, ପ୍ରେମ, —ବସ୍ତୁଲାଭ ।"

"ମହାଭାବ, ପ୍ରେମ, —ଅବତାରାଦିଙ୍କର ହୁଏ । ସଂସାରୀ ଜୀବଙ୍କର ଜ୍ଞାନ ଯେପରି ପ୍ରଦୀପର ଆଲୁଅ, —କେବଳ ଘର ଭିତରଟି ଦେଖାଯାଏ । ସେ ଜ୍ଞାନରେ ଖିଆ ପିଆ, ଘରକରଣା, ଶରୀର ରକ୍ଷା, ସନ୍ତାନ ପାଳନ ଏହିସବୁ ହୁଏ ।"

"ଭକ୍ତିର ଜ୍ଞାନ ଯେପରି ଚାନ୍ଦର ଆଲୁଅ । ଭିତର ବାହାର ଦେଖାଯାଏ, କିନ୍ତୁ ଅନେକ ଦୂରର ଜିନିଷ, କି ଖୁବ୍ ଛୋଟ ଜିନିଷ, ଦେଖାଯାଏ ନାହିଁ । ଅବତାର ଆଦିଙ୍କର

ଜ୍ଞାନ ଯେପରି, ସୂର୍ଯ୍ୟଙ୍କ ଆଲୁଅ । ଭିତର ବାହାର, ଛୋଟବଡ଼, ସେମାନେ ସବୁ ଦେଖିବାକୁ ପାଆନ୍ତି ।''

''ତେବେ ସଂସାରୀ ଜୀବଙ୍କର ମନ ଗୋଳିଆ ଜଳ ପରି ହୋଇଅଛି, କିନ୍ତୁ ନିର୍ମଳି ପକାଇ ପୁଣି ପରିଷ୍କାର କରାଯାଇପାରେ । ବିବେକ ବୈରାଗ୍ୟ ନିର୍ମଳି ।''

ଏଥର ଠାକୁର ଶିବପୁରର ଭକ୍ତମାନଙ୍କ ସହିତ କଥା କହୁଅଛନ୍ତି ।''

## ଈଶ୍ୱର କଥା ଶ୍ରବଣର ପ୍ରୟୋଜନ । 'ସମୟ ସାପେକ୍ଷ'। ଠାକୁରଙ୍କର ସହଜାବସ୍ଥା ।

ଶ୍ରୀରାମକୃଷ୍ଣ — ଆପଣମାନଙ୍କର କିଛି ପ୍ରଶ୍ନ କରିବାର ଅଛି, କୁହନ୍ତୁ ।

ଭକ୍ତ — ଆଜ୍ଞା, ସବୁ ତ ଶୁଣିଲୁ ।

ଶ୍ରୀରାମକୃଷ୍ଣ — ଶୁଣି ରଖିବା ଭଲ, କିନ୍ତୁ ସମୟ ନହେଲେ ହୁଏ ନାହିଁ ।

''ଯେତେବେଳେ ଖୁବ୍ ଜ୍ୱର, ସେତେବେଳେ କୁଇନାଇନ୍ ଦେଲେ କଅଣ ହେବ ? ଫିଭର ମିକ୍ସଚର ଦେଇ ଝାଡ଼ା ଫାଡ଼ା ହୋଇ ଟିକିଏ କମ୍ ପଡ଼ିଲେ, ସେତେବେଳେ କୁଇନାଇନ୍ ଦେବାକୁ ହୁଏ । ପୁଣି କାହାର ଆପେ ଛାଡ଼ିଯାଏ, କୁଇନାଇନ୍ ନଦେଲେ ମଧ୍ୟ ହୁଏ ।''

''ପୁଅ ଶୋଇବା ସମୟରେ କହିଲା, — 'ମା', ମୋତେ ଯେତେବେଳେ ଝାଡ଼ା ମାଡ଼ିବ, ସେତେବେଳେ ଉଠାଇବ ।' ମା' କହିଲେ, 'ବାପା, ମୋତେ ଉଠାଇବାକୁ ହେବ ନାହିଁ, ହଗା ତୋତେ ଉଠାଇବ' ।''

''କେହି କେହି ଏଠାକୁ ଆସନ୍ତି ଦେଖେ, କୌଣସି ଭକ୍ତ ସଙ୍ଗରେ ନୌକା କରି ଆସିଛନ୍ତି । ଈଶ୍ୱରୀୟ କଥା ସେମାନଙ୍କୁ ଭଲ ଲାଗେନାହିଁ । କେବଳ ବନ୍ଧୁର ଦେହ ଟିପୁଛି— କେତେବେଳେ ଯିବ, ଯେତେବେଳେ ବନ୍ଧୁ କୌଣସି ପ୍ରକାରେ ଉଠିଲା ନାହିଁ, ସେତେବେଳେ କହେ, 'ତେବେ ସେ ପର୍ଯ୍ୟନ୍ତ ମୁଁ ନୌକାରେ ଯାଇ ବସିରହୁଛି' ।''

''ଯେଉଁମାନଙ୍କର ପ୍ରଥମ ମନୁଷ୍ୟ ଜନ୍ମ, ସେମାନଙ୍କର ଭୋଗ ଦରକାର ! କେତେଗୁଡ଼ିଏ କାର୍ଯ୍ୟ କରା ନ ଥିଲେ ଚୈତନ୍ୟ ହୁଏ ନାହିଁ ।''

ଠାକୁର ଝାଉଁତଳାକୁ ଯିବେ । ଗୋଲବାରଣ୍ଡାରେ ମାଷ୍ଟରଙ୍କୁ କହୁଛନ୍ତି ।

ଶ୍ରୀରାମକୃଷ୍ଣ (ସହାସ୍ୟ)— ଆଚ୍ଛା, ମୋର କିପରି ଅବସ୍ଥା ?

ମାଷ୍ଟର (ସହାସ୍ୟ) — ଆଜ୍ଞା, ଆପଣଙ୍କର ସହଜାବସ୍ଥା — ଭିତରେ ଗଭୀର— ଆପଣଙ୍କର ଅବସ୍ଥା ବୁଝିବା ବଡ଼ କଠିନ ।

ଶ୍ରୀରାମକୃଷ୍ଣ (ସହାସ୍ୟ)— ହଁ, ଯେପରି ସିମେଣ୍ଟ କରା ଚଟାଣ ତଳେ କେତେ କଅଣ ଅଛି, ଜଣା ନାହିଁ ।

ଚାନ୍ଦିନୀ ଘାଟରେ ବଳରାମ ପ୍ରଭୃତି କେତେଜଣ ଭକ୍ତ କଳିକତା ଯିବାପାଇଁ ନୌକା ଆରୋହଣ କରୁଅଛନ୍ତି । ସମୟ ଚାରିଟା ବାଜିଛି । ଭଟ୍ଟା ପଡ଼ିଛି, ସେଥିରେ ଦକ୍ଷିଣା ପବନ । ଗଙ୍ଗାବକ୍ଷ ତରଙ୍ଗ ମାଳାରେ ବିଭୂଷିତ ହୋଇଅଛି ।

ବଳରାମଙ୍କର ନୌକା ବାଗ୍‌ବଜାର ଅଭିମୁଖରେ ଯାଉଅଛି, ମାଷ୍ଟର ଅନେକକ୍ଷଣ ଧରି ଦେଖୁଛନ୍ତି ।

ନୌକା ଅଦୃଶ୍ୟ ହେଲାରୁ ସେ ପୁଣି ଠାକୁରଙ୍କ ପାଖକୁ ଆସିଲେ । ଠାକୁର ପଶ୍ଚିମ ବାରଣ୍ଡାରୁ ଓହ୍ଲାଉ ଅଛନ୍ତି । ଝାଉଁତଳାକୁ ଯିବେ । ଉତ୍ତର ପଶ୍ଚିମ ଦିଗରେ କଳାମେଘ ଘୋଟିଛି । ଠାକୁର କହୁଅଛନ୍ତି 'ବର୍ଷା କ'ଣ ହେବ ! ଛତାଟା ଆଣ ଦେଖି । ମାଷ୍ଟର ଛତା ଆଣିଲେ। ଲାଟୁ ମଧ୍ୟ ସଙ୍ଗରେ ଅଛନ୍ତି ।

ଠାକୁର ପଞ୍ଚବଟୀକୁ ଆସିଅଛନ୍ତି । ଲାଟୁଙ୍କୁ କହୁଅଛନ୍ତି— 'ତୁ ରୋଗା ହୋଇଯାଉଛୁ କାହିଁକି ?'

ଲାଟୁ— "କିଛି ଖାଇପାରୁ ନାହିଁ ।"

ଶ୍ରୀରାମକୃଷ୍ଣ—କେବଳ କ'ଣ ଏଇଥିପାଇଁ ? ସମୟ ଖରାପ ପଡ଼ିଛି—ଆଉ ବେଶୀ ଧ୍ୟାନ କରୁଛୁ ବୋଧହୁଏ ? (ଠାକୁର ମାଷ୍ଟରଙ୍କ ସହିତ କଥା କହୁଅଛନ୍ତି) ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)— ତୁମ ଉପରେ ଏହି ଭାର ରହିଲା । ବାବୁରାମଙ୍କୁ କହିବ, ରାଖାଲ ଗଲେ ଦିନେ ଦୁଇଦିନ ମଝିରେ ମଝିରେ ଆସି ରହିବ । ତାହା ନ ହେଲେ ମୋର ମନ ଭାରି ଖରାପ ହେବ ।

ମାଷ୍ଟର— ଯେ ଆଜ୍ଞା, ମୁଁ କହିବି ।

ସରଳ ହେଲେ, ଈଶ୍ୱର ଦେଖାଦିଅନ୍ତି । ଠାକୁର ପ୍ରଶ୍ନ କରୁଅଛନ୍ତି, ବାବୁରାମ ସରଳ କି ନା !

## ଝାଉଁତଳା ଓ ପଞ୍ଚବଟୀରେ ଶ୍ରୀରାମକୃଷ୍ଣଙ୍କର ସୁନ୍ଦର ରୂପ ଦର୍ଶନ ।

ଠାକୁର ଝାଉଁତଳାରୁ ଦକ୍ଷିଣାଭିମୁଖ ହୋଇ ଆସୁଅଛନ୍ତି । ମାଷ୍ଟର ଓ ଲାଟୁ ପଞ୍ଚବଟୀ ତଳେ ଠିଆହୋଇ ଉତ୍ତରକୁ ମୁହଁ କରି ଦେଖୁଅଛନ୍ତି ।

ଠାକୁରଙ୍କର ପଶ୍ଚାତରେ ନବୀନ ମେଘ ଗଗନମଣ୍ଡଳ ସୁଶୋଭିତ କରି ଜାହ୍ନବୀ ଜଳରେ ପ୍ରତିବିମ୍ବିତ ହୋଇଅଛି— ସେଥିରେ ଗଙ୍ଗାଜଳ କୃଷ୍ଣବର୍ଣ୍ଣ ଦେଖାଯାଉଛି ।

ଠାକୁର ଆସୁଛନ୍ତି— ଯେପରି **ସାକ୍ଷାତ୍-ଭଗବାନ** ଦେହ ଧାରଣ କରି ମର୍ତ୍ତ୍ୟଲୋକରେ ଭକ୍ତଙ୍କ ପାଇଁ କଳୁଷ ବିନାଶିନୀ ହରିପାଦାମ୍ବୁଜସମ୍ଭୁତା ସୁରଧୁନୀର ତୀରରେ ବିଚରଣ କରୁଛନ୍ତି । ସାକ୍ଷାତ୍ ସେ ଉପସ୍ଥିତ ! —ତେଣୁ କ'ଣ ବୃକ୍ଷ, ଲତା, ଗୁଳ୍ମ, ଉଦ୍ୟାନପଥ, ଦେବାଳୟ, ଠାକୁରପ୍ରତିମା, ସେବକଗଣ, ଦୌବାରିକଗଣ, ପ୍ରତ୍ୟେକ ଧୂଳିକଣା, ଏତେ ମଧୁର ହେଉଅଛି ।

## (୩)

## ନବାଇ ଚୈତନ୍ୟ, ନରେନ୍ଦ୍ର, ବାବୁରାମ, ଲାଟୁ, ମଣି, ରାଖାଲ, ନିରଞ୍ଜନ, ଅଧର ।

ଠାକୁର ନିଜ ଘରେ ଆସି ବସିଛନ୍ତି । ବଳରାମ ଆମ୍ବ ଆଣିଥିଲେ । ଠାକୁର ଶ୍ରୀଯୁକ୍ତ ରାମ ଚାଟାର୍ଜୀଙ୍କୁ କହୁଛନ୍ତି—ତୁମର ସନ୍ତାନ ପାଇଁ ଆମ୍ବଗୁଡ଼ିକ ନେଇଯାଅ । ଘରେ ନବାଇ ଚୈତନ୍ୟ ବସିଅଛନ୍ତି । ସେ ଲାଲ୍ ଲୁଗା ପିନ୍ଧି ଆସିଛନ୍ତି ।

ଉତ୍ତରରେ ଲମ୍ବା ବାରଣ୍ଡାରେ ଠାକୁର ହାଜରାଙ୍କ ସହିତ କଥା କହୁଛନ୍ତି । ବ୍ରହ୍ମଚାରୀ ହରିତାଳ ଭସ୍ମ ଠାକୁରଙ୍କ ପାଇଁ ଦେଇଛନ୍ତି । —ସେହି କଥା ହେଉଅଛି ।

ଶ୍ରୀରାମକୃଷ୍ଣ—ବ୍ରହ୍ମଚାରୀର ଔଷଧ ମୋ ଠାରେ ବେଶ୍ କାମ କରେ—ଲୋକଟା ଠିକ୍ ।

ହାଜରା—କିନ୍ତୁ ବିଚାରା ସଂସାରରେ ପଡ଼ିଛି—କଅଣ କରିବ ! କୋନ୍ନଗର ଠାରୁ ନବାଇ ଚୈତନ୍ୟ ଆସିଛନ୍ତି । କିନ୍ତୁ ସଂସାରୀ ହୋଇ ଲାଲ୍ ଲୁଗା ପିନ୍ଧା !

ଶ୍ରୀରାମକୃଷ୍ଣ—କଅଣ କହିବି ! ଆଉ ମୁଁ ଦେଖେ ଈଶ୍ୱର ନିଜେ ଏହିସବୁ ମନୁଷ୍ୟ ରୂପ ଧାରଣ କରି ରହିଛନ୍ତି । ସେତେବେଳେ କାହାରିକି କିଛି କହିପାରେ ନାହିଁ ।

ଠାକୁର ପୁଣି ଘର ମଧ୍ୟକୁ ଆସିଛନ୍ତି । ହାଜରାଙ୍କ ସହିତ ନରେନ୍ଦ୍ରଙ୍କ କଥା କହୁଛନ୍ତି ।

ହାଜରା—"ନରେନ୍ଦ୍ର ପୁଣି ମୋକଦ୍ଦମାରେ ପଡ଼ିଛି ।"

ଶ୍ରୀରାମକୃଷ୍ଣ—ଶକ୍ତି ମାନେ ନାହିଁ । ଦେହ ଧାରଣ କଲେ ଶକ୍ତି ମାନିବାକୁ ହୁଏ ।

ହାଜରା—କହେ, ମୁଁ ମାନିଲେ ସମସ୍ତେ ମାନିବେ, —ତେଣୁ କିପରି ମାନିବ ।

"ଏତେଦୂର ଭଲ ନୁହେଁ । ବର୍ତ୍ତମାନ ଶକ୍ତିର ଇଲାକାକୁ ଆସିଛି । ଜଜ୍‌ସାହେବ୍ ପର୍ଯ୍ୟନ୍ତ ଯେତେବେଳେ ସାକ୍ଷ୍ୟ ଦିଅନ୍ତି, ସେତେବେଳେ ତାଙ୍କୁ ସାକ୍ଷୀର ସ୍ଥାନକୁ ଆସି ଠିଆ ହେବାକୁ ହୁଏ ।"

ଠାକୁର ମାଷ୍ଟରଙ୍କୁ କହୁଛନ୍ତି—"ତୁମ ସଙ୍ଗରେ ନରେନ୍ଦ୍ରଙ୍କର ଦେଖାହୋଇ ନାହିଁ ?"

ମାଷ୍ଟର—"ଆଜ୍ଞା, ଆଜିକାଲି ହୋଇନାହିଁ ।"

ଶ୍ରୀରାମକୃଷ୍ଣ—ଥରେ ଦେଖା କରନା—ଆଉ ଗାଡ଼ି କରି ଆଣିବ । (ହାଜରାଙ୍କ ପ୍ରତି) ଆଚ୍ଛା, ଏଠାରେ ତାଙ୍କର କ'ଣ ସମ୍ବନ୍ଧ ?

ହାଜରା—ଆପଣଙ୍କର ସାହାଯ୍ୟ ପାଇବେ ।

ଶ୍ରୀରାମକୃଷ୍ଣ—ଭବନାଥ ? ସଂସ୍କାର ନ ଥିଲେ ଏଠାକୁ ଏତେ ଆସନ୍ତା ?

"ଆଚ୍ଛା, ହରିଶ, ଲାଟୁ—କେବଳ ଧ୍ୟାନ କରନ୍ତି, —ଏଗୁଡ଼ା କଅଣ ?"

ହାଜରା—ହଁ, କେବଳ ଧ୍ୟାନ କରିବା କ'ଣ ? —ଆପଣଙ୍କୁ ସେବା କରନ୍ତି, ଏ ଗୋଟାଏ କଥା ।

ଶ୍ରୀରାମକୃଷ୍ଣ— ହେବ । —ସେମାନେ ଗଲେ ପୁଣି କେହି ଆସିବେ ।

## ମଣିଙ୍କ ପ୍ରତି ନାନା ଉପଦେଶ । ଶ୍ରୀରାମକୃଷ୍ଣଙ୍କର ସହଜାବସ୍ଥା

ହାଜରା ଘରୁ ଚାଲିଗଲେ । ବର୍ତ୍ତମାନ ମଧ୍ୟ ସନ୍ଧ୍ୟା ହେବାକୁ ଡେରି ଅଛି । ଠାକୁର ଘରେ ବସି ଏକାନ୍ତରେ ମଣିଙ୍କ ସହିତ କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ (ମଣିଙ୍କ ପ୍ରତି)— ଆଚ୍ଛା, ମୁଁ ଯାହା ଭାବାବସ୍ଥାରେ କହେ, ସେଥିରେ ଲୋକଙ୍କର ଆକର୍ଷଣ ହୁଏ ?

ମଣି— ଆଜ୍ଞା, ଖୁବ୍ ହୁଏ ।

ଶ୍ରୀରାମକୃଷ୍ଣ— ଲୋକମାନେ କଅଣ ଭାବନ୍ତି ? ଭାବାବସ୍ଥାରେ କିଛି ବୋଧହୁଏ ?

ମଣି— ବୋଧହୁଏ, ଏକାଧାରାରେ ଜ୍ଞାନ, ପ୍ରେମ, ବୈରାଗ୍ୟ, —ତା'ପରେ ସହଜାବସ୍ଥା । ଭିତର ଦେଇ କେତେ ଜାହାଜ ଚାଲିଯାଉଛି, ତଥାପି ସହଜ । ସେ ଅବସ୍ଥା ଅନେକ ବୁଝିପାରନ୍ତି ନାହିଁ, — ଦୁଇ ଚାରିଜଣ କିନ୍ତୁ ଏଥିରେ ଆକୃଷ୍ଟ ହୁଅନ୍ତି ।

ଶ୍ରୀରାମକୃଷ୍ଣ— ଘୋଷପଡ଼ା ମତରେ ଈଶ୍ୱରଙ୍କୁ 'ସହଜ' କହନ୍ତି । ଆଉ କହନ୍ତି, **ସହଜ ନ ହେଲେ ସହଜକୁ ଚିହ୍ନାଯାଏ ନାହିଁ ।**

## ଶ୍ରୀରାମକୃଷ୍ଣ ଓ ଅଭିମାନ, ଅହଙ୍କାର । ମୁଁ ଯନ୍ତ୍ର ସେ ଯନ୍ତ୍ରୀ ।

ଶ୍ରୀରାମକୃଷ୍ଣ (ମଣିଙ୍କ ପ୍ରତି)— ଆଚ୍ଛା, ମୋର ଅଭିମାନ ଅଛି ?

ମଣି— ଆଜ୍ଞା ଟିକିଏ ଅଛି । ଶରୀର ରକ୍ଷା କେବଳ ଭକ୍ତି ଭକ୍ତଙ୍କ ପାଇଁ, — ଜ୍ଞାନ ଉପଦେଶ ପାଇଁ । ତାହା ମଧ୍ୟ ଆପଣ ପ୍ରାର୍ଥନା କରି ରଖିଛନ୍ତି ।

ଶ୍ରୀରାମକୃଷ୍ଣ— ମୁଁ ରଖିନାହିଁ; — ସେ ହିଁ କେବଳ ରଖିଛନ୍ତି । ଆଚ୍ଛା ଭାବାବେଶ ସମୟରେ କଅଣ ହୁଏ ?

ମଣି— ଆପଣ ସେତେବେଳେ କହନ୍ତି ଷଷ୍ଠ ଭୂମିରେ ମନ ଉଠି ଈଶ୍ୱରୀୟ ରୂପ ଦର୍ଶନ ହୁଏ । ତାହାପରେ କଥା ଯେତେବେଳେ କହନ୍ତି, ସେତେବେଳେ ପଞ୍ଚମ ଭୂମିକୁ ମନ ଖସେ ।

ଶ୍ରୀରାମକୃଷ୍ଣ— ସେ ହିଁ ସବୁ କରୁଅଛନ୍ତି । ମୁଁ କିଛି ଜାଣେ ନାହିଁ ।

ମଣି— ଆଜ୍ଞା, ସେହି ସକାଶେ ତ ଏତେ ଆକର୍ଷଣ ।

Why all Scriptures-all Religions are true–

## ଶ୍ରୀରାମକୃଷ୍ଣ ଓ ବିରୁଦ୍ଧ ଶାସ୍ତ୍ରର ସମନ୍ୱୟ ।

ମଣି-ଆଜ୍ଞା, ଶାସ୍ତ୍ରରେ ଦୁଇପ୍ରକାର ଅଛି । ଗୋଟିଏ ପୁରାଣରେ କୃଷ୍ଣଙ୍କୁ ଚିଦାତ୍ମା, ରାଧାଙ୍କୁ ଚିତ୍‌ଶକ୍ତି କହିଛି । ଆଉ ଏକ ପୁରାଣରେ କୃଷ୍ଣଙ୍କୁ ହିଁ କାଳୀ ଓ ଆଦ୍ୟାଶକ୍ତି କହିଛି ।

ଶ୍ରୀରାମକୃଷ୍ଣ— ଦେବୀପୁରାଣର ମତ । —ଏହି ମତରେ କାଳୀ ହିଁ କୃଷ୍ଣ ହୋଇଛନ୍ତି ।

"ତାହା ହେଲେ ବି ! —**ସେ ଅନନ୍ତ, ପଥ ମଧ୍ୟ ଅନନ୍ତ ।**"

ଏହି କଥା ଶୁଣି ମଣି ଅବାକ୍ ହୋଇ କିୟତ୍‌କ୍ଷଣ ଚୁପ୍ କରି ରହିଲେ ।

ମଣି— ତାହା ବୁଝିଛି । ଆପଣ ଯେପରି କହନ୍ତି, ଛାତ ଉପରକୁ ଉଠିବା ନେଇ କଥା । ଯେକୌଣସି ଉପାୟରେ ଉଠିପାରିଲେ ହେଲା—ଦୌଡ଼ି କିମ୍ୱା ବାଉଁଶ—ଯେ କୌଣସି ଉପାୟରେ ।

ଶ୍ରୀରାମକୃଷ୍ଣ— ଏହିଟି ଯେ ବୁଝିଛ, ଏ ଟିକକ ଈଶ୍ୱରଙ୍କର ଦୟା । ଈଶ୍ୱରଙ୍କର କୃପା ନହେଲେ ସଂଶୟ କେବେ ଯାଏ ନାହିଁ ।

"କଥାଟି ଏହି— ଯେକୌଣସି ପ୍ରକାରେ ତାଙ୍କ ଉପରେ ଯେପରି ଭକ୍ତି ହୁଏ— ପ୍ରୀତି ହୁଏ । ନାନା ଖବରରେ କାର୍ଯ୍ୟ କଅଣ ? ଗୋଟାଏ ପଥ ଦେଇ ଯାଉଁ ଯାଉଁ ଯଦି ତାଙ୍କ ଉପରେ ପ୍ରୀତି ହେଲା, ତାହା ହେଲେ ହିଁ ହେଲା । ପ୍ରୀତି ହେଲେ ତାଙ୍କୁ ଲାଭ କରାଯିବ । ତାହାପରେ ଯଦି ଦରକାର ହୁଏ, ସେ ବୁଝାଇଦେବେ— ସବୁ ପଥର ଖବର କହିଦେବେ । ଈଶ୍ୱରଙ୍କ ଉପରେ ପ୍ରୀତି ଆସିଲେ ହେଲା— ନାନା ବିଚାରର ଦରକାର ନାହିଁ— ଆମ୍ବ ଖାଇବାକୁ ଆସିଛ, ଆମ୍ବ ଖାଅ, କେତେ ଡାଳ, କେତେ ପତ୍ର, ଏ ସବୁର ହିସାବର ଦରକାର ନାହିଁ । ହନୁମାନଙ୍କର ଭାବ— 'ମୁଁ' ବାର ତିଥି ନକ୍ଷତ୍ର ଜାଣେ ନାହିଁ— ଏକମାତ୍ର ରାମ ଚିନ୍ତା କରେ ।"

## ସଂସାର ତ୍ୟାଗ ଓ ଈଶ୍ୱରଲାଭ ।
## ଭକ୍ତର ସଞ୍ଚୟ ନା ଯଦୃଚ୍ଛାଲାଭ ?

ମଣି ବର୍ତ୍ତମାନ ଏପରି ଇଚ୍ଛାହୁଏ ଯେ, କର୍ମ ଖୁବ୍ କମିଯାଆନ୍ତା— ଆଉ ଈଶ୍ୱରଙ୍କ ଦିଗରେ ଖୁବ୍ ମନ ଦିଅନ୍ତି ।

ଶ୍ରୀରାମକୃଷ୍ଣ— ଆହା ! ତାହା ନୁହେଁ ଆଉ କଅଣ ?

ଶ୍ରୀରାମକୃଷ୍ଣ— କିନ୍ତୁ ଜ୍ଞାନ ନିର୍ଲିପ୍ତ ହୋଇ ସଂସାରରେ ରହିପାରେ ।

ମଣି— ଆଜ୍ଞା, କିନ୍ତୁ ନିର୍ଲିପ୍ତ ହେବାକୁ ଗଲେ ବିଶେଷ ଶକ୍ତି ଦରକାର ।

ଶ୍ରୀରାମକୃଷ୍ଣ— ହଁ, ତାହା ସତ, କିନ୍ତୁ ହୁଏତ ତୁମେ (ସଂସାର) ଚାହିଁଥିଲ ।

"କୃଷ୍ଣ ଶ୍ରୀମତୀଙ୍କର ହୃଦୟରେ ହିଁ ଥିଲେ, କିନ୍ତୁ ଶ୍ରୀମତୀଙ୍କର ଇଚ୍ଛା ହେଲା, ତେଣୁ ମନୁଷ୍ୟ ରୂପରେ ଲୀଳା । ବର୍ତ୍ତମାନ ପ୍ରାର୍ଥନା କର, ଯେଉଁଥିରେ ଏସବୁ କମିଯାଏ ।"

"ଆଉ ମନରୁ ତ୍ୟାଗ ହେଲେ ହେଲା ।"

ମଣି— ଏସବୁ କଥା ସେମାନଙ୍କ ପକ୍ଷରେ, ଯେଉଁମାନେ ବାହାରେ ତ୍ୟାଗ କରିପାରନ୍ତି ନାହିଁ । ଉଚ୍ଚସ୍ତର ପାଇଁ ଏକାବେଳକେ ତ୍ୟାଗ— ମନରୁ ତ୍ୟାଗ ଓ ବାହାରେ ତ୍ୟାଗ ।

ଠାକୁର ଚୁପ୍ କରିଛନ୍ତି । —ପୁଣି କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ— ବୈରାଗ୍ୟର କଥା ସେତେବେଳେ କିପରି ଶୁଣିଲ ?

ମଣି— ଆଜ୍ଞା ହଁ ।

ଶ୍ରୀରାମକୃଷ୍ଣ— ବୈରାଗ୍ୟ ମାନେ କଅଣ କହ ଦେଖି ?

ମଣି— ବୈରାଗ୍ୟ ମାନେ କେବଳ ସଂସାରରେ ବିରାଗ ନୁହେଁ । ଈଶ୍ୱରଙ୍କ ଠାରେ ଅନୁରାଗ ଆଉ ସଂସାରରେ ବିରାଗ ।

ଶ୍ରୀରାମକୃଷ୍ଣ— ହଁ, ଠିକ୍ କହିଛ ।

''ସଂସାରରେ ଟଙ୍କା ଦରକାର ଅଛି ସତ, କିନ୍ତୁ ସେଗୁଡ଼ାକ ପାଇଁ ଏତେ ଭାବ ନାହିଁ । ଯଦୃଚ୍ଛା ଲାଭ— ଏହିଟି ଭଲ । ସଞ୍ଚୟ ପାଇଁ ଏତେ ଭାବ ନାହିଁ । ଯେଉଁମାନେ ତାଙ୍କୁ ମନପ୍ରାଣ ସମର୍ପଣ କରନ୍ତି— ଯେଉଁମାନେ ତାଙ୍କର ଭକ୍ତ, ଶରଣାଗତ, — ସେମାନେ ସେସବୁ ଏତେ ଭାବନ୍ତି ନାହିଁ । ଯତ୍ର ଆୟ-ତତ୍ର ବ୍ୟୟ । ଏକ ଦିଗରୁ ଟଙ୍କା ଆସେ, ଏକ ଦିଗରେ ଖରଚ ହୋଇଯାଏ । ଏହାର ନାମ ଯଦୃଚ୍ଛା ଲାଭ— ଗୀତାରେ ଅଛି ।''

## ଶ୍ରୀଯୁକ୍ତ ହରିପଦ, ରାଖାଲ, ବାବୁରାମ, ଅଧର ପ୍ରଭୃତିଙ୍କ କଥା

ଠାକୁର ହରିପଦଙ୍କ କଥା କହୁଛନ୍ତି । —'ହରିପଦ ସେଦିନ ଆସିଥିଲା ।'

ମଣି (ସହାସ୍ୟ)— ହରିପଦ କଥକତା ଜାଣନ୍ତି— । ପ୍ରହ୍ଲାଦ ଚରିତ୍ର, ଶ୍ରୀକୃଷ୍ଣଙ୍କର ଜନ୍ମକଥା— ଏସବୁ ବେଶ୍ ସୁର୍ କରି ଗାଇପାରନ୍ତି ।

ଶ୍ରୀରାମକୃଷ୍ଣ— ସତ । ସେଦିନ ତା'ର ଚକ୍ଷୁ ଦେଖିଲି, ଯେପରି ଅନ୍ତର୍ମୁଖୀ ଭାବ । କହିଲି, —'ତୁ କ'ଣ ଖୁବ୍ ଧ୍ୟାନ କରୁଛୁ ?' ସେ ମୁଣ୍ଡ ନୁଆଁଇ ନୀରବ ରହିଲା । ମୁଁ ସେତେବେଳେ କହିଲି, —ଏତେ ନୁହେଁରେ ।

ସନ୍ଧ୍ୟା ହେଲା । ଠାକୁର ମାଆଙ୍କ ନାମ କରୁଛନ୍ତି ଓ ଚିନ୍ତା କରୁଛନ୍ତି ।

କିୟତ୍‌କ୍ଷଣ ପରେ ଠାକୁର ମନ୍ଦିରରେ ଆଳତି ଆରମ୍ଭ ହେଲା । ଶ୍ରାବଣ ଶୁକ୍ଳା ଦ୍ୱାଦଶୀ । ଝୁଲଣ-ଉତ୍ସବର ଦ୍ୱିତୀୟ ଦିନ । ଚନ୍ଦ୍ର ଉଠିଅଛି । ମନ୍ଦିର, ମନ୍ଦିର-ପ୍ରାଙ୍ଗଣ, ଉଦ୍ୟାନ,— ଆନନ୍ଦମୟ ହୋଇଛି । ରାତ୍ର ଆଠଟା ହେଲା । ଘରେ ଠାକୁର ବସିଛନ୍ତି । ରାଖାଲ ଓ ମାଷ୍ଟର ମଧ୍ୟ ଅଛନ୍ତି ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)— ବାବୁରାମ କହେ, 'ସଂସାର ! —ଓରେ ବାବା ।'

ମାଷ୍ଟର— ଏସବୁ ଶୁଣିବା କଥା । ବାବୁରାମ ସଂସାର କ'ଣ ଜାଣେ ?

ଶ୍ରୀରାମକୃଷ୍ଣ— ହଁ, ତା' ସତ । ନିରଞ୍ଜନକୁ ଦେଖିଛ, ଖୁବ୍ ସରଳ ।

ମାଷ୍ଟର— ଆଜ୍ଞା, ହଁ । ତାଙ୍କର ଚେହେରାଟି ହିଁ ଆକର୍ଷଣ କରେ । ଚକ୍ଷୁର ଭାବଟି କିପରି ।

ଶ୍ରୀରାମକୃଷ୍ଣ— କେବଳ ଚକ୍ଷୁର ଭାବ ନୁହେଁ-ସମସ୍ତ । ଘରେ ତାହାର ବିବାହ

ଦେବେ କହିଥିଲେ, ସେ କହିଛି, ମୋତେ ଡୁବାଇବ କାହିଁକି ? (ସହାସ୍ୟ) ହଁ ହେ, ଲୋକେ କହନ୍ତି ଖଟିଖାଟି ଯାଇ ସ୍ତ୍ରୀ ନିକଟରେ ବସିଲେ ପରା ଖୁବ୍ ଆନନ୍ଦ ହୁଏ ।

ମାଷ୍ଟର—ଆଜ୍ଞା, ଯେଉଁମାନେ ଏହି ଭାବରେ ଅଛନ୍ତି, ସେମାନଙ୍କର ନହେବ କାହିଁକି ? (ରାଖାଲଙ୍କ ପ୍ରତି, ସହାସ୍ୟ) । ଏକଜାମିନ୍ ହେଉଛି—Leading question.

ଶ୍ରୀରାମକୃଷ୍ଣ (ସହାସ୍ୟ)—ମାଆମାନେ କହନ୍ତି, ପୁଅ ପାଇଁ ଗୋଟିଏ ଗଛତଳ କରିଦେଲେ ନିଶ୍ଚିନ୍ତ । ଖରାରେ ଜଳି କଷ୍ଟ ପାଇଲେ ଗଛତଳେ ବସିବ ।

ମାଷ୍ଟର—ଆଜ୍ଞା, କେତେରକମ ବାପ ମା' ଅଛନ୍ତି । ଯେଉଁ ବାପ ଜ୍ଞାନୀ, ସେ ପିଲାମାନଙ୍କର ବିବାହ ଦିଅନ୍ତି ନାହିଁ । ଯଦି ଦିଅନ୍ତି ଜାଣ ସେ କିପରି ଜ୍ଞାନୀ ! (ଠାକୁରଙ୍କର ହାସ୍ୟ) ।

## ଅଧର ଓ ମାଷ୍ଟରଙ୍କର କାଳୀ ଦର୍ଶନ । ଅଧରଙ୍କର ଚନ୍ଦ୍ରନାଥ ତୀର୍ଥ ଓ ସୀତାକୁଣ୍ଡର ଗଳ୍ପ ।

ଶ୍ରୀଯୁକ୍ତ ଅଧର ସେନ କଲିକତାରୁ ଆସି ଭୂମିଷ୍ଠ ହୋଇ ପ୍ରଣାମ କଲେ । ଟିକିଏ ବସି କାଳୀ ଦର୍ଶନ ପାଇଁ କାଳୀ ମନ୍ଦିରକୁ ଗଲେ । ମାଷ୍ଟର ମଧ୍ୟ କାଳୀ ଦର୍ଶନ କଲେ । ତତ୍‌ପରେ ଚାନ୍ଦିନୀ ଘାଟକୁ ଆସି ଗଙ୍ଗାକୂଳରେ ବସିଲେ । ଗଙ୍ଗାଜଳ ଜ୍ୟୋସ୍ନାରେ ଝକ୍ ଝକ୍ ଦିଶୁଅଛି । ବର୍ତ୍ତମାନ ଜୁଆର ଆସିଛି । ମାଷ୍ଟର ନିର୍ଜନରେ ବସି ଠାକୁରଙ୍କର ଅଦ୍ଭୁତ ଚରିତ୍ର ଚିନ୍ତା କରୁଅଛନ୍ତି—ତାଙ୍କର ଅଦ୍ଭୁତ ସମାଧି ଅବସ୍ଥା, —ମୁହୁର୍ମୁହୁଃ ଭାବ,—ପ୍ରେମାନନ୍ଦ, —ଅବିଶ୍ରାନ୍ତ ଈଶ୍ୱର ଚିନ୍ତା ପ୍ରସଙ୍ଗ, —ଭକ୍ତଙ୍କ ଉପରେ ଅକୃତ୍ରିମ ସ୍ନେହ,—ବାଳକର ଚରିତ୍ର—ଏହି ସବୁ ସ୍ମରଣ କରୁଛନ୍ତି । ଆଉ ଭାବୁଛନ୍ତି—ଏ କିଏ—ଈଶ୍ୱର କ'ଣ ଭକ୍ତ ପାଇଁ ଦେହ ଧାରଣ କରି ଆସିଛନ୍ତି ?

ଅଧର, ମାଷ୍ଟର ଠାକୁରଙ୍କ ଘରକୁ ଫେରିଯାଇଅଛନ୍ତି । ଅଧର ଚଟ୍ଟଗ୍ରାମରେ କର୍ମ ଉପଲକ୍ଷରେ ଥିଲେ । ସେ ଚନ୍ଦ୍ରନାଥ ତୀର୍ଥ ଓ ସୀତାକୁଣ୍ଡର ଗଳ୍ପ କରୁଅଛନ୍ତି ।

ଅଧର—ସୀତାକୁଣ୍ଡର ଜଳରେ ଅଗ୍ନିଶିଖା ଜିହ୍ୱା ପରି ଉଠୁଛି ପଡୁଛି !

ଶ୍ରୀରାମକୃଷ୍ଣ—ଏହା କିପରି ହୁଏ ?

ଅଧର—ଜଳରେ ଫସଫରସ (Phosphoros) ଅଛି ।

ଶ୍ରୀଯୁକ୍ତ ରାମ ଚାଟାର୍ଜୀ ଘରକୁ ଆସିଅଛନ୍ତି । ଠାକୁର ଅଧରଙ୍କ ପାଖରେ ତାଙ୍କର ସୁଖ୍ୟାତି କରୁଛନ୍ତି । ଆଉ କହୁଛନ୍ତି ; —'ରାମ ଅଛି, ତେଣୁ ଆମମାନଙ୍କୁ ଏତେ ଭାବିବାକୁ ହୁଏ ନାହିଁ । ହରିଶ୍, ଲାଟୁ ଏମାନଙ୍କୁ ଡାକି ଡାକି ଖୁଆଏ । ସେମାନେ ହୁଏତ ଏକା ଏକା ବସି କେଉଁଠାରେ ଧ୍ୟାନ କରୁଛନ୍ତି । ସେଠାରୁ ରାମ ଡାକିଡୁକି ଆଣେ ।



# ପଞ୍ଚମ ପରିଚ୍ଛେଦ

## (୧)

## ଠାକୁର ଶ୍ରୀରାମକୃଷ୍ଣ ଶ୍ରୀଯୁକ୍ତ ଅଧରଙ୍କ ଘରେ ନରେନ୍ଦ୍ରାଦି ଭକ୍ତଙ୍କ ସଙ୍ଗରେ ।

### ନରେନ୍ଦ୍ରାଦି ଭକ୍ତଙ୍କ ସଙ୍ଗରେ କୀର୍ତ୍ତନାନନ୍ଦରେ ସମାଧି ମନ୍ଦିରରେ ।

ଠାକୁର ଶ୍ରୀରାମକୃଷ୍ଣ ଶ୍ରୀଯୁକ୍ତ ଅଧରଙ୍କ ଘରର ବୈଠକଖାନାରେ ଭକ୍ତମାନଙ୍କ ସଙ୍ଗରେ ବସିଛନ୍ତି । ବୈଠକଖାନା ଦ୍ୱିତଳ ଉପରେ । ଶ୍ରୀଯୁକ୍ତ ନରେନ୍ଦ୍ର, ମୁଖାର୍ଜୀ ଭ୍ରାତୃଦ୍ୱୟ, ଭବନାଥ, ମାଷ୍ଟର, ଚୁନିଲାଲ, ହାଜରା ପ୍ରଭୃତି ଭକ୍ତମାନେ ତାଙ୍କ ପାଖରେ ବସିଛନ୍ତି । ସମୟ ୩ଟା ହେବ । ଆଜି ଶନିବାର, ଭାଦ୍ରବ ୨୨ ଦିନ, ୬ ତାରିଖ ସେପ୍ଟେମ୍ବର, ୧୮୮୪ । କୃଷ୍ଣ ପ୍ରତିପଦ ତିଥି ।

ଭକ୍ତମାନେ ପ୍ରଣାମ କରୁଛନ୍ତି । ମାଷ୍ଟର ପ୍ରଣାମ କଲାପରେ, ଠାକୁର ଅଧରଙ୍କୁ କହୁଛନ୍ତି— ନିତାଇ ଡାକ୍ତର ଆସିବେ ନାହିଁ ?

ଶ୍ରୀଯୁକ୍ତ ନରେନ୍ଦ୍ର ଗୀତ ଗାଇବେ, ତାହାର ଆୟୋଜନ ହେଉଅଛି । ତାନପୁରା ବାନ୍ଧିବାକୁ ଯାଇ ତାର ଛିଣ୍ଡିଗଲା । ଠାକୁର କହୁଛନ୍ତି, ଆରେ କଅଣ କଲୁ ! ନରେନ୍ଦ୍ର ବାୟାଁ ତାବଲା ବାନ୍ଧୁଅଛନ୍ତି । ଠାକୁର କହୁଛନ୍ତି, —ତୋର ବାୟାଁ ଯେପରି ଗାଲରେ ଚଟକଣା ମାରୁଛି ।

କୀର୍ତ୍ତନଶ୍ରେଣୀର ଗୀତ ସମ୍ବନ୍ଧରେ କଥା ହେଉଅଛି । ନରେନ୍ଦ୍ର କହୁଅଛନ୍ତି— 'କୀର୍ତ୍ତନରେ ତାଳ ସମ ଏସବୁ ନାହିଁ— ତେଣୁ ଏତେ Popular — ଲୋକେ ଭଲ ପାଆନ୍ତି ।'

ଶ୍ରୀରାମକୃଷ୍ଣ— ଏପରି କଅଣ କହିଲୁ ! କରୁଣ ବୋଲି— ଲୋକମାନେ ଏତେ ଭଲ ପାଆନ୍ତି ! ନରେନ୍ଦ୍ର ଗୀତ ଗାଉଅଛନ୍ତି—

ଗୀତ— ସୁନ୍ଦର ତୁମର ନାମ ଦୀନ ଶରଣ ହେ ।

ଗୀତ— ଯିବ କିହେ ଦିନ ମୋର ବିଫଳେ ଚାଲି ।
ଦିବାନିଶି ଅଛି ପ୍ରଭୁ ତବ ଆଶା ପଥ ଚାହିଁ ।।

ଶ୍ରୀରାମକୃଷ୍ଣ (ହାଜରାଙ୍କ ପ୍ରତି ସହାସ୍ୟ)— ପ୍ରଥମେ ଏହି ଗୀତ ବୋଲନ୍ତି ।

ନରେନ୍ଦ୍ର ଆଉ ଗୋଟିଏ ଦୁଇଟା ଗୀତ ଗାଇବା ପରେ ବୈଷ୍ଣବଚରଣ ଗୀତ ଗାଉଛନ୍ତି—

ଚିନିବ କେମନେ ହେ ତୋମାୟ (ହରି),
ଓ ହେ ବଙ୍କୁରାୟ ଭୁଲେ ଆଛ ମଥୁରାୟ ।

ହାତୀଚଢ଼ା ଜୋଡ଼ାପରା, ଭୁଲେଛ କି ଧେନୁଚରା,
ବ୍ରଜେର ମାଖନ ଚୁରି କରା, ମନେ କିଛୁ ହୟ ।

ଶ୍ରୀରାମକୃଷ୍ଣ—'ହରି ହରି ବଲରେ ବୀଣେ' ଏଇଟା ଥରେ—ହେଉନା । ବୈଷ୍ଣବଚରଣ ଗାଉଛନ୍ତି—

ହରି ହରି ବଲରେ ବୀଣେ !
ଶ୍ରୀ ହରିର ଚରନ ବିନେ ପରମତତ୍ତ୍ୱ ଆର୍ ପାବିନେ ।।
ହରି ନାମେ ତାପ ହରେ, ମୁଖେ ବଲ ହରେ କୃଷ୍ଣ ହରେ,
ହରି ଯଦି କୃପା କରେ ତବେ ଭବେ ଆର୍ ଭାବିନେ ।
ଦିନେ ଏକବାର ହରି ବଲ, ହରି ନାମ ବିନେ ନାହିଁ ସମ୍ବଲ,
ଦାସ ଗୋବିନ୍ଦ ଜୟ ଦିନ ଗେଲ, ଆକୁଲେ ଯେନ ଭାସିନେ ।।

## ଠାକୁରଙ୍କର ମୂହୁର୍ମୁହୁଃ ସମାଧି ଓ ନୃତ୍ୟ ।

ଗୀତ ଶୁଣୁ ଶୁଣୁ ଠାକୁର ଶ୍ରୀରାମକୃଷ୍ଣ ଭାବାବିଷ୍ଟ ହୋଇ କହୁଅଛନ୍ତି—ଆହା ! ଆହା ! ହରି ହରି କହ ।

ଏହି କଥା କହୁ କହୁ ଠାକୁର ସମାଧିସ୍ଥ ହେଲେ । ଭକ୍ତମାନେ ଚତୁର୍ଦ୍ଦିଗରେ ବସିଛନ୍ତି ଓ ଦର୍ଶନ କରୁଛନ୍ତି । ଘର ଲୋକରେ ପରିପୂର୍ଣ୍ଣ ହୋଇଅଛି ।

କୀର୍ତ୍ତନୀୟା ଏହି ଗୀତ ସମାପ୍ତ କରି ନୂତନ ଗୀତ ଧରିଲେ ।

ଗୀତ—ଶ୍ରୀ ଗୌରାଙ୍ଗ ସୁନ୍ଦର ନବ ନଟବର, ତପତ କାଞ୍ଚନ କାୟ !

କୀର୍ତ୍ତନୀୟା ଯେତେବେଳେ ତୁହା ଗାଉଛନ୍ତି, 'ହରି ପ୍ରେମର ବନ୍ୟା ଭାସିଯାଏ, ଠାକୁର ଦଣ୍ଡାୟମାନ ହୋଇ ନୃତ୍ୟ କରିବାକୁ ଲାଗିଲେ । ପୁଣି ବସି ବାହୁ ପ୍ରସାରିତ କରି ତୁହା ଗାଉଛନ୍ତି, —(ଏକବାର ହରି ବଲରେ) ।

ଠାକୁର ଗାଉ ଗାଉ ଭାବାବିଷ୍ଟ ହେଲେ ଓ ମୁଣ୍ଡ ତଳକୁ କରି ସମାଧିସ୍ଥ ହେଲେ । ତକିଆଟି ସମ୍ମୁଖରେ ! ତାହା ଉପରେ ଶିରୋଦେଶ ଟଳି ପଡ଼ିଅଛି । କୀର୍ତ୍ତନୀୟା ପୁଣି ଗାଉଛନ୍ତି—

ହରିନାମ ବିନା ଆଉ କି ଧନ ଆଛି ଏ ସଂସାରେ,
ବୋଲ ମାଧାଇ ମଧୁର ସ୍ୱରେ
ହରେ କ୍ରିଷ୍ଣ ହରେ କ୍ରିଷ୍ଣ କ୍ରିଷ୍ଣ ହରେ ହରେ ।
ହରେ ରାମ ହରେ ରାମ ରାମ ରାମ ହରେ ହରେ ।।
ଗୀତ-ହରି ବଲେ ଆମାର ଗୌର ନାଚେ ।
ନାଚେରେ ଗୌରାଙ୍ଗ ଆମାର ହେମଗିରିର ମାଝେ ।
ରାଙ୍ଗାପାୟେ ସୋନାର ନୁପୁର ରୁନୁଝୁନୁ ବାଜେ ।।

ଥେକୋରେ ବାପ ନରହରି ଥେକୋ ଗୌରେର ପାଶେ ।
ରାଧାର ପ୍ରେମେ ଗଡ଼ା ତନୁ, ଧୁଲାୟ ପଡ଼େ ପାଛେ ।।
ବାମେତେ ଅଦ୍ୱୈତ ଆଉ ଦକ୍ଷିଣେ ନିତାଇ ।
ତା'ର ମାଝେ ନାଚେ ଆମାର ଚୈତନ୍ୟ ଗୋସାଇଁ ।।
ଠାକୁର ପୁଣି ଉଠିଅଛନ୍ତି ଓ ତୁହା ଗାଇ ନାଚୁଅଛନ୍ତି ।
(ପ୍ରେମେ, ମାତୋୟାରା ହୟରେ)

ସେହି ଅପୂର୍ବ ନୃତ୍ୟ ଦେଖି ନରେନ୍ଦ୍ର ପ୍ରଭୃତି ଭକ୍ତମାନେ ଆଉ ସ୍ଥିର ରହିପାରିଲେ ନାହିଁ, ସମସ୍ତେ ଠାକୁରଙ୍କ ସଙ୍ଗରେ ନାଚିବାକୁ ଲାଗିଲେ ।

ନାଚୁ ନାଚୁ ଠାକୁର ଏକାବେଳକେ ସମାଧିସ୍ଥ ହେଉଅଛନ୍ତି । ଯେତେବେଳେ ଅନ୍ତର୍ଦ୍ଦଶା । ମୁଖରେ ଗୋଟିଏ କଥା ନାହିଁ । ଭକ୍ତମାନେ ତାଙ୍କୁ ଘେରି ନାଚୁଛନ୍ତି ।

କିୟତ୍‌କ୍ଷଣ ପରେ ଅର୍ଦ୍ଧବାହ୍ୟ ଦଶା — ଚୈତନ୍ୟଦେବଙ୍କର ଯେପରି ହୁଏ, — ସଙ୍ଗେ ସଙ୍ଗେ ଠାକୁର ସିଂହବିକ୍ରମରେ ନୃତ୍ୟ କରୁଛନ୍ତି । ସେତେବେଳେ ମଧ୍ୟ କଥା ନାହିଁ — ପ୍ରେମରେ ଉନ୍ମତ୍ତ ପ୍ରାୟ ।

ଯେତେବେଳେ ଟିକିଏ ପ୍ରକୃତିସ୍ଥ ହେଉଅଛନ୍ତି — ସଙ୍ଗେ ସଙ୍ଗେ ଥରେ ତୁହା ଗାଉଛନ୍ତି ।

ଆଜି ଅଧରଙ୍କର ବୈଠକଖାନା ଘର ଶ୍ରୀବାସଙ୍କ ଅଗଣା ହୋଇଅଛି । ହରିନାମର ରୋଳ ଶୁଣିପାରି ରାଜପଥରେ ଅସଂଖ୍ୟ ଲୋକ ଜମିଯାଇଛନ୍ତି ।

ଭକ୍ତଙ୍କ ସଙ୍ଗରେ ଅନେକକ୍ଷଣ ନୃତ୍ୟ ପରେ ଠାକୁର ପୁଣି ଆସନ ଗ୍ରହଣ କରିଅଛନ୍ତି । ବର୍ତ୍ତମାନ ମଧ୍ୟ ଭାବାବେଶ । ସେହି ଅବସ୍ଥାରେ ନରେନ୍ଦ୍ରଙ୍କୁ କହୁଅଛନ୍ତି — ସେହି ଗୀତଟି — 'ଆମାୟ ଦେ ମା ପାଗଲ କରେ ।'

ଠାକୁରଙ୍କର ଆଜ୍ଞା ପାଇ ନରେନ୍ଦ୍ର ଗୀତ ଗାଉଅଛନ୍ତି —

ଗୀତ — ଦେ ମା' ମୋତେ ପାଗଳ କରି ।।

ଶ୍ରୀରାମକୃଷ୍ଣ — ଆଉ ସେହିଟି — 'ଚିଦାନନ୍ଦ ସିନ୍ଧୁନୀରେ ।'

ନରେନ୍ଦ୍ର ଗାଉଅଛନ୍ତି —

ଚିଦାନନ୍ଦ ସିନ୍ଧୁନୀରେ ପ୍ରେମାନନ୍ଦ-ଲହରୀ,
ମହାଭାବ ରସଲୀଳା କି ମାଧୁରୀ ମରିମରି ।
ମହାଯୋଗେ ସମୁଦାୟ ଏକାକାର ହୋଇଲା,
ଦେଶ-କାଳ ବ୍ୟବଧାନ ଭେଦାଭେଦ ଘୁଞ୍ଚିଲା ,
ଏବେ ମାତି ଆନନ୍ଦରେ ଦ୍ୱିବାହୁ ତୋଳିରେ,
ବୋଲରେ ମନ ହରି ହରି ।

ଶ୍ରୀରାମକୃଷ୍ଣ (ନରେନ୍ଦ୍ରଙ୍କ ପ୍ରତି) — ଆଉ 'ଚିଦାକାଶେ' ? — ନା ସେଇଟା ବଡ଼ ଲମ୍ବା, ନା ? ଆଚ୍ଛା, ଟିକିଏ ଆସ୍ତେ ଆସ୍ତେ !

ନରେନ୍ଦ୍ର ଗାଉଅଛନ୍ତି—

ଚିଦାକାଶେ ହେଲା ପୂର୍ଣ୍ଣ ପ୍ରେମ—ଚନ୍ଦ୍ରୋଦୟ ହେ ।
ଉଚ୍ଛଳିଲା ପ୍ରେମସିନ୍ଧୁ କି ଆନନ୍ଦମୟ ହେ ।।

ଶ୍ରୀରାମକୃଷ୍ଣ—ଆଉ ସେଇଟା—'ହରିରସ ମଦିରା ?'

ନରେନ୍ଦ୍ର—ହରି ପ୍ରେମ ଅମୃତ ପିଇ ମମ ମାନସ ମାତରେ ।
ବାରେ ମାତ୍ର ଲୋଟି ଅବନୀ ତଳେ,ହରି ହରି ବୋଲି କାନ୍ଦରେ ।।

ଠାକୁର ତୁହା ଗାଉଅଛନ୍ତି—

ପ୍ରେମେ ମତ୍ତ ହୟେ ହରି ହରି ବଲି କାନ୍ଦରେ ।
ଭାବେ ମତ୍ତ ହୟେ, —ହରି ହରି ବଲି କାନ୍ଦରେ !

ଠାକୁର ଓ ଭକ୍ତମାନେ ଟିକିଏ ବିଶ୍ରାମ କରୁଅଛନ୍ତି । ନରେନ୍ଦ୍ର ଆସ୍ତେ ଆସ୍ତେ ଠାକୁରଙ୍କୁ କହୁଛନ୍ତି—'ଆପଣ ସେହି ଗୀତଟି ଥରେ ଗାଇବେ ?—

ଶ୍ରୀରାମକୃଷ୍ଣ କହୁଛନ୍ତି—'ମୋର ଗଳାଟା ଟିକିଏ ପଡ଼ିଯାଇଛି—

କିୟତ୍‌କ୍ଷଣ ପରେ ଠାକୁର ପୁଣି ନରେନ୍ଦ୍ରଙ୍କୁ କହୁଅଛନ୍ତି—'କେଉଁଟି ?'

ନରେନ୍ଦ୍ର—**ଭୁବନରଞ୍ଜନ ରୂପ ।**

ଠାକୁର ଆସ୍ତେ ଆସ୍ତେ ଗାଉଛନ୍ତି—

ଭୁବନ ସୁନ୍ଦର ଗୌର, ନଦିଆକୁ କିଏ ଆଣିଲାରେ
ନିଜେ ତ ଗଢ଼ିଛି ବିଧି ଦେଖିନାହିଁ ।
ଗଢ଼ିଛି ସେ (ସତ) ହେଲେ ଦେଖି ନାହିଁ, ଦେଖିଲେ ନଥାନ୍ତା ଛାଡ଼ି

ଠାକୁର ଆଉ ଗୋଟିଏ ଗୀତ ଗାଉଛନ୍ତି-

ଶ୍ୟାମେର ନାଗାଲ ପେଲୁମ ନାଲୋ ସଇ ।
ଆମି କି ସୁଖେ ଆର ଘରେ ରଇ ।।
ଶ୍ୟାମ ଯଦି ମୋର ହତୋ ମାଥାର ଚୁଲ ।
ଯତନ କରେ ବାନ୍ଧ ତୁମ୍ ବେଣୀ ସଇ,
ଦିୟେ ବକୁଲ -ଫୁଲ ।।
(କେଶବ-କେଶ ଯତନେ ବାନ୍ଧ ତୁମ ସଈ)
(କେଉ ନକ୍‌ତେ ପାରତ ନା ସଈ)
(ଶ୍ୟାମ କାଲ ଆର କେଶ କାଲ)
(କାଲୋୟେ କାଲୋୟେ ମିଶେ ଯେତୋ ଗୋ) ।
ଶ୍ୟାମ ଯଦି ମୋର ବେଶର ହଇତ,
ନାଶା ମାଝେ ସତତ ରହିତ,-
(ଅଧର ଚାନ୍ଦ ଅଧରେ ରତ ସଈ ।)

(ଯା ହବାର ନୟ, ତା' ମନେ ହୟ ଗୋ)
(ଶ୍ୟାମ କେନ ବେଶର ହବେ ସଇ ?)
ଶ୍ୟାମ ଯଦି ମୋର କଙ୍କଣ ହ'ତୋ ବାହୁ ମାଝେ ସତତ ରହିତ
(କଙ୍କଣ ନାଡ଼ା ଦିୟେ ଚଲେ ଯେତମ୍ ସଇ) (ବାହୁ ନାଡ଼ା ଦିୟେ)
(ଶ୍ୟାମ କଙ୍କଣ ହାତେ ଦିୟେ, ଚଲେ ଯେତୁମ୍ ସଇ) (ରାଜପଥେ)

## (୨)

## ଭାବାବସ୍ଥାରେ ଅନ୍ତର୍ଦୃଷ୍ଟି । ନରେନ୍ଦ୍ରଙ୍କର ନିମନ୍ତ୍ରଣ ।

ଗୀତ ସମାପ୍ତ ହେଲା । ନରେନ୍ଦ୍ର, ଭବନାଥ ପ୍ରଭୃତିଙ୍କ ସଙ୍ଗରେ ଠାକୁର କଥା କହୁଅଛନ୍ତି । ହସି ହସି କହୁଛନ୍ତି, ହାଜରା ନାଚିଥିଲେ ।

ନରେନ୍ଦ୍ର (ସହାସ୍ୟ)—ଆଜ୍ଞା, ଟିକିଏ ଟିକିଏ ।

ଶ୍ରୀରାମକୃଷ୍ଣ (ସହାସ୍ୟ)—ଟିକିଏ ଟିକିଏ ?

ନରେନ୍ଦ୍ର (ସହାସ୍ୟ)—ପେଟ ଓ ଅନ୍ୟ ଗୋଟିଏ ଜିନିଷ ନାଚୁଥିଲା ।

ଶ୍ରୀରାମକୃଷ୍ଣ (ସହାସ୍ୟ)—ସେ ତ ଛାଏଁ ଦୋହଲେ । ନ ଦୋହଲାଇଲେ ବି ଛାଏଁ ଦୋହଲେ । (ସମସ୍ତଙ୍କର ହାସ୍ୟ) ।

ଶଶଧର ଯେଉଁ ଘରେ ଅଛନ୍ତି, ସେଠାକୁ ଠାକୁରଙ୍କର ନିମନ୍ତ୍ରଣ ହେବାର କଥା ହେଉଅଛି ।

ନରେନ୍ଦ୍ର—ଘରବାଲା କ'ଣ ଖୁଆଇବେ ?

ଶ୍ରୀରାମକୃଷ୍ଣ—ଶୁଣିଛି, ତାଙ୍କର ସ୍ୱଭାବ ଭଲ ନୁହେଁ—ଲୋଚା ।

ନରେନ୍ଦ୍ର—ସେଥିପାଇଁ ଶଶଧରଙ୍କ ସହିତ ଯେଉଁଦିନ ପ୍ରଥମ ସାକ୍ଷାତ୍ ହେଲା, ଆପଣ ତାଙ୍କର ଛୁଇଁଥିବା ଗ୍ଲାସ୍‌ରୁ ପାଣି ପିଇପାରିଲେ ନାହିଁ । ଆପଣ କିପରି ଜାଣିଲେ ଯେ, ଲୋକଟାର ସ୍ୱଭାବ ଭଲ ନୁହେଁ ?

## ପୂର୍ବକଥା

## ସିହୋଡ଼ରେ ହୃଦୟଙ୍କ ଘରେ ହାଜରା ଓ ବୈଷ୍ଣବଙ୍କ ସଙ୍ଗରେ ।

ଶ୍ରୀରାମକୃଷ୍ଣ (ସହାସ୍ୟ)—ହାଜରା ଆଉ ଗୋଟିଏ ଘଟଣା ଜାଣନ୍ତି, —ସେ ଦେଶରେ—ସିହୋଡ଼ରେ—ହୃଦୟର ଘରେ ।

ହାଜରା—ସେ ଜଣେ ବୈଷ୍ଣବ—ମୋ ସଙ୍ଗରେ ଦର୍ଶନ କରିବାକୁ ଯାଇଥିଲେ, ଯହୁଁ ସେ ଯାଇ ବସିଲେ, ଏ ତାଙ୍କ ଆଡ଼କୁ ପଛ କରି ବସିଲେ !

ଶ୍ରୀରାମକୃଷ୍ଣ—ତାହାପରେ ଶୁଣାଗଲା ଯେ, ତାଙ୍କର ମାଉସୀଙ୍କ ସଙ୍ଗରେ କଅଣ ଅବୈଧ ସମ୍ବନ୍ଧ ଥିଲା । (ନରେନ୍ଦ୍ରଙ୍କ ପ୍ରତି) ଆଗେ କହୁଥିଲୁ, ମୋର ଅବସ୍ଥା ସବୁ ମନର ଗତିକ (hallucination) ।

ନରେନ୍ଦ୍ର—କେ ଜାଣି ! ବର୍ତ୍ତମାନ ତ ଅନେକ ଥର ଦେଖିଲି—ସବୁ ମିଳୁଛି !

ନରେନ୍ଦ୍ର କହୁଅଛନ୍ତି, ଠାକୁର ଭାବାବସ୍ଥାରେ ଲୋକଙ୍କର ଅନ୍ତର ବାହାର ସମସ୍ତ ଦେଖିପାରନ୍ତି—ଏଇଟା ସେ ଅନେକଥର ମିଳାଇ ଦେଖିଛନ୍ତି ।

## ଠାକୁର ଶ୍ରୀରାମକୃଷ୍ଣ ଓ ଭକ୍ତଙ୍କର ଜାତି ବିଚାର (Caste)

ଠାକୁର ଓ ଭକ୍ତମାନଙ୍କ ସେବା ପାଇଁ ଅଧର ଅନେକ ଆୟୋଜନ କରିଛନ୍ତି । ସେ ଏଥର ସେମାନଙ୍କୁ ଆହ୍ୱାନ କରୁଅଛନ୍ତି ।

ମହେନ୍ଦ୍ର ଓ ପ୍ରିୟନାଥ—ମୁଖାର୍ଜୀ ଭ୍ରାତୃଦ୍ୱୟଙ୍କୁ—ଠାକୁର କହୁଛନ୍ତି, 'କି ହେ, ତୁମେମାନେ ଖାଇବାକୁ ଯିବ ନାହିଁ ?'

ସେମାନେ ବିନୀତ ଭାବରେ କହୁଛନ୍ତି—'ଆଜ୍ଞା, ଆମମାନଙ୍କର ଥାଉ ।'

ଶ୍ରୀରାମକୃଷ୍ଣ (ସହାସ୍ୟ)—ଏମାନେ ସବୁ କରୁଛନ୍ତି, କେବଳ ଏଇଟାରେ ହିଁ ସଙ୍କୋଚ ।

"ଜଣକର ଶ୍ୱଶୁର ଦେଢ଼ଶୁରଙ୍କ ନାମ ହରି, କୃଷ୍ଣ ଏହିପରି ସବୁ । ବର୍ତ୍ତମାନ ହରିନାମ ତ କରିବାକୁ ହେବ ? —କିନ୍ତୁ ହରେକୃଷ୍ଣ କହିବାକୁ ବାଟ ନାହିଁ । ତେଣୁ ସେ ଜପ କରୁଛି—

ଫରେ ଫୃଷ୍ଣ ଫରେ ଫୃଷ୍ଣ ଫ-ୃଷ୍ଣ ଫ-ୃଷ୍ଣ ଫରେ ଫରେ !
ଫରେ ରାମ, ଫରେ ରାମ, ରାମ ରାମ ଫରେ ଫରେ !"

ଅଧର ଜାତିରେ ସୁବର୍ଣ୍ଣ ବଣିକ । ତେଣୁ ବ୍ରାହ୍ମଣ ଭକ୍ତମାନେ କେହି କେହି ପ୍ରଥମେ ତାଙ୍କ ଘରେ ଆହାର କରିବାକୁ ଇତସ୍ତତଃ କରୁଥିଲେ । କିଛିଦିନ ପରେ ଯେତେବେଳେ ସେମାନେ ଦେଖିଲେ, ସ୍ୱୟଂ ଠାକୁର ଶ୍ରୀରାମକୃଷ୍ଣ ସେଠାରେ ଖାଉଛନ୍ତି, ସେତେବେଳେ ସେମାନଙ୍କର ଚେତନା ହେଲା ।

ରାତ୍ରି ପ୍ରାୟ ନଅଟା ହେଲାଣି । ନରେନ୍ଦ୍ର, ଭବନାଥ ପ୍ରଭୃତି ଭକ୍ତଙ୍କ ସଙ୍ଗରେ ଠାକୁର ଆନନ୍ଦରେ ସେବା କଲେ ।

ଏଥର ବୈଠକଖାନାକୁ ଆସି ବିଶ୍ରାମ କରୁଛନ୍ତି—ଦକ୍ଷିଣେଶ୍ୱରକୁ ପ୍ରତ୍ୟାବର୍ତ୍ତନ କରିବାର ଉଦ୍ୟୋଗ ହେଉଅଛି ।

ଆଗାମୀ କାଲି ରବିବାର ଦିନ ଦକ୍ଷିଣେଶ୍ୱରରେ ଠାକୁରଙ୍କର ଆନନ୍ଦ ପାଇଁ ମୁଖାର୍ଜୀ ଭ୍ରାତୃଦ୍ୱୟ କୀର୍ତ୍ତନର ଆୟୋଜନ କରିଅଛନ୍ତି । ଶ୍ୟାମଦାସ କୀର୍ତ୍ତନୀୟା ଗୀତ ଗାଇବେ । ଶ୍ୟାମଦାସଙ୍କ ପାଖରୁ ରାମ ନିଜ ଘରେ କୀର୍ତ୍ତନ ଶିଖନ୍ତି ।

ଠାକୁର ନରେନ୍ଦ୍ରଙ୍କୁ କାଲି ଦକ୍ଷିଣେଶ୍ୱରକୁ ଯିବାକୁ କହୁଅଛନ୍ତି ।

ଶ୍ରୀରାମକୃଷ୍ଣ (ନରେନ୍ଦ୍ରଙ୍କ ପ୍ରତି)—କାଲି ଯିବୁ—ହେଲା ?

ନରେନ୍ଦ୍ର—ଚେଷ୍ଟା କରିବି ।

ଶ୍ରୀରାମକୃଷ୍ଣ—ସେଠାରେ ସ୍ନାନ କରିବୁ ଓ ଖାଇବୁ ।

"ଏ ମଧ୍ୟ ହୁଏ ତ ଯାଇ ଖାଇବେ । (ମାଷ୍ଟରଙ୍କ ପ୍ରତି)—ତୁମର ବେରାମ ବର୍ତ୍ତମାନ ଛାଡ଼ିଛି ? — ବର୍ତ୍ତମାନ ପଥ୍ୟ ଖାଉନାହଁ ତ ?"

ମାଷ୍ଟର—ଆଜ୍ଞା, ନା—ମୁଁ ମଧ୍ୟ ଯିବି ।

ନିତ୍ୟଗୋପାଳ ବୃନ୍ଦାବନରେ ଅଛନ୍ତି । ଚୁନୀଲାଲ କେତେକ ଦିନ ହେଲା ବୃନ୍ଦାବନରୁ ଫେରିଛନ୍ତି । ଠାକୁର ତାଙ୍କ ନିକଟରେ ନିତ୍ୟଗୋପାଳଙ୍କର ସମ୍ବାଦ ନେଉଛନ୍ତି । ଠାକୁର ଦକ୍ଷିଣେଶ୍ୱରକୁ ଯାତ୍ରା କରିବେ । ମାଷ୍ଟର ଭୂମିଷ୍ଠ ହୋଇ ତାଙ୍କର ଶ୍ରୀପାଦପଦ୍ମ ମସ୍ତକ ଦ୍ୱାରା ସ୍ପର୍ଶ କରି ପ୍ରଣାମ କଲେ ।

ଠାକୁର ସ୍ନେହରେ ତାଙ୍କୁ କହୁଅଛନ୍ତି— 'ତେବେ ଯାଅ ।'

(ନରେନ୍ଦ୍ରାଦିଙ୍କ ପ୍ରତି, ସସ୍ନେହ)— 'ନରେନ୍ଦ୍ର, ଭବନାଥ ଯାଅ ।'

ନରେନ୍ଦ୍ର, ଭବନାଥ ପ୍ରଭୃତି ଭକ୍ତମାନେ ତାଙ୍କୁ ଭୂମିଷ୍ଠ ହୋଇ ପ୍ରଣାମ କଲେ । ତାଙ୍କର ଅପୂର୍ବ କୀର୍ତ୍ତନାନନ୍ଦ ଓ କୀର୍ତ୍ତନ ମଧ୍ୟରେ ଭକ୍ତଙ୍କ ସଙ୍ଗରେ ଅପୂର୍ବ ନୃତ୍ୟ ସ୍ମରଣ କରି କରି ସମସ୍ତେ ନିଜ ନିଜ ଗୃହକୁ ଫେରୁଅଛନ୍ତି ।

ଆଜି ଭାଦ୍ରବ, କୃଷ୍ଣପ୍ରତିପଦ । ରାତ୍ରି ଜ୍ୟୋସ୍ନାମୟୀ—ଯେପରି ହସୁଅଛି । ଠାକୁର ଶ୍ରୀରାମକୃଷ୍ଣ, ଭବନାଥ, ହାଜରା ପ୍ରଭୃତି ଭକ୍ତଙ୍କ ସଙ୍ଗରେ—ଗାଡ଼ିରେ ଦକ୍ଷିଣେଶ୍ୱରାଭିମୁଖରେ ଯାଉଅଛନ୍ତି ।



# ଷଷ୍ଠ ପରିଚ୍ଛେଦ

## (୧)

## ଠାକୁର ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱର ମନ୍ଦିରରେ ରାମ, ବାବୁରାମ, ମାଷ୍ଟର, ଚୁନୀ, ଅଧର, ଭବନାଥ ନିରଞ୍ଜନ ପ୍ରଭୃତି ଭକ୍ତଙ୍କ ସଙ୍ଗରେ ଶ୍ରୀମୁଖକଥିତ ଚରିତାମୃତ । ଘୋଷପଡ଼ା ଓ କର୍ତ୍ତାଭଜାଙ୍କର ମତ ।

ଠାକୁର ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱର ମନ୍ଦିରରେ ସେହି ଘରେ ନିଜ ଆସନରେ ଛୋଟ ଖଟଟି ଉପରେ ଭକ୍ତଙ୍କ ସଙ୍ଗରେ ବସିଛନ୍ତି । ସମୟ ଏଗାରଟା ହେବ, ବର୍ତ୍ତମାନ ମଧ ତାଙ୍କର ସେବା ହୋଇନାହିଁ ।

ଗତକାଲି ଶନିବାର ଦିନ ଠାକୁର ଶ୍ରୀଯୁକ୍ତ ଅଧର ସେନଙ୍କ ଘରକୁ ଭକ୍ତଙ୍କ ସଙ୍ଗରେ ଶୁଭାଗମନ କରିଥିଲେ । ହରିନାମ — କୀର୍ତ୍ତନ ମହୋତ୍ସବ କରି ସମସ୍ତଙ୍କୁ ଧନ୍ୟ କରିଥିଲେ । ଆଜି ଏଠାରେ ଶ୍ୟାମଦାସଙ୍କର କୀର୍ତ୍ତନ ହେବ । ଠାକୁରଙ୍କ କୀର୍ତ୍ତନାନନ୍ଦ ଦେଖିବା ପାଇଁ ଅନେକ ଭକ୍ତଙ୍କ ସମାଗମ ହେଉଅଛି ।

ପ୍ରଥମେ ବାବୁରାମ, ମାଷ୍ଟର, ଶ୍ରୀରାମପୁରର ବ୍ରାହ୍ମଣ, ମନମୋହନ, ଭବନାଥ, କିଶୋରୀ, ତତ୍‌ପରେ ଚୁନୀଲାଲ, ହରିପଦ ପ୍ରଭୃତି; କ୍ରମେ ମୁଖାର୍ଜୀ ଭ୍ରାତୃଦ୍ୱୟ, ରାମ, ସୁରେନ୍ଦ୍ର, ତାରକ, ଅଧର, ନିରଞ୍ଜନ । ଲାଟୁ, ହରିଶ ଓ ହାଜରା ଆଜିକାଲି ଦକ୍ଷିଣେଶ୍ୱରରେ ରହନ୍ତି । ଶ୍ରୀଯୁକ୍ତ ରାମଲାଲ ମା' କାଳୀଙ୍କର ସେବା କରନ୍ତି ଓ ଠାକୁରଙ୍କର ତତ୍ତ୍ୱାବଧାନ କରନ୍ତି । ଶ୍ରୀଯୁକ୍ତ ରାମ ଚକ୍ରବର୍ତ୍ତୀ ବିଷ୍ଣୁମନ୍ଦିରରେ ସେବା କରନ୍ତି । ସେ ମଧ ମଝିରେ ମଝିରେ ଆସି ଠାକୁରଙ୍କର ତତ୍ତ୍ୱାବଧାନ କରନ୍ତି । ଲାଟୁ, ହରିଶ ଠାକୁରଙ୍କର ସେବା କରନ୍ତି । ଆଜି ରବିବାର ଭାଦ୍ରବ କୃଷ୍ଣ ଦ୍ୱିତୀୟା ତିଥି । ୭ ତାରିଖ ସେପ୍ଟେମ୍ବର, ୧୮୮୪ ।

ମାଷ୍ଟର ଆସି ପ୍ରଣାମ କଲାପରେ ଠାକୁର କହୁଛନ୍ତି — "କାହିଁକି, ନରେନ୍ଦ୍ର ଆସିଲା ନାହିଁ ?

ନରେନ୍ଦ୍ର ସେଦିନ ଆସିପାରିନାହାନ୍ତି । ଶ୍ରୀରାମପୁରର ବ୍ରାହ୍ମଣଟି ରାମପ୍ରସାଦଙ୍କର ଗୀତ ବହି ଆଣିଛନ୍ତି ଓ ସେହି ପୁସ୍ତକରୁ ମଝିରେ ମଝିରେ ଗୀତ ପଢ଼ି ଠାକୁରଙ୍କୁ ଶୁଣାଉଛନ୍ତି ।

ଶ୍ରୀରାମକୃଷ୍ଣ (ବ୍ରାହ୍ମଣଙ୍କ ପ୍ରତି) — କାହିଁକି ପଢୁନାହଁ ?

ବ୍ରାହ୍ମଣ — ଗୀତ — ବସନ ପରୋ, ମା' ବସନ ପର, ବସନ ପରୋ ।

ଶ୍ରୀରାମକୃଷ୍ଣ — ଏସବୁ ଗୀତ ରଖ, ଭକ୍ତି ବିରୋଧୀ । ଏପରି ଗୀତ ପଢ଼ ଯେଉଁଥିରେ ଭକ୍ତି ହେବ ।

ବ୍ରାହ୍ମଣ — କେ ଜାନେ କାଲୀ କେମନ ଷଡ଼ ଦର୍ଶନେ ନା ପାୟ ଦର୍ଶନ ।

## ଠାକୁରଙ୍କର 'ଦରଦୀ' । ପରମହଂସ, ବାଉଲ ଓ ସାଇଁ ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—କାଲି ଅଧର ସେନଙ୍କ ଘରେ ଭାବାବସ୍ଥାରେ ପାଦର ଗୋଟିଏ ପାଖରେ ବ୍ୟଥା ହୋଇଥିଲା । ସେଥିପାଇଁ ତ ବାବୁରାମକୁ ସଙ୍ଗରେ ନେଇଯାଏ । ଦରଦୀ !

ଏହା କହି ଠାକୁର ଗୀତ ଗାଉଛନ୍ତି—

ମନେର କଥା କଇବୋ କି ସଇ କଇତେ ମାନା ।
ଦରଦୀ ନଇଲେ ପ୍ରାଣ ବାଁଚେ ନା ।।
ମନେର ମାନୁଷ ହୟ ଯେ ଜନା, ନୟନେ ତା'ର ଯାୟ ଗୋ ଚେନା,
ସେ ଦୁ ଏକ ଜନା, ସେ ଯେ ରସେ ଭାସେ ପ୍ରେମେ ଡୋବେ,
କଚ୍ଛେ ରସେର ବେଚା କେନା । (ଭାବେର ମାନୁଷ)
ମନେର ମାନୁଷ, ମିଲବେ କୋଥା, ବଗଲେ ତା'ର ଛେଁଡ଼ା କାଁଥା;
ଓ ସେ କୟନା ଗୋ କଥା: ଭାବେର ମାନୁଷ ଉଜାନ ପଥେ,
କରେ ଆନାଗୋନା । (ମନେର ମାନୁଷ, ଉଜାନ ପଥେ କରେ ଆନାଗୋନା) ।

ବାଉଲର ଏହିସବୁ ଗୀତ । ପୁଣି ଅଛି—

''ଦରବେଶ ଦାଁଡ଼ାରେ, ସାଧେର କରୋୟା ଧାରୀ,
ଦାଁଡ଼ାରେ ତୋର ରୂପ ନେହାରୀ !

''ଶାକ୍ତ ମତରେ ସିଦ୍ଧକୁ କହନ୍ତି କୌଳ । ବେଦାନ୍ତ ମତରେ କହନ୍ତି ପରମହଂସ । ବାଉଲ ବୈଷ୍ଣବଙ୍କ ମତରେ ସାଇଁ । 'ସାଇଁ ଉପରେ ଆଉ ନାହିଁ' ।''

''ବାଉଲ ସିଦ୍ଧ ହେଲେ ସାଇଁ ହୁଅନ୍ତି । ସେତେବେଳେ ସବୁ ଅଭେଦ । ଅର୍ଦ୍ଧେକ ମାଳା ଗୋ ହାଡ଼, ଅର୍ଦ୍ଧେକ ମାଳା ତୁଳସୀର । 'ହିନ୍ଦୁର ନୀର—ମୁସଲମାନର ପୀର' ।''

## ଆଲେଖ, ବାୟୁର ଖବର, ପୈଠେ, ରସର କାମ, ହାଣ୍ଡି ଓହ୍ଲାଇବା

''ସାଇଁମାନେ କହନ୍ତି—ଆଲେଖ ! ଆଲେଖ ! ବେଦ ମତରେ କହନ୍ତି—ବ୍ରହ୍ମ, ସେମାନେ କହନ୍ତି ଆଲେଖ । ଜୀବାତ୍ମାକୁ କହନ୍ତି—ଆଲେଖ ଆସେ ଆଲେଖ ଯାଏ, ଅର୍ଥାତ୍ ଜୀବାତ୍ମା ଅବ୍ୟକ୍ତରୁ ଆସି ସେଥିରେ ହିଁ ଲୟ ହୁଏ ।''

''ସେମାନେ କହନ୍ତି, ବାୟୁ ବିଷୟରେ ଜାଣ ?''

ଅର୍ଥାତ୍ କୁଳକୁଣ୍ଡଳିନୀ ଜାଗରଣ ହେଲେ ଇଡ଼ା ପିଙ୍ଗଳା ସୁଷୁମ୍ନା ଭିତର ଦେଇ ଯେଉଁ ମହାବାୟୁ ଉଠେ ତାହାର ଖବର !

''ପ୍ରଶ୍ନ କରନ୍ତି, କେଉଁ ପୈଠେରେ ଅଛି ? —ଛଅଟା ପଇଠେ—ଷଡ଼ଚକ୍ର ।''

''ଯଦି କହ ପଞ୍ଚମରେ ଅଛି, ତାହାର ଅର୍ଥ ହେଉଛି, ବିଶୁଦ୍ଧ ଚକ୍ରକୁ ମନ ଉଠିଛି ।''

(ମାଷ୍ଟରଙ୍କ ପ୍ରତି)—''ସେତେବେଳେ ନିରାକାର ଦର୍ଶନ । ଯେପରି ଗୀତରେ ଅଛି ।''

ଏହା କହି ଠାକୁର ଟିକିଏ ସୁର କରି କହୁଅଛନ୍ତି—'ତଦୁର୍ଦ୍ଧରେ ଅଛି ମାଗୋ ଅମ୍ବୁଜ ଆକାଶ । ସେ ଆକାଶ ରୁଦ୍ଧ ହେଲେ ସମସ୍ତ ଆକାଶ ।'

## ପୂର୍ବକଥା

## ବାଉଲ ଓ ଘୋଷପଡ଼ାର କର୍ତ୍ତାଭଜାମାନଙ୍କର ଆଗମନ ।

''ଜଣେ ବାଉଲ ଆସିଥିଲେ । ମୁଁ କହିଲି, 'ତୁମର ରସର କାମ ସବୁ ହୋଇଯାଇଛି ? କରେଇ ଓହ୍ଲାଇଛ ? ରସକୁ ଯେତେ ସିଝାଇବ ସେତେ ତାହା ରିଫାଇନ୍ ହେବ । ପ୍ରଥମରେ ଆଖୁର ରସ, ତା'ପରେ ଗୁଡ଼—ତାହାପରେ ଚିନି ମିଶିରି ପ୍ରଭୃତି । କ୍ରମେ କ୍ରମେ ଆହୁରି ରିଫାଇନ୍ ହେବ ।''

''କରେଇ ଓହ୍ଲାଇବ କେତେବେଳେ ? ଅର୍ଥାତ୍ ସାଧନର ଶେଷ ହେବ କେତେବେଳେ ? —ଯେତେବେଳେ ଇନ୍ଦ୍ରିୟ ଜୟ ହେବ—ଯେପରି ଜୋକ ଉପରେ ଲୁଣ ଦେଲେ ଜୋକ ଆପେ ଖସି ପଡ଼ିଯିବ,—ଇନ୍ଦ୍ରିୟ ସେହିପରି ଶିଥିଳ ହୋଇଯିବ । ରମଣୀଙ୍କ ସଙ୍ଗେ ରହି ନ କରେ ରମଣ ।''

''ସେମାନେ ଅନେକ ରାଧାତତ୍ତ୍ୱର ମତରେ ଚଳନ୍ତି । ପଞ୍ଚତତ୍ତ୍ୱ ନେଇ ସାଧନ କରନ୍ତି । ପୃଥିବୀତତ୍ତ୍ୱ, ଜଳତତ୍ତ୍ୱ, ଅଗ୍ନିତତ୍ତ୍ୱ, ବାୟୁତତ୍ତ୍ୱ, ଆକାଶତତ୍ତ୍ୱ—ମଳ, ମୂତ୍ର, ରଜ, ବୀଜ ଏହିସବୁ ତତ୍ତ୍ୱ । ଏହିସବୁ ସାଧନ ବଡ଼ କୁତ୍ସିତ ସାଧନ; ଯେପରି ପାଇଖାନା ଭିତର ଦେଇ ଘର ଭିତରକୁ ଯିବା ।''

''ଦିନେ ମୁଁ ଅଗଣାରେ ଖାଉଛି । ଜଣେ ଘୋଷପଡ଼ା ମତର ଲୋକ ଆସିଲା । ଆସି କହିଲା, —ତୁମେ ଖାଉଛ, ନା କାହାରିକୁ ଖୁଆଉଛ ?'' ଅର୍ଥାତ୍ ଯିଏ ସିଦ୍ଧ ହୁଏ, ସେ ଦେଖେ ଯେ, ଅନ୍ତରରେ ଭଗବାନ ଅଛନ୍ତି ।

''ଯେଉଁମାନେ ଏହି ମତରେ ସିଦ୍ଧ ହୁଅନ୍ତି, ସେମାନେ ଅନ୍ୟମତର ଲୋକମାନଙ୍କୁ କହନ୍ତି 'ଜୀବ' । ବିଜାତୀୟ ଲୋକ ଥିଲେ କଥା କହିବେ ନାହିଁ । କହନ୍ତି, —ଏଠାରେ 'ଜୀବ' ଅଛନ୍ତି ।''

## ପୂର୍ବକଥା

## ଜନ୍ମଭୂମି ଦର୍ଶନ; ହୃଦୁ ସଙ୍ଗରେ ସରୀପାଥରର ଘରକୁ ଗମନ ।

''ସେ ଦେଶରେ ଏହି ମତର ଜଣକୁ ଦେଖିଛି । ସରୀ (ସରସ୍ୱତୀ) ପାଥର—ସ୍ତ୍ରୀଲୋକ । ଏମାନେ ପରସ୍ପରର ଘରେ ଖାଆନ୍ତି, କିନ୍ତୁ ଅନ୍ୟ ମତର ଲୋକଙ୍କ ଘରେ

ଖାଇବେ ନାହିଁ । ମଲ୍ଲିକମାନେ ସରୀ ପାଥରର ଘରେ ଯାଇ ଖେଳନ୍ତି, ତଥାପି ହୃଦୁର ଘରେ ଖେଳନ୍ତି ନାହିଁ । କହନ୍ତି ସେମାନେ 'ଜୀବ' ।'' (ହାସ୍ୟ) ।

''ମୁଁ ଦିନେ ତା'ର ଘରକୁ ହୃଦୁ ସଙ୍ଗରେ ବୁଲିବାକୁ ଯାଇଥିଲି । ବେଶ୍ ତୁଳସୀ ବଗିଚା କରିଛି । ଚଣା ମୁଡ଼ି ଦେଲେ, ସାମାନ୍ୟ ଖାଇଲି । ହୃଦୁ ବେଶି ଖାଇ ପକାଇଲା, — ତାହା ପରେ ଦେହ ଖରାପ !''

''ସେମାନେ ସିଦ୍ଧାବସ୍ଥାକୁ ସହଜ ଅବସ୍ଥା କହନ୍ତି । ଗୋଟିଏ ଶ୍ରେଣୀର ଲୋକ ଅଛନ୍ତି, ସେମାନେ 'ସହଜ' 'ସହଜ' କହି ଚିତ୍କାର କରନ୍ତି । ସହଜାବସ୍ଥାର ଦୁଇଟି ଲକ୍ଷଣ ବୋଲି କହନ୍ତି । ପ୍ରଥମ ହେଉଛି କୃଷ୍ଣ ଗନ୍ଧ ଦେହରେ ରହିବ ନାହିଁ । ଦ୍ୱିତୀୟ ହେଉଛି — ପଦ୍ମ ଉପରେ ଅଳି ବସିବ, କିନ୍ତୁ ମଧୁ ପାନ କରିବ ନାହିଁ । 'କୃଷ୍ଣଗନ୍ଧ' ନାହିଁ, — ଏହାର ଅର୍ଥ ଈଶ୍ୱରୀୟ ଭାବ ସବୁ ଅନ୍ତରରେ — ବାହାରେ କିଛି ଚିହ୍ନ ନାହିଁ — ଜିତେନ୍ଦ୍ରିୟ ।''

''ସେମାନେ ଠାକୁରପୂଜା, ପ୍ରତିମାପୂଜା, ଏସବୁକୁ ଲାଇକ୍ କରନ୍ତି ନାହିଁ, ଜୀବନ୍ତ ମନୁଷ୍ୟକୁ ମାନନ୍ତି । ତେଣୁ ସେମାନଙ୍କର ଗୋଟିଏ ଶ୍ରେଣୀର ଲୋକଙ୍କୁ କହନ୍ତି କର୍ତ୍ତାଭଜା, ଅର୍ଥାତ୍ ଯେଉଁମାନେ କର୍ତ୍ତାଙ୍କୁ — ଗୁରୁଙ୍କୁ — ଈଶ୍ୱର ଜ୍ଞାନରେ ଭଜନା କରନ୍ତି ଓ ପୂଜା କରନ୍ତି ।''

## ( ୨ )

## ଶ୍ରୀରାମକୃଷ୍ଣ ଓ ସର୍ବଧର୍ମ ସମନ୍ୱୟ ।

### Why all Scriptures-all Religions-are true

ଶ୍ରୀରାମକୃଷ୍ଣ — ଦେଖୁଛ କେତେ ରକମ ମତ ! ମତ, ପଥ । ଅନନ୍ତ ମତ, ଅନନ୍ତ ପଥ !

ଭବନାଥ — ବର୍ତ୍ତମାନ ଉପାୟ !

ଶ୍ରୀରାମକୃଷ୍ଣ — ଗୋଟିକୁ ଜୋର୍ କରି ଧରିବାକୁ ହେବ । ଛାତ ଉପରକୁ ଯିବାକୁ ହେଲେ ପକ୍କା ସିଡ଼ିରେ ଉଠାଯାଏ ଏବଂ ଖଣ୍ଡିଏ ନିଶୁଣି ଦ୍ୱାରା ମଧ ଉଠାଯାଏ, ଦଉଡ଼ି ସାହାଯ୍ୟରେ ଉଠାଯାଏ କିମ୍ବା ଖଣ୍ଡିଏ ବାଉଁଶ ଧରି ଉଠାଯାଏ । କିନ୍ତୁ ଏଥିରେ ଗୋଟିଏ ପାଦ ସେଥିରେ ଗୋଟିଏ ପାଦ ଦେଲେ ହେବ ନାହିଁ । ଗୋଟିଏ ଦୃଢ଼ ଭାବରେ ଧରିବାକୁ ହେବ । ଈଶ୍ୱର ଲାଭ କରିବାକୁ ହେଲେ କୌଣସି ଗୋଟିଏ ପଥକୁ ଜୋର୍ କରି ଧରିବାକୁ ହେବ ।

''ଆଉ ସମସ୍ତ ମତକୁ ଗୋଟିଏ ଗୋଟିଏ ପଥ ବୋଲି ଜାଣିବ । ମୋର ମତ ଠିକ୍, ଅନ୍ୟ ସମସ୍ତଙ୍କର ମିଥ୍ୟା ଏପରି ଜ୍ଞାନ କରିବା ଉଚିତ ନୁହେଁ । ବିଦ୍ୱେଷ ଭାବ ଠିକ୍ ନୁହେଁ ।''

## ମୁଁ କେଉଁ ପଥର ? କେଶବ, ଶଶଧର ଓ ବିଜୟଙ୍କ ମତ ।

''ଆଚ୍ଛା ମୁଁ କେଉଁ ପଥର ? କେଶବ ସେନ୍ କହୁଥିଲେ, ଆପଣ ଆମ୍ଭମାନଙ୍କ ମତର,—ନିରାକାରକୁ ଆସୁଛନ୍ତି । ଶଶଧର କହନ୍ତି, ଏ ଆମ୍ଭମାନଙ୍କର । ବିଜୟ (ଗୋସ୍ୱାମୀ) କହନ୍ତି, ଏ ଆମ୍ଭମାନଙ୍କର ମତର ଲୋକ ।''

ଠାକୁର କଅଣ କହୁଛନ୍ତି ଯେ, ମୁଁ ସବୁ ପଥ ଦେଇ ଭଗବାନଙ୍କ ନିକଟରେ ପହଞ୍ଚିଛି—ତେଣୁ ସବୁ ପଥର ଖବର ଜାଣିଛି ? ଆଉ ସକଳ ଧର୍ମର ଲୋକ ମୋ ନିକଟକୁ ଆସି ଶାନ୍ତି ପାଇବେ ?

ଠାକୁର ପଞ୍ଚବଟୀ ଆଡ଼କୁ ମାଷ୍ଟର ପ୍ରଭୃତି ଜଣେ ଦୁଇଜଣ ଭକ୍ତଙ୍କ ସଙ୍ଗରେ ଯାଉଛନ୍ତି—ମୁହଁ ଧୋଇବେ । ସମୟ ବାରଟା, ଏଥର ଜୁଆର ଆସିବ । ଏହା ଶୁଣି ଠାକୁର ପଞ୍ଚବଟୀ ରାସ୍ତାରେ ଅପେକ୍ଷା କରୁଛନ୍ତି ।

## ଭାବ ମହାଭାବର ଗୁଢ଼ ତତ୍ତ୍ୱ । ଗଙ୍ଗାର ଜୁଆର ଭଙ୍ଗା ଦର୍ଶନ ।

ଭକ୍ତମାନଙ୍କୁ କହୁଛନ୍ତି—ଜୁଆର ଭଙ୍ଗା କିପରି ଆଶ୍ଚର୍ଯ୍ୟ !

''କିନ୍ତୁ ଗୋଟିଏ କଥା ଦେଖ, —ସମୁଦ୍ର ପାଖରେ ନଦୀ ଭିତରେ ଜୁଆର ଭଙ୍ଗା ଖେଳେ । ସମୁଦ୍ର ଠାରୁ ଅନେକ ଦୂର ହେଲେ ନଦୀର ସ୍ରୋତ ଗୋଟିଏ ପଟକୁ ଥାଏ ! ଏହାର କାରଣ କଅଣ ? —ଏହି ଭାବଟିକୁ ଆରୋପ କର । ଯେଉଁମାନେ ଈଶ୍ୱରଙ୍କ ଖୁବ୍ ପାଖରେ କେବଳ ସେହିମାନଙ୍କ ଭିତରେ ଭକ୍ତି, ଭାବ ଏହିସବୁ ହୁଏ, ପୁଣି ଜଣେ ଦୁଇଜଣଙ୍କର (ଈଶ୍ୱର କୋଟିଙ୍କର) ମହାଭାବ, ପ୍ରେମ ମଧ୍ୟ ହୁଏ ।''

(ମାଷ୍ଟରଙ୍କ ପ୍ରତି) ଆଚ୍ଛା, ଜୁଆର ଭଙ୍ଗା କାହିଁକି ହୁଏ ?

ମାଷ୍ଟର—ଇଂରାଜୀ ଜ୍ୟୋତିଷ ଶାସ୍ତ୍ର କହେ, ସୂର୍ଯ୍ୟ ଚନ୍ଦ୍ରର ଆକର୍ଷଣରେ ଏପରି ହୁଏ । ଏହା କହି ମାଷ୍ଟର ତଳେ ଗାର କାଟି ପୃଥିବୀ, ଚନ୍ଦ୍ର ଓ ସୂର୍ଯ୍ୟଙ୍କର ଗତି ବୁଝାଉଛନ୍ତି । ଠାକୁର ଅଳ୍ପକ୍ଷଣ ଦେଖିବା ପରେ କହୁଛନ୍ତି—'ଥାଉ, ଏଥିରେ ମୋର ମୁଣ୍ଡ ବଥାଇ ଯାଉଛି ।

କଥା କହୁ କହୁ ଜୁଆର ଆସିଲା । ଦେଖୁ ଦେଖୁ ଢେଉର ଶବ୍ଦ ହେଲା । ଠାକୁର ମନ୍ଦିରର ତୀରଭୂମି ଆଘାତ କରି ଉତ୍ତର ଦିଗକୁ ଜୁଆର ଚାଲିଗଲା ।

ଠାକୁର ଏକଦୃଷ୍ଟିରେ ଦେଖୁଛନ୍ତି । ଦୂରରୁ ନୌକା ଦେଖି ବାଳକପରି କହି ଉଠିଲେ—ଦେଖ, ଦେଖ, ଏହି ନୌକା ଖଣ୍ଡିକର ଅବସ୍ଥା କଅଣ ହେଉଛି !

ଠାକୁର ମାଷ୍ଟରଙ୍କ ସହିତ କଥା କହୁ କହୁ ପଞ୍ଚବଟୀ ମୂଳରେ ଆସି ପହଞ୍ଚିଲେ। ସଙ୍ଗରେ ଥିବା ଖଣ୍ଡିଏ ଛତାକୁ ପଞ୍ଚବଟୀ ଚଉତରା ଉପରେ ରଖି ଦେଲେ । ନାରାୟଣଙ୍କୁ ସାକ୍ଷାତ ନାରାୟଣ ଜ୍ଞାନରେ ଦେଖନ୍ତି, ତେଣୁ ଖୁବ୍ ଭଲ ପାଆନ୍ତି । ନାରାୟଣ ସ୍କୁଲରେ ପଢ଼ନ୍ତି । ଏଥର ତାଙ୍କରି କଥା କହୁଅଛନ୍ତି ।

## ମାଷ୍ଟରଙ୍କୁ ଶିକ୍ଷା, ଟଙ୍କାର ସଦ୍‌ବ୍ୟବହାର । ନାରାୟଣଙ୍କ ପାଇଁ ଚିନ୍ତା ।

ଶ୍ରୀରାମକୃଷ୍ଣ—ନାରାୟଣର କିପରି ସ୍ୱଭାବ ଦେଖିଛ ? ସମସ୍ତଙ୍କ ସଙ୍ଗରେ ମିଶିପାରେ—ପିଲାବୁଢ଼ା ସମସ୍ତଙ୍କ ସଙ୍ଗରେ ! ବିଶେଷ ଶକ୍ତି ନ ହେଲେ ଏହିଟି ହୁଏନାହିଁ । ଆଉ ସମସ୍ତେ ତାକୁ ଭଲ ପାଆନ୍ତି । ଆଚ୍ଛା, ସେ କଅଣ ପ୍ରକୃତ ସରଳ ?

ମାଷ୍ଟର—ଆଜ୍ଞା, ଖୁବ୍ ସରଳ ବୋଲି ବୋଧହୁଏ ।

ଶ୍ରୀରାମକୃଷ୍ଣ—ସେ କ'ଣ ତୁମ ନିକଟକୁ ଯାଏ ?

ମାଷ୍ଟର—ଆଜ୍ଞା, ଥରେ ଦୁଇଥର ଯାଇଥିଲେ ।

ଶ୍ରୀରାମକୃଷ୍ଣ—ତୁମେ ତାକୁ ଗୋଟିଏ ଟଙ୍କା ଦେବ ? ନା, କାଳୀକୁ କହିବି ?

ମାଷ୍ଟର—ଆଜ୍ଞା, ଭଲକଥା, ମୁଁ ଦେବି ।

ଶ୍ରୀରାମକୃଷ୍ଣ—ଭଲକଥା—ଈଶ୍ୱରଙ୍କଠାରେ ଯେଉଁମାନଙ୍କର ଅନୁରାଗ ଅଛି, ସେମାନଙ୍କୁ ଦେବା ଭଲ । ଟଙ୍କାର ସଦ୍‌ବ୍ୟବହାର ହୁଏ । ସଂସାର କାର୍ଯ୍ୟରେ ସବୁ ଦେଲେ କଅଣ ହେବ ?

କିଶୋରୀଙ୍କର ପିଲାପିଲି ହୋଇଛନ୍ତି । ଦରମା କମ୍—ଚଳେନାହିଁ । ଠାକୁର ମାଷ୍ଟରଙ୍କୁ କହୁଛନ୍ତି—'ନାରାୟଣ କହିଥିଲା, କିଶୋରୀଙ୍କ ପାଇଁ ଗୋଟିଏ କର୍ମ କରିଦେବ । ନାରାୟଣକୁ ଥରେ ମନେ କରାଇଦିଅ ।'

ମାଷ୍ଟର ପଞ୍ଚବଟୀରେ ଠିଆ ହୋଇଛନ୍ତି । ଠାକୁର କିୟତ୍‌କ୍ଷଣ ପରେ ଝାଉଁତଳାରୁ ଫେରିଲେ । ମାଷ୍ଟରଙ୍କୁ କହୁଛନ୍ତି—'ବାହାରେ ଗୋଟିଏ ସପ ପକାଇବାକୁ କହତ । ମୁଁ ପରେ ଯାଉଛି—ଟିକିଏ ଶୋଇବି ।'

ଠାକୁର ଘରେ ପହଞ୍ଚି କହୁଛନ୍ତି—''ତୁମ୍ଭମାନଙ୍କର କାହାରି ଛତାଟି ଆଣିବାକୁ ମନେ ନାହିଁ । (ସମସ୍ତଙ୍କର ହାସ୍ୟ) । ବ୍ୟସ୍ତ ବାଗୀଶ ଲୋକ ନିଜ ପାଖରେ ଥିବା ଜିନିଷକୁ ମଧ୍ୟ ଦେଖିପାରନ୍ତି ନାହିଁ । ଜଣେ ଆଉ ଜଣେ ଲୋକର ଘରକୁ ଟିକିଆରେ ନିଆଁ ଲଗାଇବାକୁ ଯାଇଥିଲା, କିନ୍ତୁ ହାତରେ ଥିବା ଲଣ୍ଠନ ଜଳୁଛି ।

''ଜଣେ ଗାମୁଛା ଖୋଜି ପରେ ଦେଖିଲା ଯେ, ତାହା ନିଜ କାନ୍ଧରେ ରହିଛି ।''

## ଠାକୁରଙ୍କର ମଧ୍ୟାହ୍ନ—ସେବା ଓ ବାବୁରାମାଦି ସାଙ୍ଗୋପାଙ୍ଗ ।

ଠାକୁରଙ୍କ ପାଇଁ ମା' କାଳୀଙ୍କର ଅନ୍ନପ୍ରସାଦ ଅଣାଗଲା । ଠାକୁର ସେବା କରିବେ । ସମୟ ପ୍ରାୟ ଗୋଟାଏ ବାଜିବ । ଆହାରାନ୍ତେ ଟିକିଏ ବିଶ୍ରାମ କରିବେ । ଭକ୍ତମାନେ ତଥାପି ଘରେ ବସିଛନ୍ତି । ବୁଝାଇ କହିବା ପରେ ବାହାରେ ଯାଇ ବସିଲେ । ହରିଶ, ନିରଞ୍ଜନ, ରୋଷେଇଘରକୁ ଯାଇ ପ୍ରସାଦ ପାଇବେ । ଠାକୁର ହରିଶଙ୍କୁ କହୁଛନ୍ତି, ତୁମମାନଙ୍କ ପାଇଁ ଆମ୍ବସଢ଼ା ନେଇଯାଅ ।

ଠାକୁର ଟିକିଏ ବିଶ୍ରାମ କରୁଛନ୍ତି । ବାବୁରାମଙ୍କୁ କହୁଛନ୍ତି, ବାବୁରାମ, ପାଖକୁ ଆ ନା ? ବାବୁରାମ କହିଲେ, ମୁଁ ପାନ ଭାଙ୍ଗୁଛି ।

ଶ୍ରୀରାମକୃଷ୍ଣ—ପାନଭଙ୍ଗା ରଖିଦେ ।

ଠାକୁର ବିଶ୍ରାମ କରୁଛନ୍ତି । ଏଣେ ବକୁଳଗଛ ମୂଳରେ ଓ ପଞ୍ଚବଟୀ ତଳେ ମୁଖାର୍ଜୀମାନେ, ଚୁନୀଲାଲ, ହରିପଦ, ଭବନାଥ, ତାରକ ପ୍ରଭୃତି କେତେଜଣ ଭକ୍ତ ବସିଛନ୍ତି । ତାରକ ଶ୍ରୀବୃନ୍ଦାବନରୁ ଅଳ୍ପଦିନ ହେଲା ଫେରିଛନ୍ତି । ଭକ୍ତମାନେ ତାଙ୍କଠାରୁ ବୃନ୍ଦାବନର ଗଳ୍ପ ଶୁଣୁଛନ୍ତି । ତାରକ ନିତ୍ୟଗୋପାଳଙ୍କ ସହିତ ବୃନ୍ଦାବନରେ ଏତେ ଦିନ ଥିଲେ ।

## (୩)

## ଭକ୍ତଙ୍କ ସଙ୍ଗେ ସଂକୀର୍ତ୍ତନାନନ୍ଦରେ । ଭକ୍ତଙ୍କ ସଙ୍ଗରେ ନୃତ୍ୟ ।

ଠାକୁର ଟିକିଏ ବିଶ୍ରାମ କରିଛନ୍ତି । ନିଜ ସମ୍ପ୍ରଦାୟ ଲୋକଙ୍କୁ ନେଇ ଶ୍ୟାମ ଦାସ ମାଥୁର କୀର୍ତ୍ତନ ଗାଉଛନ୍ତି—

ଗୀତ—"ନାଥ ଦରଶ ସୁଖେ ଇତ୍ୟାଦି—

"ସୁଖମୟ ସାୟର ମରୁଭୂମି ଭେଲ ।
ଜଳଦ ନେହାରଇ, ଚାତକୀ ମରି ଗେଲ ।"

ଶ୍ରୀମତୀଙ୍କର ଏହି ବିରହଦଶା ବର୍ଣ୍ଣନା ଶୁଣି ଠାକୁର ଭାବାବିଷ୍ଟ ହେଉଅଛନ୍ତି । ସେ ଛୋଟ ଖଟଟି ଉପରେ ନିଜ ଆସନରେ ଏବଂ ବାବୁରାମ, ନିରଞ୍ଜନ, ରାମ, ମନମୋହନ, ମାଷ୍ଟର, ସୁରେନ୍ଦ୍ର, ଭବନାଥ ପ୍ରଭୃତି ଭକ୍ତମାନେ ତଳେ ବସିଛନ୍ତି । କିନ୍ତୁ ଗୀତ ଭଲ ଜମୁ ନାହିଁ ।

କୋନ୍ନଗରର ନବାଇ ଚୈତନ୍ୟଙ୍କୁ ଠାକୁର କୀର୍ତ୍ତନ ଗାଇବାକୁ କହିଲେ । ନବାଇ ମନମୋହନଙ୍କ ପିତୃବ୍ୟ । ପେନ୍‌ସନ୍ ପାଇ କୋନ୍ନଗରରେ ଗଙ୍ଗାତୀରରେ ସାଧନ ଭଜନ କରନ୍ତି । ଠାକୁରଙ୍କୁ ପ୍ରାୟ ଦର୍ଶନ କରିବାକୁ ଆସନ୍ତି ।

ନବାଇ ଉଚ୍ଚସ୍ୱରରେ ସଂକୀର୍ତ୍ତନ ଗାଉଛନ୍ତି । ଠାକୁର ଆସନ ତ୍ୟାଗ କରି ନୃତ୍ୟ କରିବାକୁ ଲାଗିଲେ । ସଙ୍ଗେ ସଙ୍ଗେ ନବାଇ ଓ ଭକ୍ତମାନେ ତାଙ୍କୁ ଘେରି ନୃତ୍ୟ ଓ କୀର୍ତ୍ତନ କଲେ । କୀର୍ତ୍ତନ ଖୁବ୍ ଜମିଗଲା । ମହିମାଚରଣ ପର୍ଯ୍ୟନ୍ତ ଠାକୁରଙ୍କ ସଙ୍ଗରେ ନୃତ୍ୟ କରୁଛନ୍ତି ।

କୀର୍ତ୍ତନାନ୍ତେ ଠାକୁର ନିଜ ଆସନରେ ଉପବେଶନ କଲେ । ହରିନାମ ପରେ ଏଥର ଆନନ୍ଦମୟୀ ମାଆଙ୍କ ନାମ କରୁଛନ୍ତି । ଠାକୁର ମତ୍ତ ହୋଇ ମାଆଙ୍କର ନାମ କରୁଛନ୍ତି । ନାମ କରିବା ସମୟରେ ଊର୍ଦ୍ଧ୍ୱ ଦୃଷ୍ଟି ।

ଗୀତ—ଗୋ ଆନନ୍ଦମୟୀ ହୟେ ମା' ଆମାୟ ନିରାନନ୍ଦ କରୋନା ।

ଗୀତ—ଭାବିଲେ ଭାବର ଉଦୟ ହୁଏ ॥
ଯେପରି ଭାବ ସେପରି ଲାଭ, ମୂଳ ଯେ ପ୍ରତ୍ୟୟ ।
ଯେ ଜନ କାଳୀର ଜୀବନ୍ମୁକ୍ତ ନିତ୍ୟାନନ୍ଦମୟ ॥
କାଳୀପଦ ସୁଧାହ୍ରଦେ ଚିତ୍ତ ଯଦି ରହେ ।
ଜପ ଯଜ୍ଞ ପୂଜା ବଳି, କିଛି ତାହା ନୁହେଁ ॥''
ଗୀତ-ତୋଦେର ଖ୍ୟାପାର ହାଟ ବାଜାର ମା (ତାରା) ।
କବ ଗୁନେର କଥା କାର ମା ତୋଦେର ।।
ଗଜ ବିନେ ଗୋ ଆରୋହନେ ଫିରିସ କଦାଚାର ।
ମନି—ମୁକ୍ତା ଫେଲେ ପରିସ୍ ଗଲେ ନରଶିର ହାର ।।
ଶ୍ମଶାନେ—ମଶାନେ ଫିରସ୍ କାର ବା ଧାରିସ୍ ଧାର ।
ରାମପ୍ରସାଦକେ ଭବଘୋରେ କରତେ ହବେ ପାର ।।
ଗୀତ—ଆପନାତେ ଆପନି ଥେକୋ ମନ, ଯେୟୋ ନାକୋ କାରୁ ଘରେ ।
ଯା ଚାବି ତାଇ ବସେ ପାବି, ଖୋଁଜ ନିଜ ଅନ୍ତଃପୁରେ ।।
ଗୀତ—ଯତନେ ହୃଦୟେ ରଖ ଆଦରିଣୀ ଶ୍ୟାମ ମା'ରେ ।
ମନ ତୁ ଦେଖ୍ ଆଉ ମୁଁ ଦେଖେ, ଆଉ କେହି ଯେନ ନ ଦେଖେ ॥

ଠାକୁର ଏହି ଗୀତଟି ଗାଉ ଗାଉ ଦଣ୍ଡାୟମାନ ହେଲେ । ମା'ଙ୍କ ପ୍ରେମରେ ଉନ୍ମତ୍ତପ୍ରାୟ ! 'ଆଦରିଣୀ ଶ୍ୟାମା ମା'ଙ୍କୁ ହୃଦୟରେ ରଖ' ଏହି କଥାଟି ଭକ୍ତମାନଙ୍କୁ ଯେପରି ବାରମ୍ବାର କହୁଅଛନ୍ତି ।

ଠାକୁର ଏଥର ସତେ ଯେପରି ସୁରାପାନ କରି ମତ୍ତ ହୋଇଛନ୍ତି । ନାଚୁ ନାଚୁ ଗୀତ ଗାଉଅଛନ୍ତି—

ମା' କି ମୋର କଳାରେ ।
କଳା ରୂପ ଦିଗମ୍ବରୀ, ହୃଦପଦ୍ମ କରେ ଉଜ୍ଜଳରେ !

ଠାକୁର ଗାଉ ଗାଉ ଖୁବ୍ ଟଳମଟଳ ହେଉଛନ୍ତି ଦେଖି ନିରଞ୍ଜନ ତାଙ୍କୁ ଧରିବାକୁ ଗଲେ । ଠାକୁର ମୃଦୁସ୍ୱରରେ ''ଆରେ ଶାଲା ଛୁଁଅ ନା'' କହି ବାରଣ କରୁଛନ୍ତି । ଠାକୁର ନାଚୁଛନ୍ତି ଦେଖି ଭକ୍ତମାନେ ଠିଆହେଲେ । ଠାକୁର ମାଷ୍ଟରଙ୍କ ହସ୍ତ ଧାରଣ କରି କହୁଛନ୍ତି— 'ଆରେ ଶାଲା ନାଚ୍ ।'

## ବେଦାନ୍ତ —ବାଦୀ ମହିମାଙ୍କର ପ୍ରଭୁଙ୍କ ସଙ୍ଗରେ ସଂକୀର୍ତ୍ତନରେ ନୃତ୍ୟ ଓ ଠାକୁରଙ୍କର ଆନନ୍ଦ ।

ଠାକୁର ନିଜ ଆସନରେ ବସିଛନ୍ତି । ଭାବରେ ଗର୍ଗର ମତୁଆଲା ! ଭାବ ଟିକିଏ ଉପଶମ ହେବାରୁ କହୁଛନ୍ତି—ଓଁ ଓଁ ଓଁ ଓଁ ଓଁ ଓଁ କାଳୀ । ପୁଣି କହୁଛନ୍ତି,

ହୁକା ଟାଣିବି । ଭକ୍ତମାନେ ଅନେକ ଠିଆ ହୋଇଛନ୍ତି । ମହିମାଚରଣ ଠିଆହୋଇ ଠାକୁରଙ୍କୁ ପଙ୍ଖା କରୁଛନ୍ତି ।

ଶ୍ରୀରାମକୃଷ୍ଣ (ମହିମାଙ୍କ ପ୍ରତି)—ଆପଣମାନେ ବସନ୍ତୁ ।

'ଆପଣ ବେଦରୁ କିଛି ଶୁଣାନ୍ତୁ । ମହିମାଚରଣ ଆବୃତ୍ତି କରୁଛନ୍ତି—'ଜୟ ଜଜ୍ମମାନ' ଇତ୍ୟାଦି । ପୁଣି ମହାନିର୍ବାଣତନ୍ତ୍ରରୁ ସ୍ତବ ଆବୃତ୍ତି କରୁଛନ୍ତି—

ଓଁ ନମସ୍ତେ ସତେ ତେ ଜଗତ୍ କାରଣାୟ, ନମସ୍ତେ ଚିତେ ସର୍ବଲୋକାଶ୍ରୟାୟ ।
ନମୋଽଦ୍ୱୈତତତ୍ତ୍ୱାୟ ମୁକ୍ତିପ୍ରଦାୟ, ନମୋ ବ୍ରହ୍ମଣେ ବ୍ୟାପିନେ ଶାଶ୍ୱତାୟ ।।
ତ୍ୱମେକଂ ଶରଣ୍ୟଂ ତ୍ୱମେକଂ ବରେଣ୍ୟଂ, ତ୍ୱମେକଂ ଜଗତ୍କାରଣଂ ବିଶ୍ୱରୂପମ୍ ।
ତ୍ୱମେକଂ ଜଗତ୍କର୍ତ୍ତୃପାତୃପ୍ରହର୍ତ୍ତୃ ତ୍ୱମେକଂ ପରଂ ନିଷ୍କଳଂ ନିର୍ବିକଳ୍ପମ୍ ।।
ଭୟାନାଂ ଭୟଂ ଭୀଷଣଂ ଭୀଷଣାନାଂ ଗତିଃ ପ୍ରାଣିନାଂ ପାବନଂ ପାବନାନାମ୍ ।
ମହୋଚ୍ଚୈଃ ପଦାନାଂ ନିୟନ୍ତୃ ତ୍ୱମେକଂ, ପରେଷାଂ ପରଂରକ୍ଷକଂରକ୍ଷକାନାମ୍ ।।
ବୟଂତ୍ୱାଂ ସ୍ମରାମୋ ବୟଂତ୍ୱାଂଭଜାମୋ, ବୟଂତ୍ୱାଂ ଜଗତ୍ସାକ୍ଷିରୂପଂ ନମାମଃ ।
ସଦେକଂ ନିଧାନଂ ନିରାଲମ୍ବମୀଶଂ, ଭବାମ୍ଭୋଧିପୋତଂ ଶରଣ୍ୟଂ ବ୍ରଜାମଃ ।।

ଠାକୁର ଜୋଡ଼ହାତ କରି ସ୍ତବ ଶୁଣିଲେ । ପାଠାନ୍ତେ ଭକ୍ତି ଭାବରେ ନମସ୍କାର କଲେ । ଭକ୍ତମାନେ ମଧ୍ୟ ନମସ୍କାର କଲେ ।

ଅଧର କଲିକତାରୁ ଆସି ଠାକୁରଙ୍କୁ ପ୍ରଣାମ କଲେ ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—ଆଜି ଖୁବ୍ ଆନନ୍ଦ ହେଲା ! ମହିମା ଚକ୍ରବର୍ତ୍ତୀ ଏ ପଥକୁ ଆସୁଛନ୍ତି । ହରିନାମରେ ଦେଖିଲ କିପରି ଆନନ୍ଦ ! ନା ?

ମାଷ୍ଟର—ଆଜ୍ଞା, ହଁ ।

ମହିମାଚରଣ ଜ୍ଞାନଚର୍ଚ୍ଚା କରନ୍ତି । ସେ ଆଜି ହରିନାମ କରିଛନ୍ତି, ଆଉ କୀର୍ତ୍ତନ ସମୟରେ ନୃତ୍ୟ କରିଛନ୍ତି—ତେଣୁ ଠାକୁର ଆହ୍ଲାଦ କରୁଛନ୍ତି ।

ସନ୍ଧ୍ୟା ଆଗତ ପ୍ରାୟ । ଭକ୍ତମାନେ ଅନେକ କ୍ରମେ କ୍ରମେ ଠାକୁରଙ୍କୁ ପ୍ରଣାମ କରି ବିଦାୟ ଗ୍ରହଣ କଲେ ।

## (୪)

## ପ୍ରବୃତ୍ତି ନା ନିବୃତ୍ତି–ଅଧରଙ୍କ କର୍ମ— ବିଷୟୀର ଉପାସନା ଓ ଚାକିରି ।

ସନ୍ଧ୍ୟା ହେଲା । ଆଲୁଅ ଜାଳିବାବାଲା ଦକ୍ଷିଣର ଲମ୍ବା ବାରଣ୍ଡାରେ ଓ ପଶ୍ଚିମର ଗୋଲାକାର ବାରଣ୍ଡାରେ ଆଲୁଅ ଜଳାଇ ଦେଇଗଲା । ଠାକୁରଙ୍କ ଘରେ ପ୍ରଦୀପ ଜଳା ଗଲା ଓ ଝୁଣା ଦିଆଗଲା । କିୟତ୍କ୍ଷଣ ପରେ ଚନ୍ଦ୍ର ଉଠିଲେ । ମନ୍ଦିର ପ୍ରାଙ୍ଗଣ, ଉଦ୍ୟାନପଥ, ଗଙ୍ଗାତୀର, ପଞ୍ଚବଟୀ, ବୃକ୍ଷଶୀର୍ଷ ଜ୍ୟୋସ୍ନାରେ ହସିଲେ ।

ଠାକୁର ନିଜାସନରେ ବସି ଆବିଷ୍ଟ ହୋଇ ମାଆଙ୍କର ନାମ ଓ ଚିନ୍ତା କରୁଅଛନ୍ତି । ଅଧର ଆସି ବସିଛନ୍ତି । ଘରେ ମାଷ୍ଟର ଓ ନିରଞ୍ଜନ ମଧ୍ୟ ଅଛନ୍ତି । ଠାକୁର ଅଧରଙ୍କ ସହିତ କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ—କି ହେ, ତୁମେ ଏତେବେଳେ ଆସିଲ ! କେତେ କୀର୍ତ୍ତନ ନୃତ୍ୟ ହୋଇଗଲା । ଶ୍ୟାମଦାସଙ୍କର କୀର୍ତ୍ତନ—ରାମଙ୍କର ଓସ୍ତାଦ୍ । କିନ୍ତୁ ମୋତେ ସେତେ ଭଲ ଲାଗିଲା ନାହିଁ, ଉଠିବାକୁ ଇଚ୍ଛା ହେଲାନାହିଁ । ସେ ଲୋକର କଥା ପରେ ଶୁଣିଲି । ଗୋପୀଦାସଙ୍କ ବଦଳିଆ କହିଛି—ମୋ ମୁଣ୍ଡରେ ଯେତେ ବାଳ ସେ ସେତେ ଉପପତ୍ନୀ କରିଛି । (ସମସ୍ତଙ୍କର ହାସ୍ୟ) । ତୁମର କର୍ମ ହେଲା ନାହିଁ ?

ଅଧର ଡେପୁଟି, ତିନିଶହ ଟଙ୍କା ବେତନ ପାଆନ୍ତି । କଲିକତା ମ୍ୟୁନିସ୍‌ପାଲ୍‌ଟିର ଭାଇସ୍-ଚେୟାରମ୍ୟାନ୍‌ଙ୍କ କାମ ପାଇଁ ଦରଖାସ୍ତ କରିଛନ୍ତି—ଦରମା ଏକ ହଜାର ଟଙ୍କା । କାମ ପାଇଁ ଅଧର କଲିକତାର ଅନେକ ବଡ଼ ବଡ଼ ଲୋକଙ୍କ ସହିତ ସାକ୍ଷାତ୍ କରିଥିଲେ ।

## ନିବୃତ୍ତି ହିଁ ଭଲ—ଚାକିରି ପାଇଁ ହୀନବୁଦ୍ଧି ବିଷୟୀର ଉପାସନା ।

ଶ୍ରୀରାମକୃଷ୍ଣ (ମାଷ୍ଟର ଓ ନିରଞ୍ଜନଙ୍କ ପ୍ରତି)—ହାଜରା କହିଥିଲେ ଅଧରଙ୍କ କର୍ମ ହେବ, ସେଥିପାଇଁ ତୁମେ ଟିକିଏ ମା'ଙ୍କୁ କୁହ । ଅଧର ମଧ୍ୟ କହିଥିଲେ । ମୁଁ ମା'ଙ୍କୁ ଟିକିଏ କହିଥିଲି—'ମା', ଏ ତୁମ ପାଖକୁ ଯିବା ଆସିବା କରୁଛି, ଯଦି ହୁଏତ ହେଉ ନା ।' କିନ୍ତୁ ସଙ୍ଗେ ସଙ୍ଗେ ମା'ଙ୍କୁ କହିଥିଲି—'ମା, କି ହୀନବୁଦ୍ଧି ! ଜ୍ଞାନ ଭକ୍ତି ନ ଚାହିଁ ତୁମ ନିକଟରେ ଏହିସବୁ ଚାହୁଁଛି !'

"(ଅଧରଙ୍କ ପ୍ରତି) କାହିଁକି ହୀନବୁଦ୍ଧି ଲୋକମାନଙ୍କ ପାଖକୁ ଏତେ ଯିବାଆସିବା କଲ ? ଏତେ ଦେଖିଲ ଶୁଣିଲ ! —ସାତକାଣ୍ଡ ରାମାୟଣ ପଢ଼ିବା ପରେ, ସୀତା କାହାର ଭାର୍ଯ୍ୟା ! ଅମୁକ ମଲ୍ଲିକ ହୀନବୁଦ୍ଧି । ମୋତେ ମାହେଶକୁ ନେଇ ଯାଇଥିଲା, କିନ୍ତୁ ଅନ୍ୟ ଯାତ୍ରୀମାନେ ଯାଉଥିବା ନୌକାରେ ଯିବାକୁ ବନ୍ଦୋବସ୍ତ କରିଥିଲା । ଘରଠାରେ ପହଞ୍ଚିବା ମାତ୍ରେ ହୃଦୁକୁ କହିଲା, —ହୃଦୁ ଗାଡ଼ି ରଖିଛ ?"

ଅଧର—ସଂସାର କରିବାକୁ ଗଲେ ଏହିସବୁ ନ କଲେ ଚଳେ ନାହିଁ । ଆପଣ ତ ବାରଣ କରିନାହାନ୍ତି ?

## ଉନ୍ମାଦ ପରେ ବେତନ ବହିରେ ସ୍ୱାକ୍ଷର ପାଇଁ ଖାଜାଞ୍ଚିଙ୍କର ଆହ୍ୱାନ—କଥା ।

ଶ୍ରୀରାମକୃଷ୍ଣ—ନିବୃତ୍ତି ହିଁ ଭଲ—ପ୍ରବୃତ୍ତି ଭଲ ନୁହେଁ । ଏହି ଅବସ୍ଥା ପରେ ମୋତେ ବେତନ ପାଇଁ ସହି କରାଇବାକୁ ଡକାଗଲା—ଏଥିପାଇଁ ସମସ୍ତେ ଖାଜାଞ୍ଚିଙ୍କ ପାଖରେ

ସହି କରନ୍ତି । ମୁଁ କହିଲି—ଏହା ମୁଁ ପାରିବି ନାହିଁ । ମୁଁ ତ ଚାହୁଁନାହିଁ । ତୁମମାନଙ୍କର ଯଦି ଇଚ୍ଛା ହେଉଛି ଅନ୍ୟ କାହାକୁ ଦିଅ ।

"**ଏକମାତ୍ର ଈଶ୍ୱରଙ୍କର ଦାସ** ! ପୁଣି କାହାର ଦାସ ହେବି ?"

'ମଲ୍ଲିକ, ମୋର ଖାଇବାକୁ ଡେରି ହେବ ବୋଲି, ରୋଷେଇଆ ବ୍ରାହ୍ମଣ ଠିକ୍ କରିଦେଇଥିଲା । ମାସିକ ଏକଟଙ୍କା ଦରମା ଦେଉଥିଲା, ସେତେବେଳେ ମୋତେ ଲଜ୍ଜାବୋଧ ହେଲା । ଡାକି ପଠାଇଲେ ଦୌଡ଼ି ଯିବାକୁ ପଡୁଥିଲା-ନିଜ ତରଫରୁ ଗଲେ ସେ ଅଲଗା କଥା ।'

"ହୀନବୁଦ୍ଧି ଲୋକର ଉପାସନା । ସଂସାରରେ ଏହିସବୁ—ଆଉ ମଧ୍ୟ ଅନେକ କଥା !"

## ପୂର୍ବକଥା—ଉନ୍ମାଦ ପରେ ଠାକୁରଙ୍କର ପ୍ରାର୍ଥନା । ସନ୍ତୋଷ ।

"ଏହି ଅବସ୍ଥା ଯେତେବେଳେ ହେଲା, ସଂସାରରେ ବିଭିନ୍ନ ରକମ ଦେଖି ସଙ୍ଗେ ସଙ୍ଗେ ମାଆଙ୍କୁ କହିଲି—ମା', ଏଥର ମୋଡ଼ ଫେରାଇ ଦିଅ ! —ସୁଧାମୁଖୀର ରାନ୍ଧଣା—ଆଉ ନୁହେଁ ଆଉ ନୁହେଁ ଖାଇ ମୋତେ କାନ୍ଦ ଲାଗେ !" (ସମସ୍ତଙ୍କର ହାସ୍ୟ) ।

## ବାଲ୍ୟ—କାମାରପୁକୁରରେ ଈଶ୍ୱର ଘୋଷାଲ ଡେପୁଟୀକୁ ଦର୍ଶନ କରିବା କଥା ।

ଶ୍ରୀରାମକୃଷ୍ଣ—ଯାହାର କର୍ମ କରୁଛ ତାହାରି କର । ଲୋକେ ପଚାଶ ଟଙ୍କା ଶହେ ଟଙ୍କା ଦରମା ପାଇଁ ଲାଳାୟିତ ! ତୁମେ ତିନିଶ ଟଙ୍କା ପାଉଛ । ସେ ଦେଶରେ ଜଣେ ଡେପୁଟୀକୁ ଦେଖିଥିଲି । ଈଶ୍ୱର ଘୋଷାଲ । ମୁଣ୍ଡରେ ପଗଡ଼ି—ସମସ୍ତେ ଦେଖି ଭୟରେ ଥରହର ! ପିଲାବେଳେ ଦେଖିଥିଲି । ଡେପୁଟୀ କ'ଣ କମ୍ ଲୋକ !

"ଯାହାର କାମ କରୁଛ, ତାହାରି କର ! ଜଣଙ୍କ ପାଖରେ ଚାକିରି କରି ମନ ଖରାପ ହୋଇଯାଏ, ପୁଣି ପାଞ୍ଚଜଣଙ୍କର !"

## ଚାକିରିର ନିନ୍ଦା । ଶମ୍ଭୁ ଓ ମଥୁରଙ୍କ ଧନର ଆଦର । ନରେନ୍ଦ୍ର ହେଡ୍‌ମାଷ୍ଟର ।

"ଜଣେ ସ୍ତ୍ରୀଲୋକ ଜଣେ ମୁସଲମାନ ପ୍ରତି ଆସକ୍ତ ହୋଇ, ତାହା ସଙ୍ଗରେ ଆଳାପ କରିବା ପାଇଁ ଡାକିଥିଲା । ମୁସଲମାନଟି ସାଧୁ ଲୋକ ଥିଲା, ସେ କହିଲା, —ମୁଁ ପରିସ୍ରା କରିବି, ମୋର ବଦନା (ପରିସ୍ରା କରିବା ପାତ୍ର) ଆଣିବାକୁ ଯାଉଛି । ସ୍ତ୍ରୀଲୋକଟି କହିଲା,—ତାହା ଏହିଠାରେ ହିଁ ହେବ, ମୁଁ ବଦନା ଦେବି । ସେ କହିଲା; —ତାହା ହେବ ନାହିଁ । ମୁଁ ଯେଉଁ ବଦନା ପାଖରେ ଥରେ ଲଜ୍ଜା ତ୍ୟାଗ କରିଛି, ସେହି ବଦନା ବ୍ୟବହାର କରିବି,—ଅନ୍ୟ ନୂତନ ବଦନା ପାଖରେ ନିର୍ଲ୍ଲଜ୍ଜ ହେବି ନାହିଁ । ଏହା କହି ସେ ଚାଲିଗଲା । ସ୍ତ୍ରୀଲୋକଟିର ମଧ୍ୟ ଚେତନା ହେଲା । ସେ ବଦନାର ଅର୍ଥ ବୁଝିଲା ଉପପତି ।"

ନରେନ୍ଦ୍ର ପିତୃବିୟୋଗ ପରେ ବଡ଼ କଷ୍ଟରେ ପଡ଼ିଛନ୍ତି । ମା' ଓ ଭାଇମାନଙ୍କର ଭରଣପୋଷଣ ପାଇଁ ସେ କାର୍ଯ୍ୟକର୍ମ ଖୋଜୁଅଛନ୍ତି । ବିଦ୍ୟାସାଗରଙ୍କ ନୌବଜାର ସ୍କୁଲରେ କିଛିଦିନ ହେଡ୍‌ମାଷ୍ଟର ଭାବରେ କାମ କରିଥିଲେ ।

ଅଧର—ଆଚ୍ଛା, ନରେନ୍ଦ୍ର କର୍ମ କରିବେ କି ନାହିଁ ?

ଶ୍ରୀରାମକୃଷ୍ଣ—ହଁ ସେ କରିବ । ମା' ଓ ଭାଇମାନେ ଅଛନ୍ତି ।

ଅଧର—ଆଚ୍ଛା, ନରେନ୍ଦ୍ରଙ୍କର ପଚାଶ ଟଙ୍କା ହେଲେ ଚଳିବ, ଶହେ ଟଙ୍କାରେ ମଧ୍ୟ ଚଳିବ । ସେ ଶହେ ଟଙ୍କା ପାଇଁ ଚେଷ୍ଟା କରିବେ କି ନାହିଁ ?

ଶ୍ରୀରାମକୃଷ୍ଣ—ବିଷୟୀମାନେ ଧନର ଆଦର କରନ୍ତି, —ମନେ କରନ୍ତି, ଏପରି ଜିନିଷ ଆଉ ହେବନାହିଁ ! ଶମ୍ଭୁ କହିଲା—'ଏହିସବୁ ବିଷୟ ସମ୍ପତ୍ତି ତାଙ୍କ ପାଦପଦ୍ମରେ ଦେଇଯିବି, ଏହି ଇଚ୍ଛା ।' ସେ କଅଣ ବିଷୟ ଚାହାନ୍ତି ? ସେ ଚାହାନ୍ତି ଜ୍ଞାନ, ଭକ୍ତି, ବିବେକ, ବୈରାଗ୍ୟ ।

''ଗହଣା ଚୋରି ସମୟରେ ମଥୁରବାବୁ କହିଲେ—'ଆହେ ଠାକୁର ! ତୁମେ ଗହଣା ରକ୍ଷା କରିପାରିଲ ନାହିଁ ? ହଂସେଶ୍ୱରୀ କିପରି ରକ୍ଷା କରିଥିଲେ' !''

## ସନ୍ନ୍ୟାସୀଙ୍କର କଠିନ ନିୟମ । ମଥୁରଙ୍କର ତାଲୁକ ଲେଖିଦେବାର ପରାମର୍ଶ ।

''ଖଣ୍ଡେ ତାଲୁକ ମୋ ନାମରେ ଲେଖିଦେବେ (ମଥୁରବାବୁ) କହିଥିଲେ । ମୁଁ କାଳୀମନ୍ଦିରରେ ଶୁଣିଲି । ମଥୁରବାବୁ ଆଉ ହୃଦୁ ମିଳି ପରାମର୍ଶ କଲେ । ମୁଁ ଆସି ମଥୁରବାବୁଙ୍କୁ କହିଲି,—ଦେଖ, ଏପରି ବୁଦ୍ଧି କର ନାହିଁ । —ସେଥିରେ ମୋର ବଡ଼ କ୍ଷତି ହେବ !''

ଅଧର—ଯାହା କହୁଛନ୍ତି, ସୃଷ୍ଟି ପରଠାରୁ ଖୁବ୍ ହେଲେ ଛଅ ସାତଟି ଦେଖାଯାଇଛି ।

ଶ୍ରୀରାମକୃଷ୍ଣ—କାହିଁକି, ତ୍ୟାଗୀ କଅଣ ନାହାନ୍ତି ? ଐଶ୍ୱର୍ଯ୍ୟ ତ୍ୟାଗ କଲେ ହିଁ ଲୋକେ ଜାଣିପାରନ୍ତି । ଏପରି ଅଛି—ଲୋକେ ଜାଣନ୍ତି ନାହିଁ । ପଶ୍ଚିମରେ ନାହିଁ ?

ଅଧର—କଲିକତାରେ ଜଣଙ୍କୁ ଜାଣେ—**ଦେବେନ୍ଦ୍ର ଠାକୁର** ।

ଶ୍ରୀରାମକୃଷ୍ଣ—କଅଣ କହୁଛ—ସେ ଯାହା ଭୋଗ କରିଛି, ଏପରି କିଏ କରିଛି ! —ଯେତେବେଳେ ମଥୁରବାବୁଙ୍କ ସଙ୍ଗରେ ତାଙ୍କର ଘରକୁ ଗଲି, ଦେଖିଲି, ଛୋଟ ଛୋଟ ପିଲା ଅନେକ—ଡାକ୍ତର ଆସି ଔଷଧ ଲେଖି ଦେଉଛି । ଯାହାର ଆଠଟି ପୁତ୍ର କନ୍ୟା, ସେ ଈଶ୍ୱର ଚିନ୍ତା କରିବ ନାହିଁ ତ କିଏ କରିବ ? ଏତେ ଐଶ୍ୱର୍ଯ୍ୟ ଭୋଗ କରିବା ପରେ ଯଦି ଈଶ୍ୱର ଚିନ୍ତା ନକରେ, ଲୋକେ କହନ୍ତେ , ଧିକ୍ !

ନିରଞ୍ଜନ—ଦ୍ୱାରକାନାଥ ଠାକୁରଙ୍କର ଧାର ସେ ସବୁ ଶୋଧ କରିଥିଲେ ।

ଶ୍ରୀରାମକୃଷ୍ଣ—ରଖିଦେ ସେ ସବୁ କଥା ! ଆଉ ଜଳା ନା ! କ୍ଷମତା ଥାଇ ଯେ ବାପର ଧାର ପରିଶୋଧ କରେ ନାହିଁ, ସେ କ'ଣ ମନୁଷ୍ୟ ?

''ତେବେ ସଂସାରୀମାନେ ଏକାବେଳକେ ବୁଡ଼ି ରହିଥାଆନ୍ତି, ସେମାନଙ୍କ ତୁଳନାରେ ଖୁବ୍ ଭଲ— ସେମାନଙ୍କର ଶିକ୍ଷା ହେବ ।''

''ଠିକ୍ ଠିକ୍ ତ୍ୟାଗୀ ଭକ୍ତ ଆଉ ସଂସାରୀ ଭକ୍ତ ଅନେକ ତଫାତ୍ । ଠିକ୍ ଠିକ୍ ସନ୍ନ୍ୟାସୀ— ଠିକ୍ ଠିକ୍ ତ୍ୟାଗୀ ଭକ୍ତ— ମହୁମାଛି ପରି । ମହୁମାଛି ଫ୍-ଲ ବ୍ୟତୀତ ଆଉ କୌଣସିଥିରେ ବସେନାହିଁ । ମଧୁପାନ ବ୍ୟତୀତ କିଛି ପାନ କରିବ ନାହିଁ । ସଂସାରୀ ଭକ୍ତ ସାଧାରଣ ମାଛି ପରି, ସନ୍ଦେଶରେ ବସୁଛି, ଆଉ ପଚା ଘାଆରେ ମଧ୍ୟ ବସୁଛି ! ବେଶ୍ ଈଶ୍ୱରଙ୍କ ଭାବରେ ରହିଛି, ପୁଣି କାମିନୀ-କାଞ୍ଚନ ନେଇ ମତ୍ତ ହୁଏ ।''

''ଠିକ୍ ଠିକ୍ ତ୍ୟାଗୀ ଭକ୍ତ ଚାତକ ପରି । ଚାତକ ସ୍ୱାତୀ ନକ୍ଷତ୍ରର ମେଘର ଜଳ ବ୍ୟତୀତ ଆଉ ଅନ୍ୟ ଜଳ ପିଇବ ନାହିଁ ! —ସାତ ସମୁଦ୍ର ନଦୀ ଭରା ! ସେ ଅନ୍ୟଜଳ ପିଇବ ନାହିଁ ! କାମିନୀ-କାଞ୍ଚନ ପାଖରେ ରଖିବ ନାହିଁ, କାଳେ ଆସକ୍ତି ହେବ !''

## (୫)

## ଚୈତନ୍ୟଦେବ, ଠାକୁର ଶ୍ରୀରାମକୃଷ୍ଣ ଓ ଲୋକମାନ୍ୟ ।

ଅଧର— ଚୈତନ୍ୟ ମଧ୍ୟ ଭୋଗ କରିଥିଲେ ।

ଶ୍ରୀରାମକୃଷ୍ଣ (ଆଶ୍ଚର୍ଯ୍ୟ ହୋଇ)— କଅଣ ଭୋଗ କରିଥିଲେ ?

ଅଧର— କେତେବଡ଼ ପଣ୍ଡିତ ! କେତେ ସମ୍ମାନ !

ଶ୍ରୀରାମକୃଷ୍ଣ— ଅନ୍ୟମାନଙ୍କ ପକ୍ଷରେ ସମ୍ମାନ । ତାଙ୍କ ପକ୍ଷରେ କିଛି ନୁହେଁ ।

''ତୁମେ ମୋତେ ମାନ, ଆଉ ନିରଞ୍ଜନ ମାନେ, କିନ୍ତୁ ମୋ ପକ୍ଷରେ ଦୁହେଁ ଏକ— ସତ୍ୟ କରି କହୁଛି । ଜଣେ ଟଙ୍କାବାଲା ଲୋକ ହାତରେ ରହିବ, ଏପରି ଭାବ ମୋ ମନକୁ ଆସେନାହିଁ । ମନମୋହନ କହିଲା, —ସୁରେନ୍ଦ୍ର କହିଛି, ରାଖାଲ* ମୋ ପାଖରେ ରହେ, ତେଣୁ ରାଖାଲର ପିତା ନାଲିଶ କରିପାରନ୍ତି । ମୁଁ କହିଲି, କିଏରେ ସେ ସୁରେନ୍ଦ୍ର ? ଯାହାର ସତରଞ୍ଜି ଆଉ ତକିଆ ଏଠାରେ ଅଛି ! ଆଉ ଯେ ଟଙ୍କା ଦିଏ ?

ଅଧର— ଦଶଟଙ୍କା କରି ପରା ମାସିକ ଦିଅନ୍ତି ?''

ଶ୍ରୀରାମକୃଷ୍ଣ— ଦଶଟଙ୍କାରେ ତ ଦୁଇମାସ ଚଳିବ । ଭକ୍ତମାନେ ଏଠାରେ ରହନ୍ତି— ତେଣୁ ଭକ୍ତସେବା ପାଇଁ ଦିଏ । ଏହା ତା'ର ପୁଣ୍ୟ, ମୋର କଅଣ ? ମୁଁ ଯେ ରାଖାଲ, ନରେନ୍ଦ୍ର ଓ ଅନ୍ୟମାନଙ୍କୁ ଭଲପାଏ, ତାହା କି କୌଣସି ନିଜର ସ୍ୱାର୍ଥ ପାଇଁ ?

ମାଷ୍ଟର— ଆପଣଙ୍କର ସ୍ନେହ ମାଆର ସ୍ନେହ ପରି ।

ଶ୍ରୀରାମକୃଷ୍ଣ— ତଥାପି ପୁଅ ଚାକିରି କରି ପୋଷିବ ବୋଲି ମା' ଅନେକ କିଛି କରେ । କିନ୍ତୁ ମୁଁ ଏମାନଙ୍କୁ ଯେ ଭଲପାଏ, ସାକ୍ଷାତ୍ ନାରାୟଣ ଜ୍ଞାନରେ ! ଏହା କେବଳ ମୋ ମୁହଁର କଥା ନୁହେଁ ।

* ରାଖାଲ ସେତେବେଳେ ନା'ବାଳକ ଥିଲେ ।

## ଠିକ୍ ଠିକ୍ ତ୍ୟାଗୀର ଭାର ଈଶ୍ୱର ନିଅନ୍ତି । 'ଅନନ୍ୟାଶ୍ଚିନ୍ତ ୟନ୍ତଃ'

ଶ୍ରୀରାମକୃଷ୍ଣ (ଅଧରଙ୍କ ପ୍ରତି)—ଶୁଣ ! ଆଲୁଅ ଜାଳିଲେ ଝଡ଼ିପୋକର ଅଭାବ ହୁଏ ନାହିଁ ! ତାଙ୍କୁ ଲାଭ କଲେ ସେ ସବୁ ଯୋଗାଡ଼ କରିଦିଅନ୍ତି—କୌଣସି ଅଭାବ ରଖନ୍ତି ନାହିଁ । ସେ ହୃଦୟ ମଧ୍ୟକୁ ଆସିଲେ ସେବା କରିବାର ଲୋକ ଅନେକ ଆସି ପହଞ୍ଚନ୍ତି ।

''ଜଣେ ବାଳକ ସନ୍ନ୍ୟାସୀ ଗୃହସ୍ଥ ଘରକୁ ଭିକ୍ଷା କରିବାକୁ ଯାଇଥିଲା । ସେ ଆଜନ୍ମ ସନ୍ନ୍ୟାସୀ । ସଂସାରର ବିଷୟ କିଛି ଜାଣେ ନାହିଁ । ଗୃହସ୍ଥର ଗୋଟିଏ ଯୁବତୀ କନ୍ୟା ଆସି ଭିକ୍ଷା ଦେଲା । ସନ୍ନ୍ୟାସୀ କହିଲା, ମା' ଏହାର ବୁକୁରେ କ'ଣ ବଥ ହୋଇଛି ? କନ୍ୟାଟିର ମା' କହିଲା, ନା ବାବା ! ତାହାର ପେଟରେ ପିଲା ହେବ ବୋଲି ଈଶ୍ୱର ସ୍ତନ କରିଦେଇଛନ୍ତି—ଏହି ସ୍ତନର ଦୁଧ ପିଲା ଖାଇବ । ସନ୍ନ୍ୟାସୀ ସେତେବେଳେ କହିଲା, ତେବେ ଏତେ ଭାବନା କାହିଁକି ? ମୁଁ ଆଉ କାହିଁକି ଭିକ୍ଷା କରିବି ? ଯେ ମୋତେ ସୃଷ୍ଟି କରିଛନ୍ତି, ସେ ମୋତେ ଖାଇବାକୁ ଦେବେ ।''

''ଶୁଣ ! ଯେଉଁ ସ୍ତ୍ରୀ ତା'ର ଉପପତି ପାଇଁ ସବୁ ତ୍ୟାଗ କରି ଆସିଲା, ଦରକାର ପଡ଼ିଲେ ସେ ଜୋର କରି ଉପପତିକୁ କହିବ, ତୁମେ ମୋତେ ଖୁଆଇବାକୁ ପିଆଇବାକୁ ବାଧ୍ୟ ।''

## ତୋତାପୁରୀଙ୍କ ଗଳ୍ପ—ରାଜାଙ୍କର ସାଧୁସେବା । କାଶୀର ଦୁର୍ଗାମନ୍ଦିର ନିକଟରେ ନାନକପନ୍ଥୀ ମଠରେ ଠାକୁରଙ୍କର ମହନ୍ତ ଦର୍ଶନ ୧୮୬୮ ଖ୍ରୀଷ୍ଟାବ୍ଦ ।

''ଲଙ୍ଗୁଳୀ କହିଲେ, ଜଣେ ରାଜା ସୁନାର ଥାଳି, ସୁନାର ଗ୍ଲାସ୍ ଦେଇ ସାଧୁମାନଙ୍କୁ ଖୁଆଇଲେ । କାଶୀ ମଠରେ ଦେଖିଲି, ମହନ୍ତଙ୍କର କେତେ ସମ୍ମାନ—ବଡ଼ ବଡ଼ ଧନୀଲୋକ ହାତ ଯୋଡ଼ି ଠିଆହୋଇଛନ୍ତି, କହୁଅଛନ୍ତି, କଅଣ ଆଜ୍ଞା !''

''ଠିକ୍ ଠିକ୍ ସାଧୁ—ଠିକ୍ ଠିକ୍ ତ୍ୟାଗୀ—ସୁନାର ଥାଳି ଚାହେଁନାହିଁ । ତେବେ ଈଶ୍ୱର ତାଙ୍କର କୌଣସି ଅଭାବ ରଖନ୍ତି ନାହିଁ । ତାଙ୍କୁ ପାଇବାକୁ ହେଲେ ଯାହା ଯାହା ଦରକାର ସେସବୁ ଯୋଗାଡ଼ କରିଦିଅନ୍ତି । (ସମସ୍ତେ ନିଃଶବ୍ଦ) ।''

ଶ୍ରୀରାମକୃଷ୍ଣ—ଆପଣ ତ ହାକିମ—କଅଣ କହିବି ! ଯାହା ଭଲ ବୁଝିବ ତାହା କରିବ । ମୁଁ ମୂର୍ଖ ।

ଅଧର (ସହାସ୍ୟ, ଭକ୍ତମାନଙ୍କୁ)—ଠାକୁର ମୋତେ ପରୀକ୍ଷା କରୁଛନ୍ତି ।

ଶ୍ରୀରାମକୃଷ୍ଣ (ସହାସ୍ୟ)—ନିବୃତ୍ତି ହିଁ ଭଲ । ଦେଖୁନା, ମୁଁ ସ୍ୱାକ୍ଷର କଲି ନାହିଁ ଈଶ୍ୱର ହିଁ ବସ୍ତୁ ଆଉ ସବୁ ଅବସ୍ତୁ ।

ହାଜରା ଆସି ଭକ୍ତଙ୍କ ପାଖରେ ତଳେ ବସିଲେ । ହାଜରା କେତେବେଳେ 'ସୋଽହଂ ସୋଽହଂ' କରନ୍ତି । ଲାଟୁ ପ୍ରଭୃତି ଭକ୍ତମାନଙ୍କୁ କହନ୍ତି, 'ତାଙ୍କୁ ପୂଜା କରି କଅଣ ହେବ ! —ତାଙ୍କରି ଜିନିଷ ତାଙ୍କୁ ଦେବା !' ଦିନେ ନରେନ୍ଦ୍ରଙ୍କୁ ମଧ୍ୟ ସେ ଏହି କଥା କହିଥିଲେ । ଠାକୁର ହାଜରାଙ୍କୁ କହୁଛନ୍ତି ।

ଶ୍ରୀରାମକୃଷ୍ଣ—ଏହା ତ ଖୁବ୍ ଉଚ୍ଚ କଥା । ବଳିରାଜାଙ୍କୁ ବୃନ୍ଦାବଳୀ କହିଥିଲେ, ତୁମେ ବ୍ରହ୍ମଣ୍ୟଦେବଙ୍କୁ କଅଣ ଧନ ଦେବ ?

''ତୁମେ ଯାହା କହୁଛ, ସେଥିପାଇଁ ସାଧନ ଭଜନ ଦରକାର । ତାଙ୍କର ନାମଗୁଣ ଗାନ ।''

''ଆପଣା ଭିତରେ ଆପଣାକୁ ଦେଖିପାରିଲେ ତ ସବୁ ହୋଇଗଲା ! ଏହା ଦେଖିବା ପାଇଁ ସାଧନା । ପୁଣି ସାଧନା ପାଇଁ ପ୍ରୟୋଜନ ଶରୀର । ଯେତେକ୍ଷଣ ପର୍ଯ୍ୟନ୍ତ ସ୍ୱର୍ଣ୍ଣ ପ୍ରତିମା ଢଳାଇ ନ ହୋଇଛି, ତେତେକ୍ଷଣ ମାଟିର ଛାଞ୍ଚ ଦରକାର, ହୋଇଗଲେ ମାଟିର ଛାଞ୍ଚଟାକୁ ପକାଇ ଦେବାକୁ ହୁଏ । ଈଶ୍ୱର ଦର୍ଶନ ହେଲେ ଶରୀର ତ୍ୟାଗ କରାଯାଏ ।''

''ସେ କେବଳ ଅନ୍ତରରେ ନଥାନ୍ତି । ଅନ୍ତରରେ ବାହାରେ, କାଳୀମନ୍ଦିରରେ ମା' ମୋତେ ଦେଖାଇଲେ ସବୁ ଚିନ୍ମୟ ! ମା' ହିଁ ସବୁ ହୋଇଛନ୍ତି । —ପ୍ରତିମା, ମୁଁ, କୋଶା, କୁଶୀ, ଗଡ଼, ଚୌକାଠ, ମାର୍ବଲ, ପଥର, -ସବୁ ଚିନ୍ମୟ !''

''ଏହିଟି ସାକ୍ଷାତ୍‌କାର କରିବା ପାଇଁ ତାଙ୍କୁ ଡାକିବା, —ସାଧନ ଭଜନ—ତାଙ୍କର ନାମ ଗୁଣ କୀର୍ତ୍ତନ । ଏଥିପାଇଁ ତାଙ୍କୁ ଭକ୍ତି କରିବା । ସେମାନେ (ଲାଟୁ ପ୍ରଭୃତି) ସାଧାରଣ ଭାବରେ ଅଛନ୍ତି—ବର୍ତ୍ତମାନ ଏତେ ଉଚ୍ଚ ଅବସ୍ଥା ହୋଇ ନାହିଁ । ସେମାନେ ଭକ୍ତି ନେଇ ଅଛନ୍ତି । ସେମାନଙ୍କୁ (ସୋଽହଂ ଇତ୍ୟାଦି) କିଛି କହ ନାହିଁ ।''

ପକ୍ଷୀ ଯେପରି ଶାବକମାନଙ୍କୁ ପକ୍ଷାଚ୍ଛାଦନ କରି ରକ୍ଷା କରନ୍ତି, ଦୟାମୟ ଗୁରୁଦେବ ଠାକୁର ଶ୍ରୀରାମକୃଷ୍ଣ ଭକ୍ତମାନଙ୍କୁ ସେହିପରି ରକ୍ଷା କରୁଛନ୍ତି !

ଅଧର ଓ ନିରଞ୍ଜନ ଜଳଯୋଗ କରିବାକୁ ବାରଣ୍ଡାକୁ ଗଲେ । ଜଳଯୋଗ ପରେ ଘର ଭିତରକୁ ଫେରିଲେ । ମାଷ୍ଟର ଠାକୁରଙ୍କ ପାଖରେ ତଳେ ବସିଛନ୍ତି ।

## ଚାରୋଟି ପାସ୍ କରିଥିବା ବ୍ରାହ୍ମ ଯୁବକଙ୍କର କଥା— 'ଏହାଙ୍କ ସଙ୍ଗରେ ପୁଣି ତର୍କ ବିଚାର' ।

ଅଧର (ସହାସ୍ୟ)—ଆମର ଏତେ କଥା ହେଲା, କିନ୍ତୁ ଏ (ମାଷ୍ଟର) ଗୋଟିଏ ମଧ୍ୟ କଥା କହିନାହାନ୍ତି ।

ଶ୍ରୀରାମକୃଷ୍ଣ—କେଶବଙ୍କ ଦଳର ଜଣେ ଚାରିଟା ପାଶ୍ କରିଥିବା ପିଲା (ବରଦା ?) ସମସ୍ତେ ମୋ ସଙ୍ଗରେ ତର୍କ କରୁଛନ୍ତି ଦେଖି ହସେ ଆଉ କହେ, ଏହାଙ୍କ ସଙ୍ଗରେ ପୁଣି ତର୍କ । କେଶବ ସେନ୍ ନିକଟରେ ଆଉଥରେ ତାକୁ ଦେଖିଲି—କିନ୍ତୁ ସେପରି ଚେହେରା ନାହିଁ ।

ରାମ ଚକ୍ରବର୍ତ୍ତୀ—ବିଷ୍ଣୁଘରର ପୂଜାରୀ—ଠାକୁରଙ୍କ ଘରକୁ ଆସିଲେ । ଠାକୁର କହୁଅଛନ୍ତି—''ଦେଖ ରାମ ! ତୁମେ କ'ଣ ଦୟାଲଙ୍କୁ କହିଛ ମିଶ୍ରିର କଥା ? ନା—ନା ଆଉ କହିବାର ଦରକାର ନାହିଁ । ଅନେକ କଥା ହୋଇଯାଇଛି ।''

## ଠାକୁରଙ୍କର ରାତ୍ର ଆହାର ।
## 'ସମସ୍ତଙ୍କ ଜିନିଷ ଖାଇପାରେ ନାହିଁ' ।

ରାତ୍ରରେ ଠାକୁରଙ୍କ ଆହାର ଖଣ୍ଡେ ଦୁଇଖଣ୍ଡ ମା' କାଳୀଙ୍କ ପ୍ରସାଦୀ ଲୁଚି ଓ ଟିକିଏ ସୁଜିର ପାୟସ । ଠାକୁର ତଳେ ଆସନରେ ସେବା କରିବାକୁ ବସିଛନ୍ତି । ପାଖରେ ମାଷ୍ଟର ବସିଛନ୍ତି, ଲାଟୁ ମଧ୍ୟ ଅଛନ୍ତି । ଭକ୍ତମାନେ ସନ୍ଦେଶାଦି ମିଷ୍ଟାନ୍ନ ଆଣିଥିଲେ । ସନ୍ଦେଶ ଟିକିଏ ସ୍ପର୍ଶ କରି ଠାକୁର ଲାଟୁଙ୍କୁ କହୁଛନ୍ତି, 'ଏ କେଉଁ ଶଳାର ସନ୍ଦେଶ ? — କହି ସୁଜି ପାୟସର ଗିନାରୁ ତଳକୁ ପକାଇଦେଲେ । (ମାଷ୍ଟର ଓ ଲାଟୁଙ୍କ ପ୍ରତି) ମୁଁ ଏସବୁ ଜାଣେ । ସେହି ଆନନ୍ଦ ଚାଟାର୍ଜୀଙ୍କ ପୁଅ ଆଣିଛି—ଯିଏ ଘୋଷପଡ଼ାର ସ୍ତ୍ରୀ ନିକଟକୁ ଯାଏ ।'

ଲାଟୁ—ଏ ଗଜା ଦେବି ?

ଶ୍ରୀରାମକୃଷ୍ଣ—କିଶୋରୀ ଆଣିଛି ?

ଲାଟୁ—ଏହା ଆପଣଙ୍କର ଚଳିବ ?

ଶ୍ରୀରାମକୃଷ୍ଣ (ସହାସ୍ୟ)—ହଁ ।

ମାଷ୍ଟର ଇଂରାଜୀ ପଢ଼ା ଲୋକ । ଠାକୁର ତାଙ୍କୁ କହୁଅଛନ୍ତି । —''ସମସ୍ତଙ୍କର ଜିନିଷ ଖାଇପାରେ ନାହିଁ ! ତୁମେ ଏସବୁ ମାନ ?''

ମାଷ୍ଟର—ଆଜ୍ଞା, କ୍ରମେ ସବୁ ମାନିବାକୁ ହେବ ।

ଶ୍ରୀରାମକୃଷ୍ଣ—ହଁ ।

ଠାକୁର ପଶ୍ଚିମ ଦିଗର ଗୋଲ ବାରଣ୍ଡାରେ ହାତ ଧୋଇବାକୁ ଗଲେ । ମାଷ୍ଟର ହାତରେ ଜଳ ଢାଳି ଦେଉଅଛନ୍ତି ।

ଶରତ୍ କାଳ । ଚନ୍ଦ୍ର ଉଦୟ ହେବାରୁ ନିର୍ମଳ ଆକାଶ ଓ ଭାଗୀରଥୀବକ୍ଷ ଝକ୍‌ମକ୍ କରୁଛି । ଭଟ୍ଟା ପଡ଼ିଛି—ଭାଗୀରଥୀ ଦକ୍ଷିଣବାହିନୀ । ମୁଖ ଧୋଉ ଧୋଉ ମାଷ୍ଟରଙ୍କୁ କହୁଅଛନ୍ତି—ତେବେ ନାରାୟଣଙ୍କୁ ଟଙ୍କାଟା ଦେବ ?

ମାଷ୍ଟର—ଯେ ଆଜ୍ଞା, ନିଶ୍ଚୟ ଦେବି ।



# ସପ୍ତମ ପରିଚ୍ଛେଦ

## (୧)

## ଠାକୁର ଦକ୍ଷିଣେଶ୍ୱର ମନ୍ଦିରରେ ନରେନ୍ଦ୍ର ପ୍ରଭୃତି ଭକ୍ତଙ୍କ ସଙ୍ଗରେ । ଜ୍ଞାନ ଅଜ୍ଞାନର ପାର ହୁଅ । ଶଶଧରଙ୍କ ଶୁଷ୍କ ଜ୍ଞାନ ।

ଠାକୁର ଶ୍ରୀରାମକୃଷ୍ଣ ମଧ୍ୟାହ୍ନ ସେବା ପରେ ଦକ୍ଷିଣେଶ୍ୱର ମନ୍ଦିରରେ ଭକ୍ତଙ୍କ ସଙ୍ଗରେ ଘରେ ବିଶ୍ରାମ କରୁଛନ୍ତି । ଆଜି ନରେନ୍ଦ୍ର, ଭବନାଥ ପ୍ରଭୃତି ଭକ୍ତମାନେ କଲିକତାରୁ ଆସିଛନ୍ତି । ମୁଖାର୍ଜୀ ଭ୍ରାତୃଦ୍ୱୟ, ଜ୍ଞାନବାବୁ, ଛୋଟ ଗୋପାଳ, ବଡ଼ କାଳୀ ପ୍ରଭୃତି ମଧ୍ୟ ଆସିଛନ୍ତି । କୋନ୍ନଗରଠାରୁ ତିନି ଚାରିଜଣ ଭକ୍ତ ଆସିଛନ୍ତି । ରାଖାଲ ଶ୍ରୀବୃନ୍ଦାବନରେ ବଳରାମଙ୍କ ସହିତ ଅଛନ୍ତି । ତାଙ୍କୁ ଜ୍ୱର ହୋଇଥିଲା—ସମ୍ବାଦ ଆସିଛି । ଆଜି ରବିବାର ୩୦ ଦିନ ଭାଦ୍ରବ, କୃଷ୍ଣ ଦଶମୀ ତିଥି, ୧୪ ତାରିଖ ସେପ୍ଟେମ୍ବର ୧୮୮୪ ଖ୍ରୀଷ୍ଟାବ୍ଦ ।

ନରେନ୍ଦ୍ର ପିତୃବିୟୋଗ ପରେ ମା' ଓ ଭାଇମାନଙ୍କୁ ନେଇ ବଡ଼ ବ୍ୟତିବ୍ୟସ୍ତ ହୋଇଛନ୍ତି । ସେ ଆଇନ୍ ପରୀକ୍ଷା ପାଇଁ ପ୍ରସ୍ତୁତ ହେବେ ।

ଜ୍ଞାନବାବୁ ଚାରିଟା ପାସ୍ କରିଅଛନ୍ତି ଓ ସରକାରୀ କର୍ମ କରନ୍ତି । ସେ ୧୦ଟା ୧୧ଟା ସମୟରେ ଆସିଛନ୍ତି ।

ଶ୍ରୀରାମକୃଷ୍ଣ (ଜ୍ଞାନବାବୁଙ୍କୁ ଦେଖି)—କିହୋ, ହଠାତ୍ ଯେ ଜ୍ଞାନୋଦୟ !

ଜ୍ଞାନ (ସହାସ୍ୟ)—ଆଜ୍ଞା ଅନେକ ଭାଗ୍ୟରେ ଜ୍ଞାନୋଦୟ ହୁଏ ।

ଶ୍ରୀରାମକୃଷ୍ଣ (ସହାସ୍ୟ)—ତୁମେ ଜ୍ଞାନ ହୋଇ ଅଜ୍ଞାନ କାହିଁକି ? ଓହୋ, ବୁଝିଛି ଯେଉଁଠାରେ ଜ୍ଞାନ, ସେହିଠାରେ ହିଁ ଅଜ୍ଞାନ ! ବଶିଷ୍ଠଦେବ ଏତେ ଜ୍ଞାନୀ, —ପୁତ୍ରଶୋକରେ କାନ୍ଦିଥିଲେ ! ତେଣୁ ତୁମେ ଜ୍ଞାନ ଅଜ୍ଞାନର ପାର ହୁଅ । ଅଜ୍ଞାନ କଣ୍ଟା ପାଦରେ ଫୁଟିଛି—କାଢ଼ିବା ପାଇଁ ଜ୍ଞାନ କଣ୍ଟା ଦରକାର । ତାହାପରେ କଢ଼ାଗଲେ ଦୁଇ କଣ୍ଟାକୁ ପକାଇ ଦିଅନ୍ତି ।

## ନିର୍ଲିପ୍ତ ଗୃହସ୍ଥ । ଠାକୁରଙ୍କର ଜନ୍ମଭୂମିରେ କେଉଟଘର ସ୍ତ୍ରୀ ଲୋକମାନଙ୍କ କାର୍ଯ୍ୟ ଦର୍ଶନ ।

''ଏହି ସଂସାର ଧୋକାର ଟାଟୀ (ସନ୍ଦେହର ବାଡ଼) —ଜ୍ଞାନୀ କହନ୍ତି । ଯେ ଜ୍ଞାନ ଅଜ୍ଞାନର ପାର, ସେ କହନ୍ତି 'ମଜାର କୋଠୀ' । ସେ ଦେଖନ୍ତି, ଈଶ୍ୱର ହିଁ ଜୀବଜଗତ୍, ଏହି ଚତୁର୍ବିଂଶତି ତତ୍ତ୍ୱ ସବୁ ହୋଇଅଛନ୍ତି ।''

''ତାଙ୍କୁ ଲାଭ କଲାପରେ ସଂସାର କରାଯାଇପାରେ । ସେତେବେଳେ ନିର୍ଲିପ୍ତ ହୋଇପାରେ । ସେ ଦେଶରେ (କାମାରପୁକୁର) କେଉଟୁଣୀମାନଙ୍କୁ ଦେଖିଛି—ଢିଙ୍କି

ଦ୍ୱାରା ଚୂଡ଼ା କୁଟନ୍ତି । ଗୋଟିଏ ହାତରେ ଧାନ ଶୁଖାନ୍ତି, ଅନ୍ୟ ହାତରେ ପିଲାକୁ ଦୁଧ ଦିଅନ୍ତି—ଏଣେ ଗରାଖ ସଙ୍ଗରେ କଥା ମଧ୍ୟ କହନ୍ତି,—'ତୁମ ପାଖରେ ଦୁଇଅଣା ପାଉଣା ଅଛି—ଦାମ୍ ଦେଇଯାଅ ।' କିନ୍ତୁ ତାଙ୍କର ବାରଅଣା ମନ ହାତ ଉପରେ—କାଳେ ହାତରେ ଢିଙ୍କି ପଡ଼ିଯାଏ ।''

''ବାରଅଣା ମନ ଈଶ୍ୱରଙ୍କ ଠାରେ ରଖି ଚାରିଅଣା ମନରେ କାର୍ଯ୍ୟ କରିବା ଉଚିତ ।''

ଶ୍ରୀଯୁକ୍ତ ପଣ୍ଡିତ ଶଶଧରଙ୍କ କଥା ଭକ୍ତମାନଙ୍କୁ କହୁଅଛନ୍ତି, ଦେଖିଲି ନୂତନତ୍ୱ କିଛି ନାହିଁ, କେବଳ ଶୁଷ୍କଜ୍ଞାନ ବିଚାର ନେଇଅଛନ୍ତି ।

''ଯେ ନିତ୍ୟରେ ପହଞ୍ଚି ଲୀଳା ନେଇ ରହନ୍ତି, ପୁଣି ଲୀଳାରୁ ନିତ୍ୟକୁ ଯାଇପାରନ୍ତି, ତାଙ୍କର ହିଁ ପକ୍କା ଜ୍ଞାନ, ପକ୍କା ଭକ୍ତି ।''

''ନାରଦାଦି ବ୍ରହ୍ମଜ୍ଞାନ ପରେ ଭକ୍ତି ନେଇଥିଲେ । ଏହାର ନାମ ବିଜ୍ଞାନ ।''

''କେବଳ ଶୁଷ୍କଜ୍ଞାନ—ସେ ଯେପରି ଭୁସ୍‌କରି ଉଠା ଘଡ଼ିବାଣ—କିଛି କ୍ଷଣ -ଫୁଲ ଦେଖାଇ ସଙ୍ଗେ ସଙ୍ଗେ ବନ୍ଦ ହୋଇଯାଏ । ନାରଦ ଶୁକଦେବାଦିଙ୍କର ଜ୍ଞାନ ଯେପରି ଭଲ ଘଡ଼ିବାଣ । କିଛିକ୍ଷଣ ଫୁଲ ଦେଖାଇ ବନ୍ଦ ହୁଏ, ପୁଣି ନୂତନ ଫୁଲ ଦେଖାଏ—ପୁଣି ବନ୍ଦ ହୁଏ—ପୁଣି ନୂତନ ଫୁଲ ଦେଖାଏ । ନାରଦ ଶୁକଦେବାଦିଙ୍କର ଈଶ୍ୱରଙ୍କ ପ୍ରତି ପ୍ରେମ ହୋଇଥିଲା । ପ୍ରେମ ସଚ୍ଚିଦାନନ୍ଦଙ୍କୁ ଧରିବାର ଦୌଡ଼ ।''

## ଠାକୁର ଶ୍ରୀରାମକୃଷ୍ଣ ବକୁଳତଳରେ—ଝାଉଁତଳାଠାରୁ ଭାବାବିଷ୍ଟ ।

ମଧ୍ୟାହ୍ନ ସେବା ପରେ ଠାକୁର ଟିକିଏ ବିଶ୍ରାମ କରିଅଛନ୍ତି ।

ବକୁଳତଳାରେ ବେଞ୍ଚ ପରି ଯେ ବସିବାର ସ୍ଥାନ ଅଛି, ସେଠାରେ ଦୁଇଚାରିଜଣ ଭକ୍ତ ଉପବିଷ୍ଟ ଅଛନ୍ତି ଓ ଗଳ୍ପ କରୁଛନ୍ତି—ଭବନାଥ, ମୁଖାର୍ଜୀ ଭ୍ରାତୃଦ୍ୱୟ, ମାଷ୍ଟର, ଛୋଟ ଗୋପାଳ, ହାଜରା ପ୍ରଭୃତି । ଠାକୁର ଝାଉଁତଳାକୁ ଯାଉଛନ୍ତି—ସେଠାରେ ଆସି ଟିକିଏ ବସିଲେ ।

ହାଜରା (ଛୋଟ ଗୋପାଳଙ୍କୁ)—ଏହାଙ୍କୁ ଟିକିଏ ତମାଖୁ ଖୁଆଅ ।

ଶ୍ରୀରାମକୃଷ୍ଣ (ସହାସ୍ୟ)—ତୁମେ ଖାଇବ ତାହା କହ ! (ସମସ୍ତଙ୍କର ହାସ୍ୟ) ।

ମୁଖାର୍ଜୀ (ହାଜରାଙ୍କୁ)—ଆପଣ ଏହାଙ୍କ ପାଖରେ ଅନେକ ଶିଖିଛନ୍ତି ।

ଶ୍ରୀରାମକୃଷ୍ଣ (ସହାସ୍ୟ)—ନା, ଏହାଙ୍କର ବାଲ୍ୟକାଳଠାରୁ ଏହି ଅବସ୍ଥା । (ସମସ୍ତଙ୍କର ହାସ୍ୟ) ।

ଠାକୁର ଝାଉଁତଳାରୁ ଫେରି ଆସୁଛନ୍ତି—ଭକ୍ତମାନେ ଦେଖିଲେ ; ଭାବାବିଷ୍ଟ । ମାତାଲ ପରି ଚାଲୁଛନ୍ତି । ଯେତେବେଳେ ଘରେ ପହଞ୍ଚିଲେ, ସେତେବେଳେ ପୁଣି ପ୍ରକୃତିସ୍ଥ ହେଲେ ।

## ( ୨ )

## ନାରାୟଣଙ୍କ ପାଇଁ ଠାକୁରଙ୍କର ଭାବନା । କୋନ୍ନଗରର ଭକ୍ତଗଣ । ଶ୍ରୀରାମକୃଷ୍ଣଙ୍କର ସମାଧି ଓ ନରେନ୍ଦ୍ରଙ୍କର ଗୀତ ।

ଠାକୁରଙ୍କ ଘରେ ଅନେକ ଭକ୍ତ ସମାଗତ ହୋଇଛନ୍ତି । କୋନ୍ନଗରର ଭକ୍ତମାନଙ୍କ ମଧ୍ୟରେ ଜଣେ ସାଧକ ନୂତନ ଆସିଛନ୍ତି—ବୟଃକ୍ରମ ପଚାଶ ଉପରେ । ଦେଖିଲେ ବୋଧହୁଏ, ଭିତରେ ଖୁବ୍ ପାଣ୍ଡିତ୍ୟାଭିମାନ ଅଛି । କଥା କହୁ କହୁ ସେ କହୁଅଛନ୍ତି—'ସମୁଦ୍ର ମନ୍ଥନ ପୂର୍ବରୁ କ'ଣ ଚନ୍ଦ୍ର ନ ଥିଲେ ? ଏସବୁ ମୀମାଂସା କିଏ କରିବ !'

ମାଷ୍ଟର (ସହାସ୍ୟ)—'ବ୍ରହ୍ମାଣ୍ଡ ଯେତେବେଳେ ନ ଥିଲା, ମୁଣ୍ଡମାଳା କେଉଁଠାରୁ ଆସିଲା ।'

ସାଧକ (ବିରକ୍ତ ହୋଇ)—ସେ ଅଲଗା କଥା ।

ଘର ମଧ୍ୟରେ ଠିଆହୋଇ ଠାକୁର ମାଷ୍ଟରଙ୍କୁ ହଠାତ୍ କହୁଛନ୍ତି, ''ସେ ଆସିଥିଲା—ନାରାୟଣ ।''

ନରେନ୍ଦ୍ର ବାରଣ୍ଡାରେ ହାଜରା ପ୍ରଭୃତିଙ୍କ ସହିତ କଥା କହୁଥିଲେ—ବିଚାରର ଶବ୍ଦ ଠାକୁରଙ୍କ ଘରଠାରୁ ଶୁଣାଯାଉଛି ।

ଶ୍ରୀରାମକୃଷ୍ଣ—ଖୁବ୍ କହିପାରେ । ବର୍ତ୍ତମାନ ଘର ଭାବନାରେ ଖୁବ୍ ପଡ଼ିଛି ।

ମାଷ୍ଟର—ଆଜ୍ଞା, ହଁ ।

ଶ୍ରୀରାମକୃଷ୍ଣ—ବିପଦକୁ ସମ୍ପଦ ଜ୍ଞାନ କରିବ କହିଥିଲା କି ନା । କଅଣ ?

ମାଷ୍ଟର—ଆଜ୍ଞା, ମନ ବଳଟା ଖୁବ୍ ଅଛି ।

ବଡ଼କାଳୀ—କେଉଁଟା କମ୍ ? (ଠାକୁର ନିଜ ଆସନରେ ବସିଛନ୍ତି)

କୋନ୍ନଗରର ଜଣେ ଭକ୍ତ ଠାକୁରଙ୍କୁ କହୁଛନ୍ତି—ମହାଶୟ, ଏ (ସାଧକ) ଆପଣଙ୍କୁ ଦେଖିବାକୁ ଆସିଛନ୍ତି—ଏହାଙ୍କର କଅଣ କଅଣ ପ୍ରଶ୍ନ କରିବାର ଅଛି ।

ସାଧକ ଦେହ ଓ ମସ୍ତକ ଉନ୍ନତ କରି ବସିଛନ୍ତି ।

ସାଧକ—ମହାଶୟ, ଉପାୟ କ'ଣ ?

## ଈଶ୍ୱର ଦର୍ଶନର ଉପାୟ, ଗୁରୁବାକ୍ୟରେ ବିଶ୍ୱାସ । ଶାସ୍ତ୍ରର ଧାରଣା କେତେବେଳେ ।

ଶ୍ରୀରାମକୃଷ୍ଣ—ଗୁରୁବାକ୍ୟରେ ବିଶ୍ୱାସ । ତାଙ୍କର ବାକ୍ୟ ଧରି ଧରି ଗଲେ ଭଗବାନଙ୍କୁ ଲାଭ କରାଯାଏ । ଯେପରି ସୂତାର ଖିଅ ଧରି ଧରି ଗଲେ ବସ୍ତୁ ଲାଭ ହୁଏ !

ସାଧକ—ତାଙ୍କୁ କ'ଣ ଦର୍ଶନ କରାଯାଏ ?

ଶ୍ରୀରାମକୃଷ୍ଣ—ସେ ବିଷୟ ବୁଦ୍ଧିର ଅଗୋଚର । କାମିନୀ-କାଞ୍ଚନରେ ଆସକ୍ତିର ଲେଶ ରହିଲେ ତାଙ୍କୁ ପାଇହୁଏନି । କିନ୍ତୁ ଶୁଦ୍ଧ ମନ ଶୁଦ୍ଧ ବୁଦ୍ଧିର ଗୋଚର—ଯେଉଁ ମନରେ, ଯେଉଁ ବୁଦ୍ଧିରେ, ଆସକ୍ତିର ଲେଶମାତ୍ର ନାହିଁ । ଶୁଦ୍ଧମନ, ଶୁଦ୍ଧବୁଦ୍ଧି, ଆଉ ଶୁଦ୍ଧ ଆତ୍ମା,—ଏକ ଜିନିଷ ।

ସାଧକ—କିନ୍ତୁ ଶାସ୍ତ୍ରରେ କହିଛି, —'ଯତୋ ବାଚୋ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ' —ସେ ବାକ୍ୟ ମନର ଅଗୋଚର ।

ଶ୍ରୀରାମକୃଷ୍ଣ—ସେ କଥା ଥାଉ ଥାଉ । ସାଧନ ନ କଲେ ଶାସ୍ତ୍ରର ମାନେ ବୁଝାଯାଏ ନାହିଁ । ଭାଙ୍ଗ ଭାଙ୍ଗ ବୋଲି କହିଲେ କ'ଣ ହେବ ? ପଣ୍ଡିତମାନେ ଶ୍ଳୋକ ସବୁ ଫଡ଼୍ ଫଡ଼୍ କରି କହନ୍ତି—କିନ୍ତୁ ସେଥିରେ କ'ଣ ହେବ ? ଭାଙ୍ଗ ଦେହରେ ବୋଳିଲେ ମଧ୍ୟ ନିଶା ହୁଏ ନାହିଁ—ଖାଇବାକୁ ହୁଏ ।

''କେବଳ କହିଲେ କ'ଣ ହେବ 'ଦୁଧରେ ଲହୁଣୀ ଅଛି', 'ଦୁଧରେ ଲହୁଣୀ ଅଛି ?' ଦୁଧରେ ଦହି ପକାଇ ମନ୍ଥନ କର, —ତେବେ ତ ହେବ ।''

ସାଧକ—ଲହୁଣୀ ବାହାର କରିବା, —ସେସବୁ ତ ଶାସ୍ତ୍ରର କଥା ।

ଶ୍ରୀରାମକୃଷ୍ଣ—ଶାସ୍ତ୍ରର କଥା କହିଲେ ବା ଶୁଣିଲେ କଅଣ ହେବ ?—ଧାରଣା କରିବା ଦରକାର । ପାଞ୍ଜିରେ ଲେଖୁଛି କୋଡ଼ିଏ ଅଢ଼ା ଜଳ, ପାଞ୍ଜି ଚିପୁଡ଼ିଲେ ଟିକିଏ ମଧ୍ୟ ଜଳ ପଡ଼େ ନାହିଁ ।

ସାଧକ—ଲହୁଣୀ ବାହାର କରିବା—ଆପଣ ତୋଳିଛନ୍ତି ?

ଶ୍ରୀରାମକୃଷ୍ଣ—ମୁଁ କ'ଣ କରିଛି—ନ କରିଛି ସେ କଥା ଥାଉ । ଆଉ ଏସବୁ କଥା ବୁଝାଇବା ବଡ଼ ଶକ୍ତ । କେହି ଯଦି ପ୍ରଶ୍ନ କରେ—ଘିଅ ଖାଇବାକୁ କିପରି ? ତା'ର ଉତ୍ତର କିପରି ଘିଅ, ନା ଯେପରି ଘିଅ ।

''ଏସବୁ ଜାଣିବାକୁ ଗଲେ ସାଧୁସଙ୍ଗ ଦରକାର । କେଉଁଟା କଫର ନାଡ଼ୀ, କେଉଁଟା ପିତ୍ତର ନାଡ଼ୀ, କେଉଁଟା ବାୟୁର ନାଡ଼ୀ—ଏହିଟା ଜାଣିବାକୁ ଗଲେ ବୈଦ୍ୟ ସଙ୍ଗରେ ରହିବା ଦରକାର ।''

ସାଧକ—କେହି କେହି ଅନ୍ୟ ସଙ୍ଗରେ ରହିବାକୁ ବିରକ୍ତ ହୁଏ ।

ଶ୍ରୀରାମକୃଷ୍ଣ—ସେ ଜ୍ଞାନର ପରେ—ଭଗବାନ ଲାଭ ପରେ । ଆଗେ ସାଧୁସଙ୍ଗ ଚାହିଁନା ? ସାଧକ ଚୁପ କରିଅଛନ୍ତି ।

ସାଧକ (କିୟତ୍‌କ୍ଷଣ ପରେ ଗରମ ହୋଇ)—ଆପଣ ତାଙ୍କୁ ଜାଣିପାରିଛନ୍ତି । କୁହନ୍ତୁ -ପ୍ରତ୍ୟକ୍ଷରେ ହେଉ ବା ଅନୁଭବରେ ହେଉ । ଇଚ୍ଛାହୁଏ କହନ୍ତୁ, ନ ହୁଏ ନ କହନ୍ତୁ ।

ଶ୍ରୀରାମକୃଷ୍ଣ (ଈଷତ୍ ହସି ହସି)—କ'ଣ କହିବି ? କେବଳ ଆଭାସ କହିହୁଏ ।

ସାଧକ—ତାହା କହନ୍ତୁ ।

ନରେନ୍ଦ୍ର ଗୀତ ଗାଇବେ । ନରେନ୍ଦ୍ର କହୁଛନ୍ତି, ପଖଜଟା ଆଣିଲ ନାହିଁ ?

ଛୋଟ ଗୋପାଳ—ମହିମା (ମହିମାଚରଣ) ବାବୁଙ୍କର ଅଛି ।

ଶ୍ରୀରାମକୃଷ୍ଣ—ନା ତାଙ୍କର ଜିନିଷ ଆଣିବା ଦରକାର ନାହିଁ ।

ଆଗେ କୋନ୍ନଗରର ଜଣେ ଭକ୍ତ କାଲୋୟାତି ଗୀତ ଗାଉଛନ୍ତି । ଗୀତ ସମୟରେ ଠାକୁର ସାଧକର ଅବସ୍ଥା ଥରେ ଥରେ ଦେଖୁଅଛନ୍ତି । ଗାୟକ ନରେନ୍ଦ୍ରଙ୍କ ସହିତ ଗାଉଣା ବାଜଣା ସମ୍ବନ୍ଧରେ ଘୋରତର ତର୍କ କରୁଛନ୍ତି ।

ସାଧକ (ଗାୟକଙ୍କ ପ୍ରତି)—ତୁମେ ମଧ୍ୟ ତ ବାବା କମ୍ ନୁହଁ ! ଏସବୁ ତର୍କରେ କ'ଣ ଦରକାର ।

ଆଉ ଜଣେ ତର୍କରେ ଯୋଗ ଦେଇଥିଲେ—ଠାକୁର ସାଧକଙ୍କୁ କହୁଛନ୍ତି, "ଆପଣ ଏହାଙ୍କୁ କିଛି କହିଲେ ନାହିଁ ?"

ଶ୍ରୀରାମକୃଷ୍ଣ—କୋନ୍ନଗରର ଭକ୍ତମାନଙ୍କୁ କହୁଛନ୍ତି, "କାହିଁକି, ଆପଣମାନଙ୍କ ସଙ୍ଗରେ ମଧ୍ୟ ଏହାଙ୍କର ଭଲ ପଡ଼େନାହିଁ ଦେଖୁଛି ।" ନରେନ୍ଦ୍ର ଗୀତ ଗାଉଛନ୍ତି ।

ଗୀତ—ଯିବ କିହେ ଦିନ ମୋର ବିଫଳେ ଚାଲି ।
ଦିବାନିଶି ଅଛି ପ୍ରଭୁ ତବ ଆଶା ପଥ ଚାହିଁ ॥

ସାଧକ ଗୀତ ଶୁଣି ଶୁଣି ଧ୍ୟାନସ୍ଥ ହୋଇଛନ୍ତି । ଠାକୁରଙ୍କର ତକ୍ତପୋଷର ଉତ୍ତରରେ ଦକ୍ଷିଣାଭିମୁଖ ହୋଇ ବସିଅଛନ୍ତି । ବେଳ ୩ଟା-୪ଟା ହେବ । ପଶ୍ଚିମରୁ ଖରା ଆସି ତାଙ୍କର ଦେହରେ ପଡ଼ିଅଛି । ଠାକୁର ଶୀଘ୍ର ଗୋଟିଏ ଛତା ନେଇ ତାଙ୍କର ପଶ୍ଚିମ ପଟରେ ରଖିଲେ । ଯେପରି ଖରା ସାଧକଙ୍କ ଦେହରେ ନଲାଗେ । ନରେନ୍ଦ୍ର ଗୀତ ଗାଉଛନ୍ତି—

ଗୀତ—ମଳିନ ପଙ୍କିଳ ମନେ କେମନେ ଡାକିବ ତୋମାୟ ।
ପାରେ କି ତୃଣ ପଶିତେ ଜ୍ୱଳନ୍ତ ଅନଲ ଯଥାୟ ।।
ତୁମି ପୁଣ୍ୟର ଆଧାର, ଜ୍ୱଳନ୍ତ ଅନଳ ସମ ।
ଆମି ପାପୀ ତୃଣ ସମ, କେମନେ ପୂଜିବି ତୋମାୟ ।।
ଶୁନି ତବ ନାମେର ଗୁଣେ, ତରେ ମହାପାପୀ ଜନେ ।
ଲଇତେ ପବିତ୍ର ନାମ, କାମ୍ପେ ହେ ମମ ହୃଦୟ ।।
ଅଭ୍ୟସ୍ତ ପାପେର ସେବାୟ, ଜୀବନ ଚଲିୟା ଯାୟ ।
କେମନେ କରିବ ଆମି ପବିତ୍ର ପଥ ଆଶ୍ରୟ ।।
ଏ ପାତକୀ ନରାଧମେ, ତା'ର ଯଦି ଦୟାଲ ନାମେ ।
ବଲ କରେ କେଶେ ଧରେ, ଦାଓ ଚରଣେ ଆଶ୍ରୟ ।।

## (୩)
## ନରେନ୍ଦ୍ରାଦିଙ୍କର ଶିକ୍ଷା ।
## 'ବେଦ ବେଦାନ୍ତରେ କେବଳ ଆଭାସ' ।

ନରେନ୍ଦ୍ର ଗୀତ ଗାଉଛନ୍ତି—

ଗୀତ—ସୁନ୍ଦର ତୁମର ନାମ ଦୀନଶରଣ ହେ ।
ବହୁଛି ଅମୃତ ଧାରା ଭରଇ ଶ୍ରବଣ, ପ୍ରାଣ ରମଣ ହେ ।
ଗଭୀର ବିଷାଦରାଶି ନିମେଷେ ବିନାଶେ,
ଯେବେ ତବ ନାମସୁଧା ଶ୍ରବଣେ ପରଶେ ॥
ହୃଦୟ ମଧୁମୟ ତବନାମ ଗାନେ,
ହୁଏ ହେ ହୃଦୟନାଥ ଚିଦାନନ୍ଦଘନ ହେ ॥

ନରେନ୍ଦ୍ର ଯହୁଁ ଗାଇଲେ— 'ହ୍ରିଦୟ ମଧୁମୟ ତବ ନାମ ଗାନେ' ଠାକୁର ସଙ୍ଗେ ସଙ୍ଗେ ସମାଧିସ୍ଥ । ସମାଧିର ପ୍ରାରମ୍ଭରେ ହସ୍ତର ଅଙ୍ଗୁଳି, ବିଶେଷତଃ ବୃଦ୍ଧାଙ୍ଗୁଳି, ସ୍ପନ୍ଦିତ ହେଉଛି । କୋନ୍ନଗରର ଭକ୍ତମାନେ ଠାକୁରଙ୍କର ସମାଧି କେବେହେଲେ ଦେଖିନାହାନ୍ତି । ଠାକୁର ଚୁପ୍ ହେବା ଦେଖି ସେମାନେ ଗାତ୍ରୋତ୍‌ଥାନ କରୁଛନ୍ତି ।

ଭବନାଥ—ଆପଣମାନେ ବସନ୍ତୁ ନା । ଏହାଙ୍କର ସମାଧି ଅବସ୍ଥା ।

କୋନ୍ନଗରର ଭକ୍ତମାନେ ପୁଣି ଆସନ ଗ୍ରହଣ କଲେ । ନରେନ୍ଦ୍ର ଗାଉଛନ୍ତି—

ଦିବାନିଶି କରିୟା ଯତନ
ହ୍ରିଦୟେତେ ରଚେଛି ଆସନ,
ଜଗପତି ହେ କ୍ରିପାକରି
ସେଥା କି କରିବେ ଆଗମନ ।

ଠାକୁର ଭାବାବେଶରେ ତଳକୁ ଓହ୍ଲାଇ ତଳେ ନରେନ୍ଦ୍ରଙ୍କ ପାଖରେ ବସିଲେ ।

ଗୀତ—ଚିଦାକାଶେ ହଲୋ ପୂର୍ଣ୍ଣ ପ୍ରେମ ଚନ୍ଦ୍ରୋଦୟ ହେ ।
ଉଥଲିଲ ପ୍ରେମସିନ୍ଧୁ କି ଆନନ୍ଦମୟ ହେ ।।
ଜୟ ଦୟାମୟ ! ଜୟ ଦୟାମୟ ! ଜୟ ଦୟାମୟ !

'ଜୟ ଦୟାମୟ' ଏହି ନାମ ଶୁଣି ଠାକୁର ଦଣ୍ଡାୟମାନ, ପୁଣି ସମାଧିସ୍ଥ ।

ଅନେକକ୍ଷଣ ପରେ କିଞ୍ଚିତ୍ ପ୍ରକୃତିସ୍ଥ ହୋଇ ପୁଣି ସପ ଉପରେ ବସିଲେ । ନରେନ୍ଦ୍ର ଗୀତ ସମାପ୍ତ କରିଛନ୍ତି । ତାନପୁରା ଯଥା ସ୍ଥାନରେ ରଖା ହୋଇଛି । ଠାକୁରଙ୍କର ବର୍ତ୍ତମାନ ମଧ୍ୟ ଭାବାବେଶ ରହିଛି । ଭାବାବସ୍ଥାରେ ମଧ୍ୟ କହୁଛନ୍ତି, ''ଏ କଅଣ କହତ, ଲହୁଣୀ ବାହାର କରି ମୁହଁ ପାଖରେ ଧର । ପୋଖରୀରେ ଚାରା ପକାଇବ ନାହିଁ—ବନିଶୀ ଧରି ବସି ରହିବ ନାହିଁ—ମାଛ ଧରି ତାଙ୍କ ହାତରେ ଦିଅ । କି ଅଡୁଆ ! ମା ! ବିଚାର ଆଉ

ଶୁଣିବି ନାହିଁ, ଶଳାମାନେ ମୁଣ୍ଡରେ ଢୁକାଇ ଦିଅନ୍ତି—କି ଅଡୁଆ । ଝାଡ଼ି ପକାଇବି !

"ସେ ବେଦ ବିଧିର ପାର । ବେଦ-ବେଦାନ୍ତ ଶାସ୍ତ୍ର ପଢ଼ି ତାଙ୍କୁ କ'ଣ ପାଇହୁଏ ? (ନରେନ୍ଦ୍ରଙ୍କ ପ୍ରତି) ବୁଝିଛ ? ବେଦ କେବଳ ଆଭାସ ।"

ନରେନ୍ଦ୍ର ପୁଣି ତାନପୁରା ଆଣିବାକୁ କହିଲେ । ଠାକୁର କହିଲେ, 'ମୁଁ ଗାଇବି ।' ବର୍ତ୍ତମାନ ମଧ ଭାବାବେଶ ରହିଛି—ଠାକୁର ଗାଉଛନ୍ତି—

ଆମି ଏଇ ଖେଦେ ଖେଦ କରି ଶ୍ୟାମା ।<br>
ତୁମି ମାତା ଥାକତେ ଆମାର ଜାଗା ଘରେ ଚୁରିଗୋ ମା ।।<br>
ମା ! ବିଚାର କାହିଁକି କରାଅ ?" ପୁଣି ଗାଉଛନ୍ତି—<br>
'ଏଥର ମୁହିଁ ଭଲ ଭାବିଛି,<br>
ଭଲ ଭାବୀର ପାଖେ ଭାବ ପାଇଛି ।<br>
ଘୁମ ଭାଙ୍ଗିଛି ଆଉକି ଘୁମାଏ,<br>
ଯୋଗେ ଯାଗେ ଯାଗି ଅଛି ।<br>
ଯୋଗ ନିଦ୍ରାରେ ତୁମକୁ ପାଇ ମା',<br>
ନିଦ୍ରାକୁ ଶୁଆଇ ଦେଇଛି ।

ଠାକୁର କହୁଛନ୍ତି—'ମୁଁ ହୋସରେ ଅଛି ।' ବର୍ତ୍ତମାନ ମଧ ଭାବାବସ୍ଥା ।

ଗୀତ—ସୁରାପାନ କରି ନା ଆମି, ସୁଧାଖାଇ ଜୟକାଳୀ ବଲେ ।<br>
ମନ ମାତାଲେ ମାତାଲ କରେ, ମଦ ମାତାଲେ ମାତାଲ ବଲେ ॥

ଠାକୁର କହିଛନ୍ତି—'ମା, ବିଚାର ଶୁଣିବି ନାହିଁ ।'

ନରେନ୍ଦ୍ର ଗାଉଛନ୍ତି—

ଦିଅ ମା' ମୋତେ ପାଗଳକରି (ବ୍ରହ୍ମମୟୀ), ଆଉ କାମ ନାହିଁ ମା ଜ୍ଞାନ ବିଚାରି ।<br>
ତୁମ ପ୍ରେମାମୃତ ପାନେ କର ମତୁଆଲା, ବୁଡ଼ାଅ ପ୍ରେମ ସାଗରେ ମା' ଗୋ ଭକ୍ତ ଚିତ୍ତହାରଣୀ ॥

ଠାକୁର ଈଷତ୍ ହସି କହୁଛନ୍ତି—"ଦେ ମା ପାଗଲ କରି ! ତାଙ୍କୁ ଜ୍ଞାନ ବିଚାର କରି—ଶାସ୍ତ୍ରର ବିଚାର କରି—ପାଇ ହୁଏ ନାହିଁ ।"

କୋନଗରର ଗାୟକଙ୍କର କାଲୋୟାତି ଗୀତ ଓ ରାଗିଣୀ ଆଳାପ ଶୁଣି ପ୍ରସନ୍ନ ହୋଇ ଅଛନ୍ତି । ବିନୀତ ଭାବରେ ଗାୟକଙ୍କୁ କହୁଛନ୍ତି, "ବାବୁ, ଗୋଟିଏ ଆନନ୍ଦମୟୀଙ୍କର ନାମ !"

ଗାୟକ—ମହାଶୟ ! କ୍ଷମା କରିବେ ।

ଶ୍ରୀରାମକୃଷ୍ଣ ଗାୟକଙ୍କୁ ହାତଯୋଡ଼ି ପ୍ରଣାମ କରି କହୁଛନ୍ତି, "ନାହିଁ ବାବା ! ଟିକିଏ ଜୋର କରିପାରେ ।" ଏହା କହି ଗୋବିନ୍ଦ ଅଧିକାରୀଙ୍କର ଯାତ୍ରାରେ ବୃନ୍ଦାଙ୍କର ଭକ୍ତି କୀର୍ତ୍ତନ ଗୀତ ଗାଇ କହୁଛନ୍ତି—

ରାଇ ବଲିଲେ ବଲିତେ ପାରେ । (କ୍ରିଷ୍ଟେର ଜନ୍ୟ ଜେଗେ ଆଛେ !)

(ସାରାରାତ ଜେଗେ ଆଛେ !) ମାନ କରିଲେ କରିତେ ପାରେ ।)

''ବାବା ! —ତୁମେ ବ୍ରହ୍ମମୟୀଙ୍କର ସନ୍ତାନ ! —ସେ ଘଟେ ଘଟେ ଅଛନ୍ତି । ଅବଶ୍ୟ କହିବି ।''

ଚଷା ଗୁରୁଙ୍କୁ କହିଥିଲା—'ମାରି ମନ୍ତ୍ର ନେବି ।'

ଗାୟକ (ସହାସ୍ୟ)—ଜୋତା ମାରି ।

ଶ୍ରୀରାମକୃଷ୍ଣ (ଶ୍ରୀ ଗୁରୁଦେବଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରି କରି ସହାସ୍ୟରେ)—ଏତେ ଦୂର ନୁହେଁ ।

ପୁଣି ଭାବାବିଷ୍ଟ ହୋଇ କହୁଛନ୍ତି—''ପ୍ରବର୍ତ୍ତକ, ସାଧକ, ସିଦ୍ଧ, ସିଦ୍ଧର ସିଦ୍ଧ; ତୁମେ କ'ଣ ସିଦ୍ଧ, ନା ସିଦ୍ଧର ସିଦ୍ଧ ? —ଆଚ୍ଛା ଗୀତ ଗାଅ ।''

ଗାୟକ ରାଗିଣୀ ଆଳାପ କରି ଗୀତ ଗାଉଛନ୍ତି—ମନ ବାରଣ ।

### ଶବ୍ଦ ବ୍ରହ୍ମରେ ଆନନ୍ଦ । 'ମା', ମୁଁ ନା ତୁମେ ?'

ଶ୍ରୀରାମକୃଷ୍ଣ (ଆଳାପ ଶୁଣି)—ବାବୁ ! ଏଥିରେ ମଧ୍ୟ ଆନନ୍ଦ ହୁଏ, ବାବୁ !

ଗୀତ ସମାପ୍ତ ହେଲା । କୋନ୍ନଗରର ଭକ୍ତମାନେ ପ୍ରଣାମ କରି ବିଦାୟ ନେଲେ । ସାଧକ ଯୋଡ଼ହସ୍ତରେ ପ୍ରଣାମ କରି କହୁଛନ୍ତି, ''ଗୋସାଇଁଜୀ ! ତେବେ ଆସୁଛି ।''

ଠାକୁର ବର୍ତ୍ତମାନ ମଧ୍ୟ ଭାବାବିଷ୍ଟ—ମାଆଙ୍କ ସଙ୍ଗରେ କଥା କହୁଛନ୍ତି—''ମା' ! ମୁଁ ନା ତୁମେ ? ମୁଁ କ'ଣ କରେ ? ନା, ନା, ତୁମେ ।

''ତୁମେ ବିଚାର ଶୁଣିଲ—ନା ଏତେକ୍ଷଣ ମୁଁ ଶୁଣିଲି ? —ନା, ମୁଁ ନୁହେଁ—ତୁମେ ! (ଶୁଣିଲ) ।''

## ପୂର୍ବକଥା—ସାଧୁଙ୍କର ଠାକୁରଙ୍କୁ ଶିକ୍ଷା । ତମୋଗୁଣୀ ସାଧୁ ।

ଠାକୁର ପ୍ରକୃତିସ୍ଥ ହୋଇଛନ୍ତି । ନରେନ୍ଦ୍ର, ଭବନାଥ, ମୁଖାର୍ଜୀ ଭ୍ରାତୃଦ୍ୱୟ ପ୍ରଭୃତି ଭକ୍ତମାନଙ୍କ ସହିତ କଥା କହୁଛନ୍ତି । ସାଧକ କଥାରେ—

ଭବନାଥ (ସହାସ୍ୟ)—କି ରକମର ଲୋକ !

ଶ୍ରୀରାମକୃଷ୍ଣ—'ତମୋଗୁଣୀ ଭକ୍ତ ।'

ଭବନାଥ—ଖୁବ୍ ଶ୍ଲୋକ ବୋଲି ପାରନ୍ତି ।

ଶ୍ରୀରାମକୃଷ୍ଣ—ମୁଁ ଜଣଙ୍କୁ କହିଥିଲି—'ସେ ରଜଗୁଣୀ ସାଧୁ—ତାହାକୁ ଚାଉଳ ଡାଉଳ ଦେବ କାହିଁକି ?' ଆଉ ଜଣେ ସାଧୁ ମୋତେ ଶିକ୍ଷାଦେଲେ—'ସେପରି କଥା କହ ନାହିଁ । ସାଧୁ ତିନି ପ୍ରକାର—**ସତ୍ତ୍ୱଗୁଣୀ, ରଜୋଗୁଣୀ, ତମୋଗୁଣୀ** ।'' ସେହି ଦିନଠାରୁ ମୁଁ ସବୁ ରକମର ସାଧୁଙ୍କୁ ମାନେ ।

ନରେନ୍ଦ୍ର (ସହାସ୍ୟ)—କ'ଣ, ହାତୀ ନାରାୟଣ ? —ସବୁ ହିଁ ନାରାୟଣ ।

ଶ୍ରୀରାମକୃଷ୍ଣ (ସହାସ୍ୟ)—ସେହି କେବଳ ବିଦ୍ୟା ଅବିଦ୍ୟା ରୂପରେ ଲୀଳା କରୁଛନ୍ତି । ଦୁହିଁଙ୍କୁ ମୁଁ ପ୍ରଣାମ କରେ । ଚଣ୍ଡୀରେ ଅଛି, 'ସେ ଲକ୍ଷ୍ମୀ ପୁଣି ହତଭାଗାର ଘରେ ଅଲକ୍ଷ୍ମୀ ।' (ଭବନାଥଙ୍କ ପ୍ରତି) ଏଇଟା କ'ଣ ବିଷ୍ଣୁପୁରାଣରେ ଅଛି ?

ଭବନାଥ (ସହାସ୍ୟ)—ଆଜ୍ଞା ତାହା ଜାଣେ ନାହିଁ । କୋନଗରର ଭକ୍ତମାନେ ଆପଣଙ୍କର ସମାଧି ଅବସ୍ଥା ବୁଝି ନ ପାରି ଉଠିଯାଉଥିଲେ ।

ଶ୍ରୀରାମକୃଷ୍ଣ—କିଏ ପୁଣି କହିଲା—ତୁମେମାନେ ବସ ।

ଭବନାଥ (ସହାସ୍ୟ)—ମୁଁ ।

ଶ୍ରୀରାମକୃଷ୍ଣ—ତୁମେ ବାବୁ ଘଟାଇବାରେ ଯେପରି, ପୁଣି ତଡ଼ାଇବାରେ ମଧ୍ୟ ସେହିପରି ।

ଗାୟକଙ୍କ ସଙ୍ଗରେ ନରେନ୍ଦ୍ରଙ୍କର ତର୍କ ହୋଇଥିଲା—ସେହି କଥା ହେଉଅଛି ।

(Doctrine of Non-resistance and Sri Ramakrishna)

## ନରେନ୍ଦ୍ରଙ୍କ ପ୍ରତି ଉପଦେଶ—ସତ୍ତ୍ୱର ତମଃ । ହରିନାମ ମାହାତ୍ମ୍ୟ ।

ମୁଖାର୍ଜୀ—ନରେନ୍ଦ୍ର ଛାଡ଼ିନାହାନ୍ତି ।

ଶ୍ରୀରାମକୃଷ୍ଣ—ନା, ଏପରି ରୋକ ଦରକାର । ଏହାକୁ କହନ୍ତି ସତ୍ତ୍ୱର ତମଃ । ଲୋକେ ଯାହା କହିବେ ତାହା କ'ଣ ଶୁଣିବାକୁ ହେବ ? ବେଶ୍ୟାକୁ କ'ଣ କହିବ, ଆଚ୍ଛା ଯାହା ହୁଏ ତୁମ୍ଭେ କର । ତାହାହେଲେ ବେଶ୍ୟାର କଥା ଶୁଣିବାକୁ ହେବ ? ମାନ କରିବାରେ ଜଣେ ସଖୀ କହିଥିଲେ—'ଶ୍ରୀମତୀଙ୍କର ଅହଂକାର ହୋଇଛି ।' ବୃନ୍ଦେ କହିଲେ—ଏ 'ଅହଂ'କାର ?—ଏ ତାଙ୍କର ହିଁ ଅହଂ । କୃଷ୍ଣଙ୍କ ଗର୍ବରେ ଗରବିଣୀ ।

ଏଥର ହରିନାମ ମାହାତ୍ମ୍ୟର କଥା ହେଉଛି ।

ଭବନାଥ—ହରିନାମରେ ମୋର ଦେହ ଯେପରି ହାଲୁକା ହୋଇଯାଏ ।

ଶ୍ରୀରାମକୃଷ୍ଣ—ଯେ ପାପ ହରଣ କରନ୍ତି, ସେହି କେବଳ ହରି । ହରି ତ୍ରିତାପ ହରଣ କରନ୍ତି ।

"ଆଉ ଚୈତନ୍ୟଦେବ ହରିନାମ ପ୍ରଚାର କରିଥିଲେ—ଅତଏବ ଭଲ । ଦେଖ ଚୈତନ୍ୟଦେବ କେତେ ବଡ଼ ପଣ୍ଡିତ—ପୁଣି ସେ ଅବତାର—ସେ ଯେତେବେଳେ ଏହି ନାମ ପ୍ରଚାର କରିଥିଲେ ଏ ଅବଶ୍ୟ ଭଲ । (ସହାସ୍ୟ) ଚଷାମାନେ ନିମନ୍ତ୍ରଣ ଖାଉଛନ୍ତି—ସେମାନଙ୍କୁ ପଚରାଗଲା, 'ତୁମେମାନେ ଆମ୍ବଡ଼ାର ଆମ୍ବିଳ ଖାଇବ ? ସେମାନେ କହିଲେ, ବାବୁମାନେ ଯଦି ଖାଇଥିବେ ତାହା ହେଲେ ଆମମାନଙ୍କୁ ଦେବେ ।' ସେମାନେ ଯେତେବେଳେ ଖାଇଯାଇଛନ୍ତି, ସେତେବେଳେ ନିଶ୍ଚୟ ଭଲ । (ସମସ୍ତଙ୍କର ହାସ୍ୟ) ।"

## ଶିବନାଥଙ୍କୁ ଦେଖିବାର ଇଚ୍ଛା । ମହେନ୍ଦ୍ରଙ୍କର ତୀର୍ଥଯାତ୍ରା ପ୍ରସ୍ତାବ ।

ଠାକୁର ଶିବନାଥ ଶାସ୍ତ୍ରୀଙ୍କୁ ଦେଖିବାକୁ ଯିବେ ବୋଲି ଇଚ୍ଛା କରିଛନ୍ତି-ତେଣୁ ମୁଖାର୍ଜୀମାନଙ୍କୁ କହୁଛନ୍ତି, 'ଥରେ ଶିବନାଥଙ୍କୁ ଦେଖିବାକୁ ଯିବି—ତୁମ୍ଭମାନଙ୍କ ଗାଡ଼ିରେ ଗଲେ ଆଉ ଭଡ଼ା ଲାଗିବ ନାହିଁ ।'

ମୁଖାର୍ଜୀ—ଯେ ଆଜ୍ଞା, ତାହା ଦିନେ ଠିକ୍ କରାଯିବ ।

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)—ଆଚ୍ଛା, ଆମ୍ଭମାନଙ୍କୁ କ'ଣ ଲାଇକ୍ (like) କରିବେ ? ଏକେତ ସେମାନେ (ବ୍ରାହ୍ମଭକ୍ତମାନେ) ସାକାରବାଦୀଙ୍କୁ ନିନ୍ଦା କରନ୍ତି ।

ଶ୍ରୀଯୁକ୍ତ ମହେନ୍ଦ୍ର ମୁଖାର୍ଜୀ ତୀର୍ଥଯାତ୍ରା କରିବେ—ଠାକୁରଙ୍କୁ ଜଣାଉଛନ୍ତି ।

ଶ୍ରୀରାମକୃଷ୍ଣ (ସହାସ୍ୟ)—ସେ କଅଣ ହେ ! ପ୍ରେମର ଅଙ୍କୁର ହେଉ ନ ହେଉଣୁ ଯାଉଛ ? ଅଙ୍କୁର ହେବ ତା'ପରେ ଗଛ ହେବ, ତାହା ପରେ ଫଳ ହେବ । ତୁମ ସଙ୍ଗରେ ବେଶ୍ କଥାବାର୍ତ୍ତା ଚାଲୁଥିଲା ।

ମହେନ୍ଦ୍ର—ଆଜ୍ଞା, ଟିକିଏ ଇଚ୍ଛା ହୋଇଛି ବୁଲିଆସେ । ପୁଣି ଶୀଘ୍ର ଫେରିଆସିବି ।

## (୪)

## ନରେନ୍ଦ୍ରଙ୍କର ଭକ୍ତି । ଯଦୁ ମଲ୍ଲିକଙ୍କର ଉଦ୍ୟାନରେ ଭକ୍ତଙ୍କ ସଙ୍ଗରେ ଶ୍ରୀଗୌରାଙ୍ଗଙ୍କର ଭାବ ।

ଅପରାହ୍ନ ହୋଇଛି । ସମୟ ୫ଟା ହେବ । ଠାକୁର ଗାତ୍ରୋତ୍ଥାନ କଲେ । ଭକ୍ତମାନେ ଉଦ୍ୟାନରେ ବୁଲୁଛନ୍ତି । ଅନେକ ଶୀଘ୍ର ବିଦାୟ ନେବେ ।

ଠାକୁର ଉତ୍ତର ବାରଣ୍ଡାରେ ହାଜରାଙ୍କ ସହିତ କଥା କହୁଛନ୍ତି । ନରେନ୍ଦ୍ର ଆଜିକାଲି ଗୁହଙ୍କର ବଡ଼ପୁଅ ଅନ୍ନଦାଙ୍କ ପାଖକୁ ପ୍ରାୟ ଯାଆନ୍ତି ।

ହାଜରା—ଗୁହଙ୍କର ପୁଅ ଅନ୍ନଦା ଶୁଣିଲି ବେଶ୍ କଠୋରତା କରୁଛି । ସାମାନ୍ୟ କିଛି ଖାଇ ରହେ । ଚାରି ଦିନରେ ଥରେ ଅନ୍ନ ଖାଏ ।

ଶ୍ରୀରାମକୃଷ୍ଣ—କ'ଣ କହୁଛ । 'କେ ଜାଣି କୋନ୍ ଭେଲ୍‌ସେ ନାରାୟଣ ମିଲ୍‌ଯାୟ' ।

ହାଜରା—ନରେନ୍ଦ୍ର ଆଗମନୀ ଗାଇଲେ ।

ଶ୍ରୀରାମକୃଷ୍ଣ (ବ୍ୟସ୍ତ ହୋଇ)—କିପରି ?

କିଶୋରୀ ପାଖରେ ଠିଆ ହୋଇଛନ୍ତି । ଠାକୁର କହୁଛନ୍ତି—ତୁ ଭଲ ଅଛୁ ? ଠାକୁର ପଶ୍ଚିମର ଗୋଲ ବାରଣ୍ଡାରେ । ଶରତ୍‌କାଳ । ଗେରୁଆ ରଙ୍ଗରେ ରଙ୍ଗ ହୋଇଥିବା ଗୋଟିଏ ଫ୍ଲାନେଲର ଜାମା ପିନ୍ଧିଛନ୍ତି ଓ ନରେନ୍ଦ୍ରଙ୍କୁ କହୁଛନ୍ତି, ତୁ ଆଗମନୀ ଗାଇଛୁ ? ଗୋଲ ବାରଣ୍ଡାରୁ ଓହ୍ଲାଇ ନରେନ୍ଦ୍ରଙ୍କ ସଙ୍ଗରେ ପୋସ୍ତା ଉପରକୁ ଆସିଲେ । ସଙ୍ଗରେ ଗଙ୍ଗାର ମାଷ୍ଟର । ନରେନ୍ଦ୍ର ଗୀତ ଗାଉଛନ୍ତି ।

କେମନ କର ପରେର ଘରେ ଛିଲି ଉମା ବଲ ମା ତାଇ ।
କତ ଲୋକେ କତ ବଲେ ଶୁନେ ପ୍ରାଣେ ମରେ ଯାଇ ।।
ଚିତାଭସ୍ମ ମେଖେ ଅଙ୍ଗେ, ଜାମାଇ ବେଡ଼ାୟ ମହାରଙ୍ଗେ ।
ତୁଇ ନାକି ମା' ତାରଇ ସଙ୍ଗେ ସୋନାର ଅଙ୍ଗେ ମାଖିସ୍ ଛାଇ ।।
କେମନେ ମା' ଧୈର୍ଯ୍ୟ ଧରେ ଜାମାଇ ନାକି ଭିକ୍ଷା କରେ ।
ଏବାର ନିତେ ଏଲେ ପରେ ବଲବ ଉମା ଘରେ ନାଇ ।।

ଠାକୁର ଠିଆ ହୋଇ ଶୁଣୁଛନ୍ତି । ଶୁଣୁ ଶୁଣୁ ଭାବାବିଷ୍ଟ । ବର୍ତ୍ତମାନ ମଧ୍ୟ ଟିକିଏ ବେଳ ଅଛି । ସୂର୍ଯ୍ୟଦେବ ପଶ୍ଚିମ ଗଗନରେ ଦେଖାଯାଉଛନ୍ତି । ଠାକୁର ଭାବାବିଷ୍ଟ । ତାଙ୍କର ଏକ ଦିଗରେ ଉତ୍ତରବାହିନୀ ଗଙ୍ଗା—କିୟତ୍‌କ୍ଷଣ ହେଲା ଜୁଆର ଆସିଛି । ପଶ୍ଚାତ୍‌ରେ ପୁଷ୍ପୋଦ୍ୟାନ । ଦକ୍ଷିଣ ଦିଗରେ ନହବତ୍ ଓ ପଞ୍ଚବଟୀ ଦେଖାଯାଉଛି । ନିକଟରେ ନରେନ୍ଦ୍ର ଠିଆ ହୋଇଛନ୍ତି—ଗୀତ ଗାଉଛନ୍ତି । ସନ୍ଧ୍ୟା ହେଲା ।

ନରେନ୍ଦ୍ର ପ୍ରଭୃତି ଭକ୍ତମାନେ ପ୍ରଣାମ କରି ବିଦାୟ ଗ୍ରହଣ କରିଅଛନ୍ତି । ଠାକୁର ଘରକୁ ଆସିଛନ୍ତି ଓ ଜଗନ୍ମାତାଙ୍କର ନାମ ଓ ଚିନ୍ତା କରୁଛନ୍ତି । ଶ୍ରୀଯୁକ୍ତ ଯଦୁ ମଲ୍ଲିକ ପାର୍ଶ୍ୱର ଉଦ୍ୟାନକୁ ଆଜି ଆସିଛନ୍ତି । ଉଦ୍ୟାନକୁ ଆସିଲେ ପ୍ରାୟ ଠାକୁରଙ୍କୁ ଲୋକ ପଠାଇ ନେଇଯାଆନ୍ତି । ଆଜି ଲୋକ ପଠାଇଛନ୍ତି—ଠାକୁରଙ୍କୁ ଯିବାକୁ ହେବ । ଶ୍ରୀଯୁକ୍ତ ଅଧର ସେନ କଲିକତାରୁ ଆସି ଠାକୁରଙ୍କୁ ପ୍ରଣାମ କଲେ ।

## ଭକ୍ତଙ୍କ ସଙ୍ଗରେ ଶ୍ରୀଯୁକ୍ତ ଯଦୁ ମଲ୍ଲିକଙ୍କ ଉଦ୍ୟାନରେ । ଶ୍ରୀଗୌରାଙ୍ଗଙ୍କର ଭାବ ।

ଠାକୁର ଶ୍ରୀଯୁକ୍ତ ଯଦୁ ମଲ୍ଲିକଙ୍କ ଉଦ୍ୟାନକୁ ଯିବେ । ଲାଟୁଙ୍କୁ କହୁଛନ୍ତି—ଲଣ୍ଠନଟା ଜାଳ, —ଥରେ ଚାଲ ।

ଠାକୁର ଲାଟୁଙ୍କ ସଙ୍ଗରେ ଏକାକୀ ଯାଉଛନ୍ତି । ମାଷ୍ଟର ସାଙ୍ଗରେ ଅଛନ୍ତି ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—ତୁମେ ନାରାୟଣକୁ ଆଣିଲ ନାହିଁ କାହିଁକି ?

ମାଷ୍ଟର କହୁଛନ୍ତି—ମୁଁ କ'ଣ ସଙ୍ଗରେ ଯିବି ?

ଶ୍ରୀରାମକୃଷ୍ଣ—ଯିବ ? ଅଧର, ଶଶଧର ସବୁ ରହିଛନ୍ତି, —ଆଚ୍ଛା, ଆସ ।

ମୁଖାର୍ଜୀମାନେ ପଥରେ ଠିଆ ହୋଇଥିଲେ । ଠାକୁର ମାଷ୍ଟରଙ୍କୁ କହୁଛନ୍ତି—ସେମାନେ କେହି ଯିବେ ? (ମୁଖାର୍ଜୀମାନଙ୍କ ପ୍ରତି) ଆଚ୍ଛା, ବେଶ୍ ଚାଲ । ତାହାହେଲେ ଶୀଘ୍ର ଉଠି ଆସିପାରିବି ।

## ଚୈତନ୍ୟ ଲୀଳା ଓ ଯଦୁ ମଲ୍ଲିକ ସଙ୍ଗରେ । ଅଧରଙ୍କର କର୍ମର କଥା ।

ଠାକୁର ଯଦୁ ମଲ୍ଲିକଙ୍କ ବୈଠକଖାନାକୁ ଆସିଛନ୍ତି । ସୁସଜ୍ଜିତ ବୈଠକଖାନା । ଘର ବାରଣ୍ଡା କାଛରେ ଆଲୁଅ ଜଳୁଛି । ଶ୍ରୀଯୁକ୍ତ ଯଦୁଲାଲ ଛୋଟ ଛୋଟ ପିଲାମାନଙ୍କୁ

ନେଇ ଆନନ୍ଦରେ ଜଣେ ଦୁଇଜଣ ବନ୍ଧୁଙ୍କ ସହିତ ବସିଛନ୍ତି । ଖାନ୍‌ସମା ମାନେ କେହି ଅପେକ୍ଷା କରୁଛନ୍ତି, କେହି ହାତ ପଙ୍ଖା ନେଇ ପଙ୍ଖା କରୁଛନ୍ତି । ଯଦୁ ହସୁ ହସୁ ବସି ବସି ଠାକୁରଙ୍କୁ ସମ୍ଭାଷଣ କଲେ ଓ ଅନେକ ଦିନର ପରିଚିତ ପରି ବ୍ୟବହାର କରିବାକୁ ଲାଗିଲେ ।

ଯଦୁ ଗୌରାଙ୍ଗ ଭକ୍ତ । ସେ ଷ୍ଟାର୍ ଥିଏଟରରେ ଚୈତନ୍ୟଲୀଳା ଦେଖି ଆସିଛନ୍ତି । ଠାକୁରଙ୍କ ନିକଟରେ ଗଳ୍ପ କରୁଛନ୍ତି । କହିଲେ, ଚୈତନ୍ୟଲୀଳା ନୂତନ ଅଭିନୟ ହେଉଛି—ବଡ଼ ଚମତ୍କାର ହୋଇଛି ।

ଠାକୁର ଆନନ୍ଦର ସହିତ ଚୈତନ୍ୟଲୀଳା କଥା ଶୁଣୁଛନ୍ତି—ମଝିରେ ମଝିରେ ଯଦୁଙ୍କର ଗୋଟିଏ ଛୋଟ ପିଲାର ହାତ ଧରି ଖେଳ କରୁଛନ୍ତି । ମାଷ୍ଟର ଓ ମୁଖାର୍ଜୀ ଭ୍ରାତାମାନେ ତାଙ୍କ ନିକଟରେ ବସିଛନ୍ତି ।

ଶ୍ରୀଯୁକ୍ତ ଅଧର ସେନ କଲିକତା ମୁନିସ୍‌ପାଲିଟିର ଭାଇସ୍-ଚେୟାରମ୍ୟାନ୍ କର୍ମ ପାଇଁ ଚେଷ୍ଟା କରିଥିଲେ । ସେ କର୍ମର ମାସିକ ବେତନ ହଜାରେ ଟଙ୍କା । ଅଧର ଡେପୁଟି ମାଜିଷ୍ଟ୍ରେଟ୍ । ତିନିଶ ଟଙ୍କା ଦରମା ପାଆନ୍ତି । ଅଧରଙ୍କର ବୟସ ତିରିଶ ବର୍ଷ ।

ଶ୍ରୀରାମକୃଷ୍ଣ (ଯଦୁଙ୍କ ପ୍ରତି)—କାହିଁ ଅଧରଙ୍କର କର୍ମ ହେଲାନାହିଁ ?

ଯଦୁ ଓ ତାଙ୍କର ବନ୍ଧୁମାନେ—ଅଧରଙ୍କର କର୍ମର ବୟସ ଯାଇନାହିଁ । କିୟତ୍‌କ୍ଷଣ ପରେ ଯଦୁ କହୁଛନ୍ତି— 'ତୁମେ ଟିକିଏ ତାଙ୍କ ନାମ କର ।' ଠାକୁର ଗୌରାଙ୍ଗଙ୍କର ଭାବ ଗୀତ ଛଳରେ କହୁଛନ୍ତି—

ଗୀତ—ଆମାର ଗୌର ନାଚେ ।
ନାଚେ ସଂକୀର୍ତ୍ତନେ, ଶ୍ରୀବାସ ଅଙ୍ଗନେ, ଭକ୍ତଗଣ ସଙ୍ଗେ ।
ଗୀତ—ଆମାର ଗୌର ରତନ ।
ଗୀତ—ଗୌର ଚାହେ ବୃନ୍ଦାବନ ପାନେ,
ଧାରା ବହେ ଦୁନୟନେ ! (ଭାବ ହବେ ବୈକି ରେ)
(ଭାବନିଧି ଶ୍ରୀଗୌରାଙ୍ଗେର) (ଭାବେ ହାସେ କାନ୍ଦେ ନାଚେ ଗାୟ)
(ବନ ଦେଖେ ବ୍ରିନ୍ଦାବନ ଭାବେ) (ସମୁଦ୍ର ଦେଖେ ଶ୍ରୀଯମୁନା ଭାବେ)
(ଗୌର ଆପନାର ପାୟ ଆପନି ଧରେ) (ଯାର ଅନ୍ତଃ କ୍ରିଷ୍ଣ ବହି ଗୌର)
ଗୀତ—ଆମାର ଅଙ୍ଗ କେନ ଗୌର, (ଓ ଗୌର ହଲରେ !)
କି କରଲେ ରେ ଧନୀ, ଅକାଲେ ସକାଲ କୈଲେ
ଅକାଲେତେ ବରଣ ଧରାଲେ ।
ଏଖନ ତ, ଗୌର ହତେ ଦିନ, ବାକି ଆଛେ !
ଏଖନ ତ, ଦ୍ୱାପର ଲୀଳା, ଶେଷ ହୟନାଇ !
ଏକି ହ'ଲରେ ! କୋକିଲ ମୟୂର, ସକଲଇ ଗୌର ।
ଯେ ଦିକେ ଫେରାଇ ଆଖି (ଏକି ହ'ଲରେ) !
ଏକି, ଏକି, ଗୌରମୟ ସକଲ ଦେଖି ।।

ତାଇ ବୁଝି ମଥୁରାୟ ଏଲୋ, ତାଇତେ ଅଙ୍ଗ ବୁଝି ଗୌର ହ'ଲ !
ଧନୀ କୁମୁରିୟେ ପୋକା ଛିଲ, ତାଇତେ ଆପନାର ବରଣ ଧରାଇଲ !
ଏଖନି ଯେ ଅଙ୍ଗ କାଲ ଛିଲ, ଦେଖତେ ଦେଖତେ ଗୌର ହ'ଲ ?
ରାଇ ଭେବେ କି ରାଇ ହଲାମ୍ । (ଏକି ରେ)
ଯେ ରାଧାମନ୍ତ୍ର ଜପ ନା କରେ, ରାଇ ଧନୀ କି ଆପନାର ବରଣ ଧରାୟ ତାରେ !
ମଥୁରାୟ ଆମି, କି ନବଦ୍ୱୀପେ ଆମି, କିଛୁ ଠାଓରାତେ ନାରି ରେ ।
ଏଖନଓ ତ, ମହାଦେବ ଅଦ୍ୱୈତ ହୟ ନାଇ (ଆମାର ଅଙ୍ଗ କେନ୍ ଗୌର) !
ଏଖନଓ ତ, ବଲାଇ ଦାଦା ନିତାଇ ହୟ ନାଇ, ବିଶାଖା ରାମାନନ୍ଦ ହୟ ନାଇ !
ଏଖନଓ ତ, ବ୍ରହ୍ମା ହରିଦାସ ହୟ ନାଇ, ଏଖନଓ ତ, ନାରଦ ଶ୍ରୀବାସ ହୟ ନାଇ ।
ଏଖନଓ ତ, ମା ଯଶୋଦା ଶଚୀ ହୟ ନାଇ ।
ଏକାଲ କେନ ଆମି ଗୌର (ଯଖନ ବଲାଇ ଦାଦା ନିତାଇ ହୟ ନାଇ ତଖନ)
ତବେ ତାଇ ବୁଝି ମଥୁରାୟ ଏଲୋ, ତାଇତେ କି ଅଙ୍ଗ ଆମାର ଗୌର ହ'ଲ ।
(ଅତଏବ ବୁଝି ଆମି ଗୌର) ଏଖନଓ ତ, ପିତା ନନ୍ଦ ଜଗନ୍ନାଥ ହୟ ନାଇ ।
ଏଖନଓ ତ, ଶ୍ରୀରାଧିକା ଗଦାଧର ହୟ ନାଇ ! ଆମାର ଅଙ୍ଗ କେନ ଗୌର ହ'ଲ ।।

## (୫)

## ଶ୍ରୀଯୁକ୍ତ ରାଖାଲଙ୍କ ପାଇଁ ଚିନ୍ତା — ଯଦୁ ମଲ୍ଲିକ — ଭୋଲାନାଥଙ୍କର ଇଜାହାର ।

ଗୀତ ସମାପ୍ତ ହେଲାରୁ ମୁଖାର୍ଜୀମାନେ ଗାତ୍ରୋତ୍‌ଥାନ କଲେ । ଠାକୁର ମଧ ସଙ୍ଗେ ସଙ୍ଗେ ଉଠିଲେ । କିନ୍ତୁ ଭାବାବିଷ୍ଟ । ଘର ବାରଣ୍ଡାରେ ଆସି ଏକାଥରକେ ସମାଧିସ୍ଥ ହୋଇ ଦଣ୍ଡାୟମାନ ! ବାରଣ୍ଡାରେ ଅନେକଗୁଡ଼ିଏ ଆଲୁଅ ଜଳୁଥିଲା । ଉଦ୍ୟାନର ଦରୱାନ ଭକ୍ତ ଲୋକ । ଠାକୁରଙ୍କୁ ମଝିରେ ମଝିରେ ନିମନ୍ତ୍ରଣ କରି ସେବା କରନ୍ତି । ଠାକୁର ସମାଧିସ୍ଥ ହୋଇ ଠିଆ ହୋଇଛନ୍ତି । ଦରୱାନ ଆସି ଠାକୁରଙ୍କୁ ପଙ୍ଖା କରୁଛନ୍ତି । ବଡ଼ ହାତ ପଙ୍ଖା ।

ଉଦ୍ୟାନର ରକ୍ଷକ ଶ୍ରୀଯୁକ୍ତ ରତନ ଆସି ପ୍ରଣାମ କଲେ । ଠାକୁର ପ୍ରକୃତିସ୍ଥ ହୋଇଛନ୍ତି । ନାରାୟଣ ! ନାରାୟଣ ! — ଏହି ନାମ ଉଚ୍ଚାରଣ କରି ସେମାନଙ୍କୁ ସମ୍ଭାଷଣ କଲେ ।

ଠାକୁର ଭକ୍ତମାନଙ୍କ ସଙ୍ଗରେ ମନ୍ଦିରର ସଦର ଫାଟକ ପାଖକୁ ଆସିଛନ୍ତି । ଇତିମଧ୍ୟରେ ମୁଖାର୍ଜୀମାନେ ଫାଟକ ପାଖରେ ଅପେକ୍ଷା କରୁଛନ୍ତି ।

ଅଧର ଠାକୁରଙ୍କୁ ଖୋଜୁଥିଲେ ।

ମୁଖାର୍ଜୀ (ସହାସ୍ୟ) — ମହେନ୍ଦ୍ରବାବୁ ପଳାଇ ଆସିଛନ୍ତି ।

ଶ୍ରୀରାମକୃଷ୍ଣ (ସହାସ୍ୟ, ମୁଖାର୍ଜୀଙ୍କ ପ୍ରତି)—ଏହାଙ୍କ ସଙ୍ଗରେ ତୁମେମାନେ ସର୍ବଦା ଦେଖାକର, ଆଉ କଥାବାର୍ତ୍ତା କର ।

ପ୍ରିୟ ମୁଖାର୍ଜୀ (ସହାସ୍ୟ)—ଏ ବର୍ତ୍ତମାନ ଆମ୍ଭମାନଙ୍କ ପାଇଁ ମାଷ୍ଟରି କରିବେ ।

ଶ୍ରୀରାମକୃଷ୍ଣ—ଗଞ୍ଜାଖୋରର ସ୍ୱଭାବ ଗଞ୍ଜାଖୋର ଦେଖିଲେ ଆନନ୍ଦ କରେ । ଅମିର୍ ଆସିଲେ କଥା କହେ ନାହିଁ । କିନ୍ତୁ ଜଣେ ଲକ୍ଷ୍ମୀଛଡ଼ା ଗଞ୍ଜାଖୋର ଆସିଲେ, ହୁଏତ ଆଲିଙ୍ଗନ କରିବ । (ସମସ୍ତଙ୍କର ହାସ୍ୟ) ।

ଠାକୁର ଉଦ୍ୟାନ ପଥଦେଇ ପଶ୍ଚିମାଭିମୁଖ ହୋଇ ନିଜଘରକୁ ଆସୁଛନ୍ତି । ପଥରେ କହୁଅଛନ୍ତି—'ଯଦୁ ନୈଷ୍ଠିକ ହିନ୍ଦୁ । ଭାଗବତରୁ ଅନେକ କଥା କହେ ।'

ମଣି କାଳୀ ମନ୍ଦିରକୁ ଆସି ପ୍ରଣାମାଦି କରି ଚରଣାମୃତ ପାନ କରୁଅଛନ୍ତି । ଠାକୁର ଆସି ଉପସ୍ଥିତ—ମା'ଙ୍କୁ ଦର୍ଶନ କରିବେ ।

ରାତି ପ୍ରାୟ ନଅଟା ହେଲାଣି । ମୁଖାର୍ଜୀମାନେ ପ୍ରଣାମ କରି ବିଦାୟ ଗ୍ରହଣ କଲେ । ଅଧର ଓ ମାଷ୍ଟର ତଳେ ବସିଛନ୍ତି । ଠାକୁର ଅଧରଙ୍କ ସହିତ ଶ୍ରୀଯୁକ୍ତ ରାଖାଲଙ୍କ କଥା କହୁଛନ୍ତି ।

ରାଖାଲ ବୃନ୍ଦାବନରେ ଅଛନ୍ତି—ବଳରାମଙ୍କ ସଙ୍ଗରେ । ପତ୍ରଦ୍ୱାରା ସମ୍ବାଦ ଆସିଥିଲା ତାଙ୍କର ବେରାମ ହୋଇଛି । ଦୁଇ ତିନିଦିନ ହେଲା ଠାକୁର ରାଖାଲଙ୍କ ବେରାମ ଶୁଣି ଏତେ ଚିନ୍ତିତ ହୋଇଥିଲେ ଯେ, ମଧ୍ୟାହ୍ନ ସେବା ସମୟରେ 'କଅଣ ହେବ !' କହି ହାଜରାଙ୍କ ପାଖରେ ବାଳକ ପରି କାନ୍ଦିଥିଲେ । ଅଧର ରାଖାଲଙ୍କୁ ରେଜିଷ୍ଟରୀ କରି ଚିଠି ଲେଖିଥିଲେ, କିନ୍ତୁ ଏପର୍ଯ୍ୟନ୍ତ ଚିଠିର ପ୍ରାପ୍ତି ସ୍ୱୀକାର ପାଇନାହାନ୍ତି ।

ଶ୍ରୀରାମକୃଷ୍ଣ—ନାରାୟଣ ଚିଠି ପାଇଲେ ଆଉ ତୁମେ ଚିଠିର ଜବାବ୍ ପାଇଲ ନାହିଁ ?

ଅଧର—ଆଜ୍ଞା, ବର୍ତ୍ତମାନ ମଧ୍ୟ ପାଇ ନାହିଁ ।

ଶ୍ରୀରାମକୃଷ୍ଣ—ଆଉ ମାଷ୍ଟରଙ୍କୁ ଲେଖିଛି ।

ଠାକୁରଙ୍କର ଚୈତନଲୀଳା ଦେଖିବାର କଥା ହେଉଛି ।

ଶ୍ରୀରାମକୃଷ୍ଣ (ହସି ହସି ଭକ୍ତମାନଙ୍କ ପ୍ରତି)—ଯଦୁ କହିଥିଲା ଏକଟଙ୍କାର ଆସନରୁ ବେଶ୍ ଦେଖାଯାଏ ଶସ୍ତା ।

''ଥରେ ଆମମାନଙ୍କୁ ପେନେଟିକୁ ନେଇଯିବାର କଥା ହୋଇଥିଲା—ଯଦୁ ଆମ୍ଭମାନଙ୍କୁ ଚଳନ୍ତି ନୌକାରେ ଚଢ଼ିବାକୁ କହିଥିଲା । (ସମସ୍ତଙ୍କର ହାସ୍ୟ) ।''

''ଆଗେ ଈଶ୍ୱରଙ୍କର କଥା ଟିକିଏ ଶୁଣୁଥିଲେ । ଜଣେ ଭକ୍ତ ତାହା ପାଖକୁ ଯାତାୟାତ କରୁଥିଲା—ବର୍ତ୍ତମାନ ଆଉ ତାକୁ ଦେଖିବାକୁ ପାଏନାହିଁ । କେତେ ମାସ ହେବ ତା' ପାଖରେ ସର୍ବଦା ରହନ୍ତି—ସେହିମାନେ ଆହୁରି ଖରାପ କରୁଛନ୍ତି ।''

''ବଡ଼ ହିସାବୀ ! ଯିବାମାତ୍ରେ କହେ କେତେ ଭଡ଼ା । ମୁଁ କହେ, ତୁମର ଆଉ

ଶୁଣିବା ଦରକାର ନାହିଁ, ତୁମେ ଅଢ଼େଇ ଟଙ୍କା ଦିଅ । ସେଥିରେ ଚୁପ୍ ହୋଇ ରହେ ଆଉ ଅଢ଼େଇ ଟଙ୍କା ଦିଏ । (ସମସ୍ତଙ୍କର ହାସ୍ୟ) ।''

ଠାକୁର ମନ୍ଦିରର ଦକ୍ଷିଣ ପ୍ରାନ୍ତରେ ପାଇଖାନା ପ୍ରସ୍ତୁତ ହୋଇଛି । ସେଥିପାଇଁ ଶ୍ରୀଯୁକ୍ତ ମଲ୍ଲିକଙ୍କ ସହିତ ବିବାଦ ଚାଲୁଛି । ପାଇଖାନା ପାଖରେ ଯଦୁର ଉଦ୍ୟାନ ।

ଉଦ୍ୟାନର ରକ୍ଷକ ଶ୍ରୀଯୁକ୍ତ ଭୋଳାନାଥ ବିଚାରପତିଙ୍କ ପାଖରେ ଇଜାହାର ଦେବା ପରଠାରୁ ତାଙ୍କର ବଡ଼ ଭୟ ହୋଇଛି । ସେ ଠାକୁରଙ୍କୁ ଜଣାଇଥିଲେ । ଠାକୁର କହିଥିଲେ ଅଧର ଡେପୁଟି ମାଜିଷ୍ଟ୍ରେଟ୍, ସେ ଆସିଲେ ତାଙ୍କୁ ପଚାର । ଶ୍ରୀଯୁକ୍ତ ରାମ ଚକ୍ରବର୍ତ୍ତୀ ଭୋଳାନାଥଙ୍କୁ ସଙ୍ଗରେ ଧରି ଠାକୁରଙ୍କ ପାଖକୁ ଆଣିଛନ୍ତି ଓ ସମସ୍ତ କହୁଛନ୍ତି— 'ଏହାଙ୍କର ଇଜାହାର ଦେଇ ଭୟ ହୋଇଛି' ଇତ୍ୟାଦି ।

ଠାକୁର ଚିନ୍ତିତ ହେଲେ ଓ ଅଧରଙ୍କୁ ସବୁକଥା କହିବାକୁ କହିଲେ । ଅଧର ସମସ୍ତ ଶୁଣି କହୁଛନ୍ତି, —ସେ କିଛି ନୁହେଁ, ଟିକିଏ କଷ୍ଟ ହେବ । ଠାକୁରଙ୍କର ଯେପରି ଗୁରୁତର ଚିନ୍ତା ଦୂର ହେଲା ।

ରାତି ହୋଇଛି ଅଧର ବିଦାୟ ଗ୍ରହଣ କରିବେ, ପ୍ରଣାମ କଲେ ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—ନାରାୟଣକୁ ଆଣିବ ।



# ଅଷ୍ଟମ ପରିଚ୍ଛେଦ

## (୧)

### ଦକ୍ଷିଣେଶ୍ୱରରେ ମହେନ୍ଦ୍ର, ରାଖାଲ, ରାଧିକା ଗୋସ୍ୱାମୀ ପ୍ରଭୃତି ଭକ୍ତଙ୍କ ସଙ୍ଗରେ ।

### ମହେନ୍ଦ୍ରାଦିଙ୍କ ପ୍ରତି ଉପଦେଶ । କପ୍ତାନଙ୍କର ଭକ୍ତି ଓ ପିତାମାତାଙ୍କର ସେବା ।

ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱର କାଳୀମନ୍ଦିରରେ ସେହି ପୂର୍ବ ପରିଚିତ ଘରେ ଭକ୍ତଙ୍କ ସଙ୍ଗରେ ବସିଛନ୍ତି । ଶୁକ୍ରବାର ଚତୁର୍ଥୀ ଆଶ୍ୱିନ, ସମୟ ଦୁଇଟା । ଆଜି ଭାଦ୍ରବ ଅମାବାସ୍ୟା, ମହାଳୟା । ଶ୍ରୀଯୁକ୍ତ ମହେନ୍ଦ୍ର ମୁଖୋପାଧ୍ୟାୟ ଓ ତାଙ୍କର ଭ୍ରାତା ଶ୍ରୀଯୁକ୍ତ ପ୍ରିୟ ମୁଖୋପାଧ୍ୟାୟ, ମାଷ୍ଟର, ବାବୁରାମ, ହରିଶ, କିଶୋରୀ, ଲାଟୁ କେହି ତଳେ ବସିଛନ୍ତି, କେହି ଠିଆ ହୋଇଛନ୍ତି, — କେହି ବା ଘର ଭିତରକୁ ଯାତାୟାତ କରୁଛନ୍ତି । ଶ୍ରୀଯୁକ୍ତ ହାଜରା ବାରଣ୍ଡାରେ ବସିଛନ୍ତି । ରାଖାଲ ବଳରାମଙ୍କ ସହିତ ବୃନ୍ଦାବନରେ ଅଛନ୍ତି ।

ଶ୍ରୀରାମକୃଷ୍ଣ (ମହେନ୍ଦ୍ରାଦି ଭକ୍ତମାନଙ୍କ ପ୍ରତି)— କଲିକତାକୁ କପ୍ତାନଙ୍କ ଘରକୁ ଯାଇଥିଲି । ଫେରି ଆସିବାକୁ ଅନେକ ରାତି ହୋଇଗଲା ।

''କପ୍ତାନର କିପରି ସ୍ୱଭାବ ! କିପରି ଭକ୍ତି ! ଛୋଟ ଲୁଗା ଖଣ୍ଡିଏ ପିନ୍ଧି ଆଳତି କରେ । ତିନି ବତୀବାଲା ପ୍ରଦୀପରେ ଆଳତି କରେ, ତାହାପରେ ପୁଣି ଏକ ବତୀବାଲା ପ୍ରଦୀପରେ । ପୁଣି କର୍ପୂରର ଆଳତି ।''

''ସେ ସମୟରେ କଥା କହେ ନାହିଁ । ମୋତେ ଠାରି ଆସନରେ ବସିବାକୁ କହିଲା ।''

''ପୂଜା କରିବା ସମୟରେ ଚକ୍ଷୁର ଭାବ ଠିକ୍ ଯେପରି ବିରୁଡ଼ି ମାରିଛି ।''

''ଏଣେ ଗୀତ ଗାଇପାରେ ନାହିଁ । କିନ୍ତୁ ସୁନ୍ଦର ସ୍ତବ ପାଠ କରେ ।''

''ତାହାର ମାଆଙ୍କ ନିକଟରେ ତଳେ ବସେ । ମା' ଆସନ ଉପରେ ବସିବେ ।''

''ବାପ ଇଂରେଜଙ୍କର ହାବିଲଦାର । ଯୁଦ୍ଧକ୍ଷେତ୍ରରେ ଏକ ହାତରେ ବନ୍ଧୁକ ଆଉ ଏକ ହାତରେ ଶିବପୂଜା କରେ । ଖାନ୍‌ସାମା ଶିବ ତିଆରି କରିଦେଉଛି । ଶିବପୂଜା ନକରି ଜଳ ଖାଇବ ନାହିଁ । ଛଅ ହଜାର ଟଙ୍କା ଦରମା ବର୍ଷକେ ।''

''ମାଆଙ୍କୁ କାଶୀକୁ ମଝିରେ ମଝିରେ ପଠାଏ । ସେଠାରେ ବାର ତେରଜଣ ମା'ଙ୍କ ସେବାରେ ରୁହନ୍ତି । ଅନେକ ଖରଚ । ବେଦାନ୍ତ , ଗୀତା, ଭାଗବତ, — କପ୍ତାନର କଣ୍ଠସ୍ଥ ।''

''ସେ କହେ, କଲିକତାର ବାବୁମାନେ ମ୍ଳେଚ୍ଛାଚାର ।''

''ଆଗେ ହଠଯୋଗ କରୁଥିଲା— ତେଣୁ ମୋର ସମାଧି କି ଭାବାବସ୍ଥା ହେଲେ

ମୁଣ୍ଡରେ ହାତ ବୁଲାଇଦିଏ ।''

''କପ୍ତାନର ସ୍ତ୍ରୀ—ତା'ର ପୁଣି ଅଲଗା ଠାକୁର, ଗୋପାଳ । ଏଥର ସେତେ କୃପଣ ଦେଖିଲି ନାହିଁ । ସେ ବି ଗୀତା ଫିତା ଜାଣେ । ସେମାନଙ୍କର କି ଭକ୍ତି ! —ମୁଁ ଯେଉଁଠାରେ ଖାଇବି ସେହିଠାରେ ମୁହଁ ଧୋଇବି । ଖଡ଼ିକା କାଠିଟା ପର୍ଯ୍ୟନ୍ତ !''

''ଛେଳି ମାଂସର ସନ୍ତୁଳା କରେ—କପ୍ତାନ କହେ ପନ୍ଦର ଦିନ ରହେ—କିନ୍ତୁ କପ୍ତାନଙ୍କର ସ୍ତ୍ରୀ କହେ—'ନାହିଁ ନାହିଁ, ସାତ୍ ରୋଜ' । କିନ୍ତୁ ବେଶ୍ ଲାଗିଲା । ବ୍ୟଞ୍ଜନ ସବୁ ଟିକିଏ ଟିକିଏ । ମୁଁ ବେଶୀ ଖାଏ ବୋଲି, ଆଜିକାଲି ମୋତେ ବେଶୀ ଦିଏ ।''

''ତାହାପରେ ଖାଇବା ପରେ, ହୁଏତ କପ୍ତାନ, ନୋହିଲେ ତାଙ୍କର ସ୍ତ୍ରୀ ପଙ୍ଖା କରିବେ ।''

## ଜଙ୍ଗ ବାହାଦୂରଙ୍କ ପିଲାମାନଙ୍କର କପ୍ତାନଙ୍କ ସଙ୍ଗରେ ଆଗମନ ୧୮୭୫-୭୬—ନେପାଳୀ ବ୍ରହ୍ମଚାରିଣୀଙ୍କର ଗୀତଗୋବିନ୍ଦ ବୋଲା 'ମୁଁ ଈଶ୍ୱରଙ୍କର ଦାସୀ' ।

''ସେମାନଙ୍କର କିନ୍ତୁ ଭାରି ଭକ୍ତି,—ସାଧୁମାନଙ୍କୁ ବଡ଼ ସମ୍ମାନ । ପଶ୍ଚିମରେ ଲୋକ- ମାନଙ୍କର ସାଧୁଭକ୍ତି ବେଶୀ । ଜଙ୍ଗ ବାହାଦୂରଙ୍କର ପିଲାମାନେ ଆଉ ପୁତୁରା କର୍ଣ୍ଣେଲ ଏଠାକୁ ଆସିଥିଲେ । କର୍ଣ୍ଣେଲ ଯେତେବେଳେ ଆସିଲା ପ୍ୟାଣ୍ଟ ଖୋଲିଲା, ଯେପରି କେତେ ଭୟ ।''

''କପ୍ତାନଙ୍କ ସଙ୍ଗରେ ଜଣେ ତାଙ୍କ ଦେଶର ସ୍ତ୍ରୀ ଲୋକ ଆସିଥିଲେ । ଖୁବ୍ ଭକ୍ତି,—ବିବାହ ହୋଇନାହିଁ । ଗୀତଗୋବିନ୍ଦ କଣ୍ଠସ୍ଥ । ତାଙ୍କର ଗୀତ ଶୁଣିବାକୁ ଦ୍ୱାରିକାବାବୁ* ଆସି ବସିଥିଲେ । ମୁଁ କହିଲି, ଏମାନେ ଶୁଣିବାକୁ ଚାହୁଁଛନ୍ତି, ଭଲ ଲୋକ । ଯେତେବେଳେ ଗୀତଗୋବିନ୍ଦ ଗାଇଲେ ସେତେବେଳେ ଦ୍ୱାରିକାବାବୁ ରୁମାଲରେ ଚକ୍ଷୁର ଜଳ ପୋଛିବାକୁ ଲାଗିଲେ । ବିବାହ କରି ନାହଁ କାହିଁକି, ପ୍ରଶ୍ନ କରିବାରେ କହିଲେ, 'ଈଶ୍ୱରଙ୍କର ଦାସୀ, ପୁଣି ଆଉ କାହାର ଦାସୀ ହେବି ?' ଆଉ, ସମସ୍ତେ ତାଙ୍କୁ ଦେବୀ ବୋଲି ଖୁବ୍ ମାନନ୍ତି—ଯେପରି ପୋଥିରେ (ଶାସ୍ତ୍ରରେ) ଅଛି ।''

ଶ୍ରୀରାମକୃଷ୍ଣ (ମହେନ୍ଦ୍ରାଦିଙ୍କ ପ୍ରତି)—ଆପଣମାନେ ଯେ ଆସୁଛନ୍ତି, ସେଥିରେ କିଛି କଅଣ ଉପକାର ହେଉଛି ? କିଛି ଉପକାର ହେଉଛି ଶୁଣିଲେ, ମନଟା ଖୁବ୍ ଭଲ

---

*ଦ୍ୱାରିକାବାବୁ ମଥୁରଙ୍କର ଜ୍ୟେଷ୍ଠ ପୁତ୍ର । ୧୮୭୭ ଖ୍ରୀଷ୍ଟାବ୍ଦରେ ପ୍ରାୟ ୪୦ ବର୍ଷ ବୟସରେ ମୃତ୍ୟୁ ହୁଏ । କପ୍ତାନ ପ୍ରଥମ ଆସନ୍ତି ୧୮୭୫-୭୬ ଖ୍ରୀଷ୍ଟାବ୍ଦ । ଅତଏବ ଏହି ଗୀତଗୋବିନ୍ଦ ଗାଇବା ୧୮୭୫ ଓ ୧୮୭୬ ଖ୍ରୀଷ୍ଟାବ୍ଦ ମଧ୍ୟରେ ।

ରହେ । (ମାଷ୍ଟରଙ୍କ ପ୍ରତି) ଏଠାକୁ ଲୋକ ଆସନ୍ତି କାହିଁକି ? ସେପରି ଲେଖାପଢ଼ା ତ ନାହିଁ ।

ମାଷ୍ଟର-ଆଜ୍ଞା, କୃଷ୍ଣ ଯେତେବେଳେ ନିଜେ ଗୋପାଳ ଗୋରୁ ଗାଈ ହେଲେ (ବ୍ରହ୍ମା ହରଣ କରିବା ପରେ) ସେତେବେଳେ ଗଉଡ଼ମାନଙ୍କର ମାଆମାନେ ନୂତନ ଗୋପାଳମାନଙ୍କୁ ପାଇ ଯଶୋଦାଙ୍କ ଘରକୁ ଆଉ ଆସିଲେ ନାହିଁ । ଗାଈମାନେ ମଧ୍ୟ ହମ୍ବା ରାବରେ ଏହି ନୂତନ ବାଛୁରୀମାନଙ୍କ ପଛେ ପଛେ ଯିବାକୁ ଲାଗିଲେ ।

ଶ୍ରୀରାମକୃଷ୍ଣ—ସେଥିରେ କ'ଣ ହେଲା ?

ମାଷ୍ଟର—ଈଶ୍ୱର ନିଜେ ହିଁ ସବୁ ହୋଇଛନ୍ତି କି ନା, ତେଣୁ ଏତେ ଆକର୍ଷଣ । ଈଶ୍ୱର ସତ୍ତା ରହିଲେ ହିଁ ମନ ଟାଣେ ।

## କୃଷ୍ଣଲୀଳାର ବ୍ୟାଖ୍ୟା । ଗୋପୀ ପ୍ରେମ । ବସ୍ତ୍ରହରଣର ଅର୍ଥ ।

ଶ୍ରୀରାମକୃଷ୍ଣ—ଏ ଯୋଗମାୟାର ଆକର୍ଷଣ—ଭେଳିକି ଲଗାଇ ଦିଅନ୍ତି । ଜଟିଳାଙ୍କ ଭୟରେ ରାଧିକା ସୁବଳ ବେଶରେ କୋଳରେ ବାଛୁରୀ ଧରି ଯାଉଛନ୍ତି, ଯେତେବେଳେ ଯୋଗମାୟାଙ୍କର ଶରଣାଗତ ହେଲେ ସେତେବେଳେ ଜଟିଳା ପୁଣି ଆଶୀର୍ବାଦ କଲେ ।

### ହରିଲୀଳା ସବୁ ଯୋଗମାୟାଙ୍କର ସାହାଯ୍ୟରେ !

"ଗୋପୀମାନଙ୍କର ଶ୍ରଦ୍ଧା—ପରକୀୟା ରତି । କୃଷ୍ଣଙ୍କ ପାଇଁ ଗୋପୀମାନଙ୍କର ପ୍ରେମୋନ୍ମାଦ ହୋଇଥିଲା । ନିଜ ସ୍ୱାମୀଙ୍କ ପାଇଁ ଏତେ ହୁଏ ନାହିଁ । ଯଦି କେହି କହେ, ଆରେ ତୋର ସ୍ୱାମୀ ଆସିଛି ! ତାହାହେଲେ କହେ, 'ଆସିଛି ଆସୁହେ:ଖିଆପିଆ କରିବ !' କିନ୍ତୁ ଯଦି ପର ପୁରୁଷର କଥା ଶୁଣେ—ରସିକ, ସୁନ୍ଦର, ରସ ପଣ୍ଡିତ,—ଦେଖିବାକୁ ଛୁଟିଯିବ—ଆଉ ଆଡୁଆଳରେ ଥାଇ ଉଙ୍କି ମାରି ଦେଖିବ ।"

"ଯଦି ଧରିବସ ଯେ ତାଙ୍କୁ ଦେଖିନାହିଁ, ତାଙ୍କ ଉପରେ କିପରି ଗୋପୀଙ୍କ ପରି ଟାଣ ହେବ ?" ନା, ଶୁଣିଲେ ମଧ୍ୟ ସେପରି ଟାଣ ହୁଏ—

"ନା ଜେନେ ନାମ ଶୁନେ କାନେ ମନ ଗିୟେ ତାୟ ଲିପ୍ତ ହଲୋ ।"

ଜଣେ ଭକ୍ତ—ଆଜ୍ଞା, ବସ୍ତ୍ରହରଣ ମାନେ କ'ଣ ?

ଶ୍ରୀରାମକୃଷ୍ଣ—ଅଷ୍ଟପାଶ,—ଗୋପୀମାନଙ୍କର ସବୁ ପାଶ ଯାଇଥିଲା, କେବଳ ଲଜ୍ଜା ବାକି ଥିଲା । ତେଣୁ ସେ ପାଶଟା ବି ଘୁଞ୍ଚାଇ ଦେଲେ । ଈଶ୍ୱର ଲାଭ ହେଲେ ସବୁପାଶ ଚାଲିଯାଏ ।

## ଯୋଗଭ୍ରଷ୍ଟର ଭୋଗାନ୍ତରେ ଈଶ୍ୱର ଲାଭ ।

ଶ୍ରୀରାମକୃଷ୍ଣ (ମହେନ୍ଦ୍ର ମୁଖାର୍ଜୀ ପ୍ରଭୃତି ଭକ୍ତମାନଙ୍କ ପ୍ରତି)—ଈଶ୍ୱରଙ୍କ ଉପରେ ଟାଣ ସମସ୍ତଙ୍କର ହୁଏ ନାହିଁ, ଆଧାର ବିଶେଷରେ ହୁଏ । ସଂସ୍କାର ଥିଲେ ହୁଏ । ତାହା

ନ ହେଲେ ବାଗବଜାରରେ ଏତେ ଲୋକ ଥିଲେ କେବଳ ତୁମେମାନେ ଏଠାକୁ ଆସିଲ କାହିଁକି ? ଅପଦାର୍ଥ ଲୋକଙ୍କର ହୁଏ ନାହିଁ । ମଳୟ ପର୍ବତର ପବନ ଲାଗିଲେ ସବୁଗଛ ଚନ୍ଦନ ହୁଏ, କେବଳ ଶିମୂଳୀ, ଅଶ୍ୱତ୍ଥ, ବଟ ଆଉ କେତେଟା ଗଛ—ଚନ୍ଦନ ହୁଏ ନାହିଁ ।

"ତୁମମାନଙ୍କର ଟଙ୍କା କଉଡ଼ିର ଅଭାବ ନାହିଁ । ଯୋଗଭ୍ରଷ୍ଟ ହେଲେ ଭାଗ୍ୟବାନଙ୍କ ଘରେ ଜନ୍ମ ହୁଏ, ତାହାପରେ ପୁଣି ଈଶ୍ୱର ଲାଭ ପାଇଁ ସାଧନା କରେ ।"

ମହେନ୍ଦ୍ର ମୁଖାର୍ଜୀ—କାହିଁକି ଯୋଗଭ୍ରଷ୍ଟ ହୁଏ ?

ଶ୍ରୀରାମକୃଷ୍ଣ—ପୂର୍ବଜନ୍ମରେ ଈଶ୍ୱର ଚିନ୍ତା କରୁ କରୁ ହୁଏତ ହଠାତ୍ ଭୋଗ କରିବାର ଲାଳସା ହୋଇଛି । ଏପରି ହେଲେ ଯୋଗଭ୍ରଷ୍ଟ ହୁଏ । ଆଉ ପରଜନ୍ମରେ ସେହିପରି ଜନ୍ମ ହୁଏ ।

ମହେନ୍ଦ୍ର ମୁଖାର୍ଜୀ—ତାହାହେଲେ ଉପାୟ ?

ଶ୍ରୀରାମକୃଷ୍ଣ—କାମନା ଥାଉ ଥାଉ—ଭୋଗଲାଳସା ଥାଉ ଥାଉ—ମୁକ୍ତି ନାହିଁ । ତେଣୁ ଖାଇବା ପିନ୍ଧିବା ରମଣ ଫମଣ ସବୁ କରିନେବ । (ସହାସ୍ୟ) ତୁମେ କ'ଣ କହୁଛ—ସ୍ୱଦାରରେ ନା ପର ଦାରରେ ? (ମାଷ୍ଟର, ମୁଖାର୍ଜୀ ଏମାନେ ହସୁଛନ୍ତି) ।

## ( ୨ )

## ଶ୍ରୀମୁଖ କଥିତ ଚରିତାମୃତ । ଠାକୁରଙ୍କ ନାନା ଇଚ୍ଛା । ପୂର୍ବକଥା— ପ୍ରଥମରେ କଲିକତାରେ ନାଥଙ୍କର ଉଦ୍ୟାନରେ । ଗଙ୍ଗାସ୍ନାନ ।

ଶ୍ରୀରାମକୃଷ୍ଣ—ଭୋଗଲାଳସା ଥିବା ଭଲ ନୁହେଁ । ମୁଁ ତେଣୁ ଯାହା ଯାହା ମନରେ ଉଠେ ସଙ୍ଗେ ସଙ୍ଗେ କରିନିଏ ।

"ବଡ଼ ବଜାରର ରଙ୍ଗ କରା ସନ୍ଦେଶ ଦେଖି ଖାଇବାକୁ ଇଚ୍ଛା ହେଲା । ଏମାନେ ଆଣିଦେଲେ । ଖୁବ୍ ଖାଇଲି—ତା'ପରେ ବେରାମ !"

"ପିଲାଦିନେ ଗଙ୍ଗାସ୍ନାନ ସମୟରେ ଗୋଟିଏ ପିଲାର ଅଣ୍ଟାରେ ସୁନାର ଗୋଠ ଦେଖିଥିଲି । ସାଧନାବସ୍ଥାରେ ସେହି ଗୋଠ ପିନ୍ଧିବାକୁ ଇଚ୍ଛା ହେଲା । କିନ୍ତୁ ତାହା ବେଶୀକ୍ଷଣ ପିନ୍ଧିପାରି ନ ଥିଲି, କାରଣ ସେହି ଗୋଠ ପିନ୍ଧିବା ପରେ ଭିତରୁ ଶିର୍ ଶିର୍ ହୋଇ ବାୟୁ ଉପରକୁ ଉଠିବାକୁ ଲାଗିଲା—କାଞ୍ଚନ ଦେହରେ ଲାଗିଛି କି ନା ? ତେଣୁ ଟିକିଏ ପିନ୍ଧି ଖୋଲି ପକାଇବାକୁ ହେଲା । ତାହା ନ ହେଲେ ଛିଣ୍ଡାଇ ଦେବାକୁ ହୋଇଥାଆନ୍ତା ।"

"ଧନିଆଖାଇର ଖଇଚୁର, କୃଷ୍ଣନଗରର ସରଭଜା, ତାହା ମଧ୍ୟ ଖାଇବାକୁ ଇଚ୍ଛା ହୋଇଥିଲା (ସମସ୍ତଙ୍କର ହାସ୍ୟ) ।"

## ପୂର୍ବକଥା—ଶମ୍ଭୁ ଓ ରାଜନାରାୟଣଙ୍କର ଚଣ୍ଡୀ ଶ୍ରବଣ । ଠାକୁରଙ୍କର ସାଧୁସେବା ।

"ଶମ୍ଭୁଙ୍କର ଚଣ୍ଡୀପାଠ ଶୁଣିବାକୁ ଇଚ୍ଛା ହୋଇଥିଲା । ପରେ ପୁଣି ରାଜନାରାୟଣଙ୍କ ଠାରୁ ମଧ୍ୟ ଚଣ୍ଡୀ ଶୁଣିବାକୁ ଇଚ୍ଛା ହେଲା । ତାହା ମଧ୍ୟ ଶୁଣାହେଲା ।"

"ଅନେକ ସାଧୁ ସେ ସମୟରେ ଆସୁଥିଲେ । ତେଣୁ ଇଚ୍ଛା ହେଲା ସେମାନଙ୍କର ସେବା ପାଇଁ ଅଲଗା ଗୋଟିଏ ଭଣ୍ଡାର ହୁଅନ୍ତା ମଥୁରବାବୁ ତାହା କରିଦେଲେ । ସେହି ଭଣ୍ଡାରରୁ ସାଧୁଙ୍କର ଚାଉଳ, କାଠ ଏସବୁ ଦିଆ ହୋଇଥିଲା ।"

"ଥରେ ମନରେ ଉଠିଲା ଯେ ଖୁବ୍ ଭଲ ଜରୀର ସାଜ ପିନ୍ଧିବି । ଆଉ ରୁପାର ହୁକାରେ ତମାଖୁ ଖାଇବି । ମଥୁରବାବୁ ନୂତନ ସାଜ, ହୁକା ସବୁ ପଠାଇଦେଲେ । ସାଜ ପିନ୍ଧା ହେଲା । ହୁକା ଗୁଡ଼ଗୁଡ଼ କରି ଟାଣିବାକୁ ଲାଗିଲି । ଥରେ ଏପାଖରୁ, ଥରେ ସେପାଖରୁ—ଉପରୁ ତଳୁ । ସେତେବେଳେ କହିଲି, ମନ ଏହାର ନାମ ରୁପାର ହୁକାରେ ତମାଖୁ ଖାଇବା ! ଏହିପରି ହୁକା ଟଣା ତ୍ୟାଗ ହୋଇଗଲା । ସାଜଗୁଡ଼ାକ ଟିକିଏ ପରେ ଖୋଲି ପକାଇଲି, —ପାଦରେ ମାଡ଼ିବାକୁ ଲାଗିଲି—ଆଉ ତାହା ଉପରେ ଛେପ ପକାଇଲି—କହିଲି ଏହାର ନାମ ସାଜ ! ଏଇ ସାଜରେ ରଜଗୁଣ ବଢ଼େ !"

## ବୃନ୍ଦାବନରେ ରାଖାଲ ଓ ବଳରାମ । ପୂର୍ବକଥା—ରାଖାଲଙ୍କର ପ୍ରଥମ ଭାବ ୧୮୮୧ ।

ବଳରାମଙ୍କ ସହିତ ରାଖାଲ ବୃନ୍ଦାବନରେ ଥିଲେ । ପ୍ରଥମେ ପ୍ରଥମେ ବୃନ୍ଦାବନର ଖୁବ୍ ସୁଖ୍ୟାତି କରି ଆଉ ବର୍ଣ୍ଣନା କରି ପତ୍ରାଦି ଲେଖୁଥିଲେ । ମାଷ୍ଟରଙ୍କୁ ପତ୍ରରେ ଲେଖିଥିଲେ, 'ଏ ବଡ଼ ଉତ୍ତମ ସ୍ଥାନ ଆପଣ ଆସିବେ, —ମୟୂର ମୟୂରୀ ସବୁ ନୃତ୍ୟ କରନ୍ତି—ଆହୁରି ନୃତ୍ୟ ଗୀତ, ସର୍ବଦା ହିଁ ଆନନ୍ଦ ।' ତାହାପରେ ରାଖାଲଙ୍କର ବେରାମ ହୋଇଛି—ବୃନ୍ଦାବନରେ ଜ୍ୱର । ଠାକୁର ଶୁଣି ବଡ଼ ଚିନ୍ତିତ ଅଛନ୍ତି । ତାଙ୍କ ପାଇଁ ଚଣ୍ଡୀଙ୍କ ପାଖରେ ମାନସିକ କରିଛନ୍ତି । ଠାକୁର ରାଖାଲଙ୍କ କଥା କହୁଛନ୍ତି— "ଏହିଠାରେ ବସି ପାଦ ଟିପୁ ଟିପୁ ରାଖାଲର ପ୍ରଥମ ଭାବ ହୋଇଥିଲା । ଜଣେ ଭାଗବତ ପଣ୍ଡିତ ଏହି ଘରେ ବସି ଭାଗବତ କଥା କହିଥିଲେ । ସେହି ସକଳ କଥା ଶୁଣୁ ଶୁଣୁ ରାଖାଲ ମଝିରେ ମଝିରେ କମ୍ପି ଉଠିଲା, ତା'ପରେ ଏକାବେଳେ ସ୍ଥିର !

"ଦ୍ୱିତୀୟ ଥର ଭାବ ବଳରାମଙ୍କ ଘରଠାରେ—ଭାବରେ ଶୋଇପଡ଼ିଥିଲା ।"

"ରାଖାଲର ସାକାରର ଘର—ନିରାକାରର କଥା ଶୁଣିଲେ ଉଠିଯିବ ।"

"ତା' ପାଇଁ ଚଣ୍ଡୀଙ୍କ ପାଖରେ ମାନସିକ କରିଥିଲି । ସେ ଯେ ମୋ ଉପରେ

ସବୁ ନିର୍ଭର କରିଥିଲା—ଘରଦ୍ୱାର ସବୁ ଛାଡ଼ି । ତାହାର ସ୍ତ୍ରୀ ପାଖକୁ ତାକୁ ମୁଁ ପଠାଇ ଦେଉଥିଲି—ଟିକିଏ ଭୋଗ ବାକି ଥିଲା ।''

''ବୃନ୍ଦାବନରୁ ସେ ଲେଖିଛି, ଏ ବେଶ୍ ଜାଗା—ମୟୁର ମୟୁରୀ ନୃତ୍ୟ କରୁଛନ୍ତି,—ବର୍ତ୍ତମାନ ମୟୁର ମୟୁରୀ ବଡ଼ ମୁଷ୍କିଲରେ ପକାଇଛନ୍ତି ।''

''ସେଠାରେ ବଳରାମଙ୍କ ସଙ୍ଗରେ ଅଛି । ଆହା ! ବଳରାମଙ୍କ କିପରି ସ୍ୱଭାବ । ମୋ ପାଇଁ ଓଡ଼ିଶାର କୋଠାରକୁ ଯାଆନ୍ତି ନାହିଁ । ଭାଇ ଖର୍ଚ୍ଚ ବନ୍ଦ କରିଥିଲେ । ସେ କହି ପଠାଇଥିଲେ, 'ତୁମେ ଏଠାରେ ଆସି ରୁହ, ମିଛରେ କାହିଁକି ଏତେ ଟଙ୍କା ଖର୍ଚ୍ଚ କରୁଛ ।' ତାହା ସେ ଶୁଣନ୍ତି ନାହିଁ—ମୋତେ ଦେଖିବେ ବୋଲି ।''

''କିପରି ସ୍ୱଭାବ ! ରାତିଦିନ କେବଳ ଠାକୁର ସେବା ନେଇ ରହନ୍ତି । ମାଳିମାନେ ଫୁଲର ମାଳା ଗୁନ୍ଥୁଛନ୍ତି ! ଟଙ୍କା ବଞ୍ଚିବ ବୋଲି, ବୃନ୍ଦାବନରେ ଚାରିମାସ ରହିବେ । ଦୁଇଶହ ଟଙ୍କା ମାସିକ ପାଆନ୍ତି ।''

## ପୂର୍ବକଥା—ନରେନ୍ଦ୍ରଙ୍କ ପାଇଁ କ୍ରନ୍ଦନ । ନରେନ୍ଦ୍ରଙ୍କର ପ୍ରଥମ ଦର୍ଶନ, ୧୮୮୧ ।

''ପିଲାମାନଙ୍କୁ ଭଲପାଏ କାହିଁକି ? —ସେମାନଙ୍କ ଭିତରେ କାମିନୀ-କାଞ୍ଚନ ବର୍ତ୍ତମାନ ମଧ୍ୟ ପଶିନାହିଁ । ମୁଁ ସେମାନଙ୍କୁ ନିତ୍ୟ ସିଦ୍ଧ ଦେଖେ ।''

''ନରେନ୍ଦ୍ର ଯେତେବେଳେ ପ୍ରଥମେ ଆସିଲା—ମଇଳା ଚାଦର ଖଣ୍ଡେ ଦେହରେ,—କିନ୍ତୁ ଚକ୍ଷୁ ମୁଖ ଦେଖି ବୋଧ ହେଲା, ଭିତରେ କିଛି ଅଛି ।'' ସେତେବେଳେ ବେଶୀ ଗୀତ ଜାଣେ ନାହିଁ । ଗୋଟିଏ ଦୁଇଟି ଗୀତ ଗାଇଲା—

''ମନ ଚଲ ନିଜ ନିକେତନେ'', ଆଉ

''ଯାବେ କି ହେ ଦିନ ଆମାର ବିଫଲେ ଚଲିୟେ ।''

''ଯେତେବେଳେ ଆସେ—ଘର ଭର୍ତ୍ତି ଲୋକ—ତଥାପି ତା' ଆଡ଼କୁ ଚାହିଁ କଥା କହେ । ସେ କହେ, 'ଏମାନଙ୍କ ସଙ୍ଗରେ କଥା କହନ୍ତୁ' —ତେବେ କହେ ।''

''ଯଦୁ ମଲ୍ଲିକଙ୍କର ଉଦ୍ୟାନରେ କାନ୍ଦେ—ତାକୁ ଦେଖିବାକୁ ପାଗଳ ହୋଇଥିଲି । ଏଠାରେ ଭୋଳାନାଥର ହାତଧରି କାନ୍ଦଣା !—ଭୋଳାନାଥ କହିଲା, 'ମହାଶୟ ଗୋଟିଏ କାୟସ୍ଥ ପିଲା ପାଇଁ ଆପଣଙ୍କର ଏ ରୂପ କରିବା ଉଚିତ ନୁହେଁ ।' ମୋଟା ବ୍ରାହ୍ମଣ ଦିନେ ହାତଯୋଡ଼ି କହିଲା, 'ମହାଶୟ, ତାହାର ସାମାନ୍ୟ ପଢ଼ାଶୁଣା, ତା' ପାଇଁ ଆପଣ ଏତେ ଅଧିର ହୁଅନ୍ତି କାହିଁକି' ?''

''ଭବନାଥ ନରେନ୍ଦ୍ରଙ୍କ ଯୋଡ଼ି—ଦୁଇଜଣ ଯେପରି ସ୍ତ୍ରୀ-ପୁରୁଷ । ତେଣୁ ଭବନାଥକୁ ନରେନ୍ଦ୍ରର ଘର ପାଖରେ ବସା କରିବାକୁ କହିଲି । ସେମାନେ ଉଭୟେ ଅରୂପର ଘର ।''

## ସନ୍ୟାସୀର କଠିନ ନିୟମ—ଲୋକଶିକ୍ଷାର୍ଥ ତ୍ୟାଗ । ଘୋଷପଡ଼ାର ସାଧନାର କଥା ।

"ମୁଁ ପିଲାମାନଙ୍କୁ ସ୍ତ୍ରୀମାନଙ୍କ ନିକଟରେ ବେଶି ରହିବାକୁ ବା ଯିବା ଆସିବା କରିବାକୁ ବାରଣ କରିଦିଏ ।"

"ହରିପଦ ଘୋଷପଡ଼ାର ଏକ ସ୍ତ୍ରୀର ପାଲରେ ପଡ଼ିଛି । ସେ ବାତ୍ସଲ୍ୟଭାବ କରେ । ହରିପଦ ପିଲାଲୋକ, କିଛି ବୁଝେ ନାହିଁ । ସେମାନେ ପିଲା ଦେଖିଲେ ଏହିପରି କରନ୍ତି । ଶୁଣିଲି, ହରିପଦ ତା' କୋଳରେ ଶୁଏ । ଆଉ ସେ ହାତରେ ତାକୁ ଖୁଆଇ ଦିଏ । ମୁଁ ତାକୁ କହି ଦେବି—ଏ ସବୁ ଭଲ ନୁହେଁ । ଏହି ବାତ୍ସଲ୍ୟ ଭାବରୁ ହିଁ ତାତ୍ସଲ୍ୟ ଭାବ ହୁଏ ।"

"ସେମାନଙ୍କର ବର୍ତ୍ତମାନର ସାଧନ—ମନୁଷ୍ୟକୁ ନେଇ ସାଧନ । ମନୁଷ୍ୟକୁ ମନେ କରନ୍ତି ଶ୍ରୀକୃଷ୍ଣ । ସେମାନେ କୁହନ୍ତି 'ରାଗକୃଷ୍ଣ' । ଗୁରୁ ପଚାରନ୍ତି, 'ରାଗକୃଷ୍ଣ' ପାଇଛୁ ?' ସେ କହେ ହଁ ପାଇଛି ।"

"ସେଦିନ ସେ ସ୍ତ୍ରୀ ଲୋକଟି ଆସିଥିଲା । ତାହାର ଚାହାଣୀର ଲକ୍ଷଣ ଦେଖିଲି କିଛି ଭଲ ନୁହେଁ । ତାହାରି ଭାବକଥା କହିଲି, 'ହରିପଦକୁ ନେଇ ଯେପରି କରୁଛ କର— କିନ୍ତୁ ଅନ୍ୟାୟ ଭାବ ଆଣନାହିଁ '।"

## ପିଲାମାନଙ୍କର ସାଧନାର ଅବସ୍ଥା । ବର୍ତ୍ତମାନ କେବଳ ତ୍ୟାଗ ।

ସନ୍ୟାସୀ "ସ୍ତ୍ରୀଲୋକଙ୍କର ଚିତ୍ରପଟ ସୁଦ୍ଧା ଦେଖିବ ନାହିଁ ।" ମୁଁ ସେମାନଙ୍କୁ କହେ, ସ୍ତ୍ରୀଲୋକ ଭକ୍ତ ହେଲେ ମଧ୍ୟ ତାଙ୍କ ସଙ୍ଗରେ ବସି କଥା କହିବ ନାହିଁ, —ଠିଆ ହୋଇ ଟିକିଏ କଥା ହେବ । ସିଦ୍ଧ ହେଲେ ମଧ୍ୟ ଏହିପରି କରିବାକୁ ହୁଏ—ନିଜର ସାଧନା ପାଇଁ-ଆଉ ଲୋକଶିକ୍ଷା ପାଇଁ । ମୁଁ ମଧ୍ୟ ସ୍ତ୍ରୀଲୋକ ଆସିଲେ ଟିକିଏ ପରେ କହେ, ତୁମେ ସବୁ ଯାଇ ଠାକୁର ଦେଖ । ସେଥିରେ ଯଦି ନ ଉଠନ୍ତି, ନିଜେ ଉଠିପଡ଼େ । ମୋତେ ଦେଖି ପରେ ସମସ୍ତେ ଶିଖିବେ ।

## ପୂର୍ବକଥା – ଫୁଲୁଇ ଶ୍ୟାମବଜାର ଦର୍ଶନ ୧୮୮୦ । ଅବତାରଙ୍କ ଆକର୍ଷଣ ।

"ଆଚ୍ଛା, ଏହି ଯେଉଁସବୁ ପିଲାମାନେ ଆସିଛନ୍ତି, ଆଉ ତୁମେମାନେ ସବୁ ଆସୁଛ, ଏହାର ଅର୍ଥ କ'ଣ ? ଏହାର (ଅର୍ଥାତ୍ ମୋର) ଭିତରେ ନିଶ୍ଚୟ କିଛି ଅଛି, ତାହା ନହେଲେ ଟାଣି ହୁଅ କିପରି—ଆଉ କାହିଁକି ଆକର୍ଷଣ ହୁଏ ?"

ସେ ଦେଶରେ ଯେତେବେଳେ ହୃଦୁର ଘରେ (କାମାରପୁକୁରର ନିକଟ, ସିଓଡ଼ରେ)

ଥିଲି, ସେତେବେଳେ ଶ୍ୟାମବଜାରକୁ ନେଇଗଲେ । ବୁଝିଲି, ଏମାନେ ଗୌରାଙ୍ଗଙ୍କ ଭକ୍ତ । ଗ୍ରାମରେ ପଶିବା ଆଗରୁ ମା' ଦେଖାଇଦେଲେ । ଦେଖିଲି, ସାକ୍ଷାତ୍ ଗୌରାଙ୍ଗ ! ଏପରି ଆକର୍ଷଣ—ସାତଦିନ ସାତରାତି ଲୋକଙ୍କର ଭିଡ଼ ! କେବଳ କୀର୍ତ୍ତନ ଆଉ ନୃତ୍ୟ । ପାଚେରୀରେ ଲୋକ, ଗଛରେ ଲୋକ !

"ନଟବର ଗୋସ୍ୱାମୀଙ୍କ ଘରେ ଥିଲି । ସେଠାରେ ରାତିଦିନ ଭିଡ଼ । ମୁଁ ପୁଣି ପଳାଇ ଯାଇ ଜଣେ ତନ୍ତୀଘରେ ସକାଳେ ଯାଇ ବସେ । ପୁଣି ଦେଖେ କିଛିକ୍ଷଣ ପରେ ସମସ୍ତେ ସେଠାକୁ ଯାଇଛନ୍ତି । ସମସ୍ତ ଲୋକ ଖୋଳ କରତାଳ ନେଇ ଯାଇଛନ୍ତି—ପୁଣି 'ତାକିଟୀ ତାକିଟୀ' କରୁଛନ୍ତି । ଖାଇବା ପିଇବା ବେଳ ତିନିଟା ସମୟରେ ହୁଏ ।"

"ରବ ଉଠିଲା—ସାତଥର ମରେ, ସାତଥର ବଞ୍ଚେ, ଏପରି ଗୋଟିଏ ଲୋକ ଆସିଛି ! କାଳେ ମୋର ସରଦି ଗରମି ହେବ, ହୃଦୁ ପଡ଼ିଆକୁ ଟାଣି ନେଇଯାଏ;—ସେଠାରେ ପୁଣି ପିମ୍ପୁଡ଼ିଧାର ପରି ଲୋକ ଚାଲିଲେ ! ପୁଣି ଖୋଳ କରତାଳ । —ତାକିଟୀ ! ତାକିଟୀ ! ହୃଦୁ ବକିଲା, ଆଉ କହିଲା, 'ଆମେ କ'ଣ କେବେହେଲେ କୀର୍ତ୍ତନ ଶୁଣିନାହୁଁ' ?"

"ସେଠାକାର ଗୋସାଇଁମାନେ ଝଗଡ଼ା କରିବାକୁ ଆସିଥିଲେ, ମନେ କରିଥିଲେ, ଆମ୍ଭେମାନେ ବୋଧହୁଏ ତାଙ୍କର ପାଉଣା ଗଣ୍ଡା ନେବାକୁ ଆସିଛୁ । ଦେଖିଲେ, ମୁଁ ଖଣ୍ଡେ ଲୁଗା କି ଏକଖିଅ ସୂତା ମଧ୍ୟ ନେଇନାହିଁ । କେ କହିଥିଲା, 'ବ୍ରହ୍ମଜ୍ଞାନୀ' । ତେଣୁ ଗୋସାଇଁମାନେ ପରୀକ୍ଷା କରିବାକୁ ଆସିଥିଲେ । ଜଣେ ପ୍ରଶ୍ନ କଲେ । ଏହାଙ୍କର ମାଳା, ତିଳକ ନାହିଁ କାହିଁକି ? ତାଙ୍କ ମଧ୍ୟରୁ ଜଣେ କହିଲେ, 'ନଡ଼ିଆ ବାହୁଙ୍ଗା ଆପେ ଆପେ ଖସି ପଡ଼ିଛି ।' 'ନଡ଼ିଆ ବାହୁଙ୍ଗା' । ଏ କଥାଟି ଏହିଠାରୁ ଶିଖିଛି । ଜ୍ଞାନ ହେଲେ ଉପାଧି ଆପେ ଖସିପଡ଼େ ।"

"ଦୂର ଗ୍ରାମରୁ ଲୋକ ଆସି ଜମା ହୁଅନ୍ତି । ସେମାନେ ରାତିରେ ରୁହନ୍ତି । ଯେଉଁ ଘରେ ଥିଲି, ତାହାର ଅଗଣାରେ ରାତିରେ ସ୍ତ୍ରୀଲୋକମାନେ ଅନେକ ସବୁ ଶୋଇଥାଆନ୍ତି । ହୃଦୁ ପରିସ୍ରା କରିବାକୁ ରାତିରେ ବାହାରକୁ ଯାଉଥିଲା, ସେମାନେ କହିଲେ, 'ଏହିଠାରେ (ଅଗଣାରେ) କର' ।"

"ଆକର୍ଷଣ କାହାକୁ କହନ୍ତି, ଏହିଠାରେ (ଶ୍ୟାମବଜାର) ବୁଝିଲି । ହରିଲୀଳାରେ ଯୋଗମାୟାର ସାହାଯ୍ୟରେ ଆକର୍ଷଣ ହୁଏ, ଯେପରି ଭେଳିକି ଲାଗିଯାଏ !"

## (୩)

## ଠାକୁର ଶ୍ରୀରାମକୃଷ୍ଣ ଓ ଶ୍ରୀଯୁକ୍ତ ରାଧିକା ଗୋସ୍ୱାମୀ ।

ମୁଖାର୍ଜୀ ଭ୍ରାତୃଦ୍ୱୟ ପ୍ରଭୃତି ଭକ୍ତଗଣଙ୍କ ସହିତ କଥା କହୁ କହୁ ସମୟ ପ୍ରାୟ ୩ଟା ବାଜିଛି । ଶ୍ରୀଯୁକ୍ତ ରାଧିକା ଗୋସ୍ୱାମୀ ଆସି ପ୍ରଣାମ କଲେ । ସେ ଠାକୁର ଶ୍ରୀରାମକୃଷ୍ଣଙ୍କୁ

ଏହିଥର ପ୍ରଥମ ଦର୍ଶନ କଲେ । ବୟସ ଅନ୍ଦାଜ ତିରିଶ ମଧ୍ୟରେ । ଗୋସ୍ୱାମୀ ଆସନ ଗ୍ରହଣ କଲେ ।

ଶ୍ରୀରାମକୃଷ୍ଣ—'ଆପଣମାନେ କ'ଣ ଅଦ୍ୱୈତବଂଶ ?'

ଗୋସ୍ୱାମୀ—ଆଜ୍ଞା, ହଁ ।

ଠାକୁର ଅଦ୍ୱୈତବଂଶ ଶୁଣି ହାତଯୋଡ଼ି ଗୋସ୍ୱାମୀଙ୍କୁ ପ୍ରଣାମ କରୁଛନ୍ତି ।

## ଗୋସ୍ୱାମୀବଂଶ ଓ ବ୍ରାହ୍ମଣ ପୂଜନୀୟ । ମହାପୁରୁଷଙ୍କ ବଂଶରେ ଜନ୍ମ ।

ଶ୍ରୀରାମକୃଷ୍ଣ—ଅଦ୍ୱୈତଗୋସ୍ୱାମୀ ବଂଶ, —ତେଣୁ ବଂଶଗତ ଗୁଣ ଅଛି !

"ଭଲ ଆମ୍ବଗଛରେ ଭଲ ଆମ୍ବ ହିଁ ହୁଏ (ଭକ୍ତମାନଙ୍କର ହାସ୍ୟ) । ଖରାପ ଆମ୍ବ ହୁଏନାହିଁ । ତେବେ ମାଟିର ଗୁଣରେ ଟିକିଏ ଛୋଟ ବଡ଼ ହୁଏ । ଆପଣ କ'ଣ କହୁଛନ୍ତି ?"

ଗୋସ୍ୱାମୀ (ବିନୀତ ଭାବରେ)—ଆଜ୍ଞା, ମୁଁ କ'ଣ ଜାଣେ ।

ଶ୍ରୀରାମକୃଷ୍ଣ-ଆପଣ ଯାହା କହନ୍ତୁ, —ଅନ୍ୟ ଲୋକେ ଛାଡ଼ିବେ କାହିଁକି ?

"ବ୍ରାହ୍ମଣ, ହଜାର ଦୋଷ ଥାଉ—ତଥାପି ଭରଦ୍ୱାଜ ଗୋତ୍ର, ଶାଣ୍ଡିଲ୍ୟ ଗୋତ୍ର ବୋଲି ସମସ୍ତେଙ୍କର ପୂଜନୀୟ । (ମାଷ୍ଟରଙ୍କ ପ୍ରତି) ଶଙ୍ଖଚିଲ କଥାଟି କହ ତ !"

ମାଷ୍ଟର ଚୁପ କରିଅଛନ୍ତି ଦେଖି ଠାକୁର ପୁଣି କଥା କହୁଛନ୍ତି—

ଶ୍ରୀରାମକୃଷ୍ଣ—ବଂଶରେ ମହାପୁରୁଷ ଯଦି ଜନ୍ମିଥାଆନ୍ତି ସେ ଟାଣି ନେବେ—ହଜାରେ ଦୋଷ ଥାଉ । ଯେତେବେଳେ ଗନ୍ଧର୍ବ କୌରବମାନଙ୍କୁ ବନ୍ଦି କଲେ ଯୁଧିଷ୍ଠିର ଯାଇ ସେମାନଙ୍କୁ ମୁକ୍ତ କଲେ । ଏପରିକି ଯେଉଁ ଦୁର୍ଯ୍ୟୋଧନ ଏତେ ଶତ୍ରୁତା କରିଛି, ଯାହାଙ୍କ ସକାଶେ ଯୁଧିଷ୍ଠିରଙ୍କର ବନବାସ ହୋଇଛି ତାଙ୍କୁ ପୁଣି ମୁକ୍ତ କଲେ ।

ତା'ଛଡ଼ା ଭେକର ଆଦର କରିବାକୁ ହୁଏ । ଭେକ ଦେଖିଲେ ସତ୍ୟ ବସ୍ତୁର ଉଦ୍ଦୀପନ ହୁଏ । ଚୈତନ୍ୟଦେବ ଗଧକୁ ଭେକ ପିନ୍ଧାଇ ସାଷ୍ଟାଙ୍ଗ ପ୍ରଣାମ କରିଥିଲେ ।

ଶଙ୍ଖଚିଲକୁ ଦେଖିଲେ ପ୍ରଣାମ କରନ୍ତି କାହିଁକି ? କଂସକୁ ମାରିବାକୁ ଗଲାବେଳେ ଭଗବତୀ ଶଙ୍ଖଚିଲ ହୋଇ ଉଡ଼ିଯାଇଥିଲେ । ତେଣୁ ଏବେ ମଧ୍ୟ ଶଙ୍ଖଚିଲ ଦେଖିଲେ ସମସ୍ତେ ପ୍ରଣାମ କରନ୍ତି ।

## ପୂର୍ବକଥା—ଚାନକଠାରେ କୋୟାର ସିଂହ କର୍ତ୍ତୃକ ଠାକୁରଙ୍କର ପୂଜା । ଠାକୁରଙ୍କର ରାଜଭକ୍ତି ।

ଚାନକର ସେନାଛାଉଣୀ ପାଖକୁ ଜଣେ ଇଂରେଜଙ୍କୁ ଆସିବାର ଦେଖି ସିପାହୀମାନେ ସଲାମ କଲେ । କୋୟାର ସିଂହ ମୋତେ ବୁଝାଇଦେଲେ,—ଇଂରେଜଙ୍କର ରାଜ୍ୟ, ତେଣୁ ଇଂରେଜଙ୍କୁ ସଲାମ କରିବାକୁ ହୁଏ ।

## ଗୋସ୍ୱାମୀଙ୍କ ପାଖରେ ସାଂପ୍ରଦାୟିକତାର ନିନ୍ଦା । ଶାକ୍ତ ଓ ବୈଷ୍ଣବ ।

ଶ୍ରୀରାମକୃଷ୍ଣ— ଶାକ୍ତଙ୍କର ତନ୍ତ୍ର ମତ । ବୈଷ୍ଣବଙ୍କର ପୁରାଣ ମତ । ବୈଷ୍ଣବ ଯେଉଁ ସାଧନ କରେ ପ୍ରକାଶ କରିବାରେ ଦୋଷ ନାହିଁ । ତାନ୍ତ୍ରିକର ସବୁ ଗୋପନ । ତେଣୁ ତାନ୍ତ୍ରିକଙ୍କୁ ଭଲ ଭାବରେ ବୁଝାଯାଏ ନାହିଁ ।

(ଗୋସ୍ୱାମୀଙ୍କ ପ୍ରତି) ଆପଣମାନେ ବେଶ୍ — କେତେ ଜପ କରନ୍ତି, କେତେ ହରିନାମ କରନ୍ତି ।

ଗୋସ୍ୱାମୀ (ବିନୀତ ଭାବରେ) — ଆଜ୍ଞା, ଆମେମାନେ ଆଉ କ'ଣ କରୁଛୁ । ମୁଁ ଅତି ଅଧମ ।

ଶ୍ରୀରାମକୃଷ୍ଣ (ସହାସ୍ୟ) — ଦୀନତା । ଏ ତ ଭଲ ଗୁଣ । କିନ୍ତୁ ଅନ୍ୟ ଗୋଟିଏ ଭାବ ଅଛି, 'ମୁଁ ହରିନାମ କରିଛି, ମୋର ପୁଣି ପାପ ।' ଯେ ରାତିଦିନ 'ମୁଁ ପାପୀ' 'ମୁଁ ଅଧମ' 'ମୁଁ ଅଧମ' କରେ ସେ ତାହା ହିଁ ହୋଇଯାଏ । କି ଅବିଶ୍ୱାସ ! ତାଙ୍କ ନାମ ଏତେ କରିଛି ପୁଣି କହେ 'ପାପ, ପାପ' ।

ଗୋସ୍ୱାମୀ ଏହିକଥା ଅବାକ୍ ହୋଇ ଶୁଣୁଛନ୍ତି ।

## ପୂର୍ବକଥା —

## ବୃନ୍ଦାବନରେ ବୈଷ୍ଣବଙ୍କର ଭେକ ଗ୍ରହଣ ୧୮୬୮ ଖ୍ରୀଷ୍ଟାବ୍ଦ ।

ଶ୍ରୀରାମକୃଷ୍ଣ— ମୁଁ ମଧ ବୃନ୍ଦାବନରେ ଭେକ ନେଇଥିଲି, — ପନ୍ଦରଦିନ ରଖିଥିଲି । (ଭକ୍ତମାନଙ୍କ ପ୍ରତି) ସବୁ ଭାବରେ କିଛି କିଛି ଦିନ ରହେ, ତେବେ ଶାନ୍ତି ହୁଏ ।

(ସହାସ୍ୟରେ) ''ମୁଁ ସବୁ ରକମ କରିଛି-ସବୁ ପଥକୁ ମାନେ । ଶାକ୍ତମାନଙ୍କୁ ମାନେ, ବୈଷ୍ଣବମାନଙ୍କୁ ମଧ ମାନେ, ପୁଣି ବେଦାନ୍ତ ବାଦୀଙ୍କୁ ମଧ ମାନେ । ଏଠାକୁ ତେଣୁ ସବୁ ମତର ଲୋକ ଆସନ୍ତି । ସମସ୍ତେ ହିଁ ମନେକରନ୍ତି ଏ ଆମ୍ଭମାନଙ୍କର ମତର ଲୋକ । ଆଜିକାଲିର ବ୍ରହ୍ମଜ୍ଞାନୀମାନଙ୍କୁ ମଧ ମାନେ ।''

'ଜଣଙ୍କର ଗୋଟିଏ ରଙ୍ଗର କୁଣ୍ଡ ଥିଲା । କୁଣ୍ଡର ଆଶ୍ଚର୍ଯ୍ୟ ଗୁଣ ଯେ, ଯେ ଯେଉଁ ରଙ୍ଗର ଲୁଗା ରଙ୍ଗାଇବାକୁ ଚାହେଁ ତାହାର ଲୁଗା ସେହି ରଙ୍ଗରେ ରଙ୍ଗ ହୋଇଯାଏ ।'

''କିନ୍ତୁ ଜଣେ ଚଲାକ ଲୋକ କହିଥିଲା, 'ତୁମେ ଯେଉଁ ରଙ୍ଗରେ ରଙ୍ଗାଇଛ, ମୋତେ ସେହି ରଙ୍ଗଟି ଦେବାକୁ ହେବ ।'' (ଠାକୁର ଓ ସମସ୍ତଙ୍କର ହାସ୍ୟ) ।

''କାହିଁକି ଗୋଟିଏ ଭାବନେଇ ରହିବି ? 'ଅମୁକ ମତର ଲୋକ ତାହାହେଲେ ଆସିବେ ନାହିଁ' ଏ ଭୟ ମୋର ନାହିଁ । କେହି ଆସନ୍ତୁ ଆଉ ନ ଆସନ୍ତୁ, ସେଥିରେ ମୋର କ'ଣ ଅଛି — ଲୋକେ କିପରି ବଶରେ ରହିବେ, ଏପରି କିଛି ଚିନ୍ତା ମୋ ମନରେ ନାହିଁ । ଅଧର ସେନ ବଡ଼ ଚାକିରି ପାଇଁ ମାଆଙ୍କୁ କହିବାକୁ କହିଥିଲା — ତାହାର ସେ କର୍ମ ହେଲା ନାହିଁ । ସେ ସେଥିରେ ଯଦି କିଛି ମନେକରେ, ମୋର ଭାସିଗଲା !''

## ପୂର୍ବକଥା—କେଶବ ସେନଙ୍କ ଘରଠାରେ ନିରାକାର ଭାବ । ବିଜୟ ଗୋସ୍ୱାମୀଙ୍କ ସଙ୍ଗରେ ଏଡ଼େଁଦଠାରେ ଗଦାଧରଙ୍କର ପାଠଶାଳା ଦର୍ଶନ । ବିଜୟଙ୍କ ଚରିତ୍ର ।

କେଶବ ସେନଙ୍କର ଘରକୁ ଯାଇ ଅନ୍ୟ ପ୍ରକାର ଭାବ ହେଲା । ସେମାନେ ନିରାକାର ନିରାକାର କରନ୍ତି, —ତେଣୁ ଭାବରେ କହିଲି, ମା' ଏଠାକୁ ଆସ ନାହିଁ, ଏମାନେ ତୋର ରୂପ ପ୍ରଭୃତି ମାନନ୍ତି ନାହିଁ ।

ସାଂପ୍ରଦାୟିକତାର ବିରୁଦ୍ଧରେ ଏହିସବୁ କଥା ଶୁଣି ଗୋସ୍ୱାମୀ ଚୁପ୍ କରିଛନ୍ତି ।

ଶ୍ରୀରାମକୃଷ୍ଣ (ସହାସ୍ୟ)—ବିଜୟ ବର୍ତ୍ତମାନ ବେଶ ହୋଇଛି ।

''ହରି ହରି କହୁ କହୁ ମାଟିରେ ପଡ଼ିଯାଏ !''

''ଚାରିଟା ରାତି ପର୍ଯ୍ୟନ୍ତ କୀର୍ତ୍ତନ ଧ୍ୟାନ ଏହିସବୁ ନେଇ ରହେ । ବର୍ତ୍ତମାନ ଗେରୁଆ ପିନ୍ଧିଛି । ଠାକୁର ବିଗ୍ରହ ଦେଖିଲେ ଏକାବେଳକେ ସାଷ୍ଟାଙ୍ଗ ପ୍ରଣାମ ।''

''ଗଦାଧରଙ୍କର ପାଠଶାଳାକୁ ମୋ ସଙ୍ଗରେ ଯାଇଥିଲା—ମୁଁ କହିଲି, ଏଠାରେ ସେ ଧ୍ୟାନ କରୁଥିଲେ—ସେହି ସ୍ଥାନରେ ସଙ୍ଗେ ସଙ୍ଗେ ସାଷ୍ଟାଙ୍ଗ ପ୍ରଣାମ ।''

''ଚୈତନ୍ୟଦେବଙ୍କର ଫଟୋ ସମ୍ମୁଖରେ ପୁଣି ସାଷ୍ଟାଙ୍ଗ ।''

ଗୋସ୍ୱାମୀ—ରାଧାକୃଷ୍ଣ ମୂର୍ତ୍ତିଙ୍କ ସମ୍ମୁଖରେ ?

ଶ୍ରୀରାମକୃଷ୍ଣ—ସାଷ୍ଟାଙ୍ଗ ! ଆଉ ଖୁବ୍ ବାଛବିଚାର ।

ଗୋସ୍ୱାମୀ—ବର୍ତ୍ତମାନ ବୈଷ୍ଣବ ସମାଜ ତାଙ୍କୁ ନେଇପାରେ ?

ଶ୍ରୀରାମକୃଷ୍ଣ—ଲୋକେ କ'ଣ କହିବେ, ସେ ତାହା ଏତେ ଚିନ୍ତାକରେ ନାହିଁ ।

ଗୋସ୍ୱାମୀ—ନା, ସମାଜ ତାହାହେଲେ କୃତାର୍ଥ ହେବ ଏପରି ଲୋକକୁ ପାଇଲେ ।

ଶ୍ରୀରାମକୃଷ୍ଣ—ମୋତେ ଖୁବ୍ ମାନେ । ତାକୁ ପାଇବା ହିଁ କଷ୍ଟ । ଆଜି ଢାକାରେ ଡାକରା ତ କାଲି ଆଉ ଗୋଟାଏ ଜାଗାରେ ଡାକରା । ସର୍ବଦା ହିଁ ବ୍ୟସ୍ତ ।

''ତାଙ୍କ ସମାଜରେ (ସାଧାରଣ ବ୍ରାହ୍ମସମାଜରେ) ବଡ଼ ଗୋଳମାଳ ହୋଇଛି ।''

ଗୋସ୍ୱାମୀ—ଆଜ୍ଞା, କାହିଁକି ?

ଶ୍ରୀରାମକୃଷ୍ଣ—ତାଙ୍କୁ କହନ୍ତି, 'ତୁମେ ସାକାରବାଦୀମାନଙ୍କ ସଙ୍ଗରେ ମିଶୁଛ ! —ତୁମେ ପୌତ୍ତଳିକ ।'

''ଆଉ ଅତି ଉଦାର ସରଳ । **ସରଳ ନ ହେଲେ ଈଶ୍ୱରଙ୍କର କୃପା ହୁଏ ନାହିଁ ।''**

## ମୁଖାର୍ଜୀମାନଙ୍କୁ ଶିକ୍ଷା । ଗୃହସ୍ଥ, 'ଆଗେଇପଡ଼' । ଅଭ୍ୟାସଯୋଗ ।

ଏଥର ଠାକୁର ମୁଖାର୍ଜୀମାନଙ୍କ ସଙ୍ଗରେ କଥା କହୁଛନ୍ତି । ଜ୍ୟେଷ୍ଠ ମହେନ୍ଦ୍ର ବ୍ୟବସାୟ

କରନ୍ତି, କାହାରି ଚାକିରି କରନ୍ତି ନାହିଁ । କନିଷ୍ଠ ପ୍ରିୟନାଥ ଇଂଜିନିୟର ଥିଲେ । ବର୍ତ୍ତମାନ କିଛି ସଂସ୍ଥାନ କରିଛନ୍ତି । ଚାକିରି କରନ୍ତି ନାହିଁ । ଜ୍ୟେଷ୍ଠଙ୍କର ବୟସ ୩୫-୩୬ ହେବ । ସେମାନଙ୍କର ଘର କେଦେଟି ଗ୍ରାମରେ । କଲିକତା ବାଗବଜାରରେ ତାଙ୍କର ବସା ଅଛି ।

ଶ୍ରୀରାମକୃଷ୍ଣ (ସହାସ୍ୟ)—ଟିକିଏ ଉଦ୍ଦୀପନ ହେଉଛି ବୋଲି ଚୁପ୍ କରି ରହ ନାହିଁ । ଆଗେଇ ପଡ଼ । ଚନ୍ଦନ କାଠ ପରେ ଆଉ ମଧ୍ୟ ଅଛି—ରୂପାର ଖଣି, ସୁନାର ଖଣି !

ପ୍ରିୟ (ସହାସ୍ୟ)—ଆଜ୍ଞା, ପାଦରେ ବନ୍ଧନ—ଆଗେଇବାକୁ ଦିଏ ନାହିଁ ।

ଶ୍ରୀରାମକୃଷ୍ଣ—ପାଦରେ ବନ୍ଧନ ଥିଲେ କ'ଣ ହେବ ? —ମନ ନେଇ କଥା ।

"ମନରେ ବଦ୍ଧ ଓ ମୁକ୍ତ । ଦୁଇବନ୍ଧୁ — ଜଣେ ବେଶ୍ୟାଳୟକୁ ଗଲା, ଆଉ ଜଣେ ଭାଗବତ ଶୁଣୁଛି । ପ୍ରଥମଟି ଭାବୁଛି, ମୋତେ ଧିକ୍—ବନ୍ଧୁ ହରିକଥା ଶୁଣୁଛି, ଆଉ ମୁଁ କେଉଁଠି ପଡ଼ିରହିଛି ! ଅନ୍ୟ ବନ୍ଧୁଟି ଭାବୁଛି—ମୋତେ ଧିକ୍, ବନ୍ଧୁ କିପରି ଆମୋଦ ଆହ୍ଲାଦ କରୁଛି, ମୁଁ ଶଳା କି ବୋକା ! ଦେଖ ପ୍ରଥମ ଜଣକୁ ବିଷ୍ଣୁଦୂତ ନେଇଗଲେ—ବୈକୁଣ୍ଠକୁ । ଆଉ ଦ୍ୱିତୀୟ ଜଣକୁ ଯମଦୂତ ନେଇଗଲେ !"

ପ୍ରିୟ—ମନ କିନ୍ତୁ ମୋର ବଶରେ ନାହିଁ ।

ଶ୍ରୀରାମକୃଷ୍ଣ—ସେ କଅଣ ! ଅଭ୍ୟାସ ଯୋଗ । ଅଭ୍ୟାସ କର, ଦେଖିବ ମନକୁ ଯେଉଁ ଆଡ଼କୁ ନେବ, ସେହି ଦିଗକୁ ଯିବ ।

"ମନ ଧୋବା ଘରର ଲୁଗା । ଏହାକୁ ଲାଲରେ ରଙ୍ଗାଅ ଲାଲ—ନୀଳରେ ରଙ୍ଗାଅ ନୀଳ । ଯେଉଁ ରଙ୍ଗରେ ରଙ୍ଗାଅ ସେହି ରଙ୍ଗ ହୋଇଯିବ ।"

(ଗୋସ୍ୱାମୀଙ୍କ ପ୍ରତି)—ଆପଣମାନଙ୍କର କିଛି ପ୍ରଶ୍ନ ଅଛି ?

ଗୋସ୍ୱାମୀ (ଅତି ବିନୀତ ଭାବରେ) ଆଜ୍ଞା ନା: ଦର୍ଶନ ହେଲା । କଥାତ ସବୁ ଶୁଣୁଛି ।

ଶ୍ରୀରାମକୃଷ୍ଣ—ଠାକୁରମାନଙ୍କୁ ଦର୍ଶନ କରନ୍ତୁ ।

ଗୋସ୍ୱାମୀ (ଅତି ବିନୀତ ଭାବରେ)—ଟିକିଏ ମହାପ୍ରଭୁର ଗୁଣାନୁକୀର୍ତ୍ତନ ।

ଠାକୁର ଗୋସ୍ୱାମୀଙ୍କୁ ଗୀତ ଶୁଣାଉଛନ୍ତି—

ଗୀତ—ଆମାର ଅଙ୍ଗ କେନ ଗୌର ହଲୋ !

ଗୀତ—ଗୋରା ଚାହେ ବୃନ୍ଦାବନ ପାନେ, ଆର୍ ଧାରା ବହେ ଦୁ' ନୟନେ ।।
(ଭାବ ହବେ ବଇ କିରେ !) (ଭାବନିଧି ଶ୍ରୀ ଗୌରାଙ୍ଗେର)
(ଯାର ଅନ୍ତଃ କୃଷ୍ଣଃ ବହିଃ ଗୌର) (ଭାବେ ହାସେ କାନ୍ଦେ ନାଚେ ଗାୟ)
(ବନ ଦେଖେ ବ୍ରିନ୍ଦାବନ ଭାବେ) (ସମୁଦ୍ର ଦେଖେ ଶ୍ରୀଯମୁନା ଭାବେ)
(ଗୋରା ଆପନାର ପା ଆପନି ଧରେ) ।

## ଶ୍ରୀଯୁକ୍ତ ରାଧିକା ଗୋସ୍ୱାମୀଙ୍କୁ ସର୍ବଧର୍ମ ସମନ୍ୱୟ ଉପଦେଶ ।

ଗୀତ ସମାପ୍ତ ହେଲା—ଠାକୁର କଥା କହୁଅଛନ୍ତି ।

ଶ୍ରୀରାମକୃଷ୍ଣ (ଗୋସ୍ୱାମୀଙ୍କ ପ୍ରତି)—ଏ ତ ଆପଣମାନଙ୍କର (ବୈଷ୍ଣବମାନଙ୍କର) ହେଲା । ଆଉ ଯଦି କେହି ଶାକ୍ତ କିମ୍ବା ଘୋଷପଡ଼ାର ମତାମତ ନେଇ ଆସନ୍ତି, ସେତେବେଳେ କ'ଣ କହିବି ?

''ତେଣୁ ଏଠାରେ ସବୁ ଭାବ ଅଛି-ଏଠାକୁ ସବୁ ରକମର ଲୋକ ଆସନ୍ତି ବୋଲି ବୈଷ୍ଣବ, ଶାକ୍ତ, କର୍ତ୍ତାଭଜା, ବେଦାନ୍ତ ବାଦୀ, ପୁଣି ଇଦାନୀଂ ବ୍ରହ୍ମଜ୍ଞାନୀ ।''

**''ତାଙ୍କ ଇଚ୍ଛାରେ ନାନା ଧର୍ମ ନାନା ମତ ହୋଇଛି ।''**

''ତେବେ ଈଶ୍ୱର ଯାହାର ଯାହା ପେଟରେ ସହେ ତାକୁ ସେହିଟି ଦେଇଛନ୍ତି । ମା' ସମସ୍ତଙ୍କୁ ମାଛର ପଲାଉ ଦିଅନ୍ତି ନାହିଁ । ସମସ୍ତଙ୍କର ପେଟରେ ସହେ ନାହିଁ । ତେଣୁ କାହାକୁ ମାଛର ଝୋଳ କରି ଦିଅନ୍ତି ।''

''ଯାହାର ଯାହା ପ୍ରକୃତି, ଯାହାର ଯାହା ଭାବ, ସେ ସେହି ଭାବଟି ନେଇ ରହେ । ବହୁଲୋକ ମିଳି ଯେଉଁ ସ୍ଥାନରେ ଉତ୍ସବ କରନ୍ତି, ସେଠାରେ ନାନା ମୂର୍ତ୍ତି କରନ୍ତି । ସେଠାକୁ ନାନା ମତର ଲୋକ ଯାଆନ୍ତି । ରାଧାକୃଷ୍ଣ, ହରପାର୍ବତୀ, ସୀତାରାମ ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ମୂର୍ତ୍ତି ରଖାଯାଇଛି, ପୁଣି ପ୍ରତ୍ୟେକ ମୂର୍ତ୍ତି ନିକଟରେ ଲୋକଙ୍କର ଭିଡ଼ ହୋଇଛି । ଯେଉଁମାନେ ବୈଷ୍ଣବ ସେମାନେ ବେଶି ରାଧାକୃଷ୍ଣ ନିକଟରେ ଠିଆହୋଇ ଦେଖୁଛନ୍ତି । ଯେଉଁମାନେ ଶାକ୍ତ ସେମାନେ ହରପାର୍ବତୀଙ୍କ ନିକଟରେ । ଯେଉଁମାନେ ରାମଭକ୍ତ ସେମାନେ ସୀତାରାମଙ୍କ ମୂର୍ତ୍ତି ନିକଟରେ ।''

''ତେବେ ଯେଉଁମାନଙ୍କର କୌଣସି ଠାକୁରଙ୍କ ଆଡ଼େ ମନ ନାହିଁ, ସେମାନଙ୍କ କଥା ଅଲଗା । ବେଶ୍ୟା ଉପପତିକୁ ଝାଡୁ ମାରୁଛି, —ସେପରି ସ୍ଥାନରେ ଏପରି ମୂର୍ତ୍ତି ମଧ୍ୟ କରନ୍ତି । ଏସବୁ ଲୋକ ସେହିଠାରେ ଠିଆହୋଇ ହାଁ କରି ଦେଖନ୍ତି ଆଉ ଚିତ୍କାର କରି ବନ୍ଧୁମାନଙ୍କୁ ଡାକନ୍ତି, 'ଆରେ ସେ ସବୁ କଅଣ ଦେଖୁଛ, ଏପଟକୁ ଆସ ! ଏପଟକୁ ଆସ !''

ସମସ୍ତେ ହସୁଛନ୍ତି । ଗୋସ୍ୱାମୀ ପ୍ରଣାମ କରି ବିଦାୟ ଗ୍ରହଣ କଲେ ।

## (୪)

## ବାଳକ ଭକ୍ତମାନଙ୍କ ସଙ୍ଗରେ ଆନନ୍ଦ । ମା' କାଳୀଙ୍କ ଆଳତି ଦର୍ଶନ ଓ ଚାମର ବ୍ୟଜନ । ମାଆ ପୁଅଙ୍କ କଥା— 'କାହିଁକି ବିଚାର କରାଅ ।'

ସମୟ ପାଞ୍ଚଟା । ଠାକୁର ପଶ୍ଚିମର ଗୋଲ ବାରଣ୍ଡାରେ । ବାବୁରାମ, ଲାଟୁ, ମୁଖାର୍ଜୀ ଭ୍ରାତୃଦ୍ୱୟ, ମାଷ୍ଟର ପ୍ରଭୃତି ସେଠାରେ ଉପସ୍ଥିତ ଅଛନ୍ତି ।

ଶ୍ରୀରାମକୃଷ୍ଣ (ମାଷ୍ଟର ପ୍ରଭୃତିଙ୍କ ପ୍ରତି)— କାହିଁକି ଗୋଟିଏ ଭାବକୁ ନେଇ ରହିବି ! ସେମାନେ ବୈଷ୍ଣବ, ବାଛ ବିଚାର ବେଶି, ମନେ କରନ୍ତି ସେମାନଙ୍କ ମତ ହିଁ ଠିକ୍, ଆଉ ସବୁ ଭୁଲ । ଯେଉଁ କଥା କହିଛି, ଖୁବ୍ ମନକୁ ଆସିଛି । (ସହାସ୍ୟ) ହାତୀର ମୁଣ୍ଡରେ ଅଙ୍କୁଶ ମାରିବାକୁ ହୁଏ । ମୁଣ୍ଡରେ ପରା ତାଙ୍କର କୋଷ ଥାଏ । (ସମସ୍ତଙ୍କର ହାସ୍ୟ) ।

ଠାକୁର ଏଥର ବାଳକମାନଙ୍କ ସଙ୍ଗରେ ଖେଳ କୌତୁକ କରିବାକୁ ଲାଗିଲେ ।

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)— ମୁଁ ଏମାନଙ୍କୁ (ପିଲାମାନଙ୍କୁ) କେବଳ ନିରାମିଷ ଦିଏ ନାହିଁ । ମଝିରେ ମଝିରେ ଆଇଁସ ଧୁଆଜଳ ଟିକିଏ ଟିକିଏ ଦିଏ । ତାହା ନ ହେଲେ ଆସିବେ ନାହିଁ ।

ମୁଖାର୍ଜୀମାନେ ବାରଣ୍ଡାରୁ ଚାଲିଗଲେ । ଉଦ୍ୟାନରେ ଟିକିଏ ବୁଲିବେ ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)— ମୁଁ ଜପ କରୁଥିଲି । ସମାଧି ହେଉଥିଲା । ପୁଣି ଏପରି ଭାବ ?

ମାଷ୍ଟର (ଗମ୍ଭୀର ଭାବରେ)— ଆଜ୍ଞା, ବେଶ୍ !

ଶ୍ରୀରାମକୃଷ୍ଣ (ସହାସ୍ୟ)— ସାଧୁ ! ସାଧୁ ! -କିନ୍ତୁ ସେମାନେ (ମୁଖାର୍ଜୀମାନେ) କଅଣ ମନେ କରିବେ ?

ମାଷ୍ଟର— କାହିଁକି ? କପ୍ତାନ ତ କହିଥିଲେ, ଆପଣଙ୍କର ବାଳକର ଅବସ୍ଥା । ଈଶ୍ୱର ଦର୍ଶନ କଲେ ବାଳକର ଅବସ୍ଥା ହୁଏ ।

ଶ୍ରୀରାମକୃଷ୍ଣ— ଆଉ ବାଲ୍ୟ, କୈଶୋର, ଯୁବା । କୈଶୋର ଅବସ୍ଥାରେ ଫେଚକାମୀ କରନ୍ତି, ହୁଏତ ମୁହଁରୁ ଖରାପ କଥା ବାହାରେ । ଯୁବା ଅବସ୍ଥାରେ ସିଂହପରି ଲୋକଶିକ୍ଷା ଦିଏ ।

"ତୁମେ ନୋହିଲେ ସେମାନଙ୍କୁ (ମୁଖାର୍ଜୀମାନଙ୍କୁ) ବୁଝାଇଦେବ ।"

ମାଷ୍ଟର— ଆଜ୍ଞା, ମୋତେ ବୁଝାଇବାକୁ ପଡ଼ିବ ନାହିଁ । ସେମାନେ କଅଣ ଜାଣନ୍ତି ନାହିଁ ?

ଶ୍ରୀରାମକୃଷ୍ଣ ପିଲାମାନଙ୍କ ସଙ୍ଗରେ ଟିକିଏ ଆମୋଦ ଆହ୍ଲାଦ କରି ଜଣେ ଭକ୍ତଙ୍କୁ କହୁଛନ୍ତି, "ଆଜି ଅମାବାସ୍ୟା ମା'ଙ୍କ ମନ୍ଦିରକୁ ଯାଅ !"

ସନ୍ଧ୍ୟାପରେ ଆଳତିର ଶବ୍ଦ ଶୁଣାଯାଉଛି ! ଠାକୁର ବାବୁରାମଙ୍କ ସଙ୍ଗରେ ଯାଉଛନ୍ତି । ମାଷ୍ଟର ମଧ୍ୟ ସାଙ୍ଗରେ ଅଛନ୍ତି । ହରିଶ ବାରଣ୍ଡାରେ ବସିଛନ୍ତି ଦେଖି ଠାକୁର କହୁଛନ୍ତି, 'ଏହାଙ୍କର ମନେ ହେଉଛି ଭାବ ହେଲା ।'

ପ୍ରାଙ୍ଗଣ ମଧ୍ୟରେ ଯାଉ ଯାଉ ଶ୍ରୀଶ୍ରୀରାଧାକାନ୍ତଙ୍କର ଟିକିଏ ଆଳତି ଦେଖିଲେ । ତାହାପରେ କାଳୀଙ୍କ ମନ୍ଦିରକୁ ଯାଉଛନ୍ତି । ଯାଉ ଯାଉ ହାତ ଉଠାଇ ଜଗନ୍ମାତାଙ୍କୁ ଡାକୁଛନ୍ତି, —"ଓ ମା' ! ଓ ମା' ! ବ୍ରହ୍ମମୟୀ !" ମନ୍ଦିରର ସମ୍ମୁଖ ଚାନ୍ଦିନୀରେ ଉପସ୍ଥିତ ହୋଇ ମା'ଙ୍କୁ ଭୂମିଷ୍ଠ ପ୍ରଣାମ କରୁଛନ୍ତି । ମା'ଙ୍କର ଆଳତି ହେଉଛି । ଠାକୁର ମନ୍ଦିରରେ ପ୍ରବେଶ କଲେ ଓ ଚାମର ନେଇ ବ୍ୟଜନ କଲେ ।

ଆଳତି ସମାପ୍ତ ହେଲା । ଯେଉଁମାନେ ଆଳତି ଦେଖୁଥିଲେ ସେମାନେ ସମସ୍ତେ ଭୂମିଷ୍ଠ ହୋଇ ପ୍ରଣାମ କଲେ । ଠାକୁର ଶ୍ରୀରାମକୃଷ୍ଣ ମଧ ମନ୍ଦିରର ବାହାରକୁ ଆସି ପ୍ରଣାମ କଲେ । ମହେନ୍ଦ୍ର ମୁଖାର୍ଜୀ ପ୍ରଭୃତି ଭକ୍ତମାନେ ପ୍ରଣାମ କଲେ ।

ଆଜି ଅମାବାସ୍ୟା । ଠାକୁର ଭାବାବିଷ୍ଟ ହୋଇଛନ୍ତି । ପୁରା ବିଭୋର । ବାବୁରାମଙ୍କର ହାତଧରି ମାତାଲଙ୍କ ପରି ଢଳି ଢଳି ଘରକୁ ଫେରିଲେ ।

ଘରର ପଶ୍ଚିମ ପାଖ ଗୋଲ ବାରଣ୍ଡାରେ ଆଲୁଅବାଲା ଗୋଟିଏ ଆଲୁଅ ଜଳାଇଦେଇ ଯାଇଛି । ଠାକୁର ସେହି ବାରଣ୍ଡାକୁ ଆସି ଟିକିଏ ବସିଲେ । ମୁଖରେ **"ହରି ଓଁ ! ହରି ଓଁ ! ହରି ଓଁ !** ଓ ତନ୍ତ୍ରୋକ୍ତ ନାନାବିଧ ବୀଜମନ୍ତ୍ର ।

କିୟତ୍‌କ୍ଷଣ ପରେ ଠାକୁର ଘର ମଧ୍ୟରେ ନିଜର ଆସନରେ ପୂର୍ବାସ୍ୟ ହୋଇ ବସିଛନ୍ତି । ଏପର୍ଯ୍ୟନ୍ତ ଭାବର ପୂର୍ଣ୍ଣମାତ୍ରା ରହିଛି ।

ମୁଖାର୍ଜୀ ଭ୍ରାତୃଦ୍ୱୟ, ବାବୁରାମ ପ୍ରଭୃତି ଭକ୍ତମାନେ ତଳେ ବସିଛନ୍ତି ।

(Origin of Language–The Philosophy of Prayer.)

ଠାକୁର ଶ୍ରୀରାମକୃଷ୍ଣ ଭାବାବିଷ୍ଟ ହୋଇ ମା'ଙ୍କ ସହିତ କଥା କହୁଛନ୍ତି–''ମା, ମୁଁ କହିବି ତେବେ ତୁମେ କରିବ—ଏ କଥା ତ ଠିକ୍ ନୁହେଁ ।

''କଥା କହିବାଟା କ'ଣ ? —କେବଳ ଇଙ୍ଗିତ ଛଡ଼ା ତ ଅନ୍ୟ କିଛି ନୁହେଁ ! କେହି କହନ୍ତି 'ମୁଁ ଖାଇବି' —ପୁଣି କେହି କହନ୍ତି, 'ଯା ! ମୁଁ ଶୁଣିବି ନାହିଁ' ।''

''ଆଚ୍ଛା, ମା ! ଯଦି ନ କହନ୍ତି, 'ମୁଁ ଖାଇବି' ତାହାହେଲେ କ'ଣ ପ୍ରକୃତରେ କ୍ଷୁଧା ରହିବ ନାହିଁ ? ତୁମକୁ କହିଲେ ତୁମେ ଶୁଣିବ, ଆଉ ଭିତରଟା କେବଳ ବ୍ୟାକୁଳ ହେଲେ ତୁମେ ଶୁଣିବ ନାହିଁ, —ତାହା କେବେ ହୋଇପାରେ !''

''ତୁମେ ଯାହା ଅଛ ତାହା ହିଁ ଅଛ—ତେବେ କହେ କାହିଁକି —ପ୍ରାର୍ଥନା କରେ କାହିଁକି ?''

''ଓ ! ଯେପରି କରାଅ ସେପରି କରେ ।''

''ଯା ! ସବୁ ଗୋଳେଇ ଗଲା ! —କାହିଁକି ବିଚାର କରାଅ !''

ଠାକୁର ଈଶ୍ୱରଙ୍କ ସଙ୍ଗରେ କଥା କହୁଛନ୍ତି, ଭକ୍ତମାନେ ଅବାକ୍ ହୋଇ ଶୁଣୁଛନ୍ତି ।

## ସଂସ୍କାର ଓ ତପସ୍ୟାର ପ୍ରୟୋଜନ ।
## ଭକ୍ତମାନଙ୍କୁ ଶିକ୍ଷା—ସାଧୁସେବା ।

ଏଥର ଭକ୍ତମାନଙ୍କ ଉପରେ ଠାକୁରଙ୍କ ଦୃଷ୍ଟି ପଡ଼ିଛି ।

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)—ତାଙ୍କୁ ଲାଭ କରିବାକୁ ହେଲେ ସଂସ୍କାର ଦରକାର । ଟିକିଏ କିଛି କରିଥିବା ଦରକାର । ତପସ୍ୟା । ତାହା ଏ ଜନ୍ମରେ ହେଉ ବା ପୂର୍ବଜନ୍ମରେ ହେଉ ।

"ଦ୍ରୌପଦୀଙ୍କର ଯେତେବେଳେ ବସ୍ତ୍ରହରଣ କରୁଥିଲେ, ତାଙ୍କର ବ୍ୟାକୁଳ କ୍ରନ୍ଦନ ଶୁଣି ଈଶ୍ୱର ଦେଖାଦେଲେ । ଆଉ କହିଲେ-'ତୁମେ ଯଦି କାହାକୁ କେବେହେଲେ ବସ୍ତ୍ରଦାନ କରିଥାଅ, ତାହା ମନେ ପକାଅ—ତେବେ ଲଜ୍ଜା ନିବାରଣ ହେବ ।' ଦ୍ରୌପଦୀ କହିଲେ, 'ହଁ ମନେ ପଡୁଛି । ଜଣେ ଋଷି ସ୍ନାନ କରୁଥିଲେ, —ତାଙ୍କର କୌପିନ ଭାସି ଯାଇଥିଲା । ମୁଁ ନିଜର ଲୁଗାରୁ ଅଧେ ଛିଣ୍ଡାଇ ତାଙ୍କୁ ଦେଇଥିଲି ।' ଭଗବାନ କହିଲେ—'ତେବେ ଆଉ ତୁମର ଭୟ ନାହିଁ ' ।"

ମାଷ୍ଟର ଠାକୁରଙ୍କର ପୂର୍ବଦିଗରେ ପାପୋଛରେ ବସିଛନ୍ତି ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—ତୁମେ ସେଇଟା ବୁଝିଛ ।

ମାଷ୍ଟର—ଆଜ୍ଞା, ସଂସ୍କାରର କଥା ।

ଶ୍ରୀରାମକୃଷ୍ଣ—ଥରେ କହ ଦେଖି କ'ଣ କହିଲି ।

ମାଷ୍ଟର—ଦ୍ରୌପଦୀ ସ୍ନାନ କରିବାକୁ ଯାଇଥିଲେ ଇତ୍ୟାଦି (ହାଜରାର ପ୍ରବେଶ) ।

## (୫)

## ହାଜରା ମହାଶୟ ।

ହାଜରା ମହାଶୟ ଏଠାରେ ଦୁଇବର୍ଷ ଅଛନ୍ତି । ସେ ଠାକୁରଙ୍କ ଜନ୍ମଭୂମି କାମାରପୁକୁର ନିକଟବର୍ତ୍ତୀ ସିଓଡ଼ ଗ୍ରାମରେ ପ୍ରଥମେ ଠାକୁରଙ୍କୁ ଦର୍ଶନ କରିଥିଲେ, ୧୮୮୦ ଖ୍ରୀଷ୍ଟାବ୍ଦରେ । ଏହି ଗ୍ରାମରେ ଠାକୁରଙ୍କର ଭାଗିନେୟ, ପିଉସୀଝିଅ ଭଉଣୀ ହେମାଙ୍ଗିନୀ ଦେବୀଙ୍କର ପୁତ୍ର, ଶ୍ରୀଯୁକ୍ତ ହୃଦୟ ମୁଖୋପାଧ୍ୟାୟଙ୍କ ବାସସ୍ଥାନ । ଠାକୁର ସେତେବେଳେ ହୃଦୟଙ୍କ ଘରେ ଅବସ୍ଥାନ କରୁଥିଲେ ।

ସିଓଡ଼ର ନିକଟବର୍ତ୍ତୀ ମରୋଗୋଡ଼ ଗ୍ରାମରେ ହାଜରା ମହାଶୟଙ୍କ ନିବାସ । ତାଙ୍କର ବିଷୟ—ସମ୍ପତ୍ତି, ଜମି ପ୍ରଭୃତି ଏକରକମ ଅଛି । ସ୍ତ୍ରୀ ସନ୍ତାନ ସନ୍ତତି ଅଛନ୍ତି । ଏକ ପ୍ରକାର ଚଳିଯାଏ । କିଛି ଋଣ ମଧ୍ୟ ଅଛି, ଅନ୍ଦାଜ ହଜାରେ ଟଙ୍କା ।

ଯୌବନ ସମୟରୁ ତାଙ୍କର ବୈରାଗ୍ୟର ଭାବ—କେଉଁଠାରେ ସାଧୁ କେଉଁଠାରେ ଭକ୍ତ, ଖୋଜି ବୁଲନ୍ତି । ଯେତେବେଳେ ଦକ୍ଷିଣେଶ୍ୱର କାଳୀ ମନ୍ଦିରକୁ ପ୍ରଥମେ ଆସନ୍ତି ଓ ସେଠାରେ ରହିବାକୁ ଚାହାନ୍ତି, ଠାକୁର ତାଙ୍କର ଭକ୍ତିଭାବ ଦେଖି ଓ ଦେଶର ପରିଚିତ ବୋଲି ସେଠାରେ ଯତ୍ନ କରି ନିଜ ପାଖରେ ରଖନ୍ତି ।

ହାଜରାଙ୍କର ଜ୍ଞାନୀର ଭାବ । ଠାକୁରଙ୍କର ଭକ୍ତିଭାବ ଓ ପିଲାମାନଙ୍କ ପାଇଁ ବ୍ୟାକୁଳତାକୁ ପସନ୍ଦ କରନ୍ତି ନାହିଁ ! ମଝିରେ ମଝିରେ ତାଙ୍କୁ ମହାପୁରୁଷ ବୋଲି ମନେ କରନ୍ତି । ପୁଣି କେତେବେଳେ ମଧ୍ୟ ସାମାନ୍ୟ ବୋଲି ମନେକରନ୍ତି ।

ସେ ଠାକୁରଙ୍କ ଘରର ଦକ୍ଷିଣ ପୂର୍ବ ବାରଣ୍ଡାରେ ଆସନ କରିଛନ୍ତି । ସେହିଠାରେ ମାଳା ନେଇ ଅନେକ ଜପ କରନ୍ତି । ରାଖାଲ ପ୍ରଭୃତି ଭକ୍ତମାନେ ବେଶି ଜପ କରନ୍ତି ନାହିଁ ବୋଲି ଲୋକଙ୍କ ପାଖରେ ନିନ୍ଦା କରନ୍ତି ।

ସେ ବାଛବିଚାରରେ ବଡ଼ ପକ୍ଷପାତୀ । ବାଛବିଚାର କରି ତାଙ୍କର ଏକପ୍ରକାର ଛୁଆଁଛୁଇଁ ଭାବ ଆସିଛି । ତାଙ୍କର ବୟସ ପ୍ରାୟ ୩୮ ବର୍ଷ ହେବ ।

ହାଜରା ମହାଶୟ ଘରେ ପ୍ରବେଶ କଲେ । ଠାକୁର ପୁଣି ଇଷତ୍ ଭାବାବିଷ୍ଟ ହୋଇଛନ୍ତି ଓ କଥା କହୁଛନ୍ତି ।

## ଈଶ୍ୱର କ'ଣ ପ୍ରାର୍ଥନା ଶୁଣନ୍ତି ? 'ଈଶ୍ୱରଙ୍କ ପାଇଁ କ୍ରନ୍ଦନ କର, ଶୁଣିବେ ।'

ଶ୍ରୀରାମକୃଷ୍ଣ (ହାଜରାଙ୍କ ପ୍ରତି) — ତୁମେ ଯାହା କରୁଛ ତାହା ଠିକ୍, — କିନ୍ତୁ ଠିକ୍ ଧାରାରେ ହେଉ ନାହିଁ ।

**''କାହାରି ନିନ୍ଦା କର ନାହିଁ — ଏପରିକି ସାମାନ୍ୟ କୀଟର ମଧ୍ୟ ନୁହେଁ ।''** ତୁମେ ନିଜେ ତ କହ ଲୋମସ ମୁନିଙ୍କ କଥା । ଯେତେବେଳେ ଭକ୍ତି ପ୍ରାର୍ଥନା କରିବ ସଙ୍ଗେ ସଙ୍ଗେ ଏଇଟି ମଧ୍ୟ କହିବ — 'ଯେପରି କାହାର ନିନ୍ଦା ନ କରେ' ।

ହାଜରା — (ଭକ୍ତି) ପ୍ରାର୍ଥନା କଲେ ସେ ଶୁଣିବେ ?

ଶ୍ରୀରାମକୃଷ୍ଣ — ଏକଶହ ଥର ! ଯଦି ସତରେ କରାଯାଏ — ଯଦି ଆନ୍ତରିକ କରାଯାଏ । ବିଷୟୀ ଲୋକ ଯେପରି ପୁତ୍ର କିମ୍ବା ସ୍ତ୍ରୀ ପାଇଁ କାନ୍ଦେ ସେହିପରି ଈଶ୍ୱରଙ୍କ ପାଇଁ କିଏ କାନ୍ଦେ ?

## ପୂର୍ବକଥା — କାମାରପୁକୁରରେ ଜଣଙ୍କର ସ୍ତ୍ରୀର ବେରାମ ହେତୁ ଥରଥର କମ୍ପ ।

''କାମାରପୁକୁରରେ ଜଣଙ୍କର ସ୍ତ୍ରୀର ବେରାମ ହୋଇଥିଲା । — ରୋଗ ଭଲ ହେବ ନାହିଁ ମନେକରି ଲୋକଟି ଥରି ଥରି କମ୍ପିବାକୁ ଲାଗିଲା, — ଚେତନା ହରାଇବାକୁ ବସିଲା !''

''ଈଶ୍ୱରଙ୍କ ପାଇଁ ଏପରି କିଏ ହେଉଛି !''

ହାଜରା ଠାକୁରଙ୍କର ପାଦଧୂଳି ନେଉଛନ୍ତି ।

ଶ୍ରୀରାମକୃଷ୍ଣ (ସଙ୍କୁଚିତ ହୋଇ) — ଏସବୁ କଅଣ !

ହାଜରା — ଯାହାଙ୍କ ପାଖରେ ମୁଁ ରହିଛି ତାଙ୍କ ପାଦର ଧୂଳି ନେବି ନାହିଁ ?

ଶ୍ରୀରାମକୃଷ୍ଣ — ଈଶ୍ୱରଙ୍କୁ ସନ୍ତୁଷ୍ଟ କର ତେବେ ସମସ୍ତେ ସନ୍ତୁଷ୍ଟ ହେବେ । **ତସ୍ମିନ୍ ତୁଷ୍ଟେ ଜଗତ୍ ତୁଷ୍ଟମ୍ ।** — ଭଗବାନ ଯେତେବେଳେ ଦ୍ରୌପଦୀଙ୍କର ଶାଗ ଖାଇ କହିଲେ, ମୁଁ ତୃପ୍ତ ହୋଇଛି, ସେତେବେଳେ ସମସ୍ତ ଜୀବଜଗତ୍ ତୃପ୍ତ — ହେଉ ହେଉ ହୋଇଥିଲା ! ଅନେକ ମୁନି ଖାଇଥିଲେ କଅଣ ଜଗତ୍ ସନ୍ତୁଷ୍ଟ ହୋଇଥିଲା — ହେଉ ହେଉ ହୋଇଥିଲା ?

ଲୋକଶିକ୍ଷାର୍ଥ କିଛି କର୍ମ କରିବାକୁ ହୁଏ, ଠାକୁର ଏହି କଥା କହୁଛନ୍ତି ।

## ପୂର୍ବକଥା—ବଟତଳ ସାଧୁଙ୍କର ଗୁରୁପାଦୁକା ଓ ଶାଳଗ୍ରାମ ପୂଜା ।

ଶ୍ରୀରାମକୃଷ୍ଣ (ହାଜରାଙ୍କ ପ୍ରତି)—ଜ୍ଞାନଲାଭ ପରେ ମଧ୍ୟ ଲୋକଶିକ୍ଷା ପାଇଁ ପୂଜାଦି କର୍ମ କରନ୍ତି ।

''ମୁଁ କାଳୀ ମନ୍ଦିରକୁ ଯାଏ, ପୁଣି ଘରର ଏହିସବୁ ଫଟୋକୁ ନମସ୍କାର କରେ,—ତେଣୁ ସମସ୍ତେ କରନ୍ତି । ତାହାପରେ ଅଭ୍ୟାସ ହୋଇଗଲେ ଯଦି ନ କରନ୍ତି ତାହାହେଲେ ମନ ହୁକୁହୁକୁ କରିବ ।''

''ବଟତଳ ସନ୍ନ୍ୟାସୀଙ୍କୁ ଦେଖିଲି । ଯେଉଁ ଆସନରେ ଗୁରୁପାଦୁକା ରଖିଛନ୍ତି, ତାହାରି ଉପରେ ଶାଳଗ୍ରାମ ରଖିଛନ୍ତି ! ସେ ପୂଜା କରୁଛନ୍ତି ! ମୁଁ ପ୍ରଶ୍ନ କଲି, 'ଯଦି ଏତେଦୂର ଜ୍ଞାନ ହୋଇଥାଏ, ତେବେ ପୂଜା କରୁଛନ୍ତି କାହିଁକି ? ସନ୍ନ୍ୟାସୀ କହିଲେ—'ସମସ୍ତ କରାଯାଉଛି—ଏ ମଧ୍ୟ ଗୋଟିଏ କଲି । କେତେବେଳେ ଫୁଲଟାଏ ଏ ପାଦରେ ଦେଲି, ପୁଣି କେତେବେଳେ ମଧ୍ୟ ଗୋଟାଏ ଫୁଲ ସେ ପାଦରେ ଦେଲି ।'

''ଦେହ ଥାଉଁ ଥାଉଁ କର୍ମତ୍ୟାଗ କରିପାରିବି ନାହିଁ—ପଙ୍କ ଥିଲେ ଭୁଡ଼ଭୁଡ଼ି ହେବ ହିଁ ହେବ ।*

## The three stages-ଶାସ୍ତ୍ର, ଗୁରୁମୁଖ, ସାଧନା; Goal ପ୍ରତ୍ୟକ୍ଷ ।

ଶ୍ରୀରାମକୃଷ୍ଣ (ହାଜରାଙ୍କ ପ୍ରତି)—ଏକ ଜ୍ଞାନ ରହିଲେ ବହୁଜ୍ଞାନ ଅଛି । ତୁଚ୍ଛା ଶାସ୍ତ୍ର ପଢ଼ିଲେ କଅଣ ହେବ ?

''ଶାସ୍ତ୍ରରେ ବାଲିଚିନି ମିଶା ଅଛି—ଚିନିକୁ ଗ୍ରହଣ କରିବା କଠିନ । ତେଣୁ ଶାସ୍ତ୍ରର ମର୍ମ ସାଧୁ ମୁଖରୁ, ଗୁରୁ ମୁଖରୁ, ଶୁଣିନେବାକୁ ହୁଏ । ସେତେବେଳେ ଗ୍ରନ୍ଥର କଅଣ ଦରକାର ?

''ଚିଠିରେ ଖବର ଆସିଛି, —'ପାଞ୍ଚସେର ସନ୍ଦେଶ ପଠାଇବାକୁ, —ଆଉ ଖଣ୍ଡେ ସରୁଧଡ଼ି ଲୁଗା ପଠାଇବାକୁ ।' ବର୍ତ୍ତମାନ ଚିଠିଖଣ୍ଡ ହଜିଗଲା । ସେତେବେଳେ ବ୍ୟସ୍ତ ହୋଇ ଚାରିପଟ ଖୋଜାଗଲା । ଅନେକ ଖୋଜିବା ପରେ ଚିଠିଟି ମିଳିଲା, ପଢ଼ି ଜଣାଗଲା, ଲେଖାଅଛି —'ପାଞ୍ଚସେର ସନ୍ଦେଶ ଆଉ ଖଣ୍ଡେ ସରୁଧଡ଼ି ଲୁଗା ପଠାଇବାକୁ ହେବ ।' ସେତେବେଳେ ଚିଠିଖଣ୍ଡ ଫିଙ୍ଗିଦେଲେ । ଆଉ କଅଣ ଦରକାର ? ବର୍ତ୍ତମାନ ସନ୍ଦେଶ ଓ ଲୁଗାର ଯୋଗାଡ଼ କଲେ ହେଲା ।

(ମୁଖାର୍ଜୀ, ବାବୁରାମ, ମାଷ୍ଟର ପ୍ରଭୃତି ଭକ୍ତମାନଙ୍କ ପ୍ରତି)—''ସବୁ ସନ୍ଧାନ ଜାଣି

---

* ନ ହି ଦେହଭୃତା ଶକ୍ୟଂ ତ୍ୟକ୍ତୁଂ କର୍ମାଣ୍ୟଶେଷତଃ ।
ଯସ୍ତୁ କର୍ମ-ଫଳତ୍ୟାଗୀ ସ ତ୍ୟାଗୀତ୍ୟଭିଧୀୟତେ ।। (ଗୀତା-୧୮ଅଃ)

ତାହାପରେ ବୁଡ଼ିବ । ପୋଖରୀର ଅମୁକ ସ୍ଥାନରେ ଢାଳଟି ପଡ଼ିଯାଇଛି । ସ୍ଥାନଟି ଠିକ୍ କରିବା ପରେ ସେହିଠାରେ ବୁଡ଼ିବାକୁ ହୁଏ ।

"ଶାସ୍ତ୍ରର ମର୍ମ ଗୁରୁମୁଖରୁ ଶୁଣିନେଇ ତାହାପରେ ସାଧନ କରିବାକୁ ହୁଏ । ଏହି ସାଧନ ଠିକ୍ ଠିକ୍ ହେଲେ ତେବେ ପ୍ରତ୍ୟକ୍ଷ ଦର୍ଶନ ।

"ଭିତରକୁ ବୁଡ଼ିଲେ ତେବେ ତ ଠିକ୍ ଠିକ୍ ସାଧନ ହେବ ! ବସି ବସି ଶାସ୍ତ୍ରର କଥା କେବଳ ବିଚାର କଲେ କଅଣ ହେବ ? ଶଳାମାନେ ବାଟରେ ଯିବାର କଥା—ତା' ନ କରି ଏହିସବୁ ନେଇ ମରୁଛନ୍ତି ! ମର ଶଳା, ନ ବୁଡ଼ !!

"ଯଦି କହିବ ବୁଡ଼ିଲେ ତ ମଗର କୁମ୍ଭୀରର ଭୟ ଅଛି—କାମକ୍ରୋଧାଦିଙ୍କର ଭୟ ଅଛି । —ତେବେ ହଳଦୀ ବୋଳିହୋଇ ବୁଡ଼—ସେମାନେ ପାଖକୁ ଆସିପାରିବେ ନାହିଁ । ବିବେକ ବୈରାଗ୍ୟ ହଳଦୀ ।"

## (୬)

## ପୂର୍ବକଥା—

## ଶ୍ରୀରାମକୃଷ୍ଣଙ୍କର ପୁରାଣ, ତନ୍ତ୍ର ଓ ବେଦ ମତରେ ସାଧନା

(ପଞ୍ଚବଟୀରେ, ବେଲଗଛ ମୂଳରେ ଓ ଚାନ୍ଦିନୀ ଉପରେ ସାଧନ ।
ତୋତାଙ୍କ ପାଖରେ ସନ୍ନ୍ୟାସ ଗ୍ରହଣ ୧୮୬୬)

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)—ସେ ମୋତେ ନାନା ପ୍ରକାର ସାଧନ କରାଇଛନ୍ତି । ପ୍ରଥମେ ପୁରାଣ ମତରେ, ତାହାପରେ ତନ୍ତ୍ରମତରେ, ପୁଣି ବେଦମତରେ । ପ୍ରଥମେ ପଞ୍ଚବଟୀରେ ସାଧନା କଲି । ତୁଳସୀ କାନନ ହେଲା—ତାହା ମଧ୍ୟରେ ବସି ଧ୍ୟାନ କଲି । କେତେବେଳେ ମଧ୍ୟ ବ୍ୟାକୁଳ ହୋଇ, 'ମା' ! ମା' !' ବୋଲି ଡାକୁଥିଲି ବା 'ରାମ ! ରାମ !' କହୁଥିଲି ।

"ଯେତେବେଳେ 'ରାମ ରାମ' କରେ ସେତେବେଳେ ହନୁମାନଙ୍କ ଭାବରେ ହୁଏତ ଗୋଟିଏ ଲାଞ୍ଜ ପିନ୍ଧି ବସିଛି ! ଉନ୍ମାଦ ଅବସ୍ଥା । ସେ ସମୟରେ ପୂଜା କରୁ କରୁ ରେଶମୀ ବସ୍ତ୍ର ପିନ୍ଧି ଆନନ୍ଦିତ ହୁଏ—ପୂଜାରେ ହିଁ ଆନନ୍ଦ !"

"ତନ୍ତ୍ର ମତରେ ସାଧନା ବେଲଗଛ ତଳେ । ସେତେବେଳେ ତୁଳସୀ ଗଛ—ସଜନାଗଛ—ଏକମନେ ହୁଏ !"

"ସେହି ଅବସ୍ଥାରେ ସାରା ରାତି ପଡ଼ିଥିବା ଶୃଗାଳ ଉଚ୍ଛିଷ୍ଟ—ତାହା ମଧ୍ୟ ସାପ ଖାଇଛି ନା ଅନ୍ୟ କେହି ଖାଇଛି ତାହାର ଠିକ୍ ନାହିଁ—ଏହି ଉଚ୍ଛିଷ୍ଟ ହିଁ ଆହାର ।"

"କୁକୁର ଉପରେ ଚଢ଼ି ତାହା ମୁହଁରେ ଲୁଚି ଦେଇ ଖୁଆଏ, ଆଉ ନିଜେ ମଧ୍ୟ ଖାଏ ସର୍ବଂ ବିଷ୍ଣୁମୟଂ ଜଗତ୍ । —ମାଟି ଉପରେ ଯେଉଁ ଜଳ ଜମିବ, ସେଥିରେ

ଆଚମନ କରିବାକୁ ହେବ । ତେଣୁ ମୁଁ ପୋଖରୀର ମାଟି ଉପରେ ଥିବା ଜଳ ଦ୍ୱାରା ଆଚମନ କଲି ।''

''ଅବିଦ୍ୟାକୁ ନାଶ ନ କଲେ ହେବ ନାହିଁ । ତେଣୁ ମୁଁ ବାଘ ହୋଇ ଅବିଦ୍ୟାକୁ ଖାଇ ପକାଏ ।''

''ବେଦ ମତରେ ସାଧନ ସମୟରେ ସନ୍ୟାସ ନେଲି । ସେତେବେଳେ ଚାନ୍ଦିନୀ ଉପରେ ପଡ଼ିରହେ—ହୃଦୁକୁ କହେ, —'ମୁଁ ସନ୍ୟାସୀ ହୋଇଛି, ଚାନ୍ଦିନୀ ଉପରେ ଭାତ ଖାଇବି !''

## ସାଧନ କାଳରେ ନାନା ଦର୍ଶନ ଓ ଜଗନ୍ମାତାଙ୍କର ବେଦାନ୍ତ, ଗୀତା ସମ୍ବନ୍ଧରେ ଉପଦେଶ ।

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)-ବ୍ରତ ନେଇଥିଲି ! ମା'ଙ୍କୁ କହିଲି, ମୁଁ ମୂର୍ଖ-ତୁମେ ମୋତେ ଜଣାଇଦିଅ-ବେଦ, ପୁରାଣ ଓ ତନ୍ତ୍ରରେ -ନାନା ଶାସ୍ତ୍ରରେ-କଅଣ ଅଛି ।

''ମା' କହିଲେ, ବେଦାନ୍ତର ସାର ବ୍ରହ୍ମ ସତ୍ୟ, ଜଗତ୍ ମିଥ୍ୟା । ଯେଉଁ ସଚ୍ଚିଦାନନ୍ଦ ବ୍ରହ୍ମଙ୍କର କଥା ବେଦରେ ଅଛି, ତାଙ୍କୁ ତନ୍ତ୍ରରେ କହନ୍ତି, ସଚ୍ଚିଦାନନ୍ଦଃ ଶିବ—ପୁଣି ତାଙ୍କୁ ହିଁ ପୁରାଣରେ କହନ୍ତି ସଚ୍ଚିଦାନନ୍ଦଃ କୃଷ୍ଣଃ ।''

''ଗୀତା ଦଶଥର କହିଲେ ଯାହା ହୁଏ—ତାହା ହିଁ ଗୀତାର ସାର । ଅର୍ଥାତ୍ ତ୍ୟାଗୀ ତ୍ୟାଗୀ ।''

''ତାଙ୍କୁ ଲାଭ କଲେ, ବେଦ, ବେଦାନ୍ତ, ପୁରାଣ, ତନ୍ତ୍ର—କେତେବେଳେ ପଡ଼ିଯାଏ ! (ହାଜରାଙ୍କୁ) ଓଁ ଉଚ୍ଚାରଣ କରିବାର ଶକ୍ତି ନାହିଁ । —ଏହିଟି କାହିଁକି ହୁଏ ? ସମାଧିରୁ ମନ ଅନେକ ତଳକୁ ନ ଆସିଲେ ଓଁ ଉଚ୍ଚାରଣ କରିପାରେ ନାହିଁ ।''

''ପ୍ରତ୍ୟକ୍ଷ ଦର୍ଶନ ପରେ ଯେଉଁ ଯେଉଁ ଅବସ୍ଥା ହୁଏ ବୋଲି ଶାସ୍ତ୍ରରେ ଅଛି, ସେ ସବୁ ହୋଇଥିଲା । ବାଳକବତ୍, ଉନ୍ମାଦବତ୍, ପିଶାଚବତ୍, ଜଡ଼ବତ୍ ।''

''ଆଉ ଶାସ୍ତ୍ରରେ ଯେପରି ଅଛି, ସେପରି ଦର୍ଶନ ମଧ୍ୟ ହୁଏ ।''

''କେତେବେଳେ ଦେଖେ ଜଗତ୍‌ମୟ ଅଗ୍ନିର ସ୍ଫୁଲିଙ୍ଗ !''

''କେତେବେଳେ ଦେଖେ ରଙ୍ଗ ମଶାଲର ଆଲୁଅ ଯେପରି ଜଳୁଛି !''

''ତାହାହେଲେ ହେଲା, ଶାସ୍ତ୍ର ସଙ୍ଗରେ ମିଳିଯାଉଛି ।''

## ଶ୍ରୀରାମକୃଷ୍ଣଙ୍କର ଅବସ୍ଥା—ନିତ୍ୟଲୀଳାଯୋଗ ।

''ପୁଣି ଦେଖାଇଲେ, ସେହି କେବଳ ଜୀବ, ଜଗତ୍, ଚତୁର୍ବିଂଶତି ତତ୍ତ୍ୱ ହୋଇଛନ୍ତି । ଛାତରେ ଉଠି ପୁଣି ସିଡ଼ିରେ ଓହ୍ଲାଇବାକୁ ହୁଏ । ଅନୁଲୋମ ବିଲୋମ ।''

''ଉଃ ! କି ଅବସ୍ଥା ଯେ ଯାଇଛି । —ଗୋଟାଏ ଅବସ୍ଥା ଯାଏ ତ ଆଉ ଗୋଟାଏ

ଅବସ୍ଥା ଆସେ । ଯେପରି ଢିଙ୍କିର ପାହାର । ଏକପାଖ ନୀଚ ହୁଏତ ଅନ୍ୟପାଖଟି ଉଚ୍ଚ ହୁଏ ।''

''ଯେତେବେଳେ ଅନ୍ତର୍ମୁଖ—ସମାଧିସ୍ଥ—ସେତେବେଳେ ଯେପରି ଈଶ୍ୱରଙ୍କୁ ଦେଖିଛି, ପୁଣି ଯେତେବେଳେ ବାହାର ଜଗତକୁ ମନ ଆସିଲା, ସେତେବେଳ ମଧ୍ୟ ସେହିପରି ଈଶ୍ୱରଙ୍କୁ ଦେଖିଛି ।''

''ଯେତେବେଳେ ଦର୍ପଣର ଏପାଖ ଦେଖୁଛି ସେତେବେଳେ ଈଶ୍ୱର । ଯେତେବେଳେ ଅନ୍ୟପାଖ ଦେଖୁଛି ସେତେବେଳେ ମଧ୍ୟ ଈଶ୍ୱର ।''

ମୁଖାର୍ଜୀ ଭ୍ରାତୃଦ୍ୱୟ, ବାବୁରାମ ପ୍ରଭୃତି ଭକ୍ତମାନେ ଅବାକ୍ ହୋଇ ଶୁଣୁଛନ୍ତି ।

## (୭)

## ପୂର୍ବକଥା—ଶମ୍ଭୁମଲ୍ଲିକଙ୍କର ଅନାସକ୍ତି । ମହାପୁରୁଷଙ୍କର ଆଶ୍ରୟ ।

ଶ୍ରୀରାମକୃଷ୍ଣ (ମୁଖାର୍ଜୀ ପ୍ରଭୃତିଙ୍କୁ)—କପ୍ତାନଙ୍କର ଠିକ୍ ସାଧକର ଅବସ୍ଥା ।

''ଐଶ୍ୱର୍ଯ୍ୟ ରହିଲେ ଯେ ସେଥିରେ ଆସକ୍ତ ହେବାକୁ ହେବ, ଏପରି କଥା ନୁହେଁ । ଶମ୍ଭୁ (ମଲ୍ଲିକ) କହନ୍ତି, 'ହୃଦୁ, ଗଣ୍ଠିଲି ବାନ୍ଧି ବସିଛି !' ମୁଁ କହେ କିପରି ଅଲକ୍ଷଣ କଥା କହୁଛ ?''

''ତପ୍ରେ ଶମ୍ଭୁ କହିଲେ, 'ନା, —ଆଶୀର୍ବାଦ କରନ୍ତୁ, ଏସବୁ ଛାଡ଼ି ଯେପରି ତାଙ୍କ ନିକଟକୁ ଯାଇପାରେ' ।''

''ତାଙ୍କ ଭକ୍ତଙ୍କର ଭୟ ନାହିଁ । ଭକ୍ତ ତାଙ୍କର ଆତ୍ମୀୟ । ସେ ସେମାନଙ୍କୁ ଟାଣିନେବେ । ଦୁର୍ଯ୍ୟୋଧନ ପ୍ରଭୃତି ଗନ୍ଧର୍ବଙ୍କ ପାଖରେ ବନ୍ଦୀ ହେବାରୁ, ଯୁଧିଷ୍ଠିର ହିଁ ଉଦ୍ଧାର କଲେ । କହିଲେ, ଆତ୍ମୀୟମାନଙ୍କର ଏପରି ଅବସ୍ଥା ହେଲେ ଆମମାନଙ୍କର ହିଁ କଳଙ୍କ ।''

## ଠାକୁର ମନ୍ଦିରର ବ୍ରାହ୍ମଣ ଓ ପରିଚାରକଗଣଙ୍କୁ ଭକ୍ତିଦାନ ।

ପ୍ରାୟ ରାତି ନଅଟା ହେଲାଣି । ମୁଖାର୍ଜୀ ଭ୍ରାତୃଦ୍ୱୟ କଲିକତାକୁ ଫେରିବା ପାଇଁ ପ୍ରସ୍ତୁତ ହେଉଛନ୍ତି । ଠାକୁର ଟିକିଏ ଉଠି ଘରେ ଓ ବାରଣ୍ଡାରେ ପଦଚାରଣ କରୁ କରୁ ବିଷ୍ଣୁମନ୍ଦିରରେ ଉଚ୍ଚସ୍ୱରରେ ସଂକୀର୍ତ୍ତନ ହେଉଥିବାର ଶୁଣିଲେ । ସେ ପଚାରିବାରୁ ଜଣେ ଭକ୍ତ କହିଲେ, ସେମାନଙ୍କ ସଙ୍ଗରେ ଲାଟୁ ଓ ହରିଶ୍ ଜୁଟିଛନ୍ତି । ଠାକୁର କହିଲେ, -ଓଃ ସେଥିପାଇଁ !

ଠାକୁର ବିଷ୍ଣୁ ମନ୍ଦିରକୁ ଆସିଲେ । ସଙ୍ଗେ ସଙ୍ଗେ ଭକ୍ତମାନେ ମଧ୍ୟ ଆସିଲେ । ସେ ଶ୍ରୀଶ୍ରୀରାଧାକାନ୍ତଙ୍କୁ ଭୂମିଷ୍ଠ ହୋଇ ପ୍ରଣାମ କଲେ ।

ଠାକୁର ଦେଖିଲେ ଯେ, ଠାକୁର ମନ୍ଦିରର ବ୍ରାହ୍ମଣମାନେ ଯେଉଁମାନେ ଭୋଗ ରାନ୍ଧନ୍ତି, ନୈବେଦ୍ୟ କରିଦିଅନ୍ତି, ଅତିଥିମାନଙ୍କୁ ପରିବେଷଣ କରନ୍ତି ଏବଂ ପରିଚାରକମାନେ ଅନେକ ଏକତ୍ର ମିଳିତ ହୋଇ ନାମ ସଂକୀର୍ତ୍ତନ କରୁଛନ୍ତି । ଠାକୁର ଟିକିଏ ଠିଆ ହୋଇ

ସେମାନଙ୍କ ଉତ୍ସାହ ବର୍ଦ୍ଧନ କଲେ ।

ଅଗଣା ଭିତରେ ଫେରିଆସିବା ସମୟରେ ଭକ୍ତମାନଙ୍କୁ କହୁଛନ୍ତି—

''ଦେଖ, ଏମାନଙ୍କ ମଧ୍ୟରୁ କେହି ବେଶ୍ୟାର ଘରକୁ ଯାଆନ୍ତି, କେହି ବାସନ ମାଜନ୍ତି !''

ଘରେ ଆସି ଠାକୁର ନିଜ ଆସନରେ ପୁଣି ବସିଅଛନ୍ତି । ଯେଉଁମାନେ ସଂକୀର୍ତ୍ତନ କରୁଥିଲେ, ସେମାନେ ଆସି ଠାକୁରଙ୍କୁ ପ୍ରଣାମ କଲେ । ଠାକୁର ସେମାନଙ୍କୁ କହୁଛନ୍ତି— ''ଟଙ୍କା ପାଇଁ ଯେପରି ଝାଳ ବୁହାଅ, ସେହିପରି ହରିନାମ କରି ନାଚିଗାଇ ଝାଳ ବାହାର କରିବାକୁ ହୁଏ ।''

''ମୁଁ ମନେକଲି ତୁମମାନଙ୍କ ସଙ୍ଗରେ ନାଚିବି । ଯାଇ ଦେଖେ ଯେ, ପାଞ୍ଚଫୁଟଣ ପ୍ରଭୃତି ସବୁ ପଡ଼ିଛି—ମେଥି ପର୍ଯ୍ୟନ୍ତ । (ସମସ୍ତଙ୍କର ହାସ୍ୟ)—ମୁଁ ଆଉ କ'ଣ ଦେଇ ବଘାରିବି !''

''ତୁମେମାନେ ମଝିରେ ମଝିରେ ହରିନାମ କରିବାକୁ ଏହିପରି ଆସିବ ।''

ମୁଖାର୍ଜୀ ପ୍ରଭୃତି ଠାକୁରଙ୍କୁ ପ୍ରଣାମ କରି ବିଦାୟ ଗ୍ରହଣ କଲେ ।

ଠାକୁରଙ୍କ ଘରର ଠିକ୍ ଉତ୍ତରର ଛୋଟ ବାରଣ୍ଡା ପାଖରେ ମୁଖାର୍ଜୀମାନଙ୍କର ଗାଡ଼ି ଆସି ଠିଆହେଲା । ଗାଡ଼ିର ବତୀ ଜଳୁଅଛି ।

## ଭକ୍ତଙ୍କର ବିଦାୟ ଓ ଠାକୁରଙ୍କର ସ୍ନେହ ।

ଠାକୁର ସେହି ବାରଣ୍ଡାରେ ଚାନ୍ଦିନୀର ଠିକ୍ ଉତ୍ତର—ପୂର୍ବ କୋଣରେ ଉତ୍ତରାଭିମୁଖ ହୋଇ ଠିଆ ହୋଇଅଛନ୍ତି । ଜଣେ ଭକ୍ତ ପଥ ଦେଖାଇବାକୁ ଗୋଟିଏ ଆଲୁଅ ଆଣିଛନ୍ତି ଭକ୍ତମାନଙ୍କୁ ଉଠାଇଦେବେ ।

ଆଜି ଅମାବାସ୍ୟା—ଅନ୍ଧକାର ରାତ୍ରି । —ଠାକୁରଙ୍କର ପଶ୍ଚିମ ଦିଗରେ ଗଙ୍ଗା ସମ୍ମୁଖରେ ନହବତ୍, ପୁଷ୍ପୋଦ୍ୟାନ ଓ କୋଠି, ଠାକୁରଙ୍କ ଡାହାଣ ଦିଗରେ ସଦର ଫାଟକକୁ ଯିବାର ରାସ୍ତା ।

ଭକ୍ତମାନେ ତାଙ୍କର ଚରଣରେ ମସ୍ତକ ଅବଲୁଣ୍ଠିତ କରି ଜଣେ ଜଣେ ଗାଡ଼ିରେ ଉଠୁଛନ୍ତି । ଠାକୁର ଜଣେ ଭକ୍ତଙ୍କୁ କହୁଛନ୍ତି—''ଈଶାନଙ୍କୁ ଥରେ କହନା—ତାଙ୍କର କର୍ମ ପାଇଁ ।''

ଗାଡ଼ିରେ ବେଶି ଲୋକ ଦେଖି ପରେ ଘୋଡ଼ାଙ୍କର କଷ୍ଟ ହେବ—ଠାକୁର କହୁଛନ୍ତି, —''ଗାଡ଼ିରେ ଏତେ ଲୋକ କ'ଣ ଧରିବେ ?''

ଠାକୁର ଠିଆ ହୋଇଛନ୍ତି । ସେହି ଭକ୍ତବତ୍ସଳ ମୂର୍ତ୍ତିକୁ ଦେଖି ଦେଖି ଭକ୍ତମାନେ କଲିକତା ଯାତ୍ରା କଲେ ।



# ନବମ ପରିଚ୍ଛେଦ
## (୧)

## ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱରରେ ଭକ୍ତମାନଙ୍କ ସଙ୍ଗରେ । କଲିକତାରେ ଚୈତନ୍ୟଲୀଳା ଦର୍ଶନ । ରାଖାଲ, ନାରାୟଣ, ନିତ୍ୟଗୋପାଳ ଓ ଛୋଟ ଗୋପାଳଙ୍କ ସମ୍ବାଦ ।

ଆଜି ରବିବାର, ଆଶ୍ୱିନ ୬ ଦିନ । ଠାକୁର ଶ୍ରୀରାମକୃଷ୍ଣଙ୍କ ଘରେ ଅନେକ ଭକ୍ତ ସମବେତ ହୋଇଛନ୍ତି । ରାମ, ମହେନ୍ଦ୍ର (ମୁଖାର୍ଜୀ), ଚୁନିଲାଲ, ମାଷ୍ଟର ପ୍ରଭୃତି ଅନେକ ଅଛନ୍ତି । ୨୧ ତାରିଖ ସେପ୍ଟେମ୍ବର, ୧୮୮୪ ଖ୍ରୀଷ୍ଟାବ୍ଦ ।

ଚୁନିଲାଲ ନିକଟରେ ବୃନ୍ଦାବନରୁ ଫେରିଛନ୍ତି । ସେଠାକୁ ସେ ଓ ରାଖାଲ, ବଳରାମଙ୍କ ସଙ୍ଗରେ ଯାଇଥିଲେ । ରାଖାଲ ଓ ବଳରାମ ଏ ପର୍ଯ୍ୟନ୍ତ ଫେରିନାହାନ୍ତି । ନିତ୍ୟଗୋପାଳ ମଧ୍ୟ ବୃନ୍ଦାବନରେ ଅଛନ୍ତି । ଠାକୁର ଚୁନିଲାଲଙ୍କ ସହିତ ବୃନ୍ଦାବନର କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ—ରାଖାଲ କିପରି ଅଛି ?

ଚୁନି—ଆଜ୍ଞା, ସେ ବର୍ତ୍ତମାନ ଭଲ ଅଛନ୍ତି ।

ଶ୍ରୀରାମକୃଷ୍ଣ—ନିତ୍ୟଗୋପାଳ ବର୍ତ୍ତମାନ ଆସିବ ନାହିଁ ?

ଚୁନି—ଏପର୍ଯ୍ୟନ୍ତ ସେଠାରେ ଅଛନ୍ତି, ଦେଖିଆସିଛି ।

ଶ୍ରୀରାମକୃଷ୍ଣ—ତୁମର ପରିବାର ସବୁ କାହା ସଙ୍ଗେ ଆସୁଛନ୍ତି ?

ଚୁନି—ବଳରାମ ବାବୁ କହିଛନ୍ତି, ଭଲଲୋକ ସଙ୍ଗରେ ପଠାଇଦେବେ ନାମ କହି ନାହାନ୍ତି ।

ଠାକୁର ମହେନ୍ଦ୍ର ମୁଖାର୍ଜୀଙ୍କ ସଙ୍ଗରେ ନାରାୟଣଙ୍କ କଥା କହିବାକୁ ଲାଗିଲେ । ନାରାୟଣ ସ୍କୁଲରେ ପଢ଼ନ୍ତି । ୧୬/୧୭ ବର୍ଷ ବୟସ । ଠାକୁରଙ୍କ ପାଖକୁ ମଝିରେ ମଝିରେ ଆସନ୍ତି । ଠାକୁର ଭାରି ଭଲ ପାଆନ୍ତି ।

ଶ୍ରୀରାମକୃଷ୍ଣ—ଖୁବ୍ ସରଳ; ନା ? (ସରଳ ଏହିକଥା କହୁ କହୁ ଠାକୁର ଯେପରି ଆନନ୍ଦରେ ପରିପୂର୍ଣ୍ଣ ହେଲେ !)

ମହେନ୍ଦ୍ର—ଆଜ୍ଞା ହଁ, ଖୁବ୍ ସରଳ ।

ଶ୍ରୀରାମକୃଷ୍ଣ—ତା'ର ମା' ସେଦିନ ଆସିଥିଲା । ଅଭିମାନିନୀ ଦେଖି ଭୟ ହେଲା । ତା'ପରେ ତୁମେମାନେ ଏଠାକୁ ଆସ, କପ୍ତାନ ଆସେ, ଏସବୁ ସେଦିନ ଦେଖିପାରିଲା । ସେତେବେଳେ ଠିକ୍ କରି ଭାବିଲା ଯେ, ଖାଲି ନାରାୟଣ ଆସେ ଆଉ ମୁଁ ଆସେ, ତାହା ନୁହେଁ (ସମସ୍ତଙ୍କର ହାସ୍ୟ) । ମିଶିରି ଏ ଘରେ ଥିଲା, ତାହା ଦେଖି କହିଲା ଭଲ ମିଶିରି । ତେବେ ଜାଣିଲା ଖାଇବା ପିଇବାରେ କୌଣସି ଅସୁବିଧା ନାହିଁ ।

''ସେମାନଙ୍କ ସାମ୍ନାରେ ବୋଧହୁଏ ବାବୁରାମକୁ କହିଲି, ନାରାୟଣ ପାଇଁ ଆଉ ତୋ' ପାଇଁ ଏ ସନ୍ଦେଶଗୁଡ଼ାକ ରଖିଦେ । ତାହାପରେ ଗଣିର ମା' ଓ ଅନ୍ୟ ସମସ୍ତେ କହିଲେ, ମା ଲୋ, ନୌକା ଭଡ଼ା ପାଇଁ ଯାହା କରେ ! ମୋତେ କହିଲା ଯେ ଆପଣ ନାରାୟଣକୁ କୁହନ୍ତୁ, ଯେପରି ବିବାହ କରେ । ସେ କଥାରେ ମୁଁ କହିଲି, ସେସବୁ ଅଦୃଷ୍ଟର କଥା । ସେଥିରେ ମୁଁ କହିବି କାହିଁକି ? (ସମସ୍ତଙ୍କର ହାସ୍ୟ) । ଭଲକରି ପଢ଼େ ନାହିଁ; ତେଣୁ କହିଲା, ଆପଣ କହନ୍ତୁ ଯେପରି ଭଲକରି ପଢ଼େ । ମୁଁ କହିଲି, ପଢ଼ରେ । ତହୁଁ ପୁଣି କହିଲା, ଟିକିଏ ଭଲକରି କୁହନ୍ତୁ । (ସମସ୍ତଙ୍କର ହାସ୍ୟ) ।''

ଶ୍ରୀରାମକୃଷ୍ଣ (ଚୁନି ପ୍ରତି)—ଆଚ୍ଛା ଗୋପାଳ ଆସେ ନାହିଁ କାହିଁକି ?

ଚୁନି—ରକ୍ତ ଅମାଶୟ ହୋଇଛି ।

ଶ୍ରୀରାମକୃଷ୍ଣ—ଔଷଧ ଖାଉଛି ?

## ଥିଏଟର ଓ ବେଶ୍ୟାର ଅଭିନୟ । ପୂର୍ବକଥା—ବେଲୁନ ଦର୍ଶନ ଓ ଶ୍ରୀରାମକୃଷ୍ଣଙ୍କ ଉଦ୍ଦୀପନା ।

ଠାକୁର ଆଜି କଲିକତାର ଷ୍ଟାର ଥିଏଟରକୁ ଚୈତନ୍ୟଲୀଳା ଦେଖିବାକୁ ଯିବେ । ଷ୍ଟାର ଥିଏଟର ସେ ସମୟରେ ଯେଉଁଠାରେ ଅଭିନୟ ହେଉଥିଲା, ଆଜିକାଲି ସେଠାରେ କୋହିନୁର ଥିଏଟର । ମହେନ୍ଦ୍ର ମୁଖାର୍ଜୀଙ୍କ ସହିତ ତାଙ୍କ ଗାଡ଼ିରେ ଅଭିନୟ ଦେଖିବାକୁ ଯିବେ । କେଉଁଠାରେ ବସିଲେ ଭଲ ଦେଖାଯାଏ, ସେହି କଥା ହେଉଛି । କେହି କେହି କହିଲେ, ଏକ ଟଙ୍କାର ସିଟ୍‌ରେ ବସିଲେ ଭଲ ଦେଖାଯାଏ । ରାମ କହିଲେ, କାହିଁକି ଏ ବକ୍ସରେ ବସିବେ ।

ଠାକୁର ହସୁଛନ୍ତି । କେହି କେହି କହିଲେ, ବେଶ୍ୟାମାନେ ଅଭିନୟ କରନ୍ତି । ଚୈତନ୍ୟଦେବ, ନିତାଇ ଏହିସବୁ ଅଭିନୟ ସେମାନେ କରନ୍ତି ।

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କୁ)—ମୁଁ ସେମାନଙ୍କୁ ମା' ଆନନ୍ଦମୟୀ ରୂପରେ ଦେଖିବି ।

''ସେମାନେ ଚୈତନ୍ୟଦେବ ସାଜିଛନ୍ତି, ତାହାହେଲେ ମଧ୍ୟ, ଶୋଲର ଆତ ଦେଖିଲେ ସତ୍ୟର ଆତ ଉଦ୍ଦୀପନା ହୁଏ ।''

''ଜଣେ ଭକ୍ତ ରାସ୍ତାରେ ଯାଉ ଯାଉ ଦେଖିଲା, କେତେଗୁଡ଼ିଏ ବାବଲ ଗଛ ରହିଛି । ଦେଖି ଭକ୍ତଟି ଏକାବେଳକେ ଭାବାବିଷ୍ଟ । ତା'ର ମନେହେଲା ଯେ ଏଇ କାଠରେ ଶ୍ୟାମସୁନ୍ଦରଙ୍କର ବଗିଚା ପାଇଁ ଭଲ କୋଦାଳ ବେଣ୍ଟ ହୁଏ । ସଙ୍ଗେ ସଙ୍ଗେ ଶ୍ୟାମସୁନ୍ଦର ମନେ ପଡ଼ିଗଲେ । ଯେତେବେଳେ ଗଡ଼ ପଡ଼ିଆରେ ବେଲୁନ୍ ଦେଖିବାକୁ ମୋତେ ନେଇଯାଇଥିଲେ, ସେତେବେଳେ ଗୋଟିଏ ସାହେବ ପିଲା ଗୋଟିଏ ଗଛକୁ ଆଉଜି ତ୍ରିଭଙ୍ଗ ହୋଇ ଠିଆ ହୋଇଥିଲା । ଯହୁଁ ଦେଖିଲି ସଙ୍ଗେ ସଙ୍ଗେ କୃଷ୍ଣଙ୍କର ଉଦ୍ଦୀପନା ହେଲା । ତତ୍‌କ୍ଷଣାତ୍ ସମାଧିସ୍ଥ ହୋଇଗଲି ।''

''ଚୈତନ୍ୟଦେବ ମେଡ଼ଗାଁ ଦେଇ ଯାଉଥିଲେ । ଶୁଣିଲେ ସେହି ଗ୍ରାମର ମାଟିରେ ଖୋଳ ତିଆରି ହୁଏ । ଯହୁଁ ଶୁଣିଲେ ସଙ୍ଗେ ସଙ୍ଗେ ଭାବାବିଷ୍ଟ ହୋଇଗଲେ ।''

''ଶ୍ରୀମତୀ ମେଘ କିମ୍ବା ମୟୂର କଣ୍ଠ ଦେଖିଲେ ଆଉ ସ୍ଥିର ହୋଇ ରହିପାରନ୍ତି ନାହିଁ । ଶ୍ରୀକୃଷ୍ଣଙ୍କର ଉଦ୍ଦୀପନା ହୋଇ ବାହ୍ୟଜ୍ଞାନ ଶୂନ୍ୟ ହୋଇଯାଆନ୍ତି ।''

ଠାକୁର ଟିକିଏ ଚୁପ୍ କରି ବସିଛନ୍ତି । କିୟତ୍‌କ୍ଷଣ ପରେ ପୁନରାୟ କଥା କହୁଛନ୍ତି ।

''ଶ୍ରୀମତୀଙ୍କର ମହାଭାବ । ଗୋପୀ ପ୍ରେମରେ କୌଣସି କାମନା ନାହିଁ । ଯେ ଠିକ୍ ଭକ୍ତ ସେ କାମନା କରେ ନାହିଁ । କେବଳ ଶୁଦ୍ଧା ଭକ୍ତି ପ୍ରାର୍ଥନା କରେ, କୌଣସି ଶକ୍ତି କିମ୍ୱା ସିଦ୍ଧି ଚାହେଁନାହିଁ ।''

## (୨)

## ଲଙ୍ଗୁଳୀ ବାବାଙ୍କ ଶିକ୍ଷା—ଈଶ୍ୱର ଲାଭର ବିଘ୍ନ ଅଷ୍ଟସିଦ୍ଧି ।

''ସିଦ୍ଧି ରହିଲେ ମହାବିପଦ । ଲଙ୍ଗୁଳୀ ମୋତେ କହିଲେ, ଜଣେ ସିଦ୍ଧ ସମୁଦ୍ର ଧାରରେ ବସିଥିଲା । ଏତିକିବେଳେ ଗୋଟାଏ ଝଡ଼ ଆସିଲା । ଝଡ଼ରେ ତା'ର ଭାରି କଷ୍ଟ ହେବାରୁ ସେ କହିଲା, ଝଡ଼ ବନ୍ଦ ହୋଇଯା । ତା'ର ବାକ୍ୟ ମିଥ୍ୟା ହେବାର ନୁହେଁ । ଖଣ୍ଡେ ଜାହାଜ ପାଲଟାଣି ଯାଉଥିଲା । ହଠାତ୍ ଝଡ଼ ବନ୍ଦ ହୋଇଯିବାରୁ ସଙ୍ଗେ ସଙ୍ଗେ ଜାହାଜଟା ଟୁବ୍ କରି ବୁଡ଼ିଗଲା । ଜାହାଜର ସମସ୍ତ ଲୋକ ତା' ସଙ୍ଗରେ ବୁଡ଼ିଗଲେ । ବର୍ତ୍ତମାନ ଏତେଗୁଡ଼ିଏ ଲୋକ ବୁଡ଼ିଯିବାର ପାପ ସବୁ, ତା'ର ହେଲା । ସେହି ପାପରେ ସିଦ୍ଧି ଚାଲିଗଲା, ପୁଣି ନରକ ମଧ୍ୟ ହେଲା ।''

''ଜଣେ ସାଧୁର ଖୁବ୍ ସିଦ୍ଧି ହୋଇଥିଲା, ଆଉ ସେଥିପାଇଁ ଅହଂକାର ମଧ୍ୟ ହୋଇଥିଲା । କିନ୍ତୁ ସାଧୁଟି ଭଲ ଲୋକ ଥିଲା, ଆଉ ତା'ର ତପସ୍ୟା ମଧ୍ୟ ଥିଲା । ଭଗବାନ ଛଦ୍ମବେଶରେ ସାଧୁର ବେଶ ଧରି ଦିନେ ତା' ପାଖକୁ ଆସିଲେ । ଆସି କହିଲେ, ମହାରାଜ, ଶୁଣିଛି ଆପଣଙ୍କର ଖୁବ୍ ସିଦ୍ଧି ହୋଇଛି । ସାଧୁ ଆଦର କରି ତାଙ୍କୁ ବସାଇଲେ । ଏହି ସମୟରେ ସେହି ବାଟଦେଇ ଗୋଟିଏ ହାତୀ ଯାଉଥିଲା । ସେତେବେଳେ ନୂତନ ସାଧୁଟି କହିଲେ, ଆଚ୍ଛା ମହାରାଜ, ଆପଣ ମନେକଲେ ଏହି ହାତୀକୁ ମାରି ଦେଇପାରନ୍ତି ? ସାଧୁ କହିଲେ, 'ଏସା ହୋନେ ଶକ୍ତା' । ଏହା କହି ଧୂଳି ମନ୍ତ୍ରରାଇ ହାତୀ ଉପରେ ପକାଇବାରୁ ସେ ଛଟପଟ ହୋଇ ମରିଗଲା । ତହୁଁ ଯେଉଁ ସାଧୁଟି ଆସିଛନ୍ତି, ସେ କହିଲେ ଆପଣଙ୍କର କି ଶକ୍ତି ! ହାତୀଟାକୁ ମାରିଦେଲେ ! ସେ ହସିବାକୁ ଲାଗିଲେ । ତହୁଁ ସେ ସାଧୁଟି କହିଲେ, ଆଚ୍ଛା, ହାତୀଟାକୁ ପୁଣି ବଞ୍ଚାଇ ପାରିବେ ? ସେ କହିଲେ, 'ଓ ଭି ହୋନେ ଶକ୍ତା ହ୍ୟାୟ', ଏହା କହି ପୁଣି ଧୂଳି ମନ୍ତ୍ରରାଇ ପକାଇବାରୁ ସଙ୍ଗେ ସଙ୍ଗେ ହାତୀଟା ଧଡ଼ପଡ଼ ହୋଇ ଉଠିପଡ଼ିଲା । ଏ ସାଧୁଟି କହିଲେ, ଆପଣଙ୍କର କି ଶକ୍ତି ! କିନ୍ତୁ ଗୋଟାଏ କଥା ପଚାରେ—ଏଇ ଯେ ହାତୀ ମାରିଲେ, ଆଉ ବଞ୍ଚାଇଲେ, ଆପଣଙ୍କର

କ'ଣ ହେଲା ? ନିଜର କିଛି ଉନ୍ନତି ହେଲା ? ଏଥିରେ କ'ଣ ଆପଣ ଭଗବାନଙ୍କୁ ପାଇଲେ ? ଏହା କହି ସାଧୁ ଅନ୍ତର୍ଦ୍ଧାନ ହେଲେ ।''

''ଧର୍ମର ସୂକ୍ଷ୍ମଗତି । ଟିକିଏ ମାତ୍ର କାମନା ରହିଲେ, ଭଗବାନ ଲାଭ ହୁଏ ନାହିଁ । ଛୁଞ୍ଚ ଭିତରକୁ ସୂତା ଯିବ । କିନ୍ତୁ ଟିକିଏ ମାତ୍ର ଆଁସୁ ରହିଲେ ଯାଇପାରେ ନାହିଁ ।''

''କୃଷ୍ଣ ଅର୍ଜୁନଙ୍କୁ କହିଥିଲେ, ଭାଇ, ମୋତେ ଯଦି ଲାଭ କରିବାକୁ ଚାହଁ, ତେବେ ଅଷ୍ଟସିଦ୍ଧିରୁ ଗୋଟିଏ ହେଲେ ସିଦ୍ଧି ଥିବା ପର୍ଯ୍ୟନ୍ତ ହେବ ନାହିଁ ।''

''କାହିଁକି ଜାଣ ? ସିଦ୍ଧି ରହିଲେ ଅହଂକାର ହୁଏ, ମନୁଷ୍ୟ ଈଶ୍ୱରଙ୍କୁ ଭୁଲିଯାଏ ।''

''ଜଣେ ବାବୁ ଆସିଥିଲା—ଟେରା । କହିଲା, ଆପଣ ପରମହଂସ, ତାହାହେଲେ ବେଶ୍, ଟିକିଏ ସ୍ୱସ୍ତୟନ କରିବାକୁ ହେବ । କି ହୀନ ବୁଦ୍ଧି ! 'ପରମହଂସ' ପୁଣି ସ୍ୱସ୍ତୟନ କରିବାକୁ ହେବ ।''

''ସ୍ୱସ୍ତୟନ କରି ଭଲ କରିବା ହେଉଛି ସିଦ୍ଧି । ଅହଂକାରରେ ଈଶ୍ୱର ଲାଭ ହୁଏ ନାହିଁ । ଅହଂକାର କିପରି ଜାଣ ? ଯେପରି ଢିପଜମି, ବର୍ଷାଜଳ ଜମେ ନାହିଁ, ଗଡ଼ିଯାଏ । ନୀଚ ଜମିରେ ଜଳ ଜମେ । ଆଉ ଅଙ୍କୁର ହୁଏ; ତା'ପରେ ଗଛ ହୁଏ, ତା'ପରେ ଫଳ ହୁଏ ।''

## Love to all – ଭଲ ପାଇପାରିଲେ ଅହଂକାର ଯାଏ ତେବେ ଈଶ୍ୱର ଲାଭ ।

''ହାଜରାକୁ କହେ, ମୁଁ ବୁଝିଛି, ଆଉ ସମସ୍ତେ ବୋକା—ଏ ବୁଦ୍ଧି କରନା ! ସମସ୍ତଙ୍କୁ ଭଲ ପାଇବାକୁ ହେବ । କେହି ପର ନୁହେଁ । ସର୍ବଭୂତରେ ସେହି ହରି ହିଁ ଅଛନ୍ତି । ତାଙ୍କ ଛଡ଼ା କିଛି ନାହିଁ । ପ୍ରହ୍ଲାଦଙ୍କୁ ଭଗବାନ କହିଲେ, ତୁମେ ବର ନିଅ । ପ୍ରହ୍ଲାଦ କହିଲେ, ଆପଣଙ୍କ ଦର୍ଶନ ପାଇଛି । ମୋର ଆଉ କିଛି ଦରକାର ନାହିଁ । ଭଗବାନ ଛାଡ଼ିଲେ ନାହିଁ । ତହୁଁ ପ୍ରହ୍ଲାଦ କହିଲେ, ଯଦି ବର ଦେବେ, ତେବେ ଏହି ବର ଦିଅନ୍ତୁ, ମୋତେ ଯେଉଁମାନେ କଷ୍ଟ ଦେଇଛନ୍ତି, ସେମାନଙ୍କର ଅପରାଧ ନ ହେଉ ।''

''ଏହାର ଅର୍ଥ ଯେ, ହରି ସେମାନଙ୍କ ରୂପରେ କଷ୍ଟ ଦେଲେ । ତେଣୁ ଲୋକମାନଙ୍କୁ କଷ୍ଟ ଦେଲେ ହରିଙ୍କୁ କଷ୍ଟ ହେବ ।''

## (୩)

## ଶ୍ରୀରାମକୃଷ୍ଣଙ୍କର ଜ୍ଞାନୋନ୍ମାଦ ଓ ଜାତି ବିଚାର । ପୂର୍ବକଥା— ୧୮୫୭, କାଳୀମନ୍ଦିର ପ୍ରତିଷ୍ଠା ପରେ ଜ୍ଞାନୀ ପାଗଳଙ୍କୁ ଦର୍ଶନ । ହଳଧାରୀ

''ଶ୍ରୀମତୀଙ୍କର ପ୍ରେମୋନ୍ମାଦ । ପୁଣି ଭକ୍ତି—ଉନ୍ମାଦ ଅଛି । ଯେପରି ହନୁମାନର । ସୀତା ନିଆଁରେ ପ୍ରବେଶ କରୁଛନ୍ତି ଦେଖି ରାମଙ୍କୁ ମାରିବାକୁ ଯାଏ ! ପୁଣି ଅଛି ଜ୍ଞାନୋନ୍ମାଦ ।

ଜଣେ ଜ୍ଞାନୀଙ୍କୁ ପାଗଳ ଅବସ୍ଥାରେ ଦେଖିଥିଲି । କାଳୀମନ୍ଦିରର ଠିକ୍ ପ୍ରତିଷ୍ଠା ପରେ । ଲୋକେ କହିଲେ, ରାମମୋହନ ରାୟଙ୍କର ବ୍ରାହ୍ମସଭାର ଜଣେ । ଗୋଟିଏ ଗୋଡ଼ରେ ଛିଣ୍ଡା ଜୋତା, ହାତରେ କଞ୍ଚି ଆଉ ଗୋଟାଏ ହାଣ୍ଡି, ଆମ୍ବଚାରା । ଗଙ୍ଗାରେ ବୁଡ଼ିଲେ ଓ ପରେ କାଳୀମନ୍ଦିରକୁ ଗଲେ । ହଳଧାରୀ ସେତେବେଳେ କାଳୀମନ୍ଦିରରେ ବସିଛି ।'' ତା'ପରେ ମତ୍ତ ହୋଇ ସ୍ତବ କରିବାକୁ ଲାଗିଲେ— କ୍ଷ୍ରୌଂ କ୍ଷ୍ରୌଂ ଖଟ୍ୱାଙ୍ଗ ଧାରିଣୀଂ ଇତ୍ୟାଦି ।

''କୁକୁର ପାଖକୁ ଯାଇ କାନଧରି ତା' ଉଚ୍ଛିଷ୍ଟ ଖାଇଲେ— କୁକୁର କିଛି କଲା ନାହିଁ । ମୋର ବି ସେତେବେଳେ ଏହିପରି ଅବସ୍ଥା ଆରମ୍ଭ ହୋଇଛି । ମୁଁ ହୃଦୁର ଗଳାଧରି କହିଲି, ଆରେ ହୃଦୁ, ମୋର ବି କ'ଣ ଏହି ଦଶା ହେବ ?''

''ମୋର ଉନ୍ମାଦ ଅବସ୍ଥା ! ନାରାୟଣ ଶାସ୍ତ୍ରୀ ଆସି ଦେଖିଲା, ମୁଁ ଗୋଟାଏ ବାଉଁଶ କାନ୍ଧରେ ପକାଇ ବୁଲୁଛି । ତହୁଁ ସେ ଲୋକମାନଙ୍କ ପାଖରେ କହିଲା, ଏ ତ ଉନ୍ମାଦ !''

''ସେ ଅବସ୍ଥାରେ ଜାତି ବିଚାର କିଛି ରହେ ନାହିଁ । ଜଣେ ନୀଚ ଜାତିର ସ୍ତ୍ରୀଲୋକ ଶାଗ ରାନ୍ଧି ପଠାଏ, ମୁଁ ଖାଏ ।''

''କାଳୀ ମନ୍ଦିରରେ କାଙ୍ଗାଳୀମାନେ ଖାଇଗଲେ, ସେମାନଙ୍କ ପତ୍ରକୁ ମୁଣ୍ଡ ଆଉ ମୁହଁରେ ଲଗାଏ । ହଳଧାରୀ ତହୁଁ ମୋତେ କହିଲା, ତୁ କରୁଛୁ କ'ଣ ? କାଙ୍ଗାଳୀମାନଙ୍କ ଅଇଁଠା ଖାଇଲୁ, ତୋର ପିଲାପିଲିଙ୍କ ବାହାଘର ହେବ କିପରି ? ମୋର ସେତେବେଳେ ରାଗ ହେଲା । ହଳଧାରୀ ମୋର ଦାଦା ହୁଏ । ତା' ହେଲେ କ'ଣ ମୁଁ ମାନିବି ? ତାକୁ କହିଲି, ତେବେରେ ଶାଳା, ତୁ କୁଆଡ଼େ ଗୀତା ବେଦାନ୍ତ ପଢୁ ? ତୁ ପରା ଶିଖାଉ— ବ୍ରହ୍ମ ସତ୍ୟ, ଜଗତ୍ ମିଥ୍ୟା ? ମୋର ପୁଣି ପିଲାଛୁଆ ହେବେ ଠଉରାଇଛୁ ! ତୋର ଗୀତା ପଢ଼ାର ମୁହଁରେ ନିଆଁ !''

(ମାଷ୍ଟରଙ୍କ ପ୍ରତି) ''ଦେଖ ଖାଲି ପଢ଼ାଶୁଣାରେ କିଛି ହୁଏ ନାହିଁ । ବାଜଣାର ବୋଲ ଲୋକେ ମୁଖସ୍ଥ କରି ଭଲ କହିପାରନ୍ତି— ହାତରେ ଆଣିବା ବଡ଼ କଷ୍ଟ ।''

ଠାକୁର ପୁନର୍ବାର ନିଜର ଜ୍ଞାନୋନ୍ମାଦ ଅବସ୍ଥା ବର୍ଣ୍ଣନା କରୁଛନ୍ତି ।

## ପୂର୍ବକଥା — ମଥୁରବାବୁଙ୍କ ସଙ୍ଗରେ ନବଦ୍ୱୀପ ଭ୍ରମଣ । ଠାକୁରଙ୍କ ଚିନା ଶଙ୍ଖାରୀର ପାଦ ଧରିବା କଥା ।

''ମଥୁରବାବୁଙ୍କ ସଙ୍ଗରେ କିଛିଦିନ ନୌକାରେ ବାୟୁ ପରିବର୍ତ୍ତନ ପାଇଁ ବୁଲିବାକୁ ଗଲି । ସେହି ଯାତ୍ରାରେ ନବଦ୍ୱୀପକୁ ଯାଇଥିଲି । ନୌକାରେ ଦେଖିଲି ମାଝିମାନେ ରାନ୍ଧୁଛନ୍ତି । ସେମାନଙ୍କ ପାଖରେ ଠିଆ ହୋଇଛି, ମଥୁରବାବୁ କହିଲେ, ବାବା, ସେଠାରେ କ'ଣ କରୁଛ ? ମୁଁ ହସିକରି କହିଲି, ମାଝିମାନେ ଭଲ ରାନ୍ଧୁଛନ୍ତି । ମଥୁରବାବୁ ବୁଝିଲେ ଯେ ମୁଁ ଏଥର ମାଗି ଖାଇପାରେ । ତେଣୁ କହିଲେ, ବାବା ଚାଲିଆସ, ଚାଲିଆସ !''

''ବର୍ତ୍ତମାନ କିନ୍ତୁ ଆଉ ପାରେନା । ସେ ଅବସ୍ଥା ବର୍ତ୍ତମାନ ନାହିଁ । ବର୍ତ୍ତମାନ ବ୍ରାହ୍ମଣ ହେବ, ଆଚାରୀ ହେବ, ଠାକୁରଙ୍କୁ ଭୋଗ ହେବ, ତେବେ ଭାତ ଖାଇବି ।''

''କି ଅବସ୍ଥା ସବୁ ନ ଯାଇଛି ! ଦେଶର ଚିନା ଶଙ୍ଖାରୀ ଓ ଆଉସବୁ ସମବୟସ୍କମାନଙ୍କୁ କହିଲି, ଆରେ ତୁମର ଗୋଡ଼ତଳେ ପଡୁଛି, ଥରେ ହରିବୋଲ କୁହ ! ଏହା କହି ସମସ୍ତଙ୍କର ଗୋଡ଼ତଳେ ପଡ଼ିବାକୁ ଗଲି । ତହୁଁ ଚିନା କହିଲା, ଆରେ ତୋର ବର୍ତ୍ତମାନ ପ୍ରଥମ ଅନୁରାଗ, ସେଥିପାଇଁ ସବୁ ସମାନ ବୋଧ ହେଉଛି । ପ୍ରଥମ ଝଡ଼ ଉଠିଲେ ଯେତେବେଳେ ଧୂଳି ଉଡ଼େ, ସେତେବେଳେ ଆମ୍ବଗଛ, ତେନ୍ତୁଳି ଗଛ, ସବୁ ଏକ ବୋଧହୁଏ । ଏଇଟା ଆମ୍ବଗଛ, ସେଇଟା ତେନ୍ତୁଳି ଗଛ ଚିହ୍ନି ହୁଏନା ।''

## ଶ୍ରୀରାମକୃଷ୍ଣଙ୍କର ମତ କ'ଣ—ସଂସାର ନା ସର୍ବତ୍ୟାଗ ? କେଶବ ସେନଙ୍କ ସନ୍ଦେହ ।

ଜଣେ ଭକ୍ତ—ଏହି ଭକ୍ତି ଉନ୍ମାଦ, ପ୍ରେମ ଉନ୍ମାଦ କି ଜ୍ଞାନ ଉନ୍ମାଦ, ସଂସାରୀ ଲୋକର ହେଲେ କିପରି ଚଳିବ ?

ଶ୍ରୀରାମକୃଷ୍ଣ (ସଂସାରୀ ଭକ୍ତଙ୍କ ପ୍ରତି)—ଯୋଗୀ ଦୁଇ ଶ୍ରେଣୀର । ବ୍ୟକ୍ତ ଯୋଗୀ ଆଉ ଗୁପ୍ତ ଯୋଗୀ । ସଂସାରରେ ଗୁପ୍ତ ଯୋଗୀ । କେହି ତାଙ୍କୁ ଚିହ୍ନିପାରନ୍ତି ନାହିଁ । ସଂସାରୀ ପକ୍ଷରେ ମନରେ ତ୍ୟାଗ, ବାହାରେ ତ୍ୟାଗ କରିବା ନୁହେଁ ।

ରାମ—ଆପଣଙ୍କ କଥା ପିଲାମାନଙ୍କୁ ଭୁଲାଇବା ଭଳି । ସଂସାରରେ ଜଣେ ଜ୍ଞାନୀ ହୋଇପାରେ, ବିଜ୍ଞାନୀ ହୋଇପାରେ ନାହିଁ ।

ଶ୍ରୀରାମକୃଷ୍ଣ—ଶେଷରେ ବିଜ୍ଞାନୀ ହେବାକୁ ହେବ । ଜୋର କରି ସଂସାର ତ୍ୟାଗ ଭଲ ନୁହେଁ ।

ରାମ—କେଶବ ସେନ୍ କହନ୍ତି, ଆପଣଙ୍କ ପାଖକୁ ଏତେ ଲୋକ ଆସନ୍ତି କାହିଁକି ? ଦିନେ ହଠାତ୍ କାମୁଡ଼ିଦେବେ । ସେତେବେଳେ ପଳାଇଯିବାକୁ ହେବ ।

ଶ୍ରୀରାମକୃଷ୍ଣ—କାହିଁକି ହଠାତ୍ କାମୁଡ଼ିବି ? ମୁଁ ତ ଲୋକମାନଙ୍କୁ କହେ ଆକୁବି କର ତାକୁ ବି କର; ସଂସାର ବି କର, ଈଶ୍ୱରଙ୍କୁ ଡାକ । ସବୁ ତ୍ୟାଗ କରିବାକୁ କହେ ନାହିଁ (ସହାସ୍ୟ) କେଶବ ସେନ ଦିନେ ଲେକ୍‌ଚର ଦେଲେ; କହିଲେ, ହେ ଈଶ୍ୱର, ଏପରି କରନ୍ତୁ ଯେପରି ଆମେମାନେ ଭକ୍ତି ନଦୀରେ ବୁଡିପାରୁ । ଆଉ ବୁଡି ଯେପରି ସଚ୍ଚିଦାନନ୍ଦ ସାଗରରେ ଯାଇ ପଡୁ । ସ୍ତ୍ରୀ ଲୋକମାନେ ପର୍ଦ୍ଦା ଆଢୁଆଳରେ ଥିଲେ । ମୁଁ କେଶବଙ୍କୁ କହିଲି, ଏକାବେଳକେ ସମସ୍ତେ ବୁଡିଲେ କିପରି ହେବ ? ତାହାହେଲେ ଏମାନଙ୍କର (ସ୍ତ୍ରୀ ଲୋକମାନଙ୍କର) ଦଶା କଅଣ ହେବ ? ଥରେ ଥରେ କୂଳରୁ ଉଠ, ପୁଣି ବୁଡ଼, ପୁଣି ଉଠ ! କେଶବ ସେନ ଏବଂ ଅନ୍ୟମାନେ ହସିବାକୁ ଲାଗିଲେ ।

ହାଜରା କହେ, ତୁମେ ରଜୋଗୁଣୀ ଲୋକଙ୍କୁ ଭାରି ଭଲପାଅ; —ଯେଉଁମାନଙ୍କର

ଟଙ୍କା ପଇସା, ମାନ ସମ୍ଭ୍ରମ ଖୁବ୍ ଅଛି । ଏ କଥା ଯଦି ହୁଏ ତେବେ ହରିଶ, ନୋଟୋ ଏମାନଙ୍କୁ ଭଲପାଏ କାହିଁକି ? ନରେନ୍ଦ୍ରକୁ ବା କାହିଁକି ଭଲପାଏ ? ତା'ର ତ କଦଳୀ ପୋଡ଼ାରେ ଲୁଣ ଟିକିଏ ଖାଇବାକୁ ନାହିଁ ।

ଶ୍ରୀରାମକୃଷ୍ଣ ଘରର ବାହାରକୁ ଆସିଲେ ଓ ମାଷ୍ଟରଙ୍କ ସଙ୍ଗରେ କଥା କହି କହି ଝାଉଁଗଛ ଆଡ଼କୁ ଯାଉଛନ୍ତି । ଜଣେ ଭକ୍ତ ଗଡୁ ଓ ଗାମୁଛା ନେଇ ସଙ୍ଗେ ସଙ୍ଗେ ଯାଉଛନ୍ତି । କଲିକତାକୁ ଆଜି ଚୈତନ୍ୟଲୀଳା ଦେଖିବାକୁ ଯିବେ, ସେହିକଥା ହେଉଛି ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି, ପଞ୍ଚବଟୀରେ)—ରାମ ସବୁ ରଜୋଗୁଣର କଥା କହୁଛି । ଏଥିପାଇଁ ବେଶି ଦାମ୍ ଦେଇ ବସିବା କି ଦରକାର ?

ବକ୍ସ (box)ର ଟିକଟ ନେବା ଦରକାର ନାହିଁ-ଠାକୁର କହୁଛନ୍ତି ।

## (୪)

## ହାତୀବାଗାନରେ ଭକ୍ତମାନଙ୍କ ସଙ୍ଗରେ ଶ୍ରୀଯୁକ୍ତ ମହେନ୍ଦ୍ର ମୁଖାର୍ଜୀଙ୍କର ସେବା ।

ଶ୍ରୀରାମକୃଷ୍ଣ ଶ୍ରୀଯୁକ୍ତ ମହେନ୍ଦ୍ର ମୁଖାର୍ଜୀଙ୍କ ଗାଡ଼ିରେ ଦକ୍ଷିଣେଶ୍ୱରରୁ କଲିକତା ଆସୁଛନ୍ତି । ରବିବାର, ଆଶ୍ୱିନ ୬ ଦିନ । ୨୧ ତାରିଖ ସେପ୍ଟେମ୍ବର ୧୮୮୪ ଖ୍ରୀଷ୍ଟାବ୍ଦ; ଆଶ୍ୱିନ ଶୁକ୍ଳ ଦ୍ୱିତୀୟା, ସମୟ ୫ଟା । ଗାଡ଼ି ମଧ୍ୟରେ ମହେନ୍ଦ୍ର ମୁଖାର୍ଜୀ, ମାଷ୍ଟର ଓ ଆଉ ଜଣେ ଦୁଇଜଣ ଅଛନ୍ତି । ଟିକିଏ ଯାଉ ଯାଉ ଈଶ୍ୱର ଚିନ୍ତା କରି ଠାକୁର ଭାବ ସମାଧିରେ ମଗ୍ନ ହେଲେ ।

ଅନେକକ୍ଷଣ ପରେ ସମାଧି ଭଙ୍ଗ ହେଲା । ଠାକୁର କହୁଛନ୍ତି, 'ହାଜରା ପୁଣି ମୋତେ ଶିଖାଏ ! ଶାଲା !' କିୟତ୍‌କ୍ଷଣ ପରେ କହୁଛନ୍ତି, ମୁଁ ପାଣି ପିଇବି । ବାହ୍ୟ ଜଗତକୁ ମନ ଆଣିବା ପାଇଁ ଠାକୁର ଏହି କଥା ପ୍ରାୟ ସମାଧି ପରେ କହିଥାନ୍ତି ।

ମହେନ୍ଦ୍ର ମୁଖାର୍ଜୀ (ମାଷ୍ଟରଙ୍କ ପ୍ରତି)—ତାହାହେଲେ କିଛି ଖାଇବା ପାଇଁ ଆଣିଲେ ହୁଅନ୍ତା ନାହିଁ ?

ମାଷ୍ଟର—ଏ ବର୍ତ୍ତମାନ ଖାଇବେ ନାହିଁ ।

ଶ୍ରୀରାମକୃଷ୍ଣ (ଭାବସ୍ଥ)—ମୁଁ ଖାଇବି; ଝାଡ଼ା ଯିବି ।

ମହେନ୍ଦ୍ର ମୁଖାର୍ଜୀଙ୍କର ହାତୀବାଗାନରେ ମଇଦା କଳ ଅଛି । ସେଠାକୁ ଠାକୁରଙ୍କୁ ନେଇଯାଉଛନ୍ତି । ସେଠାରେ ଟିକିଏ ବିଶ୍ରାମ କରି ଷ୍ଟାର ଥିଏଟରକୁ ଚୈତନ୍ୟଲୀଳା ଦେଖିବାକୁ ଯିବେ । ମହେନ୍ଦ୍ରଙ୍କ ଘରେ ବାଗ୍‌ବଜାର ଶ୍ରୀମଦନମୋହନଜୀଙ୍କ ମନ୍ଦିରର ଟିକିଏ ଉତ୍ତରରେ । ପରମହଂସଦେବଙ୍କୁ ତାଙ୍କର ପିତା ଜାଣନ୍ତି ନାହିଁ । ତେଣୁ ମହେନ୍ଦ୍ର ଠାକୁରଙ୍କୁ ଘରକୁ ନେଇ ଯାଉନାହାନ୍ତି । ତାଙ୍କର ଦ୍ୱିତୀୟ ଭ୍ରାତ ପ୍ରିୟନାଥ ମଧ୍ୟ ଜଣେ ଭକ୍ତ ।

ମହେନ୍ଦ୍ରଙ୍କର ମଇଦା କଳ ଠାରେ ତକ୍ତପୋଷ ଉପରେ ସତରଞ୍ଜି ପଡ଼ିଛି । ତାହାରି ଉପରେ ଠାକୁର ବସିଛନ୍ତି ଓ ଈଶ୍ୱରଙ୍କ କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ (ମାଷ୍ଟର ଓ ମହେନ୍ଦ୍ରଙ୍କ ପ୍ରତି)—ଶ୍ରୀଚୈତନ୍ୟଚରିତାମୃତ ଶୁଣି ଶୁଣି ହାଜରା କହେ, ଏସବୁ ଶକ୍ତିର ଲୀଳା—ବିଭୁ ଏହା ଭିତରେ ନାହାନ୍ତି । ବିଭୁଙ୍କ ଛଡ଼ା ଶକ୍ତି କେବେ ହୁଏ ? ଏଠାରେ ମତ ଓଲଟାଇ ଦେବାକୁ ଚେଷ୍ଟା !

## ବ୍ରହ୍ମ ବିଭୁରୂପରେ ସର୍ବଭୂତରେ ।
## ଶୁଦ୍ଧ ଭକ୍ତ ଷଡ଼ୈଶ୍ବର୍ଯ୍ୟ ଚାହେଁନାହିଁ ।

"ମୁଁ ଜାଣେ ବ୍ରହ୍ମ ଓ ଶକ୍ତି ଅଭେଦ । ଯେପରି ଜଳ ଓ ଜଳର ହିମଶକ୍ତି । ଅଗ୍ନି ଆଉ ତାହାର ଦାହିକା ଶକ୍ତି । ସେ ସର୍ବଭୂତରେ ଅଛନ୍ତି; ତେବେ କେଉଁଠାରେ ବେଶୀ, କେଉଁଠାରେ ବା କମ୍ ଶକ୍ତିର ପ୍ରକାଶ । ହାଜରା କହେ, ଭଗବାନଙ୍କୁ ପାଇଲେ ତାଙ୍କରି ପରି ଷଡ଼ୈଶ୍ବର୍ଯ୍ୟଶାଳୀ ହେବାକୁ ହୁଏ;ଷଡ଼ୈଶ୍ବର୍ଯ୍ୟ ରହିବ, ବ୍ୟବହାର କର ବା ନ କର ।"

ମାଷ୍ଟର—ଷଡ଼ୈଶ୍ବର୍ଯ୍ୟ ହାତରେ ଥିବା ଦରକାର (ସମସ୍ତଙ୍କର ହାସ୍ୟ) ।

ଶ୍ରୀରାମକୃଷ୍ଣ (ସହାସ୍ୟ)—ହଁ ହାତରେ ଥିବା ଦରକାର । କି ଛୋଟ ବୁଦ୍ଧି ! ଯେ ଐଶ୍ୱର୍ଯ୍ୟ କେବେ ଭୋଗ କରି ନାହିଁ, ସେ ଐଶ୍ୱର୍ଯ୍ୟ ଐଶ୍ୱର୍ଯ୍ୟ କରି ଅଧୈର୍ଯ୍ୟ ହୁଏ । ଯେ ଶୁଦ୍ଧ ଭକ୍ତ, ସେ କେବେହେଲେ ଐଶ୍ୱର୍ଯ୍ୟ ପ୍ରାର୍ଥନା କରେ ନାହିଁ ।

କଳଘରଠାରେ ପାନସଜା ନ ଥିଲା । ଠାକୁର କହୁଛନ୍ତି, ପାନଟା ଅଣାଅ । ଠାକୁର ଝାଡ଼ା ଯିବେ । ମହେନ୍ଦ୍ର ଗଡୁରେ ଜଳ ଅଣାଇଲେ ଓ ନିଜେ ଗଡୁ ହାତରେ ଧରିଲେ । ଠାକୁରଙ୍କୁ ସଙ୍ଗରେ ନେଇ ପଡ଼ିଆ ଆଡ଼କୁ ଯିବେ । ଠାକୁର ମଣିଙ୍କୁ ସମ୍ମୁଖରେ ଦେଖି ମହେନ୍ଦ୍ରଙ୍କୁ କହିଲେ, ତୁମକୁ ନେବାକୁ ହେବ ନାହିଁ-ଏହାଙ୍କୁ ଦିଅ ।

ମଣି ଗଡୁ ନେଇ ଠାକୁରଙ୍କ ସଙ୍ଗରେ ପଡ଼ିଆ ଆଡ଼କୁ ଗଲେ । ମୁହଁ ଧୋଇବା ପରେ ଠାକୁରଙ୍କୁ ହୁକା ସଜାଇ ଦିଆଗଲା । ଠାକୁର ମାଷ୍ଟରଙ୍କୁ କହୁଛନ୍ତି, ସନ୍ଧ୍ୟା କ'ଣ ହୋଇଛି ? ତା' ହେଲେ ଆଉ ହୁକା ପିଇବି ନାହିଁ; **ସନ୍ଧ୍ୟା ହେଲେ ସବୁ କର୍ମ ଛାଡ଼ି ହରି ସ୍ମରଣ କରିବ ।**

ଏହା କହି ଠାକୁର ହାତର ଲୋମ ଦେଖୁଛନ୍ତି—ଗଣାଯାଏ କି ନାହିଁ । ଲୋମ ଯଦି ଗଣା ନ ଯାଏ, ତା'ହେଲେ—ସନ୍ଧ୍ୟା ହୋଇଛି ।

## (୫)

## ନାଟ୍ୟାଳୟରେ ଚୈତନ୍ୟଲୀଳା—ରାମକୃଷ୍ଣ ସମାଧିସ୍ଥ । ମାଷ୍ଟର, ବାବୁରାମ, ନିତ୍ୟାନନ୍ଦଙ୍କ ବଂଶର ଭକ୍ତ, ମହେନ୍ଦ୍ର ମୁଖାର୍ଜୀ, ଗିରୀଶ ।

ଠାକୁରଙ୍କ ଗାଡ଼ି ବିଡ଼ିନ୍ ଷ୍ଟ୍ରୀଟ୍‌ର ଷ୍ଟାର ଥିଏଟର ସମ୍ମୁଖରେ ଉପସ୍ଥିତ । ରାତ୍ରି ପ୍ରାୟ ସାଢ଼େ ଆଠଟା । ସଙ୍ଗରେ ମାଷ୍ଟର, ବାବୁରାମ, ମହେନ୍ଦ୍ର ମୁଖାର୍ଜୀ ଓ ଆଉ ଦୁଇଜଣ

ଭକ୍ତ । ଟିକଟ କିଣିବାର ବନ୍ଦୋବସ୍ତ ହେଉଅଛି । ନାଟ୍ୟାଳୟର ମ୍ୟାନେଜର ଶ୍ରୀଯୁକ୍ତ ଗିରୀଶ ଘୋଷ କେତେଜଣ କର୍ମଚାରୀଙ୍କ ସହ ଠାକୁରଙ୍କ ଗାଡ଼ି ପାଖକୁ ଆସିଛନ୍ତି, ଅଭିବାଦନ କରି ତାଙ୍କୁ ସାଦରେ ଉପରକୁ ନେଇଗଲେ । ଗିରୀଶ ପରମହଂସଦେବଙ୍କ ନାମ ଶୁଣିଛନ୍ତି । ସେ ଚୈତନ୍ୟଲୀଳା ଅଭିନୟ ଦର୍ଶନ କରିବାକୁ ଆସିଛନ୍ତି ଶୁଣି ପରମ ଆହ୍ଲାଦିତ ହୋଇଛନ୍ତି । ଠାକୁରଙ୍କୁ ଦକ୍ଷିଣ ପଶ୍ଚିମ ବକ୍ସରେ ବସାଗଲା । ଠାକୁରଙ୍କ ପାଖରେ ମାଷ୍ଟର ବସିଲେ । ପଶ୍ଚାତ୍‌ରେ ବାବୁରାମ ଓ ଆଉ ଜଣେ ଦୁଇଜଣ ଭକ୍ତ ।

ନାଟ୍ୟାଳୟ ଆଲୋକାକୀର୍ଣ୍ଣ । ତଳେ ଅନେକ ଲୋକ । ଠାକୁରଙ୍କ ବାମଦିଗରେ ଡ୍ରପ୍‌ସିନ୍ ଦେଖାଯାଉଛି । ଅନେକଗୁଡ଼ିଏ ବକ୍ସରେ ଲୋକ ହୋଇଅଛନ୍ତି । ଜଣେ ଜଣେ ବେହେରା ନିଯୁକ୍ତ, ବକ୍ସର ପଶ୍ଚାତ୍‌ରେ ଠିଆହୋଇ ପଙ୍ଖା କରୁଛନ୍ତି । ଠାକୁରଙ୍କୁ ପଙ୍ଖା କରିବାକୁ ଗିରୀଶ ବେହେରା ନିଯୁକ୍ତ କରି ଚାଲିଗଲେ ।

ଠାକୁର ନାଟ୍ୟାଳୟ ଦେଖି ବାଳକ ପରି ଆନନ୍ଦିତ ହେଉଛନ୍ତି ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି ସହାସ୍ୟ)—ବାଃ, ଏଠାରେ ତ ବେଶ୍ । ଆସି ଭଲ ହେଲା !

ଅନେକ ଲୋକ ଏକ ସଙ୍ଗରେ ମିଳିତ ହେଲେ ଉଦ୍ଦୀପନା ହୁଏ । ସେତେବେଳେ ଠିକ୍ ଦେଖେ ଯେ, **କେବଳ ସେ ହିଁ ସବୁ ହୋଇଛନ୍ତି** ।

ମାଷ୍ଟର—ଆଜ୍ଞା, ହଁ ।

ଶ୍ରୀରାମକୃଷ୍ଣ—ଏଠାରେ କେତେ ନେବେ ?

ମାଷ୍ଟର—ଆଜ୍ଞା, କିଛି ନେବେ ନାହିଁ । ଆପଣ ଆସିଛନ୍ତି, ଏମାନଙ୍କର ଖୁବ୍ ଆନନ୍ଦ ।

ଶ୍ରୀରାମକୃଷ୍ଣ—ସବୁ ମାଆଙ୍କ ମାହାତ୍ମ୍ୟ !

ଡ୍ରପ୍‌ସିନ୍ ଉଠିଗଲା । ଏକ ସମୟରେ ଦର୍ଶକମାନଙ୍କର ଦୃଷ୍ଟି ରଙ୍ଗ ମଞ୍ଚର ଉପରେ ପଡ଼ିଲା । ପ୍ରଥମରେ ପାପ, ଆଉ ଛଅ ରିପୁର ସଭା । ତା'ପରେ ବନ ପଥରେ ବିବେକ, ବୈରାଗ୍ୟ ଓ ଭକ୍ତିଙ୍କ କଥାବାର୍ତ୍ତା ।

ଭକ୍ତି କହୁଛନ୍ତି, ଗୌରାଙ୍ଗ ନଦୀୟାରେ ଜନ୍ମଗ୍ରହଣ କରିଛନ୍ତି । ତେଣୁ ବିଦ୍ୟାଧାରୀଗଣ ଓ ମୁନିଋଷିଗଣ ଛଦ୍ମବେଶରେ ଦର୍ଶନ କରିବାକୁ ଆସିଛନ୍ତି ।

ଧନ୍ୟ ଧରା ନଦୀୟାୟ ଏଲୋ ଗୋରା ।

ଦେଖନା ବିମାନେ ବିଦ୍ୟାଧାରୀଗଣ, ଆସିତେଛେ ହରି ଦରଶନେ ।

ଦେଖ, ପ୍ରେମାନନ୍ଦେ ହଇୟା ବିଭୋଳ, ମୁନିଋଷି ଆସିଛେ ସକଳ ।

ବିଦ୍ୟାଧାରୀଗଣ ଓ ମୁନିଋଷିମାନେ ଗୌରାଙ୍ଗଙ୍କୁ ଭଗବାନଙ୍କ ଅବତାର ଜ୍ଞାନରେ ପୂଜା କରୁଛନ୍ତି । ଠାକୁର ଶ୍ରୀରାମକୃଷ୍ଣ ସେମାନଙ୍କୁ ଦେଖି ଭାବରେ ବିଭୋର ହେଉଛନ୍ତି । ମାଷ୍ଟରଙ୍କୁ କହୁଛନ୍ତି, ଆହା ! କି ସୁନ୍ଦର ଦୃଶ୍ୟ !

ବିଦ୍ୟାଧାରୀଗଣ ଓ ମୁନି—ଋଷିଗଣ ଗୀତ ଗାଇ ସ୍ତବ କରୁଛନ୍ତି—
ପୁରୁଷଗଣ—କେଶବ କୁରୁ କରୁଣା ଦୀନେ କୁଞ୍ଜକାନନ ଚାରୀ ।
ସ୍ତ୍ରୀଗଣ—ମାଧବ ମନମୋହନ ମୋହନ ମୂରଲୀଧାରୀ ।
ଏ ସମସ୍ତେ—ହରିବୋଲ, ହରିବୋଲ, ହରିବୋଲ ମନ ଆମାର ।
ପୁରୁଷଗଣ—ବ୍ରଜକିଶୋର କାଳୀୟହର କାତରଭୟ-ଭଞ୍ଜନ ।
ସ୍ତ୍ରୀଗଣ—ନୟନ ବାଙ୍କା ବାଙ୍କା ଶିଖିପାଖା, ରାଧିକାହୃଦିରଞ୍ଜନ ।
ପୁରୁଷଗଣ—ଗୋବର୍ଦ୍ଧନ—ଧାରଣ, ବନକୁସୁମ—ଭୂଷଣ, ଦାମୋଦର କଂସଦର୍ପହାରୀ ।
ସ୍ତ୍ରୀଗଣ—ଶ୍ୟାମ ରାସରସବିହାରୀ ।
ସମସ୍ତେ—ହରିବୋଲ, ହରିବୋଲ, ହରିବୋଲ, ମନ ଆମାର ।
ବିଦ୍ୟାଧାରୀଗଣ ଯେତେବେଳେ ଗାଇଲେ—
'ନୟନ ବାଙ୍କା, ବାଙ୍କା ଶିଖିପାଖା, ରାଧିକା ହୃଦିରଞ୍ଜନ'

ସେତେବେଳେ ଠାକୁର ଶ୍ରୀରାମକୃଷ୍ଣ ଗଭୀର ସମାଧି ମଗ୍ନ ହେଲେ । କନସାର୍ଟ (ଐକ୍ୟତାନ ବାଦ୍ୟ) ବାଜୁଛି । ଠାକୁରଙ୍କର କୌଣସି ହୋସ ନାହିଁ ।

## (୬)

## ଚୈତନ୍ୟଲୀଳା ଦର୍ଶନ । ଗୌର ପ୍ରେମରେ ମତ୍ତ ଶ୍ରୀରାମକୃଷ୍ଣ ।

ଜଗନ୍ନାଥ ମିଶ୍ରଙ୍କ ଘରକୁ ଅତିଥି ଆସିଛନ୍ତି । ବାଳକ ନିମାଇଁ ସଦାନନ୍ଦରେ ସମବୟସ୍କମାନଙ୍କ ସହିତ ଗୀତ ଗାଇ ବୁଲୁଛନ୍ତି ।

ଗୀତ—କାହାଁ ମେରା ବୃନ୍ଦାବନ, କାହାଁ ଯଶୋଦା ମାଈ ।
କାହାଁ ମେରା ନନ୍ଦ ପିତା କାହାଁ ବଲାଇ ଭାଇ ।।
କାହାଁ ମେରି ଧବଳୀ ଶ୍ୟାମଳୀ କାହାଁ ମେରି ମୋହନ ମୁରଲୀ ।
ଶ୍ରୀଦାମ ସୁଦାମ ରାଖାଲଗଣ କାହାଁ ମେ ପାଈ ।।
କାହାଁ ମେରି ଯମୁନାତଟ, କାହାଁ ମେରି ବଂଶୀବଟ ।
କାହାଁ ଗୋପନାରୀ ମେରି, କାହାଁ ହାମାରା ରାଈ ।।

ଅତିଥି ଚକ୍ଷୁ ବୁଜି, ଭଗବାନଙ୍କୁ ଅନ୍ନ ନିବେଦନ କରୁଛନ୍ତି । ନିମାଇଁ ଦୌଡ଼ିଯାଇ ସେହି ଅନ୍ନ ଭକ୍ଷଣ କରୁଛନ୍ତି । ଅତିଥି ତାହାଙ୍କୁ ଭଗବାନ ବୋଲି ଜାଣିପାରିଲେ ଓ ଦଶାବତାର ସ୍ତବ କରି ପ୍ରସନ୍ନ କରୁଛନ୍ତି । ମିଶ୍ର ଓ ଶଚୀଙ୍କ ପାଖରୁ ବିଦାୟ ନେବା ସମୟରେ ସେ ପୁନରାୟ ଗୀତ ଗାଇ ସ୍ତବ କରୁଛନ୍ତି ।

ଜୟ ନିତ୍ୟାନନ୍ଦ ଗୌରଚନ୍ଦ୍ର ଜୟ ଭବତାରଣ,
ଅନାଥତ୍ରାଣ ଜୀବପ୍ରାଣ ଭୀତ ଭୟବାରଣ ।।

ଯୁଗେ ଯୁଗେ ରଙ୍ଗ , ନବଲୀଳା ନବରଙ୍ଗ ,
ନବ ତରଙ୍ଗ ନବ ପ୍ରସାଥ୍ ଧରାଭାର ଧାରଣ ।।
ତାପହାରୀ ପ୍ରେମବାରି ବିତର ରାସରସବିହାରୀ,
ଦୀନ-ଆଶ-କଳୁଷନାଶ, ଦୁଷ୍ଟ-ତ୍ରାସକାରଣ ।।

ସ୍ତବ ଶୁଣୁ ଶୁଣୁ ଠାକୁର ପୁଣି ଭାବରେ ବିଭୋର ହେଉଛନ୍ତି । **ନବଦ୍ୱୀପର ଗଙ୍ଗାତୀର**—ଗଙ୍ଗାସ୍ନାନ ପରେ ବ୍ରାହ୍ମଣ ଘରର ସ୍ତ୍ରୀ ପୁରୁଷମାନେ ଘାଟରେ ଘାଟରେ ବସି ପୂଜା କରୁଛନ୍ତି । ନିମାଇଁ ସେମାନଙ୍କର ନିବେଦିତ ନୈବେଦ୍ୟରୁ ବାଡ଼ିନେଇ ନିଜେ ଖାଉଛନ୍ତି । ଜଣେ ବ୍ରାହ୍ମଣ ଏହା ଦେଖି ରାଗିଗଲେ ଓ କହିଲେ, ଆରେ ବଦ୍‌ମାସ । ବିଷ୍ଣୁପୂଜାର ନୈବେଦ୍ୟ କାଡ଼ି ନେଉଛୁ—ତୋର ସର୍ବନାଶ ହେବ ! ତଥାପି ନିମାଇଁ ପୂର୍ବପରି କାଡ଼ିନେଲେ ଓ ପଳାୟନ କରିବାକୁ ଉଦ୍ୟତ ହେଲେ । କିନ୍ତୁ ସ୍ତ୍ରୀଲୋକମାନଙ୍କ ଭିତରୁ ଅନେକ ପିଲାଟିକୁ ଭଲପାଆନ୍ତି । ନିମାଇଁ ଚାଲିଯାଉଛି ଦେଖି ସେମାନଙ୍କ ହୃଦୟ ସହିଲା ନାହିଁ । ସେମାନେ ଉଚ୍ଚୈଃସ୍ୱରରେ ଡାକିବାକୁ ଲାଗିଲେ, ନିମାଇଁ ଫେରିଆ, ନିମାଇଁ ଫେରିଆ । ନିମାଇଁ ଶୁଣିଲେ ନାହିଁ ।

ଜଣେ ନିମାଇଁଙ୍କୁ, ଫେରାଇବାର ମହାମନ୍ତ୍ର ଜାଣନ୍ତି । ସେ 'ହରିବୋଲ, ହରିବୋଲ' କହିବାକୁ ଲାଗିଲେ ।

ସଙ୍ଗେ ସଙ୍ଗେ ନିମାଇଁ 'ହରିବୋଲ, ହରିବୋଲ' କହି କହି ଫେରିଲେ ।

ମଣି ଠାକୁରଙ୍କ ପାଖରେ ବସିଛନ୍ତି । କହୁଛନ୍ତି, ଆହା !

ଠାକୁର ଆଉ ସ୍ଥିର ରହିପାରିଲେ ନାହିଁ । 'ଆହା !' କହୁ କହୁ ମଣିଙ୍କ ଆଡ଼କୁ ଅନାଇ ପ୍ରେମାଶ୍ରୁ ବିସର୍ଜନ କରୁଛନ୍ତି ।

ଶ୍ରୀରାମକୃଷ୍ଣ (ବାବୁରାମ ଓ ମାଷ୍ଟରଙ୍କୁ)—ଦେଖ, ଯଦି ମୋର ଭାବ କିମ୍ବା ସମାଧି ହୁଏ, ତାହାହେଲେ ତୁମେମାନେ ଗୋଳମାଳ କର ନାହିଁ । ସାଧାରଣ ଲୋକ ଢଙ୍ଗ ମନେ କରିବେ ।

ନିମାଇଁଙ୍କର ଉପନୟନ । ନିମାଇଁ ସନ୍ନ୍ୟାସୀ ସାଜିଛନ୍ତି । ଶଚୀ ଓ ପ୍ରତିବାସିନୀଗଣ ଚତୁର୍ଦ୍ଦିଗରେ ଦଣ୍ଡାୟମାନ । ନିମାଇଁ ଗୀତ ଗାଇ ଭିକ୍ଷା କରୁଛନ୍ତି ।

ଦେ ଗୋ ଭିକ୍ଷା ଦେ ।
ଆମି ନୂତନ ଯୋଗୀ ଫିରି କେନ୍ଦେ କେନ୍ଦ ।
ଓଗୋ ବ୍ରଜବାସୀ ତୋଦେର ଭଲବାସି,
ଓଗୋ ତାଇତୋ ଆସି, ଦେଖ ମା ଉପବାସୀ ।
ଦେଖ ମା ଦ୍ୱାରେ ଯୋଗୀ ବଲେ 'ରାଧେ ରାଧେ' ।
ବେଲା ଗେଲ ଯେତେ ହବେ ଫିରେ,
ଏକାକୀ ଥାକି ମା ଯମୁନାତୀରେ ।

ଆଖିନୀରେ ମିଶେ ନୀରେ,
ଚଲେ ଧୀରେ ଧୀରେ ଧାରା ମୃଦୁ ନାଦେ ।

ସମସ୍ତେ ଚାଲିଗଲେ । ନିମାଇଁ ଏକାକୀ ଅଛନ୍ତି । ଦେବଗଣ ବ୍ରାହ୍ମଣ—ବ୍ରାହ୍ମଣୀଙ୍କ ବେଶରେ ତାଙ୍କୁ ସ୍ତବ କରୁଛନ୍ତି ।

ପୁରୁଷଗଣ—ଚନ୍ଦ୍ରକିରଣ ଅଙ୍ଗେ, ନମୋ ବାମନରୂପଧାରୀ ।
ସ୍ତ୍ରୀଗଣ—ଗୋପୀଗଣ ମନୋମୋହନ, ମଞ୍ଜୁକୁଞ୍ଜଚାରୀ ।
ନିମାଇଁ—ଜୟ ରାଧେ ଶ୍ରୀରାଧେ ।
ପୁରୁଷଗଣ—ବ୍ରଜବାଳକ ସଙ୍ଗେ, ମଦନ ମାନ ଭଙ୍ଗେ ।
ସ୍ତ୍ରୀଗଣ—ଉନ୍ମାଦିନୀ ବ୍ରଜକାମିନୀ, ଉନ୍ମାଦ ତରଙ୍ଗେ ।
ପୁରୁଷଗଣ—ଦୈତ୍ୟଛଳନ, ନାରାୟଣ, ସୁରଗଣଭୟହାରୀ ।
ସ୍ତ୍ରୀଗଣ—ବ୍ରଜବିହାରୀ ଗୋପନାରୀ-ମାନ-ଭିଖାରୀ ।
ନିମାଇଁ—ଜୟ ରାଧେ ଶ୍ରୀରାଧେ ।

ଠାକୁର ଶ୍ରୀରାମକୃଷ୍ଣ ଏହି ଗୀତ ଶୁଣୁ ଶୁଣୁ ସମାଧିସ୍ଥ ହେଲେ । ଯବନିକା ପଡ଼ିଲା । କନସର୍ଟ ବାଜୁଅଛି ।

## 'ସଂସାରୀ ଲୋକ ଦୁଇଦିଗ ରଖିବାକୁ କହେ' । ଗଙ୍ଗାଦାସ ଓ ଶ୍ରୀବାସ ।

ଅଦ୍ୱୈତଙ୍କ ଘର ସମ୍ମୁଖରେ ଶ୍ରୀବାସାଦି କଥା କହୁଛନ୍ତି । ମୁକୁନ୍ଦ ମଧୁର କଣ୍ଠରେ ଗୀତ ଗାଉଛନ୍ତି—

ଆର ଘୁମାଇଓନା ମନ । ମାୟାଘୋରେ କତଦିନ ରବେ ଅଚେତନ ।
କେ ତୁମି କି ହେତୁ ଏଲେ, ଆପନାରେ ଭୁଲେ ଗେଲେ
ଚାହରେ ନୟନ ମେଲେ ତ୍ୟଜ କୁସ୍ୱପନ ।।
ରୟେଛ ଅନିତ୍ୟ ଧ୍ୟାନେ ନିତ୍ୟାନନ୍ଦେ ହେର ପ୍ରାଣେ,
ତମ ପରିହରି ହେର ତରୁଣ ତପନ ।।

ମୁକୁନ୍ଦ ବଡ଼ ସୁକଣ୍ଠ । ଶ୍ରୀରାମକୃଷ୍ଣ ମଣିଙ୍କ ନିକଟରେ ପ୍ରଶଂସା କରୁଛନ୍ତି ।

ନିମାଇଁ ଘରେ ଅଛନ୍ତି । ଶ୍ରୀବାସ ଦେଖା କରିବାକୁ ଆସିଛନ୍ତି । ଆଗେ ଶଚୀଙ୍କ ସଙ୍ଗରେ ଦେଖାହେଲା । ଶଚୀ କାନ୍ଦିବାକୁ ଲାଗିଲେ । କହିଲେ ମୋର ପୁତ୍ର ଗୃହସ୍ଥ ଧର୍ମରେ ମନ ଦିଏ ନାହିଁ ।

'ବିଶ୍ୱରୂପ ଯିବା ଦିନଠାରୁ, ପ୍ରାଣମନ କମ୍ପେ ନିରନ୍ତର, ପଛେ ହୁଏ ନିମାଇଁ ସନ୍ୟାସୀ । ଶଚୀ ଶ୍ରୀବାସଙ୍କୁ କହୁଛନ୍ତି—

'ଆହା ଦେଖ ଦେଖ ପାଗଳର ପ୍ରାୟ  ଚକ୍ଷୁ ଜଳେ ବକ୍ଷ ଭାସିଯାଏ, କହ କହ କି ଉପାୟେ ଯିବ ଏହି ଭାବ ?'

ନିମାଇଁ ଶ୍ରୀବାସଙ୍କୁ ଦେଖି ତାଙ୍କ ପାଦ ଧରି କାନ୍ଦୁଛନ୍ତି-ଆଉ କହୁଛନ୍ତି—

କାହିଁ ପ୍ରଭୁ କୃଷ୍ଣ ଭକ୍ତି ନୋହିଲାଟି ମମ,
କଟିଗଲା ବୃଥା ମୋର ଅଧମ ଜନମ ।
କହ ପ୍ରଭୁ କାହାନ୍ତି କୃଷ୍ଣ କେଉଁଠି ପାଇବି,
ଦିଅ ପଦଧୂଳି ଯେହ୍ନେ ପାଏ ବନମାଳୀ ।

ଶ୍ରୀରାମକୃଷ୍ଣ ମାଷ୍ଟରଙ୍କ ଆଡ଼କୁ ଅନାଇ କଥା କହିବାକୁ ଯାଉଛନ୍ତି, କିନ୍ତୁ ପାରୁନାହାନ୍ତି । ଗଦ ଗଦ ସ୍ୱର ! ଗଣ୍ଡଦେଶ ନୟନ ଜଳରେ ଭାସିଗଲା । ଏକ ଦୃଷ୍ଟିରେ ଦେଖୁଛନ୍ତି, ଶ୍ରୀବାସଙ୍କ ପାଦଧରି ରହିଛନ୍ତି । ଆଉ କହୁଅଛନ୍ତି, 'ପ୍ରଭୁ କାହିଁକି ତ କୃଷ୍ଣଭକ୍ତି ହେଲାନାହିଁ ।'

ଏଣିକି ଛାତ୍ରମାନଙ୍କୁ ଆଉ ପଢ଼ାଇ ପାରୁନାହାନ୍ତି । ଗଙ୍ଗାଦାସଙ୍କ ପାଖରେ ନିମାଇଁ ପଢ଼ିଥିଲେ । ସେ ନିମାଇଁଙ୍କୁ ବୁଝାଇବାକୁ ଆସିଛନ୍ତି । ଶ୍ରୀବାସଙ୍କୁ କହିଲେ—ଶ୍ରୀବାସ ଠାକୁର, ଆମେ ବି ବ୍ରାହ୍ମଣ, ବିଷ୍ଣୁପୂଜା କରିଥାଉଁ: ଦେଖୁଛି ଆପଣମାନେ ମିଳି ସଂସାରଟାକୁ ଛାରଖାର କଲେ ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କୁ)—ଏ ହେଉଛି ସଂସାରୀଙ୍କର ଶିକ୍ଷା—ଆକୁ କର, ତାକୁ ବି କର । ସଂସାରୀ ଯେତେବେଳେ ଶିକ୍ଷାଦିଏ, ସେତେବେଳେ ଉଭୟ ରଖିବାକୁ କହେ ।

ମାଷ୍ଟର—ଆଜ୍ଞା ହଁ ।

ଗଙ୍ଗାଦାସ ନିମାଇଁଙ୍କୁ ପୁଣି ବୁଝାଉଛନ୍ତି । 'ଆହେ ନିମାଇଁ, ତୁମର ତ ଶାସ୍ତ୍ରଜ୍ଞାନ ହୋଇଛି ? ତୁମେ ମୋ ସଙ୍ଗରେ ଯୁକ୍ତି କର । ସଂସାର ଧର୍ମ ଅପେକ୍ଷା କେଉଁ ଧର୍ମ ଶ୍ରେଷ୍ଠ ମୋତେ ବୁଝାଅ । ତୁମେ ଗୃହୀ, ଗୃହୀ ପରି ଆଚରଣ ନ କରି ଅନ୍ୟପରି ଆଚରଣ କାହିଁକି କର ?'

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କୁ)—ଦେଖିଲ ? ଦୁଇଦିଗ ରଖିବାକୁ କହୁଛି ।

ମାଷ୍ଟର—ଆଜ୍ଞା, ହଁ ।

ନିମାଇଁ କହିଲେ, ମୁଁ ଇଚ୍ଛାକରି ସଂସାର ଧର୍ମ ଉପେକ୍ଷା କରିନାହିଁ । ମୋର ବରଂ ଇଚ୍ଛା ଯେପରି ସବୁ ବଜାୟ ରହେ । କିନ୍ତୁ —

ପ୍ରଭୁ ଏଥିର କାରଣ କିଛି ନାହିଁ ଜାଣେ
ପ୍ରାଣ ତ ଟାଣୁଛି ସଦା କି କରିବି ମୁହିଁ,
ଭାବେ ରହିବି କୂଳରେ କୂଳେ ପୁଣି ରହିତ ନ ପାରେ,
ପ୍ରାଣ ଧାଏଁ ବୁଝାଇଲେ ବି ନ ଫେରେ
ସଦା ଚାହେଁ ଝାମ୍ପଦେବ ଅକୂଳ ସାଗରେ ।

ଶ୍ରୀରାମକୃଷ୍ଣ—ଆହା !

## (୭)

## ନାଟ୍ୟାଳୟରେ ନିତ୍ୟାନନ୍ଦ ବଂଶ ଓ ଶ୍ରୀରାମକୃଷ୍ଣଙ୍କ ଉଦ୍ଦୀପନା । ମାଷ୍ଟର, ବାବୁରାମ, ଖଡ଼ଦାର ନିତ୍ୟାନନ୍ଦଙ୍କ ବଂଶର ଗୋସ୍ୱାମୀ ।

ନବଦ୍ୱୀପକୁ ନିତ୍ୟାନନ୍ଦ ଆସିଛନ୍ତି, ସେ ନିମାଇଁଙ୍କୁ ଖୋଜୁଛନ୍ତି, ଏପରି ସମୟରେ ନିମାଇଁଙ୍କ ସହିତ ଦେଖାହେଲା । ନିମାଇଁ ମଧ୍ୟ ତାଙ୍କୁ ଖୋଜୁଥିଲେ । ମିଳନ ପରେ ପରେ ନିମାଇଁ କହୁଛନ୍ତି—

ସାର୍ଥକ ଜୀବନ: ସତ୍ୟ ମମ ହୋଇ ସ୍ୱପନ:
ଲୁଚିଗଲ ସ୍ୱପ୍ନେ ଦେଖାଦେଇ ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କୁ  ଗଦ୍‌ଗଦ୍ ସ୍ୱରରେ)—ନିମାଇଁ କହୁଛନ୍ତି, ସ୍ୱପ୍ନରେ ଦେଖିଛନ୍ତି ।

ଶ୍ରୀବାସ ଷଡ଼ଭୁଜ ଦର୍ଶନ କରୁଛନ୍ତି ଓ ସ୍ତବ କରୁଛନ୍ତି ।

ଠାକୁର ଶ୍ରୀରାମକୃଷ୍ଣ ଭାବାବିଷ୍ଟ ହୋଇ ଷଡ଼ଭୁଜ ଦର୍ଶନ କରୁଅଛନ୍ତି ।

ଗୌରାଙ୍ଗଙ୍କର ଈଶ୍ୱର ଆବେଶ ହୋଇଅଛି । ସେ ଅଦ୍ୱୈତ, ଶ୍ରୀବାସ, ହରିଦାସଙ୍କ ସହିତ ଭାବରେ କଥା କହୁଛନ୍ତି ।

ଗୌରାଙ୍ଗଙ୍କର ଭାବ ବୁଝିପାରି ନିତାଇ ଗୀତ ଗାଉଛନ୍ତି—

କଇ କୃଷ୍ଣ ଏଲ କୁଞ୍ଜେ ପ୍ରାଣ ସଇ !
ଦେରେ  କୃଷ୍ଣ ଦେ, ଏନେ ଦେ, ରାଧା ଜାନେ କି ଗୋ କୃଷ୍ଣ ବଇ ।

ଶ୍ରୀରାମକୃଷ୍ଣ ଗୀତ ଶୁଣୁ ଶୁଣୁ ସମାଧିସ୍ଥ ହେଲେ । ଅନେକକ୍ଷଣ ଏହି ଭାବରେ ରହିଲେ । କନସର୍ଟ ବାଜିବାକୁ ଲାଗିଲା । ଠାକୁରଙ୍କ ସମାଧି ଭଙ୍ଗ ହେଲା । ଇତିମଧ୍ୟରେ ଖଡ଼ଦାର ନିତ୍ୟାନନ୍ଦ ଗୋସ୍ୱାମୀଙ୍କ ବଂଶର ଜଣେ ବାବୁ ଆସିଛନ୍ତି ଓ ଠାକୁରଙ୍କ ଚୌକି ପଛରେ ଠିଆହୋଇଛନ୍ତି । ବୟସ ୩୪/୩୫ ହେବ । ଠାକୁର ତାଙ୍କୁ ଦେଖି ଆନନ୍ଦରେ ଭାସିବାକୁ ଲାଗିଲେ । ତାଙ୍କର ହାତଧରି କେତେ କଥା କହୁଛନ୍ତି । ମଧ୍ୟେ ମଧ୍ୟେ ତାଙ୍କୁ କହୁଛନ୍ତି, "ତୁମେ ଏଠାରେ ବସ ନାହିଁ, ତୁମେ ଏଠାରେ ରହିଲେ ଖୁବ୍ ଉଦ୍ଦୀପନା ହୁଏ ।" ସ୍ନେହରେ ତାଙ୍କ ହାତଧରି ଯେପରି ଖେଳୁଛନ୍ତି । ମୁହଁରେ ହାତଦେଇ ଆଦର କରୁଛନ୍ତି !

ଗୋସ୍ୱାମୀ ଚାଲିଯିବାରୁ ମାଷ୍ଟରଙ୍କୁ କହିଲେ, "ସେ ବଡ଼ ପଣ୍ଡିତ, ବାପ ବଡ଼ ଭକ୍ତ । ମୁଁ ଖଡ଼ଦାର ଶ୍ୟାମସୁନ୍ଦରଙ୍କୁ ଦେଖିବାକୁ ଗଲି, ଯେଉଁ ଭୋଗ ଶହେ ଟଙ୍କା ଦେଲେ ମଧ୍ୟ ମିଳେ ନାହିଁ ସେହି ଭୋଗ ଆଣି ମୋତେ ଖୁଆଇଲେ !

"ଏହାଙ୍କର ଲକ୍ଷଣ ଖୁବ୍ ଭଲ । ଟିକିଏ ଚେଷ୍ଟାକଲେ ଚୈତନ୍ୟ ହୁଏ । ତାଙ୍କୁ ଦେଖୁ ଦେଖୁ ଉଦ୍ଦୀପନା ହେଲା । ଆଉ କିଛି ସମୟ ରହିଥିଲେ, ମୁଁ ଭାବସ୍ଥ

ହୋଇପଡ଼ିଥାନ୍ତି ।'' ଗୋସ୍ୱାମୀଙ୍କୁ ଦେଖୁ ଦେଖୁ ଠାକୁରଙ୍କର ଭାବସମାଧି ହୋଇଥାନ୍ତା; ଏହିକଥା କହୁଛନ୍ତି ।

ଯବନିକା ଉଠିଗଲା । ରାଜପଥରେ ନିତ୍ୟାନନ୍ଦ ମୁଣ୍ଡରେ ହାତଦେଇ ରକ୍ତସ୍ରୋତ ବନ୍ଦ କରୁଛନ୍ତି । ମାଧାଇ ଭଙ୍ଗା ମାଠିଆର ଖପରା ଫୋପାଡ଼ି ମାରିଛନ୍ତି, ନିତାଇଙ୍କର ଭ୍ରୂକ୍ଷେପ ନାହିଁ । ଗୌର ପ୍ରେମରେ ଗର୍ଗର ମତୁଆଲ । ଠାକୁର ଭାବାବିଷ୍ଟ । ଦେଖୁଛନ୍ତି, ନିତାଇ, ଜଗାଇ ମାଧାଇଙ୍କୁ ଆଲିଙ୍ଗନ କରିବେ । ନିତାଇ କହୁଛନ୍ତି—

ପ୍ରାଣଭରେ ଆୟ ହରିବଲି, ନେଚେ ଆୟ ଜଗାଇ ମାଧାଇ ।
ମେରେଛ ବେଶ କରେଛ, ହରି ବଲେ ନାଚ ଭାଇ ।।
ବଲରେ ହରିବୋଲ, ପ୍ରେମିକ ହରି ପ୍ରେମେ ଦିବେ କୋଲ ।
ତୋଲରେ ତେଲେ ହରିନାମେର ରୋଲ ।।
ପାଓନି ପ୍ରେମେର ସ୍ୱାଦ, ଓରେ ହରି ବଲେ କାନ୍ଦ, ହେରବି ହୃଦୟ ଚାନ୍ଦ ।
ଓରେ ପ୍ରେମେ ତୋଦେର ନାମ ବିଲାବ, ପ୍ରେମେ ନିତାଇ ଡାକେ ତାଇ ।।

ଏଥର ନିମାଇଁ ଶଚୀଙ୍କୁ ସନ୍ନ୍ୟାସର କଥା କହୁଛନ୍ତି । ଶଚୀ ମୂର୍ଚ୍ଛିତା ହେଲେ, ମୂର୍ଚ୍ଛା ଦେଖି ଦର୍ଶକବୃନ୍ଦ ଅନେକ ହାହାକାର କରୁଛନ୍ତି । ଶ୍ରୀରାମକୃଷ୍ଣ ତିଳେମାତ୍ର ବିଚଳିତ ନ ହୋଇ ଏକ ଦୃଷ୍ଟିରେ ଦେଖୁଛନ୍ତି; କେବଳ ନୟନ କୋଣରେ ବିନ୍ଦୁଏ ଜଳ ଦେଖାଦେଇଛି ।

## (୮)

## ଗୌରାଙ୍ଗ ପ୍ରେମରେ ମତ୍ତ ଠାକୁର ଶ୍ରୀରାମକୃଷ୍ଣ ।

ଅଭିନୟ ସମାପ୍ତ ହେଲା । ଠାକୁର ଗାଡ଼ିକୁ ଉଠୁଛନ୍ତି । ଜଣେ ଭକ୍ତ ପ୍ରଶ୍ନ କଲେ, କିପରି ଦେଖିଲେ ? ଠାକୁର ହସି ହସି କହିଲେ, ଅସଲ ନକଲ ଏକ ହୋଇଛି ଦେଖିଲି । ଗାଡ଼ି ମହେନ୍ଦ୍ର ମୁଖାର୍ଜୀଙ୍କ କଳଠାକୁ ଯାଉଛି । ହଠାତ୍ ଠାକୁର ଭାବାବିଷ୍ଟ ହେଲେ । କିୟତ୍‌କ୍ଷଣ ପରେ ପ୍ରେମରେ ବିଭୋର ହୋଇ ନିଜେ ନିଜେ କହୁଛନ୍ତି—

''ହା କୃଷ୍ଣ ! ହେ କୃଷ୍ଣ ! ଜ୍ଞାନ କୃଷ୍ଣ ! ପ୍ରାଣ କୃଷ୍ଣ ! ମନ କୃଷ୍ଣ ! ଆତ୍ମା କୃଷ୍ଣ ! ଦେହ କୃଷ୍ଣ !'' ପୁଣି କହୁଛନ୍ତି, ''ପ୍ରାଣ ହେ ଗୋବିନ୍ଦ, ମମ ଜୀବନ !''

ଗାଡ଼ି ମୁଖାର୍ଜୀଙ୍କ କଳଠାରେ ପହଞ୍ଚିଲା । ଅନେକ ଯତ୍ନ କରି ମହେନ୍ଦ୍ର ଠାକୁରଙ୍କୁ ଖୁଆଇଲେ । ମଣି ପାଖରେ ବସିଛନ୍ତି । ଠାକୁର ସ୍ନେହରେ ତାଙ୍କୁ କହୁଛନ୍ତି, ତୁମେ କିଛି ଖାଉନା । ହାତରେ ମିଠାଇ ପ୍ରସାଦ ଦେଲେ ।

ବର୍ତ୍ତମାନ ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱର—କାଳୀମନ୍ଦିରକୁ ଯାଉଛନ୍ତି । ଗାଡ଼ିରେ ମହେନ୍ଦ୍ର ମୁଖାର୍ଜୀ ଓ ଦୁଇ ତିନିଜଣ ଭକ୍ତ । ମହେନ୍ଦ୍ର କିଛି ବାଟ ଆଗେଇ ଦେବାକୁ ଯିବେ । ଠାକୁର ଆନନ୍ଦରେ ଯାଉ ଯାଉ ଗୀତ ଆରମ୍ଭ କଲେ—

ଗୌର ନିତାଇ ତୁମେ ଦୁଇ ଭାଇ । ଇତ୍ୟାଦି ।

ମଣି ସଙ୍ଗେ ସଙ୍ଗେ ଗାଉଛନ୍ତି ।

ମହେନ୍ଦ୍ର ତୀର୍ଥ କରିବାକୁ ଯିବେ । ଠାକୁରଙ୍କ ସହିତ ସେହିସବୁ କଥା ହେଉଛି ।

ଶ୍ରୀରାମକୃଷ୍ଣ (ମହେନ୍ଦ୍ରଙ୍କ ପ୍ରତି, ସହାସ୍ୟ)—ପ୍ରେମର ଅଙ୍କୁର ନ ହେଲେ ସବୁ ଶୁଖିଯିବ !

"କିନ୍ତୁ ଶୀଘ୍ର ଆସିବ । ଆହା, ଅନେକ ଦିନ ପୂର୍ବରୁ ତୁମ ଘରକୁ ଆସିବାକୁ ମନେ କରିଥିଲି, ଯାହାହେଉ ଥରେ ଦେଖାହେଲା, ଭଲ ହେଲା ।"

ମହେନ୍ଦ୍ର—ଆଜ୍ଞା, ମୋର ଜୀବନ ସାର୍ଥକ ହେଲା !

ଶ୍ରୀରାମକୃଷ୍ଣ—ସାର୍ଥକ ତ ଅଛ ! ତୁମର ପିତା ମଧ୍ୟ ଭଲଲୋକ ! ସେଦିନ ଦେଖିଲି, ଅଧ୍ୟାତ୍ମରେ ବିଶ୍ୱାସ ।

ମହେନ୍ଦ୍ର—ଆଜ୍ଞା, କୃପା କରିବେ ଯେପରି ଭକ୍ତି ହେବ ।

ଶ୍ରୀରାମକୃଷ୍ଣ—ତୁମେ ଖୁବ୍ ଉଦାର, ସରଳ । **ଉଦାର ସରଳ ନ ହେଲେ ଭଗବାନ ଲାଭ ହୁଏ ନାହିଁ । କପଟତାଠାରୁ ଅନେକ ଦୂର !**

ମହେନ୍ଦ୍ର ଶ୍ୟାମବଜାର ନିକଟରୁ ବିଦାୟ ନେଲେ । ଗାଡ଼ି ଚାଲୁଅଛି ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—ଯଦୁ ମଲ୍ଲିକ କିଛି କଲେ ?

ମାଷ୍ଟର—(ସ୍ୱଗତଃ) ଠାକୁର ସମସ୍ତଙ୍କ ମଙ୍ଗଳ ପାଇଁ ଚିନ୍ତା କରୁଛନ୍ତି । ଚୈତନ୍ୟଦେବଙ୍କ ଭଳି ଏ ମଧ୍ୟ କ'ଣ ଭକ୍ତି ଶିଖାଇବାକୁ ଦେହଧାରଣ କରିଛନ୍ତି ?



# ଦଶମ ପରିଚ୍ଛେଦ

## (୧)

### ଠାକୁର ଶ୍ରୀରାମକୃଷ୍ଣ ସାଧାରଣ ବ୍ରାହ୍ମସମାଜ ମନ୍ଦିରରେ ।

#### ମାଷ୍ଟର, ହାଜରା, ବିଜୟ, ଶିବନାଥ, କେଦାର ।

ଆଜି ଶ୍ରୀରାମକୃଷ୍ଣ କଲିକତା ନଗରୀକୁ ଆଗମନ କରିଛନ୍ତି । ସପ୍ତମୀ ପୂଜା, ଶୁକ୍ରବାର, ତା ୨୬ ରିଖ ସେପ୍ଟେମ୍ବର, ୧୮୮୪ ଖ୍ରୀଷ୍ଟାବ୍ଦ । ଠାକୁରଙ୍କର ଅନେକଗୁଡ଼ିଏ କାର୍ଯ୍ୟ । ଶାରଦୀୟ ମହୋତ୍ସବ—ରାଜଧାନୀ ମଧ୍ୟରେ ହିନ୍ଦୁର ପ୍ରାୟ ଘରେ ଘରେ ଆଜି ମା'ଙ୍କର ସପ୍ତମୀ ପୂଜା ଆରମ୍ଭ । ଠାକୁର ଅଧରଙ୍କ ଘରେ ପ୍ରତିମା ଦର୍ଶନ କରିବେ ଓ ଆନନ୍ଦମୟୀଙ୍କର ଆନନ୍ଦୋତ୍ସବରେ ଯୋଗଦାନ କରିବେ । ଆଉ ଗୋଟିଏ ଇଚ୍ଛା, ଶ୍ରୀଯୁକ୍ତ ଶିବନାଥଙ୍କୁ ଦର୍ଶନ କରିବେ ।

ସାଧାରଣ ବ୍ରାହ୍ମ ସମାଜର ଫୁଟ୍‌ପାଥ ଉପରେ ଦିନ ଦୁଇ ପ୍ରହରରେ ମାଷ୍ଟର ହାତରେ ଛତା ଧରି ଅପେକ୍ଷା କରୁଛନ୍ତି ଓ ପଦଚାରଣ କରୁଛନ୍ତି । ଗୋଟାଏ ବାଜିଲା, ଦୁଇଟା ବାଜିଲା, ଠାକୁର ଆସିଲେ ନାହିଁ । ଶ୍ରୀଯୁକ୍ତ ମହଲାନବିଶଙ୍କ ଡିସ୍ପେନ୍‌ସରୀର ପାଖରେ ମଧ୍ୟେ ମଧ୍ୟେ ବସୁଛନ୍ତି; ଦୁର୍ଗାପୂଜା ଉପଲକ୍ଷେ ପିଲାମାନଙ୍କର ଆନନ୍ଦ ଓ ଆବାଳବୃଦ୍ଧ ସମସ୍ତଙ୍କର ବ୍ୟସ୍ତ ଭାବ ଦେଖୁଛନ୍ତି ।

ସମୟ ତିନିଟା ବାଜିଲା । କିୟଦ୍‌କ୍ଷଣ ପରେ ଠାକୁରଙ୍କ ଗାଡ଼ି ଆସି ଉପସ୍ଥିତ । ଗାଡ଼ିରୁ ଅବତରଣ କରି ସମାଜ ଦୃଷ୍ଟରେ ଠାକୁର କରଯୋଡ଼ି ପ୍ରଣାମ କଲେ । ସଙ୍ଗରେ ହାଜରା ଓ ଆଉ ଜଣେ ଦୁଇଜଣ ଭକ୍ତ । ମାଷ୍ଟର ଠାକୁରଙ୍କ ଦର୍ଶନ ଲାଭ କରି ତାଙ୍କର ଚରଣ ବନ୍ଦନା କଲେ । ଠାକୁର କହିଲେ, ମୁଁ ଶିବନାଥଙ୍କ ଘରକୁ ଯିବି । ଠାକୁରଙ୍କ ଆଗମନ ବାର୍ତ୍ତା ଶୁଣି ଦେଖୁ ଦେଖୁ କେତେଜଣ ବ୍ରାହ୍ମ ଭକ୍ତ ଆସି ଜୁଟିଲେ । ସେମାନେ ଠାକୁରଙ୍କୁ ସାଥି କରି ବ୍ରାହ୍ମପଡ଼ା ମଧ୍ୟରେ ଶିବନାଥଙ୍କ ଘରର ଦ୍ୱାରଦେଶକୁ ତାଙ୍କୁ ନେଇଗଲେ । ଶିବନାଥ ଘରେ ନାହାନ୍ତି । କଅଣ ହେବ ? ଦେଖୁ ଦେଖୁ ଶ୍ରୀଯୁକ୍ତ ବିଜୟ (ଗୋସ୍ୱାମୀ), ଶ୍ରୀଯୁକ୍ତ ମହଲାନବିଶ୍ ଇତ୍ୟାଦି ବ୍ରାହ୍ମସମାଜର କର୍ତ୍ତୃପକ୍ଷ ଉପସ୍ଥିତ ହେଲେ ଓ ଠାକୁରଙ୍କୁ ଅଭ୍ୟର୍ଥନା କରି ସମାଜ ମନ୍ଦିର ମଧ୍ୟକୁ ନେଇ କହିଲେ, ଠାକୁର ଟିକିଏ ବସନ୍ତୁ –ଇତିମଧ୍ୟରେ ଶିବନାଥ ଆସି ହୁଏତ ପହଞ୍ଚିଯାଇପାରନ୍ତି ।

ଠାକୁର ଆନନ୍ଦମୟ, ସହାସ୍ୟ ବଦନରେ ଆସନ ଗ୍ରହଣ କଲେ । ବେଦୀର ତଳେ ଯେଉଁଠାରେ ସଂକୀର୍ତ୍ତନ ହୁଏ, ସେହିଠାରେ ବସିବାର ଆସନ ଦିଆଗଲା ।

## ସାଧାରଣ ବ୍ରାହ୍ମସମାଜ ଓ 'ସାଇନ୍‌ବୋର୍ଡ୍'; ସାକାର, ନିରାକାର ସମନ୍ୱୟ ।

ଶ୍ରୀରାମକୃଷ୍ଣ (ବିଜୟଙ୍କୁ ସହାସ୍ୟରେ)—ଶୁଣିଲି, ଏଠାରେ କୁଆଡ଼େ ସାଇନ୍‌ବୋର୍ଡ୍ ଅଛି । ଅନ୍ୟମତର ଲୋକ କୁଆଡ଼େ ଏଠାକୁ ଆସିବାର ଉପାୟ ନାହିଁ । ନରେନ୍ଦ୍ର କହେ, ସମାଜକୁ ଯିବାର ପ୍ରୟୋଜନ ନାହିଁ । ଶିବନାଥଙ୍କ ଘରକୁ ଯାଆନ୍ତୁ ।

''ମୁଁ କହେ, ସମସ୍ତେ ହିଁ ତାଙ୍କୁ ଡାକୁଛନ୍ତି । ଦ୍ୱେଷାଦ୍ୱେଷୀର ଦରକାର ନାହିଁ । କେହି କହୁଛି ସାକାର, କେହି କହୁଛି ନିରାକାର । ମୁଁ କହେ ଯାହାର ସାକାରରେ ବିଶ୍ୱାସ, ସେ ସାକାରକୁ ଚିନ୍ତା କରୁ, ଯାହାର ନିରାକାରରେ ବିଶ୍ୱାସ ସେ ନିରାକାର ଚିନ୍ତା କରୁ । ତେବେ ଏତିକି କହିବାର କଥା ଯେ, ମତୁଆଳ ବୁଦ୍ଧି (Dogmatism) ଭଲ ନୁହେଁ;—ଅର୍ଥାତ୍ ମୋର ଧର୍ମ ଠିକ୍ ଆଉ ସମସ୍ତଙ୍କର ଭୁଲ; ମୋର ଧର୍ମ ଠିକ୍; ଆଉ ସେମାନଙ୍କ ଧର୍ମ ଠିକ୍ କି ଭୁଲ, ସତ୍ୟ କି ମିଥ୍ୟା, ଏହା ମୁଁ ବୁଝିପାରେ ନାହିଁ—ଏପରି ଭାବ ଭଲ ।' କାହିଁକିନା ଈଶ୍ୱରଙ୍କୁ ସାକ୍ଷାତ୍‌କାର ନ କଲେ, ତାଙ୍କର ସ୍ୱରୂପ ବୁଝାଯାଏ ନାହିଁ । କବୀର କହନ୍ତି, ସାକାର ମୋର ମା, ନିରାକାର ମୋର ବାପ ।' 'କାକୋ ନିନ୍ଦୋ, କାକୋ ବନ୍ଦୋ, ଦୋନୋ ପଲ୍ଲାଭାରୀ !''

''ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ୍, ଶାକ୍ତ, ଶୈବ, ବୈଷ୍ଣବ, ଋଷିମାନଙ୍କ କାଳର ବ୍ରହ୍ମଜ୍ଞାନୀ ଓ ଇଦାନୀଂ ବ୍ରହ୍ମଜ୍ଞାନୀ ସବୁ ତୁମ୍ଭେମାନେ-ସମସ୍ତେ ହିଁ ଏକ ବସ୍ତୁକୁ ଚାହିଁଛ । ତେବେ ଯାହାର ଯାହା ପେଟରେ ସହେ, ମା' ସେହିପରି ବ୍ୟବସ୍ଥା କରିଛନ୍ତି ।''

''ଘରକୁ ଯଦି ମାଛ ଆସେ ଓ ଘରେ ପାଞ୍ଚୋଟି ପିଲା ଥାଆନ୍ତି, ମା' ସମସ୍ତଙ୍କ ପାଇଁ ପଲାଉ, କାଳିଆ କରିଦିଅନ୍ତି ନାହିଁ । ସମସ୍ତଙ୍କର ପେଟ ସମାନ ନୁହେଁ । କାହାପାଇଁ ମାଛ ଝୋଳର ବ୍ୟବସ୍ଥା କରନ୍ତି । କିନ୍ତୁ ମା' ସମସ୍ତଙ୍କୁ ହିଁ ସମାନ ଭଲ ପାଆନ୍ତି ।''

''ମୋର ଭାବ କଅଣ ଜାଣ ? ମୁଁ ମାଛର ସବୁ ରକମ ଭଲପାଏ । ମୋର ସ୍ତ୍ରୀ ଲୋକଙ୍କ ପରି ସ୍ୱଭାବ ! (ସମସ୍ତଙ୍କର ହାସ୍ୟ) । ମୁଁ ମାଛଭଜା, ସନ୍ତୁଳା, ମାଛର ଖଟା, ବାଟି ଭଜା, ଏସବୁଥିରେ ଅଛି । ପୁଣି ମୁଢ଼ିଘାଣ୍ଟରେ ମଧ୍ୟ ଅଛି, କାଳିଆ—ପଲାଉରେ ବି ଅଛି । (ସମସ୍ତଙ୍କର ହାସ୍ୟ) ।''

''କଅଣ ଜାଣ ? ଦେଶ-କାଳ-ପାତ୍ର ଭେଦରେ ଈଶ୍ୱର ନାନା ଧର୍ମ କରିଛନ୍ତି । କିନ୍ତୁ ମତ ହିଁ ପଥ, ମତ କିଛି ଈଶ୍ୱର ନୁହେଁ । ଆନ୍ତରିକ ଭକ୍ତି କରି ଗୋଟିଏ ମତକୁ ଆଶ୍ରୟ କଲେ, ତାଙ୍କ ପାଖରେ ପହଞ୍ଚି ହୁଏ । ଯଦି କୌଣସି ମତ ଆଶ୍ରୟ କରି ତହିଁରେ ଭୁଲ ଥାଏ, ଆନ୍ତରିକତା ଥିଲେ ସେ ସେହି ଭୁଲକୁ ସୁଧାରି ଦିଅନ୍ତି । ଯଦି କେହି ଆନ୍ତରିକତା ସହ ଜଗନ୍ନାଥ ଦର୍ଶନରେ ବାହାରେ, ଆଉ ଭୁଲରେ ଦକ୍ଷିଣଦିଗକୁ ନଯାଇ ଉତ୍ତରଦିଗକୁ

ଯାଏ, ତାହାହେଲେ ଅବଶ୍ୟ କେହି ବାଟରେ କହିଦେବେ, ଆହେ ସେ ଦିଗରେ ଯାଅନା— ଦକ୍ଷିଣଦିଗରେ ଯାଅ । ସେ ବ୍ୟକ୍ତି କେବେ ନା କେବେ ଜଗନ୍ନାଥ ଦର୍ଶନ କରିବ ।''

''ତେବେ ଅନ୍ୟର ମତ ଭୁଲ ହୋଇଛି, ଏଥିରେ ଆମର ଦରକାର ନାହିଁ । ଯାହାଙ୍କର ଜଗତ୍, ସେ ଭାବୁଛନ୍ତି । ଆମମାନଙ୍କର କର୍ତ୍ତବ୍ୟ ଯେକୌଣସି ଉପାୟରେ ଜଗତର ନାଥଙ୍କୁ ଦର୍ଶନ କରିବାକୁ ପଡ଼ିବ । ତେବେ ତୁମମାନଙ୍କର ମତଟି ତ ବେଶ୍ । ତାଙ୍କୁ ନିରାକାର କହୁଛ, ଏହା ତ ଭଲ । ମିଶ୍ରିର ରୁଟି ସିଧାକରି ଖାଅ ବା ବଙ୍କା କରି ଖାଅ, ମିଠା ଲାଗିବ ।''

''ତେବେ **ମତୁଆଳ ବୁଦ୍ଧି ଭଲ ନୁହେଁ** । ତୁମେ ବହୁରୂପୀର କଥା ଶୁଣିଛ । ଜଣେ ଝାଡ଼ାଯାଇ ଗଛ ଉପରେ ବହୁରୂପୀକୁ ଦେଖିଥିଲା, ବନ୍ଧୁମାନଙ୍କ ପାଖରେ ଆସି କହିଲା, ମୁଁ ଗୋଟିଏ ଲାଲ ଜନ୍ତୁ ଦେଖିଲି । ତା'ର ବିଶ୍ୱାସ, ଏକାବେଳକେ ପକ୍କା ଲାଲ । ଆଉ ଜଣେ ସେହି ଗଛମୂଳରୁ ଆସି କହିଲା ଯେ, ମୁଁ ଗୋଟିଏ ସବୁଜ ଜନ୍ତୁ ଦେଖିଆସିଲି । ତା'ର ବିଶ୍ୱାସ ଏକାବେଳକେ ପକ୍କା ସବୁଜ । କିନ୍ତୁ ଯେ ସେହି ଗଛ ମୂଳରେ ବାସକରେ, ସେ ଆସି କହିଲା, ତୁମ୍ଭେମାନେ ଯାହା ଯାହା କହୁଛ, ସବୁ ଠିକ୍ ତେବେ ଜନ୍ତୁଟି କେତେବେଳେ ଲାଲ, କେତେବେଳେ ସବୁଜ, କେବେ ହଳଦିଆ ପୁଣି କେବେ କୌଣସି ରଙ୍ଗ ନ ଥାଏ ।''

''ବେଦରେ ତାଙ୍କୁ ସଗୁଣ ନିର୍ଗୁଣ ଦୁଇ କୁହାଯାଇଛି । ତୁମ୍ଭେମାନେ ନିରାକାର କହୁଛ । ଏହା ଏକଦେଶୀ ଭାବ । ଯାହାହେଉ ଗୋଟିକୁ ଭଲଭାବରେ ଜାଣିଲେ, ଅନ୍ୟଟିକୁ ମଧ୍ୟ ଜଣାଯାଏ । ସେ ହିଁ ଜଣାଇ ଦିଅନ୍ତି । ତୁମ୍ଭମାନଙ୍କ ଭିତରୁ ଯେ ଏଠାକୁ ଆସେ, ଏହାଙ୍କୁ ଜାଣେ, ତାଙ୍କୁ ବି ଜାଣେ ।'' (ଜଣେ ଦୁଇଜଣ ବ୍ରାହ୍ମଭକ୍ତଙ୍କ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି) ।''

## (୨)

## ବିଜୟ ଗୋସ୍ୱାମୀଙ୍କ ପ୍ରତି ଉପଦେଶ ।

ବିଜୟ— ସେତେବେଳେ ସାଧାରଣ ବ୍ରାହ୍ମସମାଜରେ ଜଣେ ବେତନଭୋଗୀ ଆଚାର୍ଯ୍ୟ । ଆଜିକାଲି ସେ ବ୍ରାହ୍ମ ସମାଜର ସବୁ ନିୟମ ମାନି ଚଳିପାରୁ ନାହାନ୍ତି । ସାକାରବାଦୀମାନଙ୍କ ସଙ୍ଗରେ ମଧ୍ୟ ମିଶୁଛନ୍ତି । ଏହି ସମସ୍ତ ନେଇ ସାଧାରଣ ବ୍ରାହ୍ମସମାଜର କର୍ତ୍ତୃପକ୍ଷମାନଙ୍କ ସହିତ ତାଙ୍କର ମନାନ୍ତର ହୋଇଛି । ସମାଜର ବ୍ରାହ୍ମଭକ୍ତମାନେ ଅନେକେ ତାଙ୍କ ଉପରେ ଅସନ୍ତୁଷ୍ଟ ହୋଇଛନ୍ତି । ଠାକୁର ହଠାତ୍ ବିଜୟଙ୍କୁ ଲକ୍ଷ୍ୟକରି ପୁନରାୟ କହୁଛନ୍ତି ।

ଶ୍ରୀରାମକୃଷ୍ଣ (ବିଜୟଙ୍କ ପ୍ରତି, ସହାସ୍ୟରେ)— ତୁମେ ସାକାରବାଦୀମାନଙ୍କ ସହିତ

ମିଶ ବୋଲି ତୁମର କୁଆଡ଼େ ବଡ଼ ନିନ୍ଦା ହୋଇଛି ? ଯେ ଭଗବାନଙ୍କ ଭକ୍ତ ତା'ର କୁଟସ୍ଥ ବୁଦ୍ଧିଥିବା ଦରକାର । ଯେପରି କମାରଶାଳର ନେହି । ହାତୁଡ଼ିର ପାହାର ଅନବରତ ପଡ଼ୁଛି, ତଥାପି ନିର୍ବିକାର । ଅସତ୍ ଲୋକେ ତୁମକୁ କେତେ କ'ଣ କହିବେ, ନିନ୍ଦା କରିବେ । ତୁମେ ଯଦି ଆନ୍ତରିକ ଭଗବାନଙ୍କୁ ଚାହଁ, ତେବେ ତୁମକୁ ସବୁ ସହିବାକୁ ପଡ଼ିବ । ଦୁଷ୍ଟଲୋକମାନଙ୍କ ମଧ୍ୟରେ ଥାଇ କ'ଣ ଈଶ୍ୱର ଚିନ୍ତା ହୁଏ ନାହିଁ ? ଦେଖିନାହଁ ଋଷିମାନେ ବଣ ମଧ୍ୟରେ ଈଶ୍ୱରଙ୍କୁ ଚିନ୍ତା କରନ୍ତି । ଚାରିଦିଗରେ ବାଘ ଭାଲୁଙ୍କର ବାସ । ସେହିପରି ଦୁଷ୍ଟ ଲୋକଙ୍କର ବାଘ ଭାଲୁଙ୍କର ସ୍ୱଭାବ, କାଳେ ଆସି ଅନିଷ୍ଟ କରିବେ ।'

''ଏହି କେତୋଟିଙ୍କ ପାଖରୁ ସାବଧାନ ହେବାକୁ ହୁଏ । ପ୍ରଥମ, ବଡ଼ଲୋକ । ଟଙ୍କା ବଳ, ଲୋକ ବଳ, ମନେକଲେ ତୁମର ଅନିଷ୍ଟ କରିପାରେ, ସେମାନଙ୍କ ପାଖରେ ସାବଧାନରେ କଥା କହିବାକୁ ହୁଏ । ହୁଏତ ଯାହା କହିବେ ମତ ଦେଇଯିବାକୁ ହେବ । ତା'ପରେ କୁକୁର । ଯେତେବେଳେ ଭୋ ଭୋ କରି ଦୌଡ଼ିଆସେ, ସେତେବେଳେ ଠିଆହୋଇ ମୁହଁରେ ଶବ୍ଦ କରି ତାକୁ ଥଣ୍ଡା କରିବାକୁ ହୁଏ । ତା'ପରେ ଷଣ୍ଢ, ମାରିବାକୁ ଆସିଲେ ତାକୁ ମଧ୍ୟ ପାଟିକରି ଥଣ୍ଡା କରିବାକୁ ହୁଏ । ତା'ପରେ ମାତାଲ । ତାକୁ ଯଦି ରଗାଇ ଦିଅ, ତା'ହେଲେ ସେ କହିବ, ତୋର ଚୌଦ ପୁରୁଷ, ତୋର ହେନ୍‌ତେନ୍, ବୋଲି ଗାଳି ଗୁଜବ କରିବ । ତାକୁ କହିବାକୁ ହୁଏ, କି ଭାଇ କିପରି ଅଛ ? ତା'ହେଲେ ଖୁବ୍ ଖୁସିହୋଇ ତୁମ ପାଖରେ ବସି ତମାଖୁ ଖାଇବ ।''

''ଅସତ୍ ଲୋକ ଦେଖିଲେ ମୁଁ ସାବଧାନ ହୋଇଯାଏ । ଯଦି କେହି ଆସି କହେ, ଆହେ, ହୁକାଫୁକା ଅଛି ? ମୁଁ କହେ ଅଛି ।''

''କାହାର କାହାର ସାପର ସ୍ୱଭାବ । ତୁମେ ଜାଣନା ତୁମକୁ କାମୁଡ଼ି ଦେବ । କାମୁଡ଼ା ସମ୍ଭାଳିବାକୁ ଅନେକ ବିଚାର କରିବାକୁ ହୁଏ । ତାହା ନ ହେଲେ ହୁଏତ ତୁମର ଏପରି ରାଗ ହୋଇଗଲା ଯେ, ତା'ର ଓଲଟା ଅନିଷ୍ଟ କରିବାକୁ ହେବ ।''

''ତେବେ ମଝିରେ ମଝିରେ ସତ୍‌ସଙ୍ଗ ଖୁବ୍ ଦରକାର । ସତ୍‌ସଙ୍ଗ କଲେ, ତେବେ ସଦସତ୍ ବିଚାର ଆସିବ ।''

ବିଜୟ—ଅବସର ନାହିଁ, ଏଠାରେ କାର୍ଯ୍ୟରେ ବ୍ୟସ୍ତ ଥାଏ ।

ଶ୍ରୀରାମକୃଷ୍ଣ—ତୁମେମାନେ ଆଚାର୍ଯ୍ୟ: ଅନ୍ୟର ଛୁଟି ହୁଏ କିନ୍ତୁ ଆଚାର୍ଯ୍ୟଙ୍କର ଛୁଟି ନାହିଁ । ନାଏବ ଗୋଟିଏ ପାଖ ଶାସନ କରିବା ପରେ, ଜମିଦାର ଆଉ ଅନ୍ୟ ପାଖକୁ ଶାସନ କରିବାକୁ ତାକୁ ପଠାନ୍ତି । ତେଣୁ ତୁମର ଛୁଟି ନାହିଁ । (ସମସ୍ତଙ୍କର ହାସ୍ୟ) ।

ବିଜୟ (କୃତାଞ୍ଜଳି ହୋଇ)—ଆପଣ ଟିକିଏ ଆଶୀର୍ବାଦ କରନ୍ତୁ ।

ଶ୍ରୀରାମକୃଷ୍ଣ—ସେ ସବୁ ଅଜ୍ଞାନ କଥା । ଆଶୀର୍ବାଦ ଈଶ୍ୱର କରିବେ ।

## ଗୃହସ୍ଥ ବ୍ରହ୍ମଜ୍ଞାନୀମାନଙ୍କୁ ଉପଦେଶ । ଗୃହସ୍ଥାଶ୍ରମ ଓ ସନ୍ନ୍ୟାସ ।

ବିଜୟ—ଆଜ୍ଞା, ଆପଣ କିଛି ଉପଦେଶ ଦିଅନ୍ତୁ ।

ଶ୍ରୀରାମକୃଷ୍ଣ (ସମାଜ ଗୃହର ଚତୁର୍ଦ୍ଦିଗକୁ ଦୃଷ୍ଟି ନିକ୍ଷେପ କରି, ସହାସ୍ୟରେ)—ଏହା ଏକ ପ୍ରକାର ବେଶ୍ ! ଶୁଖିଲା ଗୁଡ଼ ଓ ପାଣିଗୁଡ଼ । ଶୁଖିଲା ଗୁଡ଼ରେ ଅଛ, ପାଣି ଗୁଡ଼ରେ ମଧ୍ୟ ଅଛ । (ସମସ୍ତଙ୍କର ହାସ୍ୟ) । ମୁଁ ବେଶି ପକାଇ ଜଳିଯାଇଛି (ସମସ୍ତଙ୍କର ହାସ୍ୟ) । ନକ୍ସ ଖେଳ ଜାଣ ? ସତରରୁ ବେଶି ହେଲେ ଜଳିଯାଏ । ଏକରକମ ତାସ ଖେଳ । ଯେଉଁମାନେ ସତରରୁ କମ୍‌ରେ ରହନ୍ତି, ପାଞ୍ଚରେ, ସାତରେ ଥାଆନ୍ତି ସେମାନେ ସିଆଣା । ମୁଁ ବେଶି ପକାଇ ଜଳି ଯାଇଛି !

''ଥରେ କେଶବ ସେନ୍ ନିଜ ଘରେ ଲେକ୍‌ଚର୍ ଦେଲେ । ମୁଁ ଶୁଣୁଥିଲି । ଅନେକ ଲୋକ ବସିଥିଲେ । ପର୍ଦ୍ଦା ଆଢୁଆଳରେ ସ୍ତ୍ରୀଲୋକମାନେ ଥିଲେ । କେଶବ କହିଲେ, ହେ ଈଶ୍ୱର, ଆପଣ ଆଶୀର୍ବାଦ କରନ୍ତୁ, ଯେପରି ଭକ୍ତି ନଦୀରେ ଆମେମାନେ ବୁଡିଯାଉଁ ।' ମୁଁ ହସି କେଶବଙ୍କୁ କହିଲି, ଭକ୍ତି ନଦୀରେ ଯଦି ଏପରି ବୁଡିଯାଅ, ତାହାହେଲେ ପର୍ଦ୍ଦା ଆଢୁଆଳରେ ଯେଉଁମାନେ ଅଛନ୍ତି, ସେମାନଙ୍କ ଦଶା କଅଣ ହେବ ? ତେଣୁ ଗୋଟିଏ କାମ କର, ବୁଡିବ ଆଉ ମଝିରେ ମଝିରେ କୂଳକୁ ଉଠିବ । ଏକାଥରକେ ବୁଡି ତଳକୁ ଯାଅନାହିଁ । ଏକଥା ଶୁଣି କେଶବ ଓ ଆଉ ସମସ୍ତେ ହୋ ହୋ କରି ହସିବାକୁ ଲାଗିଲେ ।''

''ଯାହାହେଉ, ଆନ୍ତରିକତା ଥିଲେ ସଂସାରରେ ମଧ୍ୟ ଈଶ୍ୱରଙ୍କୁ ଲାଭ କରାଯାଏ । 'ମୁଁ ଓ ମୋର' ଏଇଟି ଅଜ୍ଞାନ । ହେ ଈଶ୍ୱର, 'ତୁମେ ଓ ତୁମର' ଏଇଟି ଜ୍ଞାନ ।''

''ସଂସାରରେ ରହିବ, ଯେପରି ବଡ଼ଲୋକ ଘରର ଚାକରାଣୀ । ସେ ସବୁକାମ କରେ, ପିଲାଙ୍କର ଯତ୍ନ ନିଏ, ବାବୁଙ୍କ ପୁଅକୁ କହେ 'ମୋର ହରି', କିନ୍ତୁ ମନେ ମନେ ଠିକ୍ ଜାଣେ, ଏ ଘର ମୋର ନୁହେଁ, ଏ ପୁଅ ବି ମୋର ନୁହେଁ, ସେ ସବୁ କାମ କରେ, କିନ୍ତୁ ତା'ର ମନ ନିଜ ଗ୍ରାମରେ ପଡ଼ିଥାଏ । ସେହିପରି ସଂସାରରେ ସବୁକାମ କରିବ, କିନ୍ତୁ ଈଶ୍ୱରଙ୍କ ଠାରେ ମନ ରଖିବ । ଆଉ ଜାଣିବ ଯେ, ଗୃହ, ପରିବାର, ପୁତ୍ର ଏସବୁ ମୋର ନୁହେଁ, ତାଙ୍କର ମୁଁ କେବଳ ତାଙ୍କର ଦାସ ।''

''ମୁଁ ମନରେ ତ୍ୟାଗ କରିବାକୁ କହେ । ସଂସାର ତ୍ୟାଗ କରିବାକୁ କହେ ନାହିଁ । ଅନାସକ୍ତ ହୋଇ ସଂସାରରେ ରହିଲେ, ଆନ୍ତରିକତା ସହ ଚାହିଁଲେ, ତାଙ୍କୁ ଲାଭ କରାଯାଏ ।''

## ବ୍ରାହ୍ମସମାଜ ଓ ଧ୍ୟାନଯୋଗ ।

### Yoga, Subjective and Objective.

ଶ୍ରୀରାମକୃଷ୍ଣ (ବିଜୟଙ୍କ ପ୍ରତି)—ମୁଁ ଆଖିବୁଜି ଧ୍ୟାନ କରେ । ତା'ପରେ ଭାବିଲି, ଏପରି କଲେ (ଆଖି ବୁଜିଲେ) ଈଶ୍ୱର ଅଛନ୍ତି, ଆଉ ଏପରି ନ କଲେ (ଆଖି ଖୋଲିଲେ)

କଅଣ ଈଶ୍ୱର ନାହାନ୍ତି ? ଆଖି ଖୋଲିକରି ମଧ୍ୟ ଦେଖୁଛି, ଈଶ୍ୱର ସର୍ବଭୂତରେ ରହିଛନ୍ତି । ମନୁଷ୍ୟ, ଜୀବଜନ୍ତୁ, ଗଛପତ୍ର, ଚନ୍ଦ୍ର-ସୂର୍ଯ୍ୟଙ୍କ ମଧ୍ୟରେ, ଜଳରେ, ସ୍ଥଳରେ ଓ ସର୍ବଭୂତରେ ସେ ଅଛନ୍ତି ।

## ଶିବନାଥ; ଶ୍ରୀଯୁକ୍ତ କେଦାର ଚାଟାର୍ଜୀ ।

''କାହିଁକି ଶିବନାଥଙ୍କୁ ଚାହେଁ ? ଯେ ଅନେକ ଦିନ ଈଶ୍ୱର ଚିନ୍ତା କରନ୍ତି, ତାଙ୍କ ଭିତରେ ସାର ଅଛି । ତାଙ୍କ ଭିତରେ ଈଶ୍ୱରଙ୍କ ଶକ୍ତି ଅଛି । ପୁଣି ଯେ ଭଲ ଗାଏ, ବଜାଏ, କୌଣସି ଗୋଟାଏ ବିଦ୍ୟା ଖୁବ୍ ଭଲ ରକମ ଜାଣେ, ତା' ଭିତରେ ବି ସାର ଅଛି । ଈଶ୍ୱରଙ୍କ ଶକ୍ତି ଅଛି । ଏଇଟି ଗୀତାର ମତ* । ଚଣ୍ଡୀରେ ଅଛି, ଯେ ଖୁବ ସୁନ୍ଦର, ତା' ଭିତରେ ମଧ୍ୟ ସାର ଅଛି, ଈଶ୍ୱରଙ୍କ ଶକ୍ତି ଅଛି । (ବିଜୟଙ୍କ ପ୍ରତି) ଆହା !! କେଦାରର କିପରି ସ୍ୱଭାବ ହୋଇଛି ! ଆସିବା ମାତ୍ରେ କାନ୍ଦେ ! ଆଖି ଦୁଇଟି ସର୍ବଦା ଯେପରି ଛେନା ବରା ପରି ହୋଇଛି ।''

ବିଜୟ—ସେଠାରେ* କେବଳ ଆପଣଙ୍କ କଥା, ଆଉ ସେ ଆପଣଙ୍କ ପାଖକୁ ଆସିବା ପାଇଁ ବ୍ୟାକୁଳ !

କିୟତ୍‌କ୍ଷଣ ପରେ ଠାକୁର ଗାତ୍ରୋତ୍‌ଥାନ କଲେ । ବ୍ରାହ୍ମଭକ୍ତମାନେ ନମସ୍କାର କଲେ, ସେ ମଧ୍ୟ ସେମାନଙ୍କୁ ନମସ୍କାର କଲେ । ଠାକୁର ଗାଡ଼ିରେ ବସିଲେ । ଅଧରଙ୍କ ଘରକୁ ପ୍ରତିମା ଦର୍ଶନ କରିବାକୁ ଯାଉଛନ୍ତି ।



---

*''ଯଦ୍ ଯଦ୍‌ବିଭୂତିମଦ୍ ସତ୍ତ୍ୱଂ ଶ୍ରୀମଦୂର୍ଜିତ ମେବ ବା ।
ତତ୍ତଦେବାବଗଚ୍ଛ ତ୍ୱଂ ମମ ତେଜୋଽଂଶ ସମ୍ଭବମ୍ ।।''

*କେଦାରନାଥ ଚାଟାର୍ଜୀ, ପରମ ଭକ୍ତ, ସରକାରୀ କାର୍ଯ୍ୟରେ ଢାକାରେ ଥିଲେ । ଶ୍ରୀ ବିଜୟକୃଷ୍ଣ ଗୋସ୍ୱାମୀ ଯେତେବେଳେ ଢାକାକୁ ମଝିରେ ମଝିରେ ଯାଆନ୍ତି, ସେତେବେଳେ ତାଙ୍କ ସହିତ ଦେଖାହୁଏ । ଦୁଇଜଣ ହିଁ ଭକ୍ତ, ପରସ୍ପର ଦେଖାହେଲେ ଆନନ୍ଦ କରନ୍ତି ।

# ଏକାଦଶ ପରିଚ୍ଛେଦ

## (୧)

### ମହାଷ୍ଟମୀ ଦିବସରେ ରାମଙ୍କ ଗୃହରେ ଶ୍ରୀରାମକୃଷ୍ଣ । ବିଜୟ, କେଦାର, ରାମ, ସୁରେନ୍ଦ୍ର, ଚୁନି, ନରେନ୍ଦ୍ର, ନିରଞ୍ଜନ, ବାବୁରାମ ଓ ମାଷ୍ଟର ।

ଆଜି ରବିବାର, ମହାଷ୍ଟମୀ, ୨୮ ତାରିଖ ସେପ୍ଟେମ୍ବର ୧୮୮୪ ଖ୍ରୀଷ୍ଟାବ୍ଦ । ଠାକୁର ଶ୍ରୀରାମକୃଷ୍ଣ କଲିକତାକୁ ପ୍ରତିମା ଦର୍ଶନ କରିବାକୁ ଆସିଛନ୍ତି । ଅଧରଙ୍କ ଘରେ ଶାରଦୀୟ ଦୁର୍ଗୋତ୍ସବ ହେଉଛି । ଠାକୁରଙ୍କୁ ତିନିଦିନ ନିମନ୍ତ୍ରଣ । ଅଧରଙ୍କ ଘର ପ୍ରତିମା ଦର୍ଶନ କରିବା ପୂର୍ବରୁ ରାମଙ୍କ ଘର ହୋଇ ଯାଉଛନ୍ତି । ବିଜୟ, କେଦାର, ରାମ, ସୁରେନ୍ଦ୍ର, ଚୁନିଲାଲ, ନରେନ୍ଦ୍ର, ନିରଞ୍ଜନ, ନାରାୟଣ, ହରିଶ୍, ବାବୁରାମ, ମାଷ୍ଟର ଇତ୍ୟାଦି ଅନେକ ଉପସ୍ଥିତ ଅଛନ୍ତି । ବଳରାମ, ରାଖାଲ ବର୍ତ୍ତମାନ ବୃନ୍ଦାବନ ଧାମରେ ବାସ କରୁଛନ୍ତି ।

ଶ୍ରୀରାମକୃଷ୍ଣ (ବିଜୟ ଓ କେଦାରଙ୍କ ଦୃଷ୍ଟେ, ସହାସ୍ୟରେ)—ଆଜି ବେଶ୍ ମିଳନ ହୋଇଛି । ଦୁଇଜଣ ହିଁ ଏକ ଭାବର ଭାବୁକ । (ବିଜୟଙ୍କ ପ୍ରତି) କିହେ ଶିବନାଥ କାହାନ୍ତି ?

ବିଜୟ—ଆଜ୍ଞା ହଁ, ସେ ଶୁଣିଛନ୍ତି । ମୋ ସଙ୍ଗରେ ଦେଖାହୋଇ ନାହିଁ । ତେବେ ମୁଁ ଖବର ପଠାଇଥିଲି, ଆଉ ସେ ମଧ୍ୟ ଜାଣିଛନ୍ତି ।

ଠାକୁର ଶିବନାଥଙ୍କ ଘରକୁ ଯାଇଥିଲେ, ତାଙ୍କ ସହିତ ଦେଖା କରିବା ପାଇଁ, କିନ୍ତୁ ଦେଖାହୋଇ ନାହିଁ । ପରେ ବିଜୟ ସମ୍ବାଦ ଦେଇଥିଲେ, ମାତ୍ର ଶିବନାଥ କାର୍ଯ୍ୟବ୍ୟସ୍ତ ଯୋଗୁଁ ଆଜି ମଧ୍ୟ ଦେଖାକରି ପାରିନାହାନ୍ତି ।

ଶ୍ରୀରାମକୃଷ୍ଣ (ବିଜୟାଦିଙ୍କ ପ୍ରତି)—ମନରେ ଚାରୋଟି ବାସନା ଉଠିଛି ।

"ବାଇଗଣ ଦେଇ ମାଛର ଝୋଳ ଖାଇବି । ଶିବନାଥଙ୍କ ସଙ୍ଗରେ ଦେଖା କରିବି । ହରି ନାମର ମାଳା ଆଣି ଭକ୍ତମାନେ ଜପିବେ, ଦେଖିବି । ଆଉ ଆଠଅଣାର ମଦ୍ୟ ଅଷ୍ଟମୀ ଦିନ ତାନ୍ତ୍ରିକ ସାଧକମାନେ ପାନ କରିବେ, ତାହା ମଧ୍ୟ ଦେଖିବି ଓ ସେମାନଙ୍କୁ ପ୍ରଣାମ କରିବି ।"

ନରେନ୍ଦ୍ର ସମ୍ମୁଖରେ ବସିଛନ୍ତି । ବର୍ତ୍ତମାନ ବୟସ ୨୨/୨୩ । ଏହିସବୁ କଥା କହୁ କହୁ ଠାକୁରଙ୍କର ଦୃଷ୍ଟି ନରେନ୍ଦ୍ରଙ୍କ ଉପରେ ପଡ଼ିଲା । ଠାକୁର ଦଣ୍ଡାୟମାନ ହୋଇ ସମାଧିସ୍ଥ ହେଲେ । ନରେନ୍ଦ୍ରଙ୍କ ଆଣ୍ଠୁ ଉପରେ ଗୋଟିଏ ପାଦ ଦେଇ ସେହି ଅବସ୍ଥାରେ ଠିଆ ହୋଇଛନ୍ତି । ସଂପୂର୍ଣ୍ଣ ବାହ୍ୟଶୂନ୍ୟ, ଚକ୍ଷୁ ସ୍ପନ୍ଦହୀନ ।

God, impersonal and personal.

## ସଚ୍ଚିଦାନନ୍ଦ ଓ କାରଣାନନ୍ଦମୟୀ । ରାଜର୍ଷି ଓ ବ୍ରହ୍ମର୍ଷି । ଈଶ୍ୱରକୋଟି ଓ ଜୀବକୋଟି । ନିତ୍ୟସିଦ୍ଧଙ୍କର ଥାକ ।

ଅନେକକ୍ଷଣ ପରେ ସମାଧି ଭଙ୍ଗ ହେଲା । ବର୍ତ୍ତମାନ ମଧ୍ୟ ଆନନ୍ଦର ନିଶା ଛାଡ଼ିନାହିଁ । ଠାକୁର ନିଜେ ନିଜେ କଥା କହୁଛନ୍ତି, ଭାବସ୍ଥ ହୋଇ ନାମ କରୁଛନ୍ତି । କହୁଛନ୍ତି— ସଚ୍ଚିଦାନନ୍ଦ ! ସଚ୍ଚିଦାନନ୍ଦ ! ସଚ୍ଚିଦାନନ୍ଦ ! କହିବି ? ନା ଆଜି କାରଣାନନ୍ଦଦାୟିନୀ ! କାରଣାନନ୍ଦମୟୀ ! ସା ରେ ଗା ମା ପା ଧା ନୀ । ନୀ—ରେ ରହିବା ଭଲ ନୁହେଁ— ଅନେକକ୍ଷଣ ରହିହୁଏ ନାହିଁ । ଏକ ପର୍ଦ୍ଦା ତଳେ ରହିବି ।

"ସ୍ଥୂଳ, ସୂକ୍ଷ୍ମ, କାରଣ, ମହାକାରଣ ! ମହାକାରଣକୁ ଗଲେ ଏକାବେଳକେ ଚୁପ । ସେଠାରେ ଆଉ କଥା ଚଳିବ ନାହିଁ ।"

"**ଈଶ୍ୱରକୋଟି** ମହାକାରଣକୁ ଯାଇ ଫେରିଆସି ପାରନ୍ତି । ଅବତାରାଦି ଈଶ୍ୱର କୋଟି । ସେମାନେ ଉପରକୁ ଉଠନ୍ତି, ପୁଣି ତଳକୁ ମଧ୍ୟ ଆସିପାରନ୍ତି । ଛାତ ଉପରକୁ ଉଠନ୍ତି, ପୁଣି ସିଡ଼ିରେ ଓହ୍ଲାଇ ତଳେ ଚଳାଚଳ ହୋଇପାରନ୍ତି । ଅନୁଲୋମ, ବିଲୋମ । ସାତ ମହଲା କୋଠା, କେହି ବାହାର ଘର ପର୍ଯ୍ୟନ୍ତ ଯାଇପାରେ । ରାଜାର ପୁଅ, ଆପଣାର ଘର ବୋଲି ସାତ ତାଲାକୁ ଯିବା ଆସିବା କରିପାରେ । ଗୋଟିଏ ପ୍ରକାର ଘଡ଼ିବାଣ ଅଛି । ଥରେ ଏକ ପ୍ରକାର -ଫୁଲ ଦେଖାଯାଉଛି, କିଛିକ୍ଷଣ ପରେ ଆଉ ଏକ ପ୍ରକାର -ଫୁଲ ଦେଖାଯାଉଛି, ପୁଣି କିଛିକ୍ଷଣ ପରେ ଅନ୍ୟପ୍ରକାର । ଏହିପରି ବିଭିନ୍ନ ପ୍ରକାର -ଫୁଲର ଶେଷ ନାହିଁ !"

"ଆଉ ଏକ ପ୍ରକାର ଘଡ଼ିବାଣ ଅଛି, ନିଆଁ ଧରାଇବାର ଟିକିଏ ପରେ ଭସ୍ କରି ଉଠି ବନ୍ଦ ହୋଇଯାଏ ।"

"ଯଦି କେହି ସାଧ୍ୟ ସାଧନା କରି ଉପରକୁ ଉଠେ ତ, ଫେରିଆସି ଖବରଦିଏ ନାହିଁ । ଜୀବକୋଟିଙ୍କର ସାଧ୍ୟସାଧନା କରି ହୋଇପାରେ, କିନ୍ତୁ ସମାଧି ପରେ ତଳକୁ ଆସି ଖବର ଦେବା ହୋଇପାରେ ନାହିଁ ।"

"ଗୋଟିଏ ଅଛି, **ନିତ୍ୟସିଦ୍ଧ**ର ଥାକ । ସେମାନେ ଜନ୍ମାବଧି ଈଶ୍ୱରଙ୍କୁ ଚାହାନ୍ତି, ସଂସାରରେ କୌଣସି ଭୋଗ୍ୟବସ୍ତୁ ସେମାନଙ୍କୁ ଭଲ ଲାଗେ ନାହିଁ । ବେଦରେ ଅଛି, ହୋମାପକ୍ଷୀର କଥା । ଏହି ପକ୍ଷୀ ଆକାଶରେ ଖୁବ୍ ଉଚ୍ଚରେ ରହେ । ଆକାଶରେ ହିଁ ଡିମ୍ବ ଦିଏ । ଏତେ ଉଚ୍ଚରେ ଥାଏ ଯେ, ଡିମ୍ବ ଅନେକଦିନ ଧରି ପଡୁଥାଏ । ପଡୁ ପଡୁ ଡିମ୍ବ- ଫୁଟେ । ସେତେବେଳେ ଛୁଆଟି ପଡୁଥାଏ । ଅନେକ ଦିନ ଧରି ପଡ଼େ । ପଡୁ ପଡୁ ଆଖି ଖୋଲିଯାଏ । ଯେତେବେଳେ ମାଟି ପାଖକୁ ଆସିଯାଏ, ସେତେବେଳେ ତା'ର ଚୈତନ୍ୟ ହୁଏ । ସେତେବେଳେ ବୁଝିପାରେ ଯେ, ଭୂମିରେ ପଡ଼ିବା ମାତ୍ରେ ହିଁ ମୃତ୍ୟୁ । ସେ ସିଧାସଳଖ ମା' ଆଡ଼କୁ ଉଡ଼ିଯାଏ । ବର୍ତ୍ତମାନ ମାଆକୁ ଚାହେଁ । ମା' ସେହି ଉଚ୍ଚ ଆକାଶରେ ଅଛି ।

ସେହି ଦିଗକୁ ଶୀଘ୍ର ଉଡ଼ିବାକୁ ଲାଗେ !''

''ଅବତାରଙ୍କ ସଙ୍ଗରେ ଯେଉଁମାନେ ଆସନ୍ତି, ସେମାନେ ନିତ୍ୟସିଦ୍ଧ, କାହାର ବା ଶେଷ ଜନ୍ମ । (ବିଜୟଙ୍କ ପ୍ରତି)—ତୁମମାନଙ୍କର ଉଭୟ ଅଛି । ଯୋଗ ଓ ଭୋଗ । ଜନକ ରାଜାଙ୍କର ଯୋଗ ଥିଲା, ଭୋଗ ମଧ୍ୟ ଥିଲା । ତେଣୁ ଜନକ ରାଜର୍ଷି, ରାଜା ଓ ଋଷି ଉଭୟ । **ନାରଦ ଦେବର୍ଷି । ଶୁକଦେବ ବ୍ରହ୍ମର୍ଷି ।''**

''ଶୁକଦେବ ବ୍ରହ୍ମର୍ଷି, ସେ ଜ୍ଞାନୀ ନୁହନ୍ତି, ଜ୍ଞାନର ଘନମୂର୍ତ୍ତି । ଜ୍ଞାନୀ କାହାକୁ କହନ୍ତି ? ଯାହାର ଜ୍ଞାନ ହୋଇଛି—ସାଧ ସାଧନା କରି ଜ୍ଞାନ ହୋଇଛି । ଶୁକଦେବ ଜ୍ଞାନର ମୂର୍ତ୍ତି ଅର୍ଥାତ୍ ଜ୍ଞାନର ଜମାଟ ବନ୍ଧା । ଜନ୍ମରୁ, ସାଧ ସାଧନା କରି ନୁହେଁ ।''

କଥାଗୁଡ଼ିକ କହୁ କହୁ ଠାକୁର ଶ୍ରୀରାମକୃଷ୍ଣ ପ୍ରକୃତିସ୍ଥ ହେଲେ । ବର୍ତ୍ତମାନ ଭକ୍ତମାନଙ୍କ ସହିତ କଥା କହିପାରିବେ । କେଦାରଙ୍କୁ ଗୀତ ଗାଇବାକୁ କହିଲେ । କେଦାର ଗାଉଛନ୍ତି—

୧) ମନେର କଥା କଇବ କି ସଇ କଇତେ ମାନା ।
ଦରଦୀ ନଇଲେ ପ୍ରାଣ ବାଞ୍ଚେ ନା ।।
ମନେର ମାନୁଷ ହୟ ଯେ ଜନା,
ଓ ତା'ର ନୟନେତେ ଯାୟ ଗୋ ଚେନା, ସେ ଦୁଇ ଏକ ଜନା ।
ଭାବେ ଭାସେ ରସେ ଡୁବେ ଓ ସେ ଉଜାନ ପଥେ କରେ ଆନାଗୋନା ।
(ଭାବେର ମାନୁଷ ଉଜାନେ ପଥେ କରେ ଆନାଗୋନା)

୨) ଗୌର ପ୍ରେମେର ଢେଉ ଲେଗେଛେ ଗାୟ ।
ତା'ର ହିଲ୍ଲୋଲେ ପାଷାଣ୍ଡ—ଦଳନ ଏ ବ୍ରହ୍ମାଣ୍ଡ ତଲିୟେ ଯାୟ ।।
ମନେ କରି ଡୁବେ ତଲିୟେ ରଇ,
ଗୌରଚାନ୍ଦେର ପ୍ରେମ-କୁମୀରେ ଗିଲେଛେ ଗୋ ସଇ ।
ଏମନ ବ୍ୟଥାର ବ୍ୟଥୀ କେ ଆର ଅଛେ
ହାତ ଧରେ ଟେନେ ତୋଳାୟ ।।

୩) ଯେ ଜନ ପ୍ରେମେର ଘାଟ ଚେନେ ନା ।

ଗୀତ ପରେ ପୁଣି ଠାକୁର ଭକ୍ତମାନଙ୍କ ସହିତ କଥା କହୁଛନ୍ତି । ଶ୍ରୀଯୁକ୍ତ କେଶବ ସେନଙ୍କର ପୁତୁରା ନନ୍ଦଲାଲ ଉପସ୍ଥିତ ଥିଲେ । ସେ ମଧ୍ୟ ତାଙ୍କର ଜଣେ ଦୁଇଜଣ ବ୍ରାହ୍ମବନ୍ଧୁଙ୍କ ସହିତ ଠାକୁରଙ୍କ ପାଖରେ ବସିଛନ୍ତି ।

ଶ୍ରୀରାମକୃଷ୍ଣ (ବିଜୟାଦି ଭକ୍ତମାନଙ୍କ ପ୍ରତି)—କାରଣର (ମଦ୍ୟ) ବୋତଲ ଜଣେ ଆଣିଥିଲା, ମୁଁ ଚେଷ୍ଟା କରି ଛୁଇଁପାରିଲି ନାହିଁ ।

ବିଜୟ—ଆହା !

ଶ୍ରୀରାମକୃଷ୍ଣ—ସହଜାନନ୍ଦ ହେଲେ, ସଙ୍ଗେ ସଙ୍ଗେ ନିଶା ହୋଇଯାଏ । ମଦ୍ୟ ଖାଇବାକୁ ହୁଏ ନାହିଁ । ମାଆଙ୍କର ଚରଣାମୃତ ଦେଖି ମୋର ନିଶା ହୋଇଯାଏ ! ଠିକ୍ ଯେପରି ପାଞ୍ଚ ବୋତଲ ମଦ୍ୟ ଖାଇଲେ ହୁଏ !

## ଜ୍ଞାନୀ ଓ ଭକ୍ତଙ୍କର ଅବସ୍ଥା ।
## ଜ୍ଞାନୀ ଓ ଭକ୍ତର ଆହାରର ନିୟମ ।

"ଏପରି ଅବସ୍ଥାରେ ସବୁ ସମୟରେ ସବୁ ରକମ ଖାଇବା ଚଳେ ନାହିଁ ।"

ନରେନ୍ଦ୍ର—ଖାଇବା ପିଇବା ସମ୍ବନ୍ଧରେ ଯଦୃଚ୍ଛା ଲାଭ ହିଁ ଭଲ ।

ଶ୍ରୀରାମକୃଷ୍ଣ—ଅବସ୍ଥା ବିଶେଷରେ ସେଇଟି ହୁଏ । ଜ୍ଞାନୀ ପକ୍ଷରେ କୌଣସିଥିରେ ଦୋଷ ନାହିଁ । ଗୀତା ମତରେ ଜ୍ଞାନୀ ନିଜେ ଖାଏ ନାହିଁ, କୁଣ୍ଡଳିନୀରେ ଆହୁତି ଦିଏ ।

"ଭକ୍ତ ପକ୍ଷରେ ଏଇଟି ନୁହେଁ । ମୋର ବର୍ତ୍ତମାନ ଏପରି ଅବସ୍ଥା ଯେ, ବ୍ରାହ୍ମଣ ଦ୍ୱାରା ଭୋଗ ନିବେଦନ ନ ହେଲେ ଖାଇପାରେ ନାହିଁ ! ଆଗେ ଏପରି ଅବସ୍ଥା ଥିଲା, ଦକ୍ଷିଣେଶ୍ୱରର ସେ ପାରିରୁ ଯେଉଁ ମଡ଼ା ପୋଡ଼ାର ଗନ୍ଧ ଆସେ, ସେଇ ଗନ୍ଧକୁ ନାକରେ ଟାଣିନିଏ ଏତେ ଭଲଲାଗେ । ବର୍ତ୍ତମାନ ସମସ୍ତଙ୍କର ଛୁଆଁ ଖାଦ୍ୟ ଖାଇପାରେ ନାହିଁ । ନପାରିଲେ ମଧ୍ୟ ଥରେ ଥରେ ପାରେ । କେଶବ ସେନଙ୍କର (ନବ ବୃନ୍ଦାବନ) ଥିଏଟରକୁ ମୋତେ ନେଇଯାଇଥିଲେ । ଛଣାଲୁଚି ଆଣିଲେ । ତାହାକୁ ଧୋବା କି ନାପିତ ଆଣିଲା, ଜାଣେ ନାହିଁ । (ସମସ୍ତଙ୍କର ହାସ୍ୟ) । ବେଶ୍ ଖାଇଲି । ରାଖାଲ କହିଲା ଅଳ୍ପ ଖାଅ !"

"(ନରେନ୍ଦ୍ରଙ୍କ ପ୍ରତି) ତୁମର ଏସବୁ ଚଳିବ । ତୁମେ ଏଥିରେ ଅଛ, ପୁଣି ସେଥିରେ ମଧ୍ୟ ଅଛ । ତୁମେ ବର୍ତ୍ତମାନ ସବୁ ଖାଇପାରିବ ।"

"(ଭକ୍ତମାନଙ୍କ ପ୍ରତି) ଶୁକର ମାଂସ ଖାଇ ଯଦି ଈଶ୍ୱରଙ୍କ ଠାରେ ଭକ୍ତି ରହେ, ସେ ଲୋକ ଧନ୍ୟ । ଆଉ ହବିଷ୍ୟ କରି ଯଦି କାମିନୀ-କାଞ୍ଚନରେ ମନ ରହେ, ତା'ହେଲେ ସେ ଧିକ୍ !"

## ପୂର୍ବକଥା—ପ୍ରଥମ ଉନ୍ମାଦରେ ବ୍ରହ୍ମଜ୍ଞାନ ଓ ଜାତିଭେଦ ବୁଦ୍ଧି ତ୍ୟାଗ । କାମାରପୁକୁରକୁ ଗମନ; ଧନୀ କମାରୁଣୀ, ରାମଲାଲଙ୍କ ପିତା । ଗୋବିନ୍ଦରାୟଙ୍କ ନିକଟରୁ ଆଲ୍ଲାମନ୍ତ୍ର ।

"ମୋର କମାରଘରର ଡାଲି ଖାଇବାକୁ ଇଚ୍ଛା ଥିଲା । ମୋର ପିଲାଦିନେ କମାରମାନେ କହୁଥିଲେ, ବ୍ରାହ୍ମଣମାନେ କ'ଣ ରାନ୍ଧିବାକୁ ଜାଣନ୍ତି ? ତେଣୁ ଖାଇଲି, କିନ୍ତୁ କମାରିଆ କମାରିଆ ଗନ୍ଧ ।* (ସମସ୍ତଙ୍କର ହାସ୍ୟ) ।"

"ଗୋବିନ୍ଦ ରାୟଙ୍କ ପାଖରୁ ଆଲ୍ଲାମନ୍ତ୍ର ନେଲି । କୋଠିରେ ପିଆଜ ଦେଇ ଭାତ ରନ୍ଧା ହେଲା । ଟିକିଏ ଖାଇଲି । ମଣି ମଲ୍ଲିକଙ୍କର (ବରାହନଗରରେ) ଉଦ୍ୟାନରେ ରନ୍ଧା ହୋଇଥିବା ତରକାରୀ ଖାଇଲି, କିନ୍ତୁ କିପରି ଗୋଟାଏ ଘୃଣା ହେଲା !"

---

*ଠାକୁର ତାଙ୍କର ଭିକ୍ଷାମାତା ଧନୀ କମାରୁଣୀର ଘରକୁ ଯାଇଥିଲେ ।

''କାମାରପୁକୁରକୁ ଗଲି, ରାମଲାଲଙ୍କ ବାପା ଭୟ ପାଇଲେ । ଭାବିଲେ, ମୁଁ ଯାହାର ତାହାର ଖାଇବି । ତାଙ୍କର ଭୟ ହେଲା, ହୁଏତ ମୋତେ ଜାତିରୁ ବାହାର କରିଦେବେ । ମୁଁ ସେଥିପାଇଁ ବେଶିଦିନ ରହିପାରିଲି ନାହିଁ; ଚାଲିଆସିଲି ।''

## ବେଦ, ପୁରାଣ ଓ ତନ୍ତ୍ର ମତରେ କିପରି ଶୁଦ୍ଧାଚାର ।

''ବେଦ ପୁରାଣରେ ଶୁଦ୍ଧାଚାରର କଥା ରହିଛି । ବେଦ ପୁରାଣରେ ଯାହା କହିଯାଇଛି—'କର ନାହିଁ, ଅନାଚାର ହେବ'—ତନ୍ତ୍ର ପୁଣି ଭଲ କହିଛି ।''

''କି ଅବସ୍ଥା ଯେ ଯାଇଛି ! ଆକାଶ ପାତାଳ ଲାଗିଯିବା ଭଳି ଏତେବଡ଼ ଆଁ କରୁଥିଲି ଓ 'ମା' କହି ଡାକୁଥିଲି ଯେପରିକି ଜାଲ ପକାଇ ମାଛଙ୍କୁ ଟାଣି ଅଣାଯାଏ । ସେହିପରି ମାଆଙ୍କୁ ଧରି ଆଣିଛି ।'' ଗୀତରେ ଅଛି—

**ଏବାର କାଲୀ ତୋମାୟ ଖାବ ।**
**(ଖାବୋ ଖାବୋ ଗୋ ଦୀନ ଦୟାମୟୀ) ।**
ଖାବ ଖାବ ବଲି ଗୋ ମା ଉଦରସ୍ଥ ନା କରିବ ।।
ଏଇ ହୃଦିପଦ୍ମେ ବସାଇୟେ, ମନୋମାନସେ ପୂଜିବ ।।
(ତାରା ଗଣ୍ଡଯୋଗେ ଜନ୍ମ ଆମାର)
ଗଣ୍ଡଯୋଗେ ଜନମିଲେ ସେ ହୟ ମା—ଖେକୋ ଛେଲେ ।
ଏବାର ତୁମି ଖାଓ କି ଆମି ଖାଇ ମା, ଦୁଟାର ଏକଟା କରେ ଯାବ ।।
ହାତେ କାଲୀ ମୁଖେ କାଲୀ, ସର୍ବାଙ୍ଗେ କାଲୀ ମାଖିବ ।
ଯଖନ ଆସ୍‌ବେ ଶମନ ବାନ୍ଧିବେ କସେ, ସେଇ କାଲୀ ତା'ର ମୁଖେ ଦିବ ।।
ଯଦି ବଲ କାଲୀ ଖେଲେ, କାଲେର ହାତେ ଠେକା ଯାବୋ ।
ଆମାର ଭୟ କି ତାତେ, କାଲୀ ବଲେ କାଲେରେ କଲା ଦେଖାବୋ ।।
ଡାକିନୀ ଯୋଗିନୀ ଦିୟେ, ତରକାରୀ ବାନାୟେ ଖାବୋ ।
ମୁଣ୍ଡମାଲା କେଡ଼େ ନିୟେ ଅମ୍ବଲେ ସମ୍ବରା ଦିବ ।।
କାଲୀର ବେଟା ଶ୍ରୀରାମପ୍ରସାଦ, ଭଲମତେ ତାଇ ଜାନାବୋ ।
ତାତେ ମନ୍ତ୍ରେର ସାଧନ, ଶରୀର ପତନ, ଯା' ହବାର ତାଇ ଘଟାଇବ ।।

''ଉନ୍ମାଦ ପରି ଅବସ୍ଥା ହୋଇଥିଲା'' । ଏପରି ବ୍ୟାକୁଳତା ! ନରେନ୍ଦ୍ର ଗୀତ ଗାଇବାକୁ ଲାଗିଲେ—

ଦିଅ ମା' ମୋତେ ପାଗଳକରି (ବ୍ରହ୍ମମୟୀ), ଆଉ କାମ ନାହିଁ ମା ଜ୍ଞାନ ବିଚାରି ।

ଗୀତ ଶୁଣୁ ଶୁଣୁ ଠାକୁର ସମାଧିସ୍ଥ ।

ସମାଧି ଭଙ୍ଗ ପରେ ଠାକୁର ଗିରିରାଣୀଙ୍କ ଭାବ ଆରୋପ କରି ଆଗମନୀ ଗାଉଅଛନ୍ତି ! ଗିରିରାଣୀ କହୁଅଛନ୍ତି, ପୁରବାସୀହେ ! ଉମା କି ମୋ ଆସିଛି ? ଠାକୁର

ପ୍ରେମୋନ୍ମତ୍ତ ହୋଇ ଗୀତ ଗାଉଛନ୍ତି ।

ଗୀତ ପରେ ଠାକୁର ଭକ୍ତମାନଙ୍କୁ କହୁଛନ୍ତି, ଆଜି ମହାଷ୍ଟମୀ କି ନା; ମା' ଆସିଛନ୍ତି ! ତେଣୁ ଏତେ ଉଦ୍ଦୀପନା ହେଉଛି ।

କେଦାର—ପ୍ରଭୁ ! ଆପଣ ଆସିଛନ୍ତି । ମା' କଅଣ ଆପଣଙ୍କ ଛଡ଼ା ? ଠାକୁର ଅନ୍ୟଦିଗକୁ ଦୃଷ୍ଟି ନିକ୍ଷେପ କରି ଅନ୍ୟମନସ୍କ ହୋଇ ଗୀତ ଗାଇଲେ ।

ତାରେ କୈ ପେଲୁମ ସଇ, ହଲାମ ଯା'ର ଜନ୍ୟ ପାଗଲ ।
ବ୍ରହ୍ମା ପାଗଲ, ବିଷ୍ଣୁ ପାଗଲ, ଆର ପାଗଲ ଶିବ ଶିବ ।।
ତିନି ପାଗଲେ ଯୁକ୍ତି କରେ ଭାଙ୍ଗଲ ନବଦ୍ୱୀପ ।।
ଆର ଏକ ପାଗଲ ଦେଖେ ଏଲାମ ବୃନ୍ଦାବନ ମାଝେ ।
ରାଇକେ ରାଜା ସାଜାୟେ ଆପନି କୋଟାଲ ସାଜେ ।।
ଆର ଏକ ପାଗଲ ଦେଖେ ଏଲାମ ନବଦ୍ୱୀପେର ପଥେ ।
ରାଧାପ୍ରେମ ସୁଧା ବଲେ କରୋୟା କିସ୍ତି ହାତେ ।।

ପୁଣି ଭାବରେ ମତ୍ତ ହୋଇ ଠାକୁର ଗାଉଛନ୍ତି—

**କଖନ କି ରଙ୍ଗେ ଥାକ ମା ଶ୍ୟାମା ସୁଧାତରଙ୍ଗିଣୀ ।**

ଠାକୁର ଗୀତ ଗାଉଛନ୍ତି । ହଠାତ୍ "ହରିବୋଲ ହରିବୋଲ" କହୁ କହୁ ବିଜୟ ଦଣ୍ଡାୟମାନ । ଠାକୁର ଶ୍ରୀରାମକୃଷ୍ଣ ମଧ୍ୟ ଭାବୋନ୍ମତ୍ତ ହୋଇ ବିଜୟାଦି ଭକ୍ତଙ୍କ ସଙ୍ଗରେ ନୃତ୍ୟ କରିବାକୁ ଲାଗିଲେ ।

## ( ୭ )

## ଠାକୁର ଶ୍ରୀରାମକୃଷ୍ଣ ଭକ୍ତମାନଙ୍କ ସଙ୍ଗରେ ।

କୀର୍ତ୍ତନାନ୍ତେ ଠାକୁର ଶ୍ରୀରାମକୃଷ୍ଣ, ବିଜୟ, ନରେନ୍ଦ୍ର ଓ ଅନ୍ୟାନ୍ୟ ଭକ୍ତମାନେ ଆସନ ଗ୍ରହଣ କଲେ । ସମସ୍ତଙ୍କର ଦୃଷ୍ଟି ଠାକୁରଙ୍କ ଦିଗରେ । ସନ୍ଧ୍ୟା ହେବାକୁ କିଛି ବିଳମ୍ୱ ଅଛି । ଠାକୁର ଭକ୍ତମାନଙ୍କ ସହିତ କଥା କହୁଛନ୍ତି । ସେମାନଙ୍କୁ କୁଶଳ ପ୍ରଶ୍ନ କରୁଛନ୍ତି । କେଦାର ଅତି ବିନୀତ ଭାବରେ ହାତଯୋଡ଼ି ଅତି ମୃଦୁ ଓ ମଧୁର କଥାରେ ଠାକୁରଙ୍କ ପାଖରେ କଅଣ ନିବେଦନ କରୁଛନ୍ତି । ପାଖରେ ନରେନ୍ଦ୍ର, ଚୁନି, ସୁରେନ୍ଦ୍ର, ରାମ, ମାଷ୍ଟର ଓ ହରିଶ ।

କେଦାର (ଶ୍ରୀରାମକୃଷ୍ଣଙ୍କ ପ୍ରତି, ବିନୀତ ଭାବରେ)—ମୁଣ୍ଡ ଘୁରାଟା କିପରି ଛାଡ଼ିବ ?

ଶ୍ରୀରାମକୃଷ୍ଣ (ସସ୍ନେହରେ)—ଏପରି ହୁଏ, ମୋର ମଧ୍ୟ ହୋଇଥିଲା । ଟିକିଏ ବାଦାମ ତେଲ ବ୍ୟବହାର କରିବ । ଶୁଣିଛି ଏହା ବ୍ୟବହାର କଲେ ଛାଡ଼ିଯାଏ ।

କେଦାର—ଆଜ୍ଞା ।

ଶ୍ରୀରାମକୃଷ୍ଣ (ଚୁନିଙ୍କ ପ୍ରତି)—କିହେ, ତୁମେମାନେ କିପରି ଅଛ ?

ଚୁନି—ଆଜ୍ଞା, ସବୁ ମଙ୍ଗଳ । ବୃନ୍ଦାବନରେ ବଳରାମବାବୁ, ରାଖାଲ, ଏମାନେ ସବୁ ଭଲ ଅଛନ୍ତି ।

ଶ୍ରୀରାମକୃଷ୍ଣ—ତୁମେ ଏତେ ସନ୍ଦେଶ କାହିଁକି ପଠାଇଛ ?

ଚୁନି—ଆଜ୍ଞା, ବୃନ୍ଦାବନରୁ ଆସିଛି ।

ଚୁନିଲାଲ ବଳରାମଙ୍କ ସଙ୍ଗରେ ଶ୍ରୀବୃନ୍ଦାବନକୁ ଯାଇ ସେଠାରେ କେତେମାସ ଥିଲେ । ଛୁଟି ଶେଷ ହୋଇଛି, ତେଣୁ କଲିକତାକୁ ସଂପ୍ରତି ଫେରିଛନ୍ତି ।

ଶ୍ରୀରାମକୃଷ୍ଣ (ହରିଶଙ୍କ ପ୍ରତି)—ତୁ ଦିନେ ଦୁଇଦିନ ପରେ ଯିବୁ । ବେରାମ ହୋଇଛି ପୁଣି ସେଠାରେ ପଡ଼ିବୁ ।

ଶ୍ରୀରାମକୃଷ୍ଣ (ନାରାୟଣଙ୍କ ପ୍ରତି, ସସ୍ନେହରେ)—ବସ୍, ପାଖକୁ ଆସି ବସ୍ । କାଲି ଯାଇ ସେଠାରେ ଖାଇବୁ । (ମାଷ୍ଟରଙ୍କୁ ଦେଖାଇ) ଏହାଙ୍କ ସଙ୍ଗରେ ଯିବୁ ? (ମାଷ୍ଟରଙ୍କ ପ୍ରତି) କି ହେ ?

ମାଷ୍ଟରଙ୍କର ସେହିଦିନ ଠାକୁରଙ୍କ ସଙ୍ଗରେ ଯିବାକୁ ଇଚ୍ଛା । ସେଥିପାଇଁ ଚିନ୍ତା କରୁଛନ୍ତି । ସୁରେନ୍ଦ୍ର ଅନେକକ୍ଷଣ ଥିଲେ, ମଝିରେ ମଝିରେ ଥରେ ଘରକୁ ଯାଇଥିଲେ । ଘରୁ ଆସି ଠାକୁରଙ୍କ ପାଖରେ ଠିଆହେଲେ ।

ସୁରେନ୍ଦ୍ର ମଦ୍ୟପାନ କରନ୍ତି । ଆଗେ ଅଧିକ ପାନ କରୁଥିଲେ । ଠାକୁର ସୁରେନ୍ଦ୍ରଙ୍କର ଅବସ୍ଥା ଦେଖି ଚିନ୍ତିତ ହୋଇଥିଲେ । ଏକାବେଳକେ ପାନ ତ୍ୟାଗ କରିବାକୁ କହିଲେ ନାହିଁ । କହିଲେ, ସୁରେନ୍ଦ୍ର ! ଦେଖ, ଯାହା ଖାଇବ ମା'ଙ୍କୁ ନିବେଦନ କରି ଖାଇବ । ଆଉ ଯେପରି ତୁମର ମୁଣ୍ଡ ଓ ପାଦ ନ ଟଳେ । ତାଙ୍କୁ ଚିନ୍ତା କରୁ କରୁ ତୁମର ଆଉ ପାନ କରିବାକୁ ଭଲ ଲାଗିବ ନାହିଁ । ସେ କାରଣାନନ୍ଦ ଦାୟିନୀ । ତାଙ୍କୁ ଲାଭକଲେ ସହଜାନନ୍ଦ ହୁଏ ।

ସୁରେନ୍ଦ୍ର ପାଖରେ ଠିଆ ହୋଇଛନ୍ତି । ଠାକୁର ତାଙ୍କ ଆଡ଼କୁ ଦୃଷ୍ଟିପାତ କରି କହିଉଠିଲେ, ତୁମେ କାରଣ ଖାଇଛ ! କହି ଭାବରେ ଆବିଷ୍ଟ ।

ସନ୍ଧ୍ୟା ହେଲା । କିଞ୍ଚିତ୍ ହୋସ୍ ହୋଇ ଠାକୁର ମାଆଙ୍କ ନାମ କରି ଆନନ୍ଦରେ ଗୀତ ଗାଇଲେ—

**ଶିବ ସଙ୍ଗେ ସଦାରଙ୍ଗେ ଆନନ୍ଦେ ମଗନା,**
ସୁଧାପାନେ ଢଳ ଢଳ ଢଳେ କିନ୍ତୁ ପଡ଼େ ନା (ମା) ।
ବିପରୀତ ରତାତୁରା, ପଦଭରେ କାମ୍ପେ ଧରା,
ଉଭୟେ ପାଗଲେର ପାରା ଲଜ୍ଜା ଭୟ ଆର୍ ମାନେନା ।

ସନ୍ଧ୍ୟା ହୋଇଛି । ଠାକୁର ଶ୍ରୀରାମକୃଷ୍ଣ ହରିନାମ କରୁଛନ୍ତି । ମଝିରେ ମଝିରେ ହାତତାଳି ଦେଉଛନ୍ତି । ସୁସ୍ୱରେ କହୁଛନ୍ତି—ହରିବୋଲ, ହରିବୋଲ, ହରିମୟ, ହରିବୋଲ, ହରି ହରି ହରିବୋଲ ।

ପୁଣି ରାମ ରାମ କରୁଛନ୍ତି—ରାମ, ରାମ, ରାମ, ରାମ ! ରାମ, ରାମ, ରାମ, ରାମ, ରାମ !

## ଠାକୁରଙ୍କର ପ୍ରାର୍ଥନା How to pray.

ଠାକୁର ଏଥର ପ୍ରାର୍ଥନା କରୁଛନ୍ତି—"ହେ ରାମ ! ହେ ରାମ ! ମୁଁ ଭଜନହୀନ, ସାଧନହୀନ, ଜ୍ଞାନହୀନ, ଭକ୍ତିହୀନ ! ରାମ ଶରଣାଗତ ! ହେ ରାମ ଶରଣାଗତ ! ଦେହସୁଖ ଚାହେଁ ନାହିଁ ରାମ ! ଲୋକମାନ୍ୟ ଚାହେଁ ନାହିଁ ରାମ ! ଅଷ୍ଟସିଦ୍ଧି ଚାହେଁ ନାହିଁ ରାମ ! ଶତସିଦ୍ଧି ଚାହେଁ ନାହିଁ ରାମ ! ଶରଣାଗତ, ଶରଣାଗତ, କେବଳ ଏତିକି କର ଯେପରି ତୁମର ଶ୍ରୀପାଦପଦ୍ମରେ ଶୁଦ୍ଧାଭକ୍ତି ହୁଏ ରାମ ! ଆଉ ଯେପରି ତୁମର ଭୁବନମୋହିନୀ ମାୟାରେ ମୁଗ୍ଧ ନ ହୁଏ, ରାମ ! ହେ ରାମ, ଶରଣାଗତ !"

ଠାକୁର ପ୍ରାର୍ଥନା କରୁଛନ୍ତି, ସମସ୍ତେ ଏକ ଦୃଷ୍ଟିରେ ତାଙ୍କ ଆଡ଼କୁ ଚାହିଁ ରହିଛନ୍ତି । ତାଙ୍କର କରୁଣାମିଶ୍ରିତ ସ୍ୱର ଶୁଣି ଅନେକ ଅଶ୍ରୁ ସମ୍ବରଣ କରି ପାରୁନାହାନ୍ତି । ରାମଙ୍କ ପାଖକୁ ଆସି ଠିଆ ହୋଇଛନ୍ତି ।

ଶ୍ରୀରାମକୃଷ୍ଣ (ରାମଙ୍କ ପ୍ରତି)—ରାମ ତୁମେ କେଉଁଠାରେ ଥିଲ ?

ରାମ—ଆଜ୍ଞା, ଉପରେ ଥିଲି ।

ଠାକୁର ଓ ଭକ୍ତମାନଙ୍କର ସେବା ପାଇଁ ରାମ ଉପରେ ଆୟୋଜନ କରୁଥିଲେ ।

ଶ୍ରୀରାମକୃଷ୍ଣ (ରାମଙ୍କ ପ୍ରତି, ସହାସ୍ୟରେ)—ଉପରେ ରହିବା ଅପେକ୍ଷା ତଳେ ରହିବା କ'ଣ ଭଲ ନୁହେଁ ? ତଳ ଜମିରେ ଜଳ ଜମେ, ଉଚ୍ଚ ଜମିରୁ ଜଳ ଗଡ଼ି ଚାଲିଯାଏ ।

ରାମ (ହସି ହସି)—ଆଜ୍ଞା ହଁ ।

ଛାତରେ ପତ୍ର ପଡ଼ିଛି । ରାମଚନ୍ଦ୍ର ଠାକୁର ଓ ଭକ୍ତମାନଙ୍କୁ ନେଇଗଲେ ଓ ପରିତୋଷ କରି ଖୁଆଇଲେ । ଉତ୍ସବାନ୍ତେ ଠାକୁର ଶ୍ରୀରାମକୃଷ୍ଣ, ନିରଞ୍ଜନ, ମାଷ୍ଟର ପ୍ରଭୃତିଙ୍କ ସଙ୍ଗରେ ଅଧରଙ୍କ ଘରକୁ ଗମନ କଲେ । ସେଠାରେ ମା'ଙ୍କର ପୂଜା ହେଉଛି । ଆଜି ମହାଷ୍ଟମୀ । ଅଧରଙ୍କ ବିଶେଷ ଅନୁରୋଧ, ଠାକୁର ଉପସ୍ଥିତ ରହିବେ, ତେବେ ତାଙ୍କର ପୂଜା ସାର୍ଥକ ହେବ ।



# ଦ୍ୱାଦଶ ପରିଚ୍ଛେଦ

## ଦକ୍ଷିଣେଶ୍ୱରରେ ଶ୍ରୀରାମକୃଷ୍ଣ ନରେନ୍ଦ୍ର, ଭବନାଥ ପ୍ରଭୃତିଙ୍କ ସଙ୍ଗରେ ।

ଆଜି ନବମୀ ପୂଜା ସୋମବାର, ୨୯ ତାରିଖ ସେପ୍ଟେମ୍ବର ୧୮୮୪ ଖ୍ରୀଷ୍ଟାବ୍ଦ । ଏହିକ୍ଷଣି ରାତ୍ର ପ୍ରଭାତ ହେଲା । ମା' କାଳୀଙ୍କର ମଙ୍ଗଳ ଆଳତି ହୋଇଗଲା; ନହବତରୁ ମାଙ୍ଗଳିକ ପ୍ରଭାତୀ ବାଜଣା ବାଜୁଛି । ମାଳୀ ଓ ବ୍ରାହ୍ମଣମାନେ -ଫୁଲ ଡାଲା ନେଇ ପୁଷ୍ପଚୟନ କରିବାକୁ ଆସୁଛନ୍ତି । ମାଆଙ୍କର ପୂଜା ହେବ । ଶ୍ରୀରାମକୃଷ୍ଣ ଅତି ପ୍ରତ୍ୟୁଷରେ ଅନ୍ଧକାର ଥାଉ ଥାଉ ଉଠିଛନ୍ତି । ଭବନାଥ, ବାବୁରାମ, ନିରଞ୍ଜନ ଓ ମାଷ୍ଟର ଗତ ରାତ୍ରିଠାରୁ ରହିଛନ୍ତି । ସେମାନେ ଠାକୁରଙ୍କ ଘର ବାରଣ୍ଡାରେ ଶୋଇଛନ୍ତି । ଚକ୍ଷୁ ଉନ୍ମୀଳନ କରି ଦେଖିଲେ, ଠାକୁର ଭାବସ୍ଥ ହୋଇ ନୃତ୍ୟ କରୁଛନ୍ତି । କହୁଛନ୍ତି— **ଜୟ ଜୟ ଦୁର୍ଗେ ! ଜୟ ଜୟ ଦୁର୍ଗେ !** ଠିକ୍ ଯେପରି ଗୋଟିଏ ବାଳକ ! ଅଣ୍ଟାରେ ଲୁଗା ନାହିଁ । ମାଆଙ୍କର ନାମ କରୁ କରୁ ଘର ମଧ୍ୟରେ ନାଚି ବୁଲୁଛନ୍ତି ।

କିୟତ୍କ୍ଷଣ ପରେ ପୁଣି କହୁଛନ୍ତି—**ସହଜାନନ୍ଦ ସହଜାନନ୍ଦ** । ଶେଷରେ ଗୋବିନ୍ଦଙ୍କ ନାମ ବାରମ୍ବାର ଉଚ୍ଚାରଣ କରୁଛନ୍ତି—

**ପ୍ରାଣ ହେ ଗୋବିନ୍ଦ ମମ ଜୀବନ !**

ଭକ୍ତମାନେ ଉଠି ବସିଛନ୍ତି । ଏକ ଦୃଷ୍ଟିରେ ଠାକୁରଙ୍କ ଭାବ ଦେଖୁଛନ୍ତି । ହାଜରା ମଧ୍ୟ କାଳୀମନ୍ଦିରରେ ଅଛନ୍ତି । ଠାକୁରଙ୍କ ଘରର ଦକ୍ଷିଣପୂର୍ବ ବାରଣ୍ଡାରେ ତାଙ୍କର ରହିବାର ସ୍ଥାନ । ଲାଟୁ ମଧ୍ୟ ଅଛନ୍ତି ଓ ଠାକୁରଙ୍କ ସେବା କରନ୍ତି । ରାଖାଲ ଏବେ ସୁଦ୍ଧା ବୃନ୍ଦାବନରେ । ନରେନ୍ଦ୍ର ମଝିରେ ମଝିରେ ଆସି ଦର୍ଶନ କରନ୍ତି । ଆଜି ଆସିବେ ।

ଠାକୁରଙ୍କ ଘରର ଉତ୍ତର ଦିଗରେ ଛୋଟ ବାରଣ୍ଡାରେ ଭକ୍ତମାନେ ଶୋଇଛନ୍ତି । ଶୀତକାଳ, ସେଥିପାଇଁ ତାଟି ଦିଆଯାଇଛି । ସମସ୍ତଙ୍କର ମୁହଁଧୂଆ ପରେ ଏହି ଉତ୍ତର ବାରଣ୍ଡାରେ ଠାକୁର ଗୋଟିଏ ସପ ଉପରେ ଆସି ବସିଲେ । ଭବନାଥ ଓ ମାଷ୍ଟର ପାଖରେ ବସିଛନ୍ତି । ଅନ୍ୟାନ୍ୟ ଭକ୍ତମାନେ ମଧ୍ୟ ମଝିରେ ମଝିରେ ଆସି ବସୁଛନ୍ତି ।

## ଜୀବକୋଟି ସଂଶୟାତ୍ମା (Sceptic); ଈଶ୍ୱରକୋଟିଙ୍କର ସ୍ୱତଃସିଦ୍ଧ ବିଶ୍ୱାସ ।

ଶ୍ରୀରାମକୃଷ୍ଣ (ଭବନାଥଙ୍କ ପ୍ରତି)—କ'ଣ ଜାଣୁ ? ଯେଉଁମାନେ ଜୀବକୋଟି, ସେମାନଙ୍କର ବିଶ୍ୱାସ ସହଜରେ ହୁଏ ନାହିଁ । ଈଶ୍ୱରକୋଟିଙ୍କର ବିଶ୍ୱାସ ସ୍ୱତଃସିଦ୍ଧ । ପ୍ରହ୍ଲାଦଙ୍କର 'କ' ଲେଖୁ ଲେଖୁ କାନ୍ଦଣା—କୃଷ୍ଣଙ୍କୁ ମନେ ପଡ଼ିଛି ! ଜୀବର ସ୍ୱଭାବ—ସଂଶୟାତ୍ମକ ବୁଦ୍ଧି, ସେମାନେ କହନ୍ତି, ହଁ ସତ, କିନ୍ତୁ — ।

''ହାଜରା କୌଣସି ପ୍ରକାରେ ବିଶ୍ୱାସ କରିବେ ନାହିଁ ଯେ, ବ୍ରହ୍ମ ଓ ଶକ୍ତି, ଶକ୍ତି ଓ ଶକ୍ତିମାନ, ଅଭେଦ । ଯେତେବେଳେ ନିଷ୍କ୍ରିୟ ତାଙ୍କୁ ବ୍ରହ୍ମ ବୋଲି କହୁ; ଯେତେବେଳେ ସୃଷ୍ଟି, ସ୍ଥିତି ପ୍ରଳୟ କରନ୍ତି, ସେତେବେଳେ ଶକ୍ତି ବୋଲି କହୁ । କିନ୍ତୁ ଏକ ହିଁ ବସ୍ତୁ; ଅଭେଦ । ଅଗ୍ନି କହିଲେ, ଦାହିକା ଶକ୍ତି, ସଙ୍ଗେ ସଙ୍ଗେ ବୁଝାଏ; ଦାହିକା ଶକ୍ତି କହିଲେ, ଅଗ୍ନି ମନେପଡ଼େ । ଗୋଟାକୁ ଛାଡ଼ି ଆଉ ଗୋଟାକୁ ଚିନ୍ତା କରିବା ଅସମ୍ଭବ !''

''ସେତେବେଳେ ପ୍ରାର୍ଥନା କଲି, ମା' ହାଜରା ଏଠାର ମତକୁ ଓଲଟାଇ ଦେବାକୁ ଚେଷ୍ଟା କରୁଛି । ତେଣୁ ତାକୁ ବୁଝାଇ ଦେ, ନୋହିଲେ ଏଠାରୁ ବାହାର କରିଦେ । ତା' ପରଦିନ ସେ ପୁଣି ଆସି କହିଲା, ହଁ ମାନୁଛି । ସେତେବେଳେ କହିଲା ଯେ, ବିଭୁ ସବୁ ଜାଗାରେ ଅଛନ୍ତି ।''

ଭବନାଥ (ସହାସ୍ୟରେ)—ହାଜରାଙ୍କର ଏହି କଥାରେ ଆପଣଙ୍କୁ ଏତେ କଷ୍ଟବୋଧ ହୋଇଥିଲା ?

ଶ୍ରୀରାମକୃଷ୍ଣ—ମୋର ଅବସ୍ଥା ବଦଳି ଯାଇଛି । ବର୍ତ୍ତମାନ ଲୋକଙ୍କ ସଙ୍ଗରେ ତର୍କ କରିପାରେ ନାହିଁ । ହାଜରା ସଙ୍ଗରେ ଯେ ତର୍କ ଝଗଡ଼ା କରିବି, ଏପରି ଅବସ୍ଥା ବର୍ତ୍ତମାନ ମୋର ନାହିଁ । ଯଦୁ ମଲ୍ଲିକଙ୍କର ଉଦ୍ୟାନରେ ହୃଦୁ* କହିଲା ମାମୁ, ମୋତେ ରଖିବାର କ'ଣ ତୁମର ଇଚ୍ଛା ନାହିଁ ? ମୁଁ କହିଲି, ନା, ସେ ଅବସ୍ଥା ବର୍ତ୍ତମାନ ମୋର ନାହିଁ । ଆଜିକାଲି ତୋ ସଙ୍ଗରେ ତର୍କ କରିବାର ଅବସ୍ଥା ନାହିଁ ।

## ପୂର୍ବକଥା—କାମାରପୁକୁରରେ ଶ୍ରୀରାମକୃଷ୍ଣ । ଜଗତ୍ ଚୈତନ୍ୟମୟ—ବାଳକର ବିଶ୍ୱାସ ।

''ଜ୍ଞାନ ଆଉ ଅଜ୍ଞାନ କାହାକୁ କହନ୍ତି ?—ଯେତେକ୍ଷଣ ଈଶ୍ୱର ଦୂରରେ ବୋଲି ବୋଧହୁଏ, ସେତେକ୍ଷଣ ଅଜ୍ଞାନ ଓ ଯେତେକ୍ଷଣ ଏଠାରେ ବୋଲି ବୋଧହୁଏ ସେତେକ୍ଷଣ ଜ୍ଞାନ ।''

''ଯେତେବେଳେ ଠିକ୍ ଜ୍ଞାନ ହୁଏ, ସେତେବେଳେ ସବୁ ଜିନିଷ ଚୈତନ୍ୟମୟ ବୋଧହୁଏ । ମୁଁ ଶିବୁ ସଙ୍ଗରେ କଥା କହେ । ଶିବୁ ସେତେବେଳେ ଖୁବ୍ ପିଲା ଲୋକ—

---

* ହୃଦୁଙ୍କର ସେତେବେଳେ ଉଦ୍ୟାନକୁ ଆସିବାର ହୁକୁମ ନ ଥିଲା । କର୍ତ୍ତୃପକ୍ଷୀୟମାନେ ତାଙ୍କ ଉପରେ ଅସନ୍ତୁଷ୍ଟ ହୋଇଥିଲେ । ତାଙ୍କର ଇଚ୍ଛା ଯେ, ଠାକୁର କହିବୋଲି ପୁଣି ତାଙ୍କୁ କର୍ମରେ ନିଯୁକ୍ତ କରାଇଦିଅନ୍ତୁ । ହୃଦୁ ଠାକୁରଙ୍କର ଖୁବ୍ ସେବା କରୁଥିଲେ, କିନ୍ତୁ କଟୁବାକ୍ୟ ମଧ୍ୟ କହୁଥିଲେ । ଠାକୁର ଅନେକ ସହ୍ୟ କରନ୍ତି, ମଝିରେ ମଝିରେ ଖୁବ୍ ତିରସ୍କାର କରନ୍ତି ।

ଚାରି ପାଞ୍ଚବର୍ଷର ହେବ । ମୁଁ ସେହି ସମୟରେ କାମାରପୁକୁରରେ ଥିଲି । ମେଘ ଡାକୁଛି, ବିଜୁଳି ମାରୁଛି । ଶିବୁ କହୁଛି, ଦାଦା ଝକ୍‌ମକି ମାରୁଛି ।'' (ସମସ୍ତଙ୍କର ହାସ୍ୟ)

''ଦିନେ ଦେଖେ ସେ ଏକଲା ଝିଣ୍ଟିକା ଧରିବାକୁ ଯାଉଛି । ପାଖରେ ଗଛର ପତ୍ର ହଲୁଥିଲା । ସେତେବେଳେ ପତ୍ରକୁ କହୁଛି, ଚୁପ୍ ଚୁପ୍, ମୁଁ ଝିଣ୍ଟିକା ଧରିବି । ବାଳକ ସବୁ ଚୈତନ୍ୟମୟ ଦେଖୁଛି । ସରଳ ବିଶ୍ୱାସ, ବାଳକର ବିଶ୍ୱାସ ନ ହେଲେ ଭଗବାନ ମିଳନ୍ତି ନାହିଁ । ଓହୋଃ, ମୋର କି ଅବସ୍ଥା ଥିଲା ! ଦିନେ ଘାସ ବଣରେ କ'ଣ କାମୁଡ଼ିଛି । ସେଥିପାଇଁ ଭୟ ହେଲା, ଯଦି ସାପ କାମୁଡ଼ିଥାଏ । ସେତେବେଳେ କ'ଣ କରିବି ! ଶୁଣିଥିଲି, ଯଦି ସାପ କାମୁଡ଼େ ତାହାହେଲେ ବିଷ ଟାଣିନିଏ । ସଙ୍ଗେ ସଙ୍ଗେ ସେହିଠାରେ ବସି ଗର୍ତ୍ତ ଖୋଜିବାକୁ ଲାଗିଲି, ଯେମିତି ପୁଣି କାମୁଡ଼େ । ଏହିପରି କରୁଛି । ଜଣେ କହିଲା, କଅଣ କରୁଛ ? ସବୁ ଶୁଣି ସେ କହିଲା, ଠିକ୍ ସେହିଠାରେ କାମୁଡ଼ିବା ଉଚିତ, ଯେଉଁଠାରେ ଆଗେ କାମୁଡ଼ିଛି । ସେତେବେଳେ ଉଠିଆସିଲି । ବୋଧହୁଏ ବିଛା ଫିଛା କାମୁଡ଼ିଥିଲା ।''

''ଆଉଦିନେ ରାମଲାଲ ନିକଟରୁ ଶୁଣିଥିଲି, ଶରତ କାଳର ହିମ ଭଲ । କଅଣ ଗୋଟାଏ ଶ୍ଳୋକ ଅଛି, ରାମଲାଲ କହିଥିଲା । ମୁଁ କଲିକତାଠାରୁ ଗାଡ଼ିରେ ଗଳାକୁ ବାହାରକୁ ଦେଖାଇ ଆସିଲି, ଯେପରି ସବୁ ହିମତକ ଲାଗିବ । ତା'ପରେ ଅସୁସ୍ଥ !'' (ସମସ୍ତଙ୍କର ହାସ୍ୟ) ।

## ଠାକୁର ଶ୍ରୀରାମକୃଷ୍ଣ ଓ ଔଷଧ ।

ଏଥର ଠାକୁର ଘର ଭିତରେ ଆସି ବସିଲେ । ତାଙ୍କର ପାଦ ଦୁଇଟି ଟିକିଏ –ଫୁଲା ଫୁଲା ହୋଇଥିଲା । ଭକ୍ତମାନଙ୍କୁ ହାତଦେଇ ଦେଖିବାକୁ କହିଲେ, ଅଙ୍ଗୁଳି ଦେଲେ ଦବିଯାଏ କି ନାହିଁ । ଟିକିଏ ଟିକିଏ ଦବିଯିବାକୁ ଲାଗିଲା; କିନ୍ତୁ ସମସ୍ତେ ହିଁ କହିବାକୁ ଲାଗିଲେ, ସେ କିଛି ନୁହେଁ ।

ଶ୍ରୀରାମକୃଷ୍ଣ (ଭବନାଥଙ୍କୁ)—ତୁ ସିଁଥିର ମହେନ୍ଦ୍ରଙ୍କୁ ଡାକିଦେ । ସେ କହିଲା ପରେ ତେବେ ମୋର ମନଟା ନିଶ୍ଚିନ୍ତ ହେବ ।

ଭବନାଥ (ସହାସ୍ୟରେ)—ଆପଣଙ୍କର ଔଷଧରେ ଖୁବ୍ ବିଶ୍ୱାସ । ଆମମାନଙ୍କର ଏତେ ନାହିଁ ।

ଶ୍ରୀରାମକୃଷ୍ଣ—ଔଷଧ ମଧ୍ୟ ତାଙ୍କର । ସେହିଁ କେବଳ ଏକ ରୂପରେ ଚିକିତ୍ସକ । ଗଙ୍ଗାପ୍ରସାଦ କହିଲେ, ଆପଣ ରାତ୍ରିରେ ପାଣି ପିଇବେ ନାହିଁ । ମୁଁ ଏହି କଥା ବେଦବାକ୍ୟ ପରି ଧରି ରଖିଛି । ମୁଁ ଜାଣେ, ସାକ୍ଷାତ୍ ଧନ୍ୱନ୍ତରୀ ।

## ( ୨ )

## ନରେନ୍ଦ୍ର, ଭବନାଥ ପ୍ରଭୃତିଙ୍କ ମଧ୍ୟରେ ସମାଧିସ୍ଥ ।

ହାଜରା ଆସି ବସିଲେ । ଏକଥା ସେକଥା ପରେ ଠାକୁର ହାଜରାଙ୍କୁ କହିଲେ, 'ଦେଖ କାଲି ରାମଙ୍କ ଘରେ ଏତେଗୁଡ଼ିଏ ଲୋକ ବସିଥିଲେ, ବିଜୟ, କେଦାର ପ୍ରଭୃତି ତଥାପି ନରେନ୍ଦ୍ରଙ୍କୁ ଦେଖି ଏତେ ଭାବସ୍ଥ ହେଲି କାହିଁକି ? କେଦାର, ମୁଁ ଦେଖିଲି କାରଣାନନ୍ଦର ଆଧାର ।'

ଠାକୁର ପୂର୍ବଦିନ, ମହାଷ୍ଟମୀ ଦିନରେ କଲିକତାକୁ ପ୍ରତିମା ଦର୍ଶନ ପାଇଁ ଯାଇଥିଲେ । ଅଧରଙ୍କ ଘରେ ପ୍ରତିମା ଦର୍ଶନ କରିବାକୁ ଯିବା ପୂର୍ବରୁ ରାମଙ୍କ ଘର ହୋଇ ଯାଇଥିଲେ । ସେଠାରେ ଅନେକ ଭକ୍ତଙ୍କ ସମାବେଶ ହୋଇଥିଲା । ନରେନ୍ଦ୍ରଙ୍କୁ ଦେଖି ଠାକୁର ସମାଧିସ୍ଥ ହୋଇଥିଲେ । ନରେନ୍ଦ୍ରଙ୍କର ଆଣ୍ଠୁ ଉପରକୁ ପାଦ ବଢ଼ାଇ ଦେଇଥିଲେ, ଠିଆରେ ଠିଆରେ ସମାଧିସ୍ଥ ହୋଇଥିଲେ । ଦେଖୁ ଦେଖୁ ନରେନ୍ଦ୍ର ଆସି ଉପସ୍ଥିତ—ଠାକୁରଙ୍କର ଆନନ୍ଦର ଆଉ ସୀମା ରହିଲା ନାହିଁ । ନରେନ୍ଦ୍ର ଠାକୁରଙ୍କୁ ପ୍ରଣାମ କରିବା ପରେ ଭବନାଥାଦିଙ୍କ ସଙ୍ଗରେ ଏହି ଘରେ ଟିକିଏ ଗଳ୍ପ କରୁଛନ୍ତି । ନିକଟରେ ମାଷ୍ଟର । ଘର ମଧ୍ୟରେ ଲମ୍ବା ସପ ପଡ଼ିଛି । ନରେନ୍ଦ୍ର କଥା କହୁ କହୁ ମୁହଁମାଡ଼ି ସପ ଉପରେ ଶୋଇଛନ୍ତି । ହଠାତ୍ ତାହାଙ୍କୁ ଦେଖୁ ଦେଖୁ ଠାକୁରଙ୍କର ସମାଧି ହେଲା—ତାଙ୍କ ପିଠି ଉପରେ ଯାଇ ବସିଲେ: ସମାଧିସ୍ଥ !

ଭବନାଥ ଗାଉଛନ୍ତି—

ଗୋ ଆନନ୍ଦମୟୀ ହୟେ ମା' ଆମାୟ ନିରାନନ୍ଦ କୋରୋନା ।
ଓ ଦୁଟି ଚରଣ, ବିନେ ଆମାର ମନ, ଅନ୍ୟକିଛୁ ଆର ଜାନେ ନା ।।
ତପନ ତନୟ ଆମାୟ ମନ୍ଦ କୟ, କି ଦୋଷେ ତା' ବଲନା ।
ଭବାନୀ ବଲିୟେ, ଭବେ ଯାବ ଚ'ଲେ ମନେ ଛିଲ ଏଇ ବାସନା ।
ଅକୂଲ ପାଥାରେ ଡୁବାବେ ଆମାରେ, ସ୍ୱପନେଓ ତାତ' ଜାନିନା ।।
ଅହର୍ନିଶି, ଦୁର୍ଗାନାମେ ଭାସି, ଦୁଃଖରାଶି ତବୁ ଗେଲ ନା ।
ଏବାର, ଯଦି ମରି, ଓ ହରସୁନ୍ଦରୀ (ତୋର) ଦୁର୍ଗା ନାମ ଆର କେଉ ଲବେନା ।।

ଠାକୁରଙ୍କ ସମାଧି ଭଙ୍ଗ ହେଲା । ଠାକୁର ଗାଉଛନ୍ତି—

କଖନ କି ରଙ୍ଗେ ଥାକ ମା ।

ଠାକୁର ପୁଣି ଗାଉଛନ୍ତି—

ବଲରେ ଶ୍ରୀଦୁର୍ଗା ନାମ ।
(ଓରେ ଆମାର ଆମାର ଆମାର ମନରେ) ।
ନମୋ ନମୋ ନମୋ ଗୌରୀ, ନମୋ ନାରାୟଣୀ ।
ଦୁଃଖୀ ଦାସେ କର ଦୟା ତବେ ଗୁନ ଜାନି ।।

ତୁମି ସନ୍ଧ୍ୟା ତୁମି ଦିବା ତୁମି ଗୋ ଯାମିନୀ ।
କଖନ ପୁରୁଷ ହଓମା, କଖନ କାମିନୀ ॥
ରାମ ରୂପେ ଧର ଧନୁ ମା, କୃଷ୍ଣ ରୂପେ ବାଁଶୀ ।
ଭୁଲାଲି ଶିବେର ମନ ମା, ହୟେ ଏଲୋକେଶୀ ॥
ଦଶ ମହାବିଦ୍ୟା ତୁମି ମା, ଦଶ ଅବତାର ।
କୋନ ରୂପେ ଏଇବାର ଆମାରେ କର ମା' ପାର ॥
ଯଶୋଦା ପୂଜିୟେ ଛିଲ ମା, ଜବା ବିଲ୍ୱ ଦଳେ ।
ମନୋବାଞ୍ଛା ପୂର୍ଣ୍ଣକୈଲି କୃଷ୍ଣ ଦିୟେ କୋଲେ ॥
ଯେଖାନେ ସେଖାନେ ଥାକି ମା, ଥାକି ଗୋ କାନନେ ।
ନିଶିଦିନ ମନ ଥାକେ ଯେନ ଓ ରାଙ୍ଗା ଚରଣେ ॥
ଯେଖାନେ ସେଖାନେ ମରିମା, ମରି ଗୋ ବିପାକେ ।
ଅନ୍ତକାଳେ ଜିହ୍ୱା ଯେନ ମା, ଶ୍ରୀଦୁର୍ଗା ବଲେ ଡାକେ ॥
ଯଦି ବଲ ଯାଓ ଯାଓ ମା, ଯାବ କାର କାଛେ ।
ସୁଧା ମାଖା ତାରା ନାମ, ମା' ଆର କାର ଆଛେ ॥
ଯଦି ବଲ ଛାଡ଼ ଛାଡ଼ ମା, ଆମି ନା ଛାଡ଼ିବ ।
ବାଜନ ନୂପୂର ହୟେ ମା', ତୋର ଚରଣେ ବାଜିବ ॥
ଯଖନ ବସିବେ ମାଗୋ ଶିବ ସନ୍ନିଧାନେ ।
ଜୟ ଶିବ ଜୟ ଶିବ ବଲେ ବାଜିବ ଚରଣେ ॥
ଚରଣେ ଲିଖିତେ ନାମ, ଆଁ ଚଡ଼ ଯଦି ଯାୟ ।
ଭୂମିତେ ଲିଖିୟେ ଥୁଇ ନାମ, ପଦ ଦେ ଗୋ ତାୟ ॥
ଶଙ୍କରୀ ହଇୟେ ମା'ଗୋ ଗଗନେ ଉଡ଼ିବେ ।
ମୀନ ହଇୟେ ରବ ଜଲେ ମା' ନଖେ ତୁଲେ ଲବେ ॥
ନଖାଘାତେ ବ୍ରହ୍ମମୟୀ ଯଖନ ଯାବେଗୋ ପରାଣୀ ।
କୃପା କରେ ଦିଓ ମା' ଗୋ ରାଙ୍ଗା ଚରନ ଦୁଖାନି ॥
ପାର କର ଓ ମା' କାଲୀ, କାଲେର କାମିନୀ ।
ତରାବାରେ ଦୁଟି ପଦ କରେଛ ତରଣୀ ॥
ତୁମି ସ୍ୱର୍ଗ, ତୁମି ମର୍ତ୍ତ୍ୟ, ତୁମି ଗୋ ପାତାଲ ।
ତୋ ମା' ହତେ ହରି ବ୍ରହ୍ମା ଦ୍ୱାଦଶ ଗୋପାଳ ॥
ଗୋଲକେ ସର୍ବ ମଙ୍ଗଲା, ବ୍ରଜେ କାତ୍ୟାୟନୀ ।
କାଶୀତେ ମା' ଅନ୍ନପୂର୍ଣ୍ଣା ଅନନ୍ତ ରୂପିଣୀ ॥
ଦୁର୍ଗା ଦୁର୍ଗା ଦୁର୍ଗା ବ'ଲେ ଯେବା ପଥେ ଚଲେ ଯାୟ ।
ଶୂଳ ହସ୍ତେ ଶୂଳ ପାଣି ରକ୍ଷା କରେନ ତାୟ ॥

## (୩)

## ଭବନାଥ, ନରେନ୍ଦ୍ର ପ୍ରଭୃତିଙ୍କ ମଧ୍ୟରେ ଶ୍ରୀରାମକୃଷ୍ଣଙ୍କର ସମାଧି ଓ ନୃତ୍ୟ ।

ହାଜରା ଉତ୍ତରପୂର୍ବ ବାରଣ୍ଡାରେ ବସି ହରିନାମର ମାଳା ହାତରେ ଧରି ଜପ କରୁଛନ୍ତି । ଠାକୁର ସମ୍ମୁଖରେ ଆସି ବସିଲେ ଓ ହାଜରାଙ୍କ ଜପର ମାଳା ହାତରେ ନେଲେ । ମାଷ୍ଟର ଓ ଭବନାଥ ସଙ୍ଗରେ ଥିଲେ । ସମୟ ପ୍ରାୟ ଦଶଟା ହେବ ।

ଶ୍ରୀରାମକୃଷ୍ଣ (ହାଜରାଙ୍କ ପ୍ରତି)—ଦେଖ, ମୋର ଜପ ହୁଏ ନାହିଁ,—ନା, ନା ହୁଏ ! —ବାଁ ହାତରେ ପାରେ, ଡାହାଣ ହାତରେ (ନାମ ଜପ) ହୁଏ ନାହିଁ ।

ଏହା କହି ଠାକୁର ଟିକିଏ ଜପ କରିବାକୁ ଚେଷ୍ଟା କଲେ । କିନ୍ତୁ ଜପ ଆରମ୍ଭ କରିବାକୁ ଯାଇ ଏକାବେଳକେ ସମାଧିସ୍ଥ ।

ଠାକୁର ଏହି ସମାଧି ଅବସ୍ଥାରେ ଅନେକକ୍ଷଣ ବସିଛନ୍ତି । ହାତରେ ମାଳାଟି ବର୍ତ୍ତମାନ ମଧ୍ୟ ରହିଛି । ଭକ୍ତମାନେ ଅବାକ୍ ହୋଇ ଦେଖୁଛନ୍ତି । ହାଜରା ନିଜର ଆସନରେ ବସିଛନ୍ତି;—ସେ ମଧ୍ୟ ଅବାକ୍ ହୋଇ ଦେଖୁଛନ୍ତି । ଅନେକକ୍ଷଣ ପରେ ହୋସ୍ ହେଲା । ଠାକୁର କହି ଉଠିଲେ ଭୋକ ଲାଗିଛି । ପ୍ରକୃତିସ୍ଥ ହେବା ପାଇଁ ଏହି କଥାଗୁଡ଼ିକ ସମାଧି ପରେ ପ୍ରାୟ କହନ୍ତି ।

ମାଷ୍ଟର ଖାଇବା ଜିନିଷ ଆଣିବାକୁ ଯାଉଛନ୍ତି । ଠାକୁର କହିଉଠିଲେ, ନା ବାବା, ଆଗେ କାଳୀ ମନ୍ଦିରକୁ ଯିବି ।

## ନବମୀ—ପୂଜା ଦିବସରେ ଶ୍ରୀରାମକୃଷ୍ଣଙ୍କର କାଳୀପୂଜା ।

ଠାକୁର ପକ୍କା ଅଗଣା ବାଟଦେଇ ଦକ୍ଷିଣାସ୍ୟ ହୋଇ କାଳୀମନ୍ଦିର ଆଡ଼କୁ ଯାଉଛନ୍ତି । ଯାଉ ଯାଉ ଦ୍ୱାଦଶ ମନ୍ଦିରର ଶିବଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲେ । ବାମ ପାର୍ଶ୍ୱରେ ରାଧାକାନ୍ତଙ୍କର ମନ୍ଦିର । ତାହାଙ୍କୁ ଦର୍ଶନ କରି ପ୍ରଣାମ କଲେ । କାଳୀମନ୍ଦିରକୁ ଯାଇ ମା'ଙ୍କୁ ପ୍ରଣାମ କରି ଆସନରେ ବସି ମା'ଙ୍କ ପାଦପଦ୍ମରେ ଫୁଲ ଦେଲେ । ଫେରି ଆସିବା ସମୟରେ ଭବନାଥଙ୍କୁ କହିଲେ, ଏଗୁଡ଼ିକ ଧରି ଚାଲ—ମାଆଙ୍କ ପ୍ରସାଦୀ ପଇଡ଼ ଓ ଶ୍ରୀଚରଣାମୃତ । ଠାକୁର ନିଜେ ରହିବା ଘରକୁ ଫେରିଆସିଲେ, ସଙ୍ଗରେ ଭବନାଥ ଓ ମାଷ୍ଟର । ଆସିବା ମାତ୍ରେ ହାଜରାଙ୍କ ସମ୍ମୁଖରେ ଆସି ପ୍ରଣାମ କଲେ । ହାଜରା ଚିତ୍କାର କରି କହିଲେ, କଅଣ କରୁଛନ୍ତି କଅଣ କରୁଛନ୍ତି !

ଠାକୁର ଶ୍ରୀରାମକୃଷ୍ଣ କହିଲେ, ତୁମେ କଅଣ କହୁଛ ଯେ, ଏହା ଅନ୍ୟାୟ ?

ହାଜରା ତର୍କ କରି ପ୍ରାୟ ଏହି କଥା କହନ୍ତି, ଈଶ୍ୱର ସମସ୍ତଙ୍କ ଭିତରେ ହିଁ ଅଛନ୍ତି, ସାଧନ ଦ୍ୱାରା ସମସ୍ତେ ବ୍ରହ୍ମଜ୍ଞାନ ଲାଭ କରିପାରିବେ ! ବେଳ ହେଲାଣି । ଏଥର ଭୋଗ

ଆଳତିର ଘଣ୍ଟା ବାଜିଲା । ଅତିଥିଶାଳାକୁ ବ୍ରାହ୍ମଣ, ବୈଷ୍ଣବ, କାଙ୍ଗାଳ ସମସ୍ତେ ଯାଉଛନ୍ତି । ସେମାନେ ମାଆଙ୍କ ପ୍ରସାଦ, ରାଧାକାନ୍ତଙ୍କର ପ୍ରସାଦ ପାଇବେ । ଭକ୍ତମାନେ ମଧ୍ୟ ମାଆଙ୍କର ପ୍ରସାଦ ପାଇବେ । ଅତିଥିଶାଳାରେ ବ୍ରାହ୍ମଣ କର୍ମଚାରୀ ଯେଉଁଠାରେ ବସନ୍ତି, ସେହିଠାରେ ଭକ୍ତମାନେ ବସି ପ୍ରସାଦ ପାଇବେ । ଠାକୁର କହିଲେ, ସମସ୍ତେ ସେଠାରେ ଯାଇ ଖାଅ—ନା କଅଣ ? (ନରେନ୍ଦ୍ରଙ୍କ ପ୍ରତି) କିନ୍ତୁ ତୁ ଏଠାରେ ଖାଇବୁ ?

"ଆଚ୍ଛା, ନରେନ୍ଦ୍ର ଓ ମୁଁ ଏଠାରେ ଖାଇବୁ ।" ଭବନାଥ, ବାବୁରାମ, ମାଷ୍ଟର ପ୍ରଭୃତି ସମସ୍ତେ ପ୍ରସାଦ ପାଇବାକୁ ଗଲେ । ପ୍ରସାଦ ପାଇବା ପରେ ଠାକୁର ଟିକିଏ ବିଶ୍ରାମ କଲେ, କିନ୍ତୁ ବେଶିକ୍ଷଣ ନୁହେଁ । ଭକ୍ତମାନେ ବାରଣ୍ଡାରେ ବସି ଗଳ୍ପ କରୁଛନ୍ତି, ସେଠାରେ ଆସି ବସିଲେ ଓ ସେମାନଙ୍କ ସଙ୍ଗରେ ଆନନ୍ଦ କରିବାକୁ ଲାଗିଲେ । ସମୟ ଦୁଇଟା ବାଜିବ । ସମସ୍ତେ ଉତ୍ତରପୂର୍ବ ବାରଣ୍ଡାରେ ଅଛନ୍ତି । ହଠାତ୍ ଭବନାଥ ଦକ୍ଷିଣପୂର୍ବ ବାରଣ୍ଡାରେ ବ୍ରହ୍ମଚାରୀ ବେଶରେ ଆସି ଉପସ୍ଥିତ । ଦେହରେ ଗୈରିକ ବସ୍ତ୍ର, ହାତରେ କମଣ୍ଡଳୁ ହସ ହସ ମୁଖ । ଠାକୁର ଓ ଭକ୍ତମାନେ ହସୁଛନ୍ତି ।

ଶ୍ରୀରାମକୃଷ୍ଣ (ସହାସ୍ୟରେ)—ତା'ର ମନର ଭାବ ଏହିପରି ନା, ସେଥିପାଇଁ ଏପରି ସାଜିଛି !

ନରେନ୍ଦ୍ର—ସେ ବ୍ରହ୍ମଚାରୀ ସାଜିଛି, ତେବେ ମୁଁ ବାମାଚାରୀ ସାଜେ । (ହାସ୍ୟ)

ହାଜରା—ସେଥିରେ ପଞ୍ଚମକାର, ଚକ୍ର ଏହିସବୁ କରିବାକୁ ହୁଏ ।

ଠାକୁର ବାମାଚାର କଥାରେ ଚୁପ୍ ହୋଇ ରହିଲେ । ସେ କଥାରେ ମତ ଦେଲେନାହିଁ । କେବଳ ରହସ୍ୟ କରି ଉଡ଼ାଇ ଦେଲେ । ହଠାତ୍ ବିଭୋର ହୋଇ ନୃତ୍ୟ କରିବାକୁ ଲାଗିଲେ । ଗାଉଛନ୍ତି—

ଆଉ ଭୁଲାଇଲେ ଭୁଲିବିନି ମା, ଦେଖିଛି ଯେ ତୁମ ରଙ୍ଗାଚରଣ ।

## ପୂର୍ବକଥା—ରାଜନାରାୟଣଙ୍କ ଚଣ୍ଡୀ ; ନକୁଡ଼ ଆଚାର୍ଯ୍ୟଙ୍କର ଗୀତ ।

ଠାକୁର କହୁଛନ୍ତି, ଆହା ରାଜନାରାୟଣଙ୍କର ଚଣ୍ଡୀ ଗୀତ କିପରି ଚମତ୍କାର । ଏହିପରି ସେମାନେ ନାଚି ନାଚି ଗାଆନ୍ତି । ଆଉ କାମାରପୁକୁରରେ ନକୁଡ଼ ଆଚାର୍ଯ୍ୟଙ୍କର ନୃତ୍ୟ ଓ ଗୀତ କି ସୁନ୍ଦର !

ପଞ୍ଚବଟୀକୁ ଜଣେ ସାଧୁ ଆସିଛନ୍ତି । ସେ ବଡ଼ ରାଗୀ ସାଧୁ । ଯାହାକୁ ତାହାକୁ ଗାଳି ଦିଅନ୍ତି ଓ ଶାପ ଦିଅନ୍ତି । ସେ ଖଡ଼ମ ପାଦରେ ଆସି ଉପସ୍ଥିତ ।

ସାଧୁ କହିଲେ, ୟହାଁ ଆଗ ମିଲେଗା ? ଠାକୁର ଶ୍ରୀରାମକୃଷ୍ଣ ହାତଯୋଡ଼ି ସାଧୁଙ୍କୁ ନମସ୍କାର କରୁଛନ୍ତି ଏବଂ ଯେତେବେଳ ପର୍ଯ୍ୟନ୍ତ ସାଧୁ ରହିଲେ, ସେତେବେଳ ପର୍ଯ୍ୟନ୍ତ ହାତଯୋଡ଼ି ଠିଆ ହୋଇ ରହିଛନ୍ତି ।

ସାଧୁଟି ଚାଲିଗଲାରୁ ଭବନାଥ ହସି ହସି କହୁଛନ୍ତି, ‘‘ଆପଣଙ୍କର ସାଧୁ ପ୍ରତି କି ଭକ୍ତି !’’

ଶ୍ରୀରାମକୃଷ୍ଣ (ସହାସ୍ୟରେ)—ଆରେ ତମୋଗୁଣୀ ନାରାୟଣ ! ଯେଉଁମାନଙ୍କର ତମୋଗୁଣ, ସେମାନଙ୍କୁ ଏହିପରି କରିବାକୁ ହୁଏ । ତଥାପି ସେ ସାଧୁ ।

## ଶ୍ରୀରାମକୃଷ୍ଣ ଓ ଗୋଲକଧାମ ଖେଳ । ‘ଠିକ୍ ଲୋକର ସର୍ବତ୍ର ଜୟ’ ।

ଗୋଲକଧାମ ଖେଳ ହେଉଅଛି । ଭକ୍ତମାନେ ଖେଳୁଛନ୍ତି, ହାଜରା ମଧ ଖେଳୁଛନ୍ତି । ଠାକୁର ଆସି ଠିଆହେଲେ । ମାଷ୍ଟର ଓ କିଶୋରୀଙ୍କର ଗୋଟି ଉଠିଗଲା । ଠାକୁର ଦୁଇଜଣଙ୍କୁ ନମସ୍କାର କଲେ । କହିଲେ, ଧନ୍ୟ ତୁମେ ଦୁଇଭାଇ ! (ମାଷ୍ଟରଙ୍କୁ ଏକାନ୍ତରେ) ଆଉ ଖେଳ ନାହିଁ ।

ଠାକୁର ଖେଳ ଦେଖୁଛନ୍ତି । ହାଜରାଙ୍କର ଗୋଟି ଏକାବେଳକେ ନରକରେ ପଡ଼ିଥିଲା । ଠାକୁର କହୁଅଛନ୍ତି, ହାଜରାଙ୍କର ପୁଣି କଅଣ ହେଲା !

ଅର୍ଥାତ୍ ହାଜରାଙ୍କର ଗୋଟି ପୁଣି ନରକରେ ପଡ଼ିଅଛି ! ଏଥର ସମସ୍ତେ ହୋ ହୋ କରି ହସୁଛନ୍ତି ।

ଲାଟୁଙ୍କର ଗୋଟି ସଂସାର ଘରଠାରୁ ଏକାବେଳକେ ସାତଚିତ୍—ମୁକ୍ତି ! ଲାଟୁ ଧେଇ ଧେଇ କରି ନାଚୁଛନ୍ତି । ଠାକୁର କହୁଛନ୍ତି, ଲାଟୁର କି ଆନନ୍ଦ—ତା’ର ଏପରି ନ ହୋଇଥିଲେ ମନରେ ବଡ଼ କଷ୍ଟ ହୋଇଥାଆନ୍ତା ! (ଭକ୍ତମାନଙ୍କ ପ୍ରତି ଏକାନ୍ତରେ) ଏହାର ଗୋଟିଏ ମାନେ ଅଛି । ହାଜରାଙ୍କର ଏତେ ଅହଂକାର ଯେ, କହନ୍ତି ଏଥିରେ ମଧ ତାଙ୍କର ଜିତା ହେବ । ଈଶ୍ୱର ଏପରି କରନ୍ତି ଯେ, ଠିକ୍ ଲୋକର କେତେବେଳେ ହେଲେ ଅପମାନ ହୁଏ ନାହିଁ । ସବୁ ସ୍ଥାନରେ ଜୟ ।

## (୪)

## ନରେନ୍ଦ୍ର ପ୍ରଭୃତିଙ୍କୁ ସ୍ତ୍ରୀଲୋକ ନେଇ ସାଧନ ନିଷେଧ । ବାମାଚାର ନିନ୍ଦା । ପୂର୍ବକଥା—ତୀର୍ଥ ଦର୍ଶନ, କାଶୀରେ ଭୈରବୀ ଚକ୍ର । ଠାକୁରଙ୍କର ସନ୍ତାନ ଭାବ ।

ଘରେ ଛୋଟ ତକ୍ତପୋଷ ଉପରେ ଠାକୁର ବସିଛନ୍ତି । ନରେନ୍ଦ୍ର, ଭବନାଥ, ବାବୁରାମ, ମାଷ୍ଟର ତଳେ ବସିଛନ୍ତି । ଘୋଷପଡ଼ା ଓ ପଞ୍ଚନାମୀ ଏହିସବୁ ମତର କଥା ନରେନ୍ଦ୍ର ଉଠାଇଲେ । ଠାକୁର ସେସବୁ ବର୍ଣ୍ଣନା କରି ନିନ୍ଦା କରୁଛନ୍ତି । କହୁଛନ୍ତି,—ଠିକ୍ ଠିକ୍ ସାଧନ କରିପାରନ୍ତି ନାହିଁ, ଧର୍ମ ନାମରେ ଇନ୍ଦ୍ରିୟ ଚରିତାର୍ଥ କରନ୍ତି ।

(ନରେନ୍ଦ୍ରଙ୍କ ପ୍ରତି) ତୋର ଏ ସବୁ ଶୁଣିବା ଦରକାର ନାହିଁ ।

''ଭୈରବ ଭୈରବୀ, ଏମାନଙ୍କର ମଧ୍ୟ ଏହିପରି । କାଶୀକୁ ଯେତେବେଳେ ଗଲି ସେତେବେଳେ ଦିନେ ଭୈରବୀ ଚକ୍ରକୁ ମୋତେ ନେଇଗଲେ । ଜଣେ ହୁଏ ଭୈରବ, ଆଉ ଜଣେ ହୁଏ ଭୈରବୀ । ମୋତେ ମଦ୍ୟ ପିଇବାକୁ କହିଲେ । ମୁଁ କହିଲି, ମା', ମୁଁ ମଦ୍ୟ ଛୁଇଁପାରେ ନାହିଁ । ସେତେବେଳେ ସେମାନେ ଖାଇବାକୁ ଲାଗିଲେ । ମୁଁ ମନେକଲି, ଏଥର ବୋଧହୁଏ ଜପ ଧ୍ୟାନ କରିବେ । ତା' ନୁହେଁ, ନୃତ୍ୟ କରିବାକୁ ଆରମ୍ଭ କଲେ ! ମୋତେ ଭୟ ଲାଗିଲା କାଳେ ସେମାନେ ଗଙ୍ଗାରେ ପଡ଼ିଯିବେ । କାରଣ ଗଙ୍ଗାଧାରରେ ଚକ୍ରଟି ହୋଇଥିଲା ।''

'ସ୍ୱାମୀ ସ୍ତ୍ରୀ ଯଦି ଭୈରବ-ଭୈରବୀ ହୁଅନ୍ତି, ତେବେ ସେମାନଙ୍କ ପକ୍ଷରେ ଭଲ ।'

(ନରେନ୍ଦ୍ରାଦି ଭକ୍ତମାନଙ୍କ ପ୍ରତି)—''ଜ'ଣ ଜାଣ ? ମୋର ଭାବ ମାତୃଭାବ, ସନ୍ତାନ ଭାବ । ମାତୃଭାବ ଅତି ଶୁଦ୍ଧଭାବ । ଏଥିରେ କୌଣସି ବିପଦ ନାହିଁ । ଭଗ୍ନୀଭାବ, ଏ ମଧ୍ୟ ମନ୍ଦ ନୁହେଁ । ସ୍ତ୍ରୀ ଭାବ,—ବୀରଭାବ ବଡ଼ କଠିନ । ତାରକର ବାପା ଏହି ଭାବରେ ସାଧନ କରୁଥିଲେ ! ବଡ଼ କଠିନ ! ଠିକ୍ ଭାବ ରଖିହୁଏ ନାହିଁ ।''

''ଈଶ୍ୱରଙ୍କ ପାଖରେ ପହଞ୍ଚିବାକୁ ଭିନ୍ନ ଭିନ୍ନ ପଥ ଅଛି । ଯେତେ ମତ ସେତେ ପଥ । ଯେପରି କାଳୀ ମନ୍ଦିରକୁ ନାନା ପଥ ଦେଇ ଯିବାକୁ ହୁଏ । ତେବେ କେଉଁ ପଥ ଶୁଦ୍ଧ, କେଉଁ ପଥ ମଧ୍ୟ ଅଶୁଦ୍ଧ; ଶୁଦ୍ଧ ପଥ ଦେଇ ଯିବା ହିଁ ଭଲ ।''

''ଅନେକ ମତ—ଅନେକ ପଥ ଦେଖିଲି । ଏବେ ସେସବୁ ଭଲ ଲାଗେ ନାହିଁ । ପରସ୍ପର ଭିତରେ ବିବାଦ । ଏଠାରେ ଆଉ କେହି ନାହାନ୍ତି, ତୁମେମାନେ ନିଜର ଲୋକ, ତୁମମାନଙ୍କୁ କହୁଛି; ଶେଷରେ ଏହା ହିଁ ବୁଝିଛି ଯେ, ସେ ପୂର୍ଣ୍ଣ ମୁଁ ତାଙ୍କର ଅଂଶ; ସେ ପ୍ରଭୁ, ମୁଁ ତାଙ୍କର ଦାସ; ପୁଣି ଥରେ ଥରେ ଭାବେ, ସେ ହିଁ ମୁଁ , ମୁଁ ହିଁ ସେ ! ଭକ୍ତମାନେ ନିସ୍ତବ୍ଧ ହୋଇ କଥାଗୁଡ଼ିକ ଶୁଣୁଛନ୍ତି ।''

## ଠାକୁର ଶ୍ରୀରାମକୃଷ୍ଣ ଓ ମନୁଷ୍ୟକୁ ଭଲପାଇବା ।
## Love of mankind

ଭବନାଥ (ବିନୀତ ଭାବରେ)—କୌଣସି ଲୋକ ସଙ୍ଗରେ ମନାନ୍ତର ହେଲେ ମନଟା ଭଲଲାଗେ ନାହିଁ । ସେତେବେଳେ ମନେ ହୁଏ ଯେ ସମସ୍ତଙ୍କୁ ତ ଭଲପାଇ ପାରିଲି ନାହିଁ ।

ଶ୍ରୀରାମକୃଷ୍ଣ—କୌଣସି ଲୋକ ସଙ୍ଗରେ ସଦାଳାପ କରିବାକୁ ବା ସୁସମ୍ପର୍କ ରଖିବାକୁ ଚେଷ୍ଟା କରିବ । ଚେଷ୍ଟା କରି ଯଦି ନ ହୁଏ, ତା' ପରେ ଆଉ ସେସବୁ କିଛି ଭାବିବ ନାହିଁ । ତାଙ୍କର ଶରଣାଗତ ହୁଅ,—ତାଙ୍କୁ ଚିନ୍ତା କର,—ତାଙ୍କୁ ଛାଡ଼ି କାହା ପାଇଁ ମନ ଖରାପ କରିବାର ଦରକାର ନାହିଁ ।

ଭବନାଥ—ଯୀଶୁଖ୍ରୀଷ୍ଟ, ଚୈତନ୍ୟ, ଏମାନେ ସବୁ କହିଯାଇଛନ୍ତି ଯେ, ସମସ୍ତଙ୍କୁ ଭଲ ପାଇବ ।

ଶ୍ରୀରାମକୃଷ୍ଣ—ସର୍ବଭୂତରେ ଈଶ୍ୱର ଅଛନ୍ତି ବୋଲି ଭଲ ପାଇବ, କିନ୍ତୁ ଦୁଷ୍ଟ ଲୋକଙ୍କୁ ଦୂରରୁ ନମସ୍କାର କରିବ । ଚୈତନ୍ୟ ମହାପ୍ରଭୁଙ୍କ କଥା ? ସେ ମଧ୍ୟ ବିଜାତୀୟ ଲୋକଙ୍କୁ ଦେଖି ଆଧ୍ୟାତ୍ମିକ ସମ୍ବରଣ କରୁଥିଲେ । ଶ୍ରୀବାସଙ୍କ ଘରେ ତାଙ୍କ ଶାଶୁଙ୍କୁ କେଶ ଧରି ବାହାର କରି ଦେଇଥିଲେ ।

ଭବନାଥ—ସେ ତ ଅନ୍ୟ ଲୋକ ବାହାର କରିଥିଲା ।

ଶ୍ରୀରାମକୃଷ୍ଣ—ତାଙ୍କର ସମ୍ମତି ନ ଥିଲେ କେହି ପାରେ ?

"କଅଣ କରାଯିବ ? ଯଦି ଅନ୍ୟର ମନକୁ ସନ୍ତୁଷ୍ଟ କରି ନ ପାରିଲ, କ'ଣ ଦିନରାତି ସେହି କଥା ଭାବୁଥିବ ? ଯେଉଁ ମନକୁ ତାଙ୍କୁ ଦେବ, ସେ ମନକୁ ଏଣେତେଣେ ବାଜେ ଖରଚ କରିବ ? ମୁଁ କହେ ମା', ମୁଁ ନରେନ୍ଦ୍ର, ଭବନାଥ, ରାଖାଲ କାହାକୁ ଚାହେଁ ନାହିଁ, କେବଳ ତୁମକୁ ଚାହେଁ । ମନୁଷ୍ୟକୁ ନେଇ କଅଣ କରିବି ?"

"ଘରେ ଆଣିବି ଚଣ୍ଡୀ, କର୍ଣ୍ଣେ ଶୁଣିବି ଚଣ୍ଡୀ, ଆସିବେ କେତେ ଦଣ୍ଡୀ ଜଟା—କୁଟଧାରୀ !

"ତାଙ୍କୁ ଲାଭକଲେ ସମସ୍ତ ଲାଭ ହେବ । ଟଙ୍କା ମାଟି, ମାଟି ହିଁ ଟଙ୍କା, —ସୁନା ମାଟି ମାଟି ହିଁ ସୁନା—ଏହା କହି ଗଙ୍ଗାଜଳରେ ପକାଇ ତ୍ୟାଗ କଲି । ସେତେବେଳେ ମନେହେଲା ଯେ, ମା' ଲକ୍ଷ୍ମୀ ଯଦି ରାଗ କରିବେ । କାରଣ ଲକ୍ଷ୍ମୀଙ୍କର ଐଶ୍ୱର୍ଯ୍ୟ ଅବଜ୍ଞା କଲି । ଯଦି ପଡ଼ି ବନ୍ଦ କରିବେ । ସେତେବେଳେ କହିଲି, ମା' ତୁମକୁ ଚାହେଁ, ଆଉ କିଛି ଚାହେଁ ନାହିଁ, ତାଙ୍କୁ ପାଇଲେ ଆଉ ସବୁ ପାଇବି ।"

ଭବନାଥ (ହସି ହସି)—ଏ ହିସାବୀ ବୁଦ୍ଧି !

ଶ୍ରୀରାମକୃଷ୍ଣ (ସହାସ୍ୟରେ)—ହଁ, ଏତକ ହିସାବୀ ବୁଦ୍ଧି ।

"ଭଗବାନ ଦର୍ଶନ ଦେଇ ଜଣକୁ କହିଲେ, ତୁମର ତପସ୍ୟା ଦେଖି ଖୁବ୍ ପ୍ରସନ୍ନ ହୋଇଛି । ବର୍ତ୍ତମାନ ଗୋଟିଏ ବର ମାଗ, ସାଧକ କହିଲେ, ପ୍ରଭୁ ଯଦି ଦେବେ ତ ଏହି ବର ଦିଅନ୍ତୁ, ଯେପରି ସୁନାଥାଳୀରେ ନାତି ସଙ୍ଗରେ ବସି ଖାଇବି । ଗୋଟିଏ ବରରେ ସବୁ ମିଳିଲା ! ଐଶ୍ୱର୍ଯ୍ୟ ହେଲା, ପୁତ୍ର ପୌତ୍ର ହେଲା ।" (ସମସ୍ତଙ୍କର ହାସ୍ୟ) ।

## (୫)

## ଈଶ୍ୱର ଅଭିଭାବକ । ଶ୍ରୀରାମକୃଷ୍ଣଙ୍କର ମାତୃଭକ୍ତି । ସଂକୀର୍ତ୍ତନାନନ୍ଦରେ ।

ଭକ୍ତମାନେ ଘରେ ବସିଅଛନ୍ତି । ହାଜରା ବାରଣ୍ଡାରେ ବସିଛନ୍ତି ।

ଶ୍ରୀରାମକୃଷ୍ଣ—ହାଜରା କଅଣ ଚାହାନ୍ତି ଜାଣ ? କିଛି ଟଙ୍କା ଚାହାନ୍ତି, ଘରେ

ଅଭାବ । ଦେଣା କରଜ ହୋଇଛି ସେଥିପାଇଁ, ଜପ ଧ୍ୟାନ କରନ୍ତି ବୋଲି ସେ ଭାବନ୍ତି ଯେ ଭଗବାନ ଟଙ୍କା ଦେବେ !

ଜଣେ ଭକ୍ତ—ସେ କ'ଣ ଇଚ୍ଛା ପୂର୍ଣ୍ଣ କରିପାରନ୍ତି ନାହିଁ ?

ଶ୍ରୀରାମକୃଷ୍ଣ—ତାଙ୍କର ଇଚ୍ଛା । ତେବେ ପ୍ରେମୋନ୍ମାଦ ନ ହେଲେ ସେ ସବୁ ଭାର ନିଅନ୍ତି ନାହିଁ । ଛୋଟ ପୁଅକୁ ହିଁ ହାତଧରି ଖାଇବାକୁ ବସାଇ ଦିଅନ୍ତି । ବୁଢ଼ାମାନଙ୍କୁ କିଏ ଦେବ ? ତାଙ୍କର ଚିନ୍ତା କରି ଯେତେବେଳେ ଜଣେ ନିଜର ଭାର ନିଜେ ନେଇପାରେ ନାହିଁ, ସେତେବେଳେ ଈଶ୍ୱର ନିଅନ୍ତି ।*

''ହାଜରା ନିଜେ ଘରର ଖବର ନେବେ ନାହିଁ । ତାଙ୍କର ପୁଅ ରାମଲାଲ ପାଖରେ କହିଛି, 'ବାପାଙ୍କୁ ଆସିବାକୁ କହିବେ; ଆମ୍ଭେମାନେ କିଛି ଚାହିଁବୁ ନାହିଁ ।' ମୋର କଥାଗୁଡ଼ିକ ଶୁଣି କାନ୍ଦିଲେ ।''

## ଶ୍ରୀମୁଖକଥିତ ଚରିତାମୃତ । ଶ୍ରୀବୃନ୍ଦାବନ ଦର୍ଶନ ।

''ହାଜରାଙ୍କ ମା ରାମଲାଲକୁ କହିଛନ୍ତି, 'ପ୍ରତାପକୁ ଥରେ ଆସିବାକୁ କହିବ, ଆଉ ତୁମ କକେଇଙ୍କୁ ମୋ ନାମ କରି କହିବ, ଯେପରି ସେ ପ୍ରତାପକୁ ଆସିବାକୁ କହନ୍ତି ।' ମୁଁ କହିଲି, କିନ୍ତୁ ସେ ଶୁଣିଲେ ନାହିଁ ।''

''ମା' କଅଣ କମ୍ ଜିନିଷ କିହେ ? ଚୈତନ୍ୟଦେବ କେତେ ବୁଝାଇ ସୁଝାଇ ମା' ପାଖରୁ ଯାଇପାରିଲେ । ଶଚୀ କହିଥିଲେ, କେଶବ ଭାରତୀକୁ କାଟିଦେବି । ଚୈତନ୍ୟଦେବ ଅନେକ ପ୍ରକାରେ ବୁଝାଇଲେ । କହିଲେ, 'ମା', ତୁମେ ଅନୁମତି ନ ଦେଲେ ମୁଁ ଯିବିନାହିଁ । ତେବେ ସଂସାରରେ ଯଦି ମୋତେ ରଖ, ମୋର ଶରୀର ରହିବ ନାହିଁ । ଆଉ ମା', ଯେତେବେଳେ ତୁମେ ମନେ କରିବ ମୋତେ ଦେଖିପାରିବ । ମୁଁ ପାଖରେ ରହିବି, ମଝିରେ ମଝିରେ ଦେଖା ଦେଇଯିବି । ତେବେ ଯାଇ ଶଚୀ ଅନୁମତି ଦେଲେ । ମା' ଯେତେଦିନ ଥିଲେ, ନାରଦ ସେତେଦିନ ତପସ୍ୟା କରିବାକୁ ଯାଇପାରି ନ ଥିଲେ । ମା'ଙ୍କର ସେବା କରିବାକୁ ହୋଇଥିଲା କି ନା ! ମା'ଙ୍କର ଦେହତ୍ୟାଗ ହେଲାରୁ ତେବେ ଈଶ୍ୱରଲାଭ ପାଇଁ ସାଧନ କରିବାକୁ ବାହାରିଲେ ।''

''ବୃନ୍ଦାବନକୁ ଯାଇ ମୋର ଆଉ ଫେରି ଆସିବାକୁ ମନ ହେଲା ନାହିଁ । ଗଙ୍ଗାମାତାଙ୍କ ପାଖରେ ରହିବାର କଥା ହେଲା । ସବୁ ଠିକ୍ ଠାକ୍ । ଏଣେ ମୋର ବିଛଣା ହେବ, ତେଣେ ଗଙ୍ଗାମାତାଙ୍କର ବିଛଣା ହେବ, ଆଉ କଲିକତା ଯିବି ନାହିଁ, କୈବର୍ତ୍ତର ଭାତ ଆଉ କେତେଦିନ ଖାଇବି ? ସେତେବେଳେ ହୃଦୁ କହିଲା, ନା, ତୁମେ କଲିକତାକୁ ଚାଲ । ସେ ଏକଦିଗରେ ଟାଣେ, ଗଙ୍ଗାମାତା ଆଉ ଏକଦିଗରେ ଟାଣେ । ମୋର ରହିବା ପାଇଁ ଖୁବ୍

---

*ଅନନ୍ୟାଶ୍ଚିନ୍ତୟନ୍ତୋ ମାଂ ଯେ ଜନାଃ ପର୍ଯ୍ୟୁପାସତେ ।
ତେଷାଂ ନିତ୍ୟାଭିଯୁକ୍ତାନାଂ ଯୋଗକ୍ଷେମଂ ବହାମ୍ୟହମ୍ ॥ ଗୀତା, ୯/୨୨

ଇଚ୍ଛା ଥିଲା । ଏହି ସମୟରେ ମାଆ ମନେପଡ଼ିଲେ । ସଙ୍ଗେ ସଙ୍ଗେ ସବୁ ବଦଳିଗଲା । ମା' ବୃଦ୍ଧା ହୋଇଛନ୍ତି । ଭାବିଲି ମାଆଙ୍କ ଚିନ୍ତା ରହିଲେ ଈଶ୍ୱର ଫିଶ୍ୱର ସବୁ ଭୁଲିଯିବି । ତାହା ଅପେକ୍ଷା ତାଙ୍କ ପାଖକୁ ଯାଇ ସେହିଠାରେ ନିଶ୍ଚିନ୍ତ ହୋଇ ଈଶ୍ୱର ଚିନ୍ତା କରିବି ।''

(ନରେନ୍ଦ୍ରଙ୍କ ପ୍ରତି)—''ତୁ ଟିକିଏ ତାଙ୍କୁ କହନା । ମୋତେ ସେଦିନ କହିଲେ, ହଁ, ଦେଶକୁ ଯିବି, ତିନିଦିନ ଯାଇ ରହିବି । ତା'ପରେ ସେ କଥା ଭୁଲିଗଲେ ।''

(ଭକ୍ତମାନଙ୍କ ପ୍ରତି)—''ଆଜି ଘୋଷପଡ଼ା ବିଷୟରେ କେତେକଥା ହେଲା । ଗୋବିନ୍ଦ, ଗୋବିନ୍ଦ ! ବର୍ତ୍ତମାନ ହରିନାମ ଟିକିଏ କର । ବିରିଡ଼ାଲି ପରେ ବରଂ କ୍ଷିରୀ ଲାଗି ଶେଷ ହେଉ ।''

ନରେନ୍ଦ୍ର ଗୀତ ଗାଉଛନ୍ତି—

ଏକ ପୁରାତନ ପୁରୁଷ ନିରଞ୍ଜନେ, ଚିତ୍ତ ସମାଧାନ କର ରେ,
ଆଦି ସତ୍ୟ ତିନି କାରଣ-କାରଣ, ପ୍ରାଣରୂପେ ବ୍ୟାପ୍ତ ଚରାଚରେ,
ଜୀବନ୍ତ ଜ୍ୟୋତିର୍ମୟ, ସକଲେର ଆଶ୍ରୟ, ଦେଖେ ସେଇ ଯେ ଜନ ବିଶ୍ୱାସ କରେ ।
ଅତିନ୍ଦ୍ରିୟ ନିତ୍ୟ ଚୈତନ୍ୟସ୍ୱରୂପ, ବିରାଜିତ ହୃଦି କନ୍ଦରେ;
ଜ୍ଞାନପ୍ରେମ ପୂଣ୍ୟେ, ଭୂଷିତ ନାନା ଗୁଣେ, ଯାହାର ଚିନ୍ତନେ ସନ୍ତାପ ହରେ ।
ଅନନ୍ତ ଗୁଣାଧାର, ପ୍ରଶାନ୍ତ -ମୁରତି, ଧାରଣା କରିତେ କେହ ନାହିଁ ପାରେ,
ପଦାଶ୍ରିତ ଜନେ, ଦେଖା ଦେନ ନିଜ ଗୁଣେ ଦୀନହୀନ ବଲେ ଦୟାକରେ ।
ଚିର କ୍ଷମାଶୀଳ କଲ୍ୟାଣଦାତା, ନିକଟ ସହାୟ ଦୁଃଖ ସାଗରେ;
ପରମ ନ୍ୟାୟବାନ୍ କରେନ ଫଳଦାନ, ପାପପୂଣ୍ୟ କର୍ମ ଅନୁସାରେ ।
ପ୍ରେମମୟ ଦୟାସିନ୍ଧୁ, କୃପାନିଧି, ଶ୍ରବଣେ ଯା'ର ଗୁଣ ଆଁଖି ଝରେ,
ତା'ର ମୁଖ ଦେଖି, ସବେ ହଓରେ ସୁଖୀ, ତୃଷିତ ମନ ପ୍ରାଣ ଯାଁର ତରେ ।
ବିଚିତ୍ର ଶୋଭାମୟ ନିର୍ମଳ ପ୍ରକୃତି, ବର୍ଣ୍ଣତେ ସେ ଅପରୂପ ବଚନ ହାରେ;
ଭଜନ ସାଧନ ତାଁର, କର ନିରନ୍ତର, ଚିର ଭିଖାରୀ ହୟେ ତାଁର ଦ୍ୱାରେ ।
(୨) ଚିଦାକାଶେ ହଲୋ ପୂର୍ଣ୍ଣ ପ୍ରେମଚନ୍ଦ୍ରୋ ଦୟ ହେ ।
ଉଥଲିଲ ପ୍ରେମସିନ୍ଧୁ କି ଆନନ୍ଦମୟ ହେ ।
(ଜୟ ଦୟାମୟ, ଜୟ ଦୟାମୟ, ଜୟ ଦୟାମୟ)
ଚାରିଦିକେ ଝଲମଲ କରେ ଭକ୍ତ ଗ୍ରହଦଲ,
ଭକ୍ତ ସଙ୍ଗେ ଭକ୍ତସଖା ଲୀଳାରସମୟ ହେ ।
(ଜୟ ଦୟାମୟ, ଜୟ ଦୟାମୟ, ଜୟ ଦୟାମୟ)
ସ୍ୱର୍ଗେର ଦୁୟାର ଖୁଲି, ଆନନ୍ଦ-ଲହରୀ ତୁଲି;
ନବବିଧାନ ବସନ୍ତ —ସମୀରଣ ବୟ,

–ଫୁଟେ ତାହେ ମନ୍ଦ ମନ୍ଦ ଲୁକାରସ ପ୍ରେମଗନ୍ଧ,
ଘ୍ରାଣେ ଯୋଗୀବୃନ୍ଦ ଯୋଗାନନ୍ଦେ ମତ୍ତ ହୟ ହେ ।
(ଜୟ ଦୟାମୟ, ଜୟ ଦୟାମୟ, ଜୟ ଦୟାମୟ)
ଭବସିନ୍ଧୁ ଜଳେ, ବିଧାନ-କମଳେ, ଆନନ୍ଦମୟୀ ବିରାଜେ,
ଆବେଶେ ଆକୁଳ, ଭକ୍ତ ଅଳିକୁଳ, ପିୟେ ସୁଧା ତା'ର ମାଝେ ।
ଦେଖ ଦେଖ ମାୟେର ପ୍ରସନ୍ନ ବଦନ ଚିତ୍ତ ବିନୋଦନ ଭୁବନ-ମୋହନ,
ପଦତଳେ ଦଳେ ଦଳେ ସାଧୁଗଣ, ନାଚେ ଗାୟ ତାରା ହଇୟେ ମଗନ ।
କିବା ଅପରୂପ ଆହା ମରି ମରି, ଜୁଡ଼ାଇଲ ପ୍ରାଣ ଦରଶନ କରି,
ପ୍ରେମଦାସେ ବଲେ ସବେ ପାୟେ ଧରି, ଗାଓ ଭାଇ ମାୟେର ଜୟ ।

ଠାକୁର ନାଚୁଅଛନ୍ତି । ବୁଲି ବୁଲି ନାଚୁଅଛନ୍ତି, ସମସ୍ତେ କୀର୍ତ୍ତନ କରୁଅଛନ୍ତି, ଖୁବ୍ ଆନନ୍ଦ । ଗୀତ ଶେଷ ହୋଇଯିବା ପରେ ଠାକୁର ନିଜେ ପୁଣି ଗୀତ ଗାଇଲେ—

ଶିବ ସଙ୍ଗେ ସଦାରଙ୍ଗେ ଆନନ୍ଦେ ମଗନା,
ସୁଧାପାନେ ଢଳ ଢଳ ଢଳେ କିନ୍ତୁ ପଡ଼େ ନା (ମା) ।
ବିପରୀତ ରତାତୁରା ପଦଭରେ କାମ୍ପେ ଧରା,
ଉଭୟେ ପାଗଲେର ପାରା ଲଜ୍ଜା ଭୟ ଆର ମାନେ ନା ।

ମାଷ୍ଟର ସଙ୍ଗରେ ଗାଇଥିଲେ ଦେଖି ଠାକୁର ଖୁବ୍ ଖୁସି । ଗୀତ ଶେଷ ହେବାରୁ ଠାକୁର ମାଷ୍ଟରଙ୍କୁ ସହାସ୍ୟରେ କହୁଛନ୍ତି, ଭଲ୍ ୍ୟକ ଥିଲେ ଆଉ ମଧ୍ୟ ଜମି ଥାଆନ୍ତା । ତାକ ତାକ ତା ଧିନା, ଦାକ ଦାକ ଦା ଧିନା; ଏହିସବୁ ବୋଲ ବାଜିବ !

କୀର୍ତ୍ତନ ହେଉ ହେଉ ସନ୍ଧ୍ୟା ହୋଇଯାଇଛି !



# ତ୍ରୟୋଦଶ ପରିଚ୍ଛେଦ

## (୧)

### ଶ୍ରୀରାମକୃଷ୍ଣଙ୍କର ଅଧରଙ୍କ ଘରକୁ ଆଗମନ ଓ ଭକ୍ତଙ୍କ ସଙ୍ଗରେ ସଂକୀର୍ତ୍ତନାନନ୍ଦ । କେଦାର, ବିଜୟ, ବାବୁରାମ, ନାରାୟଣ, ମାଷ୍ଟର ଓ ବୈଷ୍ଣବଚରଣ ।

ଆଜି ଆଶ୍ୱିନ ଶୁକ୍ଳା ଏକାଦଶୀ, ବୁଧବାର, ୧ ତାରିଖ ଅକ୍ଟୋବର ୧୮୮୪ ଖ୍ରୀଷ୍ଟାବ୍ଦ । ଠାକୁର ଦକ୍ଷିଣେଶ୍ୱରରୁ ଅଧରଙ୍କ ଘରକୁ ଆସୁଛନ୍ତି । ସଙ୍ଗରେ ନାରାୟଣ, ଗଙ୍ଗାଧର । ପଥରେ ହଠାତ୍ ଠାକୁରଙ୍କର ଭାବାବସ୍ଥା ହେଲା । ଠାକୁର ଭାବରେ କହୁଛନ୍ତି, ''ମୁଁ ମାଳା ଜପିବି ? ଛି ଥୁ ! ଏ ଶିବ ଯେ ପାତାଳଫୁଟା ଶିବ, ସ୍ୱୟମ୍ଭୁଲିଙ୍ଗ ।''

ଅଧରଙ୍କ ଘରକୁ ଆସିଛନ୍ତି । ଏଠାରେ ଅନେକ ଭକ୍ତଙ୍କର ସମାବେଶ ହୋଇଛି । କେଦାର, ବିଜୟ, ବାବୁରାମ ପ୍ରଭୃତି ଅନେକେ ଉପସ୍ଥିତ । କୀର୍ତ୍ତନୀୟା ବୈଷ୍ଣବଚରଣ ଆସିଛନ୍ତି । ଠାକୁରଙ୍କର ଆଦେଶକ୍ରମେ ଅଧର ପ୍ରତ୍ୟହ ଅଫିସରୁ ଆସିବାମାତ୍ରେ ବୈଷ୍ଣବଚରଣଙ୍କ ମୁଖରୁ କୀର୍ତ୍ତନ ଶୁଣନ୍ତି । ବୈଷ୍ଣବଚରଣଙ୍କ ସଂକୀର୍ତ୍ତନ ଅତି ମଧୁର । ଆଜି ମଧ୍ୟ ସଂକୀର୍ତ୍ତନ ହେବ । ଠାକୁର ଅଧରଙ୍କ ବୈଠକଖାନାରେ ପ୍ରବେଶ କଲେ ।

ଭକ୍ତମାନେ ସମସ୍ତେ ଗାତ୍ରୋତ୍ଥାନ କରି ତାଙ୍କର ଚରଣ ବନ୍ଦନା କଲେ । ଠାକୁର ସହାସ୍ୟରେ ଆସନ ଗ୍ରହଣ କଲାପରେ ସେମାନେ ମଧ୍ୟ ଉପବେଶନ କଲେ । କେଦାର ଓ ବିଜୟ ପ୍ରଣାମ କଲାପରେ ଠାକୁର ନାରାୟଣ ଓ ବାବୁରାମଙ୍କୁ ପ୍ରଣାମ କରିବାକୁ କହିଲେ । ଆଉ କହିଲେ, ଆପଣମାନେ ଆଶୀର୍ବାଦ କରନ୍ତୁ ଯେପରି ଏମାନଙ୍କର ଭକ୍ତି ହୁଏ ! ନାରାୟଣଙ୍କୁ ଦେଖାଇ କହିଲେ, ଏ ଖୁବ୍ ସରଳ; ଭକ୍ତମାନେ ବାବୁରାମ ଓ ନାରାୟଣଙ୍କୁ ଏକଦୃଷ୍ଟିରେ ଦେଖୁଛନ୍ତି ।

ଶ୍ରୀରାମକୃଷ୍ଣ (କେଦାରାଦି ଭକ୍ତଙ୍କ ପ୍ରତି)—ତୁମମାନଙ୍କ ସଙ୍ଗରେ ରାସ୍ତାରେ ଦେଖାହେଲା,—ତାହା ନ ହେଲେ ତୁମେମାନେ କାଳୀମନ୍ଦିରକୁ ଚାଲିଯାଇଥାଆନ୍ତ । ଈଶ୍ୱରଙ୍କ ଇଚ୍ଛାରୁ ଦେଖା ହୋଇଗଲା ।

କେଦାର (କୃତାଞ୍ଜଳି ହୋଇ ବିନୀତ ଭାବରେ)—ଈଶ୍ୱରଙ୍କର ଇଚ୍ଛା,-ଆଉ ଆପଣଙ୍କ ଇଚ୍ଛା । ଠାକୁର ହସୁଛନ୍ତି ।

## (୨)

## ଭକ୍ତଙ୍କ ସଙ୍ଗରେ କୀର୍ତ୍ତନାନନ୍ଦରେ ।

ଏଥର କୀର୍ତ୍ତନ ଆରମ୍ଭ ହେଲା । ବୈଷ୍ଣବଚରଣ ଅଭିସାର ଆରମ୍ଭ କରି ରାସକୀର୍ତ୍ତନ ପାଲା ସମାପ୍ତ କଲେ । ଶ୍ରୀଶ୍ରୀରାଧାକୃଷ୍ଣଙ୍କର ମିଳନ କୀର୍ତ୍ତନ ଯହୁଁ ଆରମ୍ଭ ହେଲା, ଠାକୁର ପ୍ରେମାନନ୍ଦରେ ନୃତ୍ୟ କରିବାକୁ ଲାଗିଲେ । ସଙ୍ଗେ ସଙ୍ଗେ ଭକ୍ତମାନେ ମଧ୍ୟ ତାଙ୍କୁ ଘେରି ନାଚିବାକୁ ଲାଗିଲେ ଓ ସଂକୀର୍ତ୍ତନ କରିବାକୁ ଲାଗିଲେ । କୀର୍ତ୍ତନାନ୍ତେ ସମସ୍ତେ ଆସନ ଗ୍ରହଣ କଲେ ।

ଶ୍ରୀରାମକୃଷ୍ଣ (ବିଜୟଙ୍କ ପ୍ରତି)—ଏ ଭଲ ଗାଆନ୍ତି !

ଏହା କହି ବୈଷ୍ଣବଚରଣଙ୍କୁ ଦେଖାଇ ଦେଲେ ଓ ତାଙ୍କୁ 'ଶ୍ରୀଗୌରାଙ୍ଗ ସୁନ୍ଦର' ଗୀତଟି ଗାଇବାକୁ କହିଲେ । ବୈଷ୍ଣବଚରଣ ଗୀତ ଗାଇଲେ—

'ଶ୍ରୀଗୌରାଙ୍ଗ ସୁନ୍ଦର, ନବ ନଟବର, ତପତ କାଞ୍ଚନକାୟ' ଇତ୍ୟାଦି

ଗୀତ ସମାପ୍ତ ହେଲାରୁ ଠାକୁର ବିଜୟଙ୍କୁ କହିଲେ, 'କିପରି ?' ବିଜୟ କହିଲେ, 'ଆଶ୍ଚର୍ଯ୍ୟ !' ଠାକୁର ଗୌରାଙ୍ଗଙ୍କ ଭାବରେ ନିଜେ ଗୀତ ଗାଇଲେ,—

ଭାବ ହବେ ବୈ କିରେ !
ଭାବନିଧି ଶ୍ରୀଗୌରାଙ୍ଗେର ଭାବ ହବେ ବୈ' କିରେ ॥
ଭାବେ ହାସେ କାନ୍ଦେ ନାଚେ ଗାୟ ।
ବନ ଦେଖେ ବୃନ୍ଦାବନ ଭାବେ ସମୁଦ୍ର ଦେଖେ ଯମୁନା ଭାବେ ।
ଯା'ର ଅନ୍ତଃକୃଷ୍ଣ ବହିଃଗୌର (ଭାବ ହବେ) ।
ଗୋରା ଫୁକରି ଫୁକରି କାନ୍ଦେ; ଗୋରା ଆପନାର ପାୟ ଆପନି ଧରେ ।
ବଲେ କୋଥା ରାଇ ପ୍ରେମମୟୀ ।

ମଣି ସଙ୍ଗେ ସଙ୍ଗେ ଗାଉଛନ୍ତି ।

ଠାକୁରଙ୍କ ଗୀତ ସମାପ୍ତ ହେଲାରୁ ବୈଷ୍ଣବଚରଣ ପୁଣି ଗାଇଲେ,—

ହରି ହରି ବଲରେ ବୀଣେ !
ହରିର କରୁଣା ବିନେ, ପରମ ତତ୍ତ୍ୱ ଆର ପାବିନେ ।।
ହରି ନାମେ ତାପ ହରେ, ମୁଖେ ବଲ ହରେ କୃଷ୍ଣ ହରେ,
ହରି ଯଦି କୃପା କରେ, ତବେ ଭବେ ଆର ଭାବିନେ !
ବୀଣେ ଏକବାର ହରି ବଲ ହରି ନାମ ବିନେ ନାଇ ସମ୍ବଳ,
ଦାସ ଗୋବିନ୍ଦ କୟ ଦିନ ଗେଲ, ଅକୁଲେ ଯେନ ଡୁବିନେ ।

ଠାକୁର କୀର୍ତ୍ତନୀୟାଙ୍କ ପରି ଗୀତ ସଙ୍ଗରେ ସୁର ଦେଉଛନ୍ତି, ବୈଷ୍ଣବଚରଣଙ୍କୁ କହୁଛନ୍ତି, ଏହିପରି ଗାଅ—କୀର୍ତ୍ତନୀୟା ଢଙ୍ଗରେ ।

ବୈଷ୍ଣବଚରଣ ପୁଣି ଗାଇଲେ—

ଶ୍ରୀ ଦୁର୍ଗାନାମ ଜପ ସଦା ରସନା ଆମାର ।
ଦୁର୍ଗମେ ଶ୍ରୀ ଦୁର୍ଗା ବିନେ କେ କରେ ନିସ୍ତାର ।।
ଦୁର୍ଗାନାମ ତରୀ ଭବାର୍ଣ୍ଣବ ତରିବାରେ,
ଆସିତେଛେ, ସେଇ ତରୀ ଶ୍ରଦ୍ଧା ସରୋବରେ ।
ଶ୍ରୀ ଗୁରୁ କରୁଣା କରି ଯେଇ ଧନ ଦିଲେ,
ସାଧନା କରହ ତରୀ ମିଳିବେ ଗୋ କୁଳେ ।।
ଯଦି ବଲ ଛୟ ରିପୁ ହଇବେ ପବନ,
ଧରିତେ ନା ଦିବେ ତରୀ କରିବେ ତୁଫାନ ।
ତୁଫାନେତେ କି କରିବେ ଶ୍ରୀ ଦୁର୍ଗାନାମ ଯା'ର ତରୀ,
ଅବଶ୍ୟ ପାଇବେ କୁଳ ମୃତ୍ୟୁଞ୍ଜୟ ଯା'ର କାଣ୍ଡାରୀ ।।
ତୁମି ସ୍ୱର୍ଗ, ତୁମି ମର୍ତ୍ତ୍ୟ ମା, ତୁମି ସେ ପାତାଲ,
ତୋମା ହତେ ହରି ବ୍ରହ୍ମା ଦ୍ୱାଦଶ ଗୋପାଳ ।
ଦଶ ମହାବିଦ୍ୟା ମାତା ଦଶ ଅବତାର,
ଏବାର କୋନରୂପେ ଆମାୟ କରିତେ ହବେ ପାର ।।
ଚଳ ଅଚଳ ତୁମି ମା, ତୁମି ସୂକ୍ଷ୍ମ, ସ୍ଥୂଳ,
ସୃଷ୍ଟି ସ୍ଥିତି ପ୍ରଳୟ ତୁମି ମା ତୁମି ବିଶ୍ୱମୂଳ
ତ୍ରିଲୋକଜନନୀ ତୁମି, ତ୍ରିଲୋକ ତାରିଣୀ,
ସକଲେର ଶକ୍ତି ତୁମି ମା' ତୋମାର ଶକ୍ତି ତୁମି ।।

ଠାକୁର ଗାୟକଙ୍କ ସଙ୍ଗରେ ପୁନଃ ପୁନଃ ଗାଇବାକୁ ଲାଗିଲେ—

ଚଳ ଅଚଳ ତୁମି ମା, ତୁମି ସୂକ୍ଷ୍ମ ସ୍ଥୂଳ,
ସୃଷ୍ଟି ସ୍ଥିତି ପ୍ରଳୟ ତୁମି ବିଶ୍ୱମୂଳ ।
ତ୍ରିଲୋକଜନନୀ ତୁମି, ତ୍ରିଲୋକ ତାରିଣୀ;
ସକଲେର ଶକ୍ତି ତୁମି ମା' ତୋମାର ଶକ୍ତି ତୁମି ।।

କୀର୍ତ୍ତନୀୟା ପୁଣି ଆରମ୍ଭ କଲେ—

ବାୟୁ ଅନ୍ଧକାର ଆଦି ଶୂନ୍ୟ ଆର ଆକାଶ,
ରୂପ ଦିକ୍ ଦିଗନ୍ତର ତୋମା ହ'ତେ ପ୍ରକାଶ ।
ବ୍ରହ୍ମା, ବିଷ୍ଣୁ ଆଦି କରି ଯତେକ ଅମରେ,
ତବ ଶକ୍ତି ପ୍ରକାଶିଛେ ସକଳ ଶରୀରେ ।।
ଇଡ଼ା ପିଙ୍ଗଳା ସୁଷୁମ୍ନା ବଜ୍ରା ଚିତ୍ରାଣୀତେ,
କ୍ରମଯୋଗେ ଆଛେ ଜେଗେ ସହସ୍ରା ହଇତେ ।
ଚିତ୍ରାଣୀର ମଧ୍ୟେ ଊର୍ଦ୍ଧ୍ୱେ ଆଛେ ପଦ୍ମ ସାରି ସାରି,
ଶୁକ୍ଲବର୍ଣ୍ଣ ସୁବର୍ଣ୍ଣ ବର୍ଣ୍ଣ ବିଦ୍ୟୁତାଦି କରି ।।

ଦୁଇପଦ୍ମ ପ୍ରସ୍ଫୁଟିତ ଏକପଦ୍ମ କୋଡ଼ା,
ଅଧୋମୁଖେ ଊର୍ଦ୍ଧ୍ୱ ମୁଖେ ଆଛେ ଦୁଇପଦ୍ମ ଜୋଡ଼ା ।
ହଂସରୂପେ ବିହାର ତଥାୟ କର ଗୋ ଆପନି,
ଆଧାର କମଳେ ହଓ ମା' କୁଳକୁଣ୍ଡଳିନୀ ।।
ତଦୂର୍ଦ୍ଧ୍ୱେ ମଣିପୁରେ ନାମ ନାଭିସ୍ଥଳ,
ରକ୍ତବର୍ଣ୍ଣ ପଦ୍ମ ତାହେ ଆଛେ ଦଶଦଳ ।
ସେଇ ପଦ୍ମେ ତବ ଶକ୍ତି ଅନଳ ଆଛୟ,
ସେ ଅନଳ ନିବୃତ୍ତି ହ'ଲେ ସକଲଇ ନିଭାୟ ।।
ହୃଦିପଦ୍ମେ ଆକାଶ ମାନସ ସରୋବର,
ଅନାହତ ପଦ୍ମ ଭାସେ ତାହାର ଉପର ।
ସୁବର୍ଣ୍ଣବର୍ଣ୍ଣ ଦ୍ୱାଦଶଦଳ ତଥାୟ ଶିବବାଣ,
ସେଇ ପଦ୍ମେ ତବ ଶକ୍ତି ଜୀବ ଆର ପ୍ରାଣ ।।
ତଦୁର୍ଦ୍ଧ୍ୱେ କଣ୍ଠଦେଶ ଧୂମ୍ରବର୍ଣ୍ଣ ପଦ୍ମ,
ଷୋଡ଼ଶଦଳ ନାମ ତାରି ପଦ୍ମ ବିଶୁଦ୍ଧାଖ୍ୟ ।
ସେଇ ପଦ୍ମେ ତବ ଶକ୍ତି ଆଛୟେ ଆକାଶ,
ସେ ଆକାଶ ରୁଦ୍ଧ ହଲେ ସକଲି ଆକାଶ ।।
ତଦୁର୍ଦ୍ଧ୍ୱେ ଶିରସି ମଧ୍ୟେ ପଦ୍ମ ସହସ୍ରଦଳ,
ଗୁରୁଦେବେର ସ୍ଥାନ ସେଇ ଅତି ଗୁହ୍ୟ ସ୍ଥଳ ।
ସେଇ ପଦ୍ମେ ବିଶ୍ୱରୂପେ ପରମଶିବ ବିରାଜେ,
ଏକା ଆଛେନ ଶୁକ୍ଳବର୍ଣ୍ଣ ସହସ୍ରଦଳ ପଙ୍କଜେ ।।
ବ୍ରହ୍ମରନ୍ଧ୍ର ଆଛେ ଯଥା ଶିବ ବିଶ୍ୱରୂପ,
ତୁମି ତଥା ଗେଲେ, ଶିବ ହନ ସ୍ୱୀୟରୂପ ।
ତଥା ଶିବସଙ୍ଗେ ରଙ୍ଗେ କର ଗୋ ବିହାର,
ବିହାର ସମାପନେ ଶିବ ହନ ବିଶ୍ୱାକାର ।।

## (୩)

## ବିଜୟ ପ୍ରଭୃତିଙ୍କ ସଙ୍ଗରେ ସାକାର ନିରାକାରର କଥା । ଚିନିର ପାହାଡ଼ ।

କେଦାର ଓ କେତେଜଣ ଭକ୍ତ ଗାତ୍ରୋତ୍ଥାନ କଲେ—ଘରକୁ ଫେରିଯିବେ । କେଦାର ଠାକୁରଙ୍କୁ ପ୍ରଣାମ କଲେ, ଆଉ କହିଲେ, ଆଜ୍ଞା ତେବେ ଆସୁଛୁ ।

ଶ୍ରୀରାମକୃଷ୍ଣ—ତୁମେ ଅଧରଙ୍କୁ ନ କହି ଯିବ ? ଅଭଦ୍ରତା ହେବ ନାହିଁ ?

କେଦାର—ତସ୍ମିନ୍ ତୁଷ୍ଟେ ଜଗତ୍ ତୁଷ୍ଟମ୍, ଆପଣ ଯେତେବେଳେ ରହିଲେ, ସମସ୍ତଙ୍କର ହିଁ ରହିବା ହେଲା—ଆଉ ବି ଅସୁସ୍ଥ ବୋଧ କରୁଛି—ପୁଣି ବିଭାଘର ନିମନ୍ତ୍ରଣ ସକାଶେ ଗୋଟାଏ ଭୟ ଅଛି—କାରଣ ସମାଜ ଅଛି-ଥରେ ଗଣ୍ଡଗୋଳ ହୋଇଛି ।

ବିଜୟ—ଏହାଙ୍କୁ ଛାଡ଼ି ଯିବା—

ଏପରି ସମୟରେ ଠାକୁରଙ୍କୁ ନେଇଯିବାକୁ ଅଧର ଆସିଲେ । ଭିତରେ ପତ୍ର ପଡ଼ିଛି । ଠାକୁର ଉଠି ବିଜୟ ଓ କେଦାରଙ୍କୁ ସମ୍ବୋଧନ କରି କହିଲେ, ଆସ ହେ ମୋ ସଙ୍ଗରେ । ବିଜୟ, କେଦାର ଓ ଅନ୍ୟାନ୍ୟ ଭକ୍ତମାନେ ଠାକୁରଙ୍କ ସଙ୍ଗରେ ବସି ପ୍ରସାଦ ଗ୍ରହଣ କଲେ ।

ଠାକୁର ଆହାରାନ୍ତେ ବୈଠକଖାନାରେ ଆସି ବସିଲେ । କେଦାର, ବିଜୟ ଓ ଅନ୍ୟାନ୍ୟ ଭକ୍ତମାନେ ଚାରିପାଖରେ ବସିଲେ ।

## କେଦାରଙ୍କର କାକୁତି ଓ କ୍ଷମା ପ୍ରାର୍ଥନା ।
## ବିଜୟଙ୍କର ଦେବ ଦର୍ଶନ ।

କେଦାର କୃତାଞ୍ଜଳି ହୋଇ ଅତି ନମ୍ରଭାବରେ ଠାକୁରଙ୍କୁ କହୁଅଛନ୍ତି, ମାଫ୍ କରନ୍ତୁ, ଯେହେତୁ ଇତସ୍ତତଃ କରିଥିଲି ! କେଦାର ବୋଧହୁଏ ଭାବୁଅଛନ୍ତି, ଠାକୁର ଯେଉଁଠାରେ ଆହାର କରିଅଛନ୍ତି, ସେଠାରେ ମୁଁ କି ଛାର !

କେଦାରଙ୍କର କର୍ମସ୍ଥଳ ଢାକାରେ । ସେଠାରେ ଅନେକ ଭକ୍ତ ତାଙ୍କ ପାଖକୁ ଆସନ୍ତି ଓ ତାହାଙ୍କୁ ଖୁଆଇବାକୁ ସନ୍ଦେଶାଦି ନାନାରୂପ ଦ୍ରବ୍ୟ ଆନୟନ କରନ୍ତି । କେଦାର ସେହି ସକଳ କଥା ଠାକୁରଙ୍କୁ ନିବେଦନ କରୁଛନ୍ତି ।

କେଦାର (ବିନୀତ ଭାବରେ)—ଲୋକେ ଅନେକ ଖୁଆଇବାକୁ ଆସନ୍ତି । କଅଣ କରିବି ପ୍ରଭୁ, ହୁକୁମ କରନ୍ତୁ !

ଶ୍ରୀରାମକୃଷ୍ଣ—ଭକ୍ତ ହେଲେ ଚଣ୍ଡାଳର ଅନ୍ନ ଖିଆଯାଏ । ସାତବର୍ଷ ଉନ୍ମାଦ ପରେ କାମାରପୁକୁରକୁ ଗଲି । ସେତେବେଳେ କି ଅବସ୍ଥା ଯେ ଯାଇଛି ! ଖାନ୍କୀ ପର୍ଯ୍ୟନ୍ତ ଖୁଆଇଦେଲେ । ବର୍ତ୍ତମାନ କିନ୍ତୁ ପାରେ ନାହିଁ ।

କେଦାର (ବିଦାୟ ଗ୍ରହଣ ପୂର୍ବରୁ ମୃଦୁସ୍ୱରରେ)—ପ୍ରଭୁ, ଆପଣ ଶକ୍ତି ସଞ୍ଚାର କରନ୍ତୁ । ଅନେକ ଆସନ୍ତି । ମୁଁ କଅଣ ଜାଣେ ?

ଶ୍ରୀରାମକୃଷ୍ଣ—ହୋଇଯିବ ହେ ! ଆନ୍ତରିକ ଈଶ୍ୱରଙ୍କଠାରେ ମତି ରହିଲେ ହୋଇଯାଏ ।

କେଦାର ବିଦାୟ ନେବା ପୂର୍ବରୁ ବଙ୍ଗବାସୀ ପତ୍ରିକାର ସମ୍ପାଦକ ଶ୍ରୀଯୁକ୍ତ ଯୋଗେନ୍ଦ୍ର ପ୍ରବେଶ କଲେ ଓ ଠାକୁରଙ୍କୁ ପ୍ରଣାମ କରି ଆସନ ଗ୍ରହଣ କଲେ ।

ସାକାର ନିରାକାର ସମ୍ବନ୍ଧରେ କଥାବାର୍ତ୍ତା ହେଉଅଛି ।

ଶ୍ରୀରାମକୃଷ୍ଣ—ସେ ସାକାର, ନିରାକାର, ଆଉ କେତେ କଅଣ, ସେ ସବୁ

ଆମେମାନେ ଜାଣି ନାହୁଁ ! କେବଳ ନିରାକାର କହିଲେ କିପରି ହେବ ?

ଯୋଗେନ୍ଦ୍ର—ବ୍ରାହ୍ମସମାଜରେ ଗୋଟିଏ ଆଶ୍ଚର୍ଯ୍ୟ କଥା ! ବାର ବର୍ଷର ପିଲା, ସେ ମଧ୍ୟ ନିରାକାର ଦେଖୁଛି । ଆଦି ସମାଜର ସାକାରରେ ଏତେ ଆପତ୍ତି ନାହିଁ ! ସେମାନେ ପୂଜାରେ ଭଦ୍ରଲୋକଙ୍କ ଘରକୁ ଆସିପାରନ୍ତି ।

ଶ୍ରୀରାମକୃଷ୍ଣ (ସହାସ୍ୟରେ)—ଏ ଭଲ କଥା କହିଛନ୍ତି, ସେ ମଧ୍ୟ ନିରାକାର ଦେଖୁଛି ।

ଅଧର—ଶିବନାଥବାବୁ ସାକାର ମାନନ୍ତି ନାହିଁ ।

ବିଜୟ—ସେଇଟା ତାଙ୍କର ବୁଝିବା ଭୁଲ । ଠାକୁର ଯେପରି କହନ୍ତି, ବହୁରୂପୀ କେତେବେଳେ ଏ ରଙ୍ଗ କେତେବେଳେ ସେ ରଙ୍ଗ । ଯେ ଗଛ ତଳେ ବସିଥାଏ, ସେ ଠିକ୍ ଜାଣିପାରେ । ମୁଁ ଧ୍ୟାନ କରୁ କରୁ ଚଳଚ୍ଚିତ୍ର ପରି କେତେ ଦେବତା ସବୁ ଦେଖିଲି; ସେମାନେ କେତେ କଅଣ କହିଲେ । ମୁଁ କହିଲି, ତାଙ୍କ ପାଖକୁ ଯିବି ତେବେ ବୁଝିବି ।

ଶ୍ରୀରାମକୃଷ୍ଣ—ତୁମର ଠିକ୍ ଦେଖା ହୋଇଛି ।

କେଦାର—ଭକ୍ତଙ୍କ ପାଇଁ ସାକାର । ଭକ୍ତ ପ୍ରେମରେ ସାକାର ଦେଖେ । ଧ୍ରୁବ ଯେତେବେଳେ ଈଶ୍ୱରଙ୍କୁ ଦର୍ଶନ କଲେ, କହିଲେ, କୁଣ୍ଡଳ କାହିଁକି ଦୋହଲୁ ନାହିଁ ? ଈଶ୍ୱର କହିଲେ ତୁମେ ଦୋହଲାଇଲେ ଦୋହଲିବ !

ଶ୍ରୀରାମକୃଷ୍ଣ—ସବୁ ମାନିବାକୁ ହୁଏ ହେ । ନିରାକାର ସାକାର ସବୁ ମାନିବାକୁ ହୁଏ । କାଳୀମନ୍ଦିରରେ ଧ୍ୟାନ କରୁ କରୁ ରମଣୀ ବେଶ୍ୟାକୁ ଦେଖିଲି । କହିଲି, ମା' ତୁ ଏ ରୂପରେ ମଧ୍ୟ ଅଛୁ । ସେଥିପାଇଁ କହୁଛି, ସବୁ ମାନିବାକୁ ହୁଏ । ସେ କେତେବେଳେ କେଉଁ ରୂପରେ ଦେଖା ଦିଅନ୍ତି, ସାମନାକୁ ଆସନ୍ତି କହି ହୁଏନାହିଁ । ଏହା କହି ଠାକୁର ଗୀତ ଗାଇଲେ—

ଆସିଛନ୍ତି ଜଣେ ଭାବର ଠାକୁର ।

ବିଜୟ—ତାଙ୍କର ଅନନ୍ତ ଶକ୍ତି,—ଆଉ ସାକାର ରୂପରେ ଦେଖାଦେଇ ପାରନ୍ତି ନାହିଁ ? କି ଆଶ୍ଚର୍ଯ୍ୟ ! ମନୁଷ୍ୟ ଗୋଟିଏ ରେଣୁର ରେଣୁ ଏମାନେ ପୁଣି ଈଶ୍ୱରଙ୍କ ବିଷୟରେ ବିଚାର କରିବାକୁ ଯାଆନ୍ତି !

ଶ୍ରୀରାମକୃଷ୍ଣ—ଟିକିଏ ଗୀତା, ଟିକିଏ ଭାଗବତ, ଟିକିଏ ବେଦାନ୍ତ ପଢ଼ି ଲୋକେ ମନେକରନ୍ତି, ଆମେ ସବୁ ବୁଝି ପକାଇଛୁଁ । ଚିନି ପାହାଡ଼ ପାଖକୁ ଗୋଟାଏ ପିମ୍ପୁଡ଼ି ଯାଇଥିଲା । ଗୋଟାଏ ଦାନା ଚିନି ଖାଇ ତା'ର ପେଟ ଭରିଗଲା । ଆଉ ଗୋଟାଏ ଦାନା ମୁହଁରେ ଧରି ବସାକୁ ଫେରୁଛି । ଫେରିବା ସମୟରେ ଭାବୁଛି ପରେ ଆସି ଚିନି ପାହାଡ଼ଟିକୁ ନେଇଯିବି ! (ସମସ୍ତଙ୍କର ହାସ୍ୟ) ।



# ଚତୁର୍ଦ୍ଦଶ ପରିଚ୍ଛେଦ

## (୧)

## ଠାକୁର ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱର ମନ୍ଦିରରେ ଲାଟୁ, ମାଷ୍ଟର, ମଣିଲାଲ, ମୁଖାର୍ଜୀ ପ୍ରଭୃତି ଭକ୍ତଙ୍କ ସଙ୍ଗରେ ।

ଠାକୁର ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱର ମନ୍ଦିରରେ ଭକ୍ତଙ୍କ ସଙ୍ଗରେ ବସିଛନ୍ତି ।

ଆଜି ବୃହସ୍ପତିବାର, ୨ ତାରିଖ ଅକ୍ଟୋବର, ୧୮୮୪ ଖ୍ରୀଷ୍ଟାବ୍ଦ । ଆଶ୍ୱିନ ଶୁକ୍ଳ ଦ୍ୱାଦଶୀ—ତ୍ରୟୋଦଶୀ । ଶ୍ରୀଶ୍ରୀ ବିଜୟାଦଶମୀର ଦୁଇଦିନ ପରେ । ଗତକାଲି ଠାକୁର କଲିକତାରେ ଅଧରଙ୍କ ଘରଠାକୁ ଶୁଭାଗମନ କରିଥିଲେ । ସେଠାରେ ନାରାୟଣ, ବାବୁରାମ, ମାଷ୍ଟର, କେଦାର, ବିଜୟ ପ୍ରଭୃତି ଅନେକ ଥିଲେ । ଠାକୁର ଭକ୍ତଙ୍କ ସଙ୍ଗରେ କୀର୍ତ୍ତନାନନ୍ଦରେ ନୃତ୍ୟ କରିଥିଲେ ।

ଠାକୁରଙ୍କ ପାଖରେ ଆଜିକାଲି ଲାଟୁ, ରାମଲାଲ, ହରିଶ ରହନ୍ତି । ବାବୁରାମ ମଧ୍ୟ ମଝିରେ ମଝିରେ ଆସି ରହନ୍ତି । ଶ୍ରୀଯୁକ୍ତ ରାମଲାଲ ଶ୍ରୀଶ୍ରୀ ଭବତାରିଣୀଙ୍କର ସେବା କରନ୍ତି । ହାଜରା ମହାଶୟ ମଧ୍ୟ ଅଛନ୍ତି ।

ଆଜି ଶ୍ରୀଯୁକ୍ତ ମଣିଲାଲ ମଲ୍ଲିକ, ପ୍ରିୟ ମୁଖାର୍ଜୀ ଓ ତାଙ୍କର ଆତ୍ମୀୟ ହରି, ଶିବପୁରର ଜଣେ ବ୍ରାହ୍ମ (ଦାଢ଼ି ଅଛି), ବଡ଼ବଜାର ୧୨ ନମ୍ବର ମଲ୍ଲିକ ଷ୍ଟ୍ରୀଟ୍‌ର ମାରୁଆଡ଼ି ଭକ୍ତମାନେ ଉପସ୍ଥିତ ଅଛନ୍ତି । କ୍ରମେ ଦକ୍ଷିଣେଶ୍ୱରର କେତେଜଣ ଯୁବକ, ସିଁଥିର ମହେନ୍ଦ୍ର କବିରାଜ ପ୍ରଭୃତି ଭକ୍ତମାନେ ଆସିଲେ । ମଣିଲାଲ ପୁରାତନ ବ୍ରାହ୍ମଭକ୍ତ ।

### ବ୍ରାହ୍ମ ମଣିଲାଲଙ୍କୁ ଉପଦେଶ— 'ବିଦ୍ୱେଷଭାବ (Dogmatism) ତ୍ୟାଗ କର ।'

ଶ୍ରୀରାମକୃଷ୍ଣ (ମଣିଲାଲ ପ୍ରଭୃତିଙ୍କ ପ୍ରତି)—ମନେ ମନେ ପ୍ରଣାମ କରିବା ଭଲ । ପାଦ ଛୁଇଁବାର ଦରକାର ନାହିଁ । ଆଉ ମନେ ମନେ ପ୍ରଣାମ କଲେ କେହି କୁଣ୍ଠିତ ହେବେନାହିଁ ।

''ମୋର ଧର୍ମ ହିଁ ଠିକ୍, ଆଉ ସମସ୍ତଙ୍କର ମିଥ୍ୟା ଏ ଭାବ ଭଲ ନୁହେଁ ।''

''ମୁଁ ଦେଖେ, ସେ ହିଁ କେବଳ ସବୁ ହୋଇ ରହିଛନ୍ତି—ମନୁଷ୍ୟ, ପ୍ରତିମା, ଶାଳଗ୍ରାମ, ସମସ୍ତଙ୍କ ଭିତରେ ହିଁ ଏକ ଦେଖେ । ମୁଁ ଏକ ବ୍ୟତୀତ ଦୁଇ ଦେଖେନାହିଁ ।''

''ଅନେକ ମନେକରନ୍ତି ଆମ୍ଭମାନଙ୍କର ମତ ଠିକ୍, ଆଉ ସବୁ ଭୁଲ, ଆମ୍ଭେମାନେ ଜିତିଛୁ ଆଉ ସବୁ ହାରିଛନ୍ତି । କିନ୍ତୁ ଯେ ଆଗେଇ ଆସିଛି ସେ ହୁଏତ ଟିକକ ସକାଶେ ଅଟକି ଗଲା ! ଯେ ପଛରେ ପଡ଼ିଥିଲା ସେ ସେତେବେଳେ ଆଗେଇ ଗଲା । ଗୋଲକଧାମ

ଖେଳରେ, ଅନେକ ଆଗେଇ ଆସନ୍ତି, ତା'ପରେ ଗୋଟି ଆଗେଇ ପାରୁ ନାହିଁ !''

''ଜିତିବା ହାରିବା ତାଙ୍କ ହାତରେ । ତାଙ୍କର କାର୍ଯ୍ୟ କିଛି ବୁଝାଯାଏ ନାହିଁ । ଦେଖନାହିଁ, ପଇଡ଼ ଏତେ ଉଚ୍ଚରେ ଥାଏ, ଖରା ପାଏ, ତେବେ ମଧ୍ୟ ପାଣି ଥଣ୍ଡା ରହେ !— କିନ୍ତୁ ପାଣିଫଳ ଜଳରେ ଥିଲେ ମଧ୍ୟ ତାହାର ଗୁଣ ଗରମ ।''

''ମନୁଷ୍ୟର ଶରୀର ଦେଖ । ମୁଣ୍ଡ, ଯେଉଁଟି ମୂଳ ସେଇଟି ଉପରକୁ ରହିଛି ।''

## ଶ୍ରୀରାମକୃଷ୍ଣ, ଚାରି ଆଶ୍ରମ ଓ ଯୋଗ ତତ୍ତ୍ୱ । ବ୍ରାହ୍ମ ସମାଜ ଓ 'ମନଯୋଗ' ।

ମଣିଲାଲ—ବର୍ତ୍ତମାନ ଆମ୍ଭମାନଙ୍କର କର୍ତ୍ତବ୍ୟ କଅଣ ?

ଶ୍ରୀରାମକୃଷ୍ଣ—କୌଣସି ମତେ ତାଙ୍କ ସଙ୍ଗରେ ଯୋଗ ହୋଇ ରହିବା । ଦୁଇ ପଥ ଅଛି,—**କର୍ମଯୋଗ ଓ ମନଯୋଗ** ।

''ଯେଉଁମାନେ ଆଶ୍ରମରେ ଅଛନ୍ତି, ସେମାନଙ୍କର ଯୋଗ କର୍ମଦ୍ୱାରା । ଆଶ୍ରମ ଚାରି ଶ୍ରେଣୀର ଯଥା—ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ସନ୍ୟାସ । ସନ୍ୟାସୀମାନେ* କାମ୍ୟ କର୍ମ ତ୍ୟାଗ କରିବେ, କିନ୍ତୁ ନିତ୍ୟକର୍ମ କାମନାଶୂନ୍ୟ ହୋଇ କରିବେ ! ଦଣ୍ଡ-ଧାରଣ, ଭିକ୍ଷା କରିବା, ତୀର୍ଥଯାତ୍ରା, ପୂଜା, ଜପ ଏସବୁ କର୍ମଦ୍ୱାରା ତାଙ୍କ ସଙ୍ଗରେ ଯୋଗ ହୁଏ ।''

''ଯାହା ହେଉ, ଯେଉଁ କର୍ମ ହିଁ କର, ଫଳାକାଂକ୍ଷା ତ୍ୟାଗ କରି କାମନାଶୂନ୍ୟ ହୋଇ କରିପାରିଲେ ତାଙ୍କ ସଙ୍ଗରେ ଯୋଗ ହୁଏ ।''

''ପୁଣି ଗୋଟିଏ ପଥ ମନୋଯୋଗ । ଏପରି ଯୋଗୀଙ୍କର ବାହାରର କୌଣସି ଚିହ୍ନ ନ ଥାଏ । ଅନ୍ତରେ ଯୋଗ । ଯେପରି ଜଡ଼ ଭରତ, ଶୁକଦେବ । ଏହିପରି କେତେକ ଅଛନ୍ତି-ଏମାନେ ନାମକରା । ଏମାନଙ୍କର କେଶ ଦାଢ଼ି ଯେପରି ସେହିପରି ଥାଏ ।''

''ପରମହଂସ ଅବସ୍ଥାରେ କର୍ମ ଉଠିଯାଏ । ସ୍ମରଣ ମନନ ଥାଏ । ସର୍ବଦା ହିଁ ମନରେ ଯୋଗ । ଯଦି କର୍ମ କରେ ତାହା ଲୋକଶିକ୍ଷା ପାଇଁ ।''

''କର୍ମ ଦ୍ୱାରା ଯୋଗ ହେଉ କିମ୍ବା ମନ ଦ୍ୱାରା ଯୋଗ ହେଉ, ଭକ୍ତି ଥିଲେ ସବୁ ଜାଣିହୁଏ ।''

---

* କାମ୍ୟାନାଂ କର୍ମଣାଂ ନ୍ୟାସଂ ସନ୍ୟାସଂ କବୟୋଃ ବିଦୁଃ ।
ସର୍ବକର୍ମ – ଫଳତ୍ୟାଗଂ ପ୍ରାହୁସ୍ତ୍ୟାଗଂ ବିଚକ୍ଷଣାଃ ।
ତ୍ୟାଜ୍ୟଂ ଦୋଷବଦିତ୍ୟେକେ କର୍ମ ପ୍ରାହୁର୍ମନୀଷିଣଃ ।
ଯଜ୍ଞଦାନତପଃକର୍ମ ନ ତ୍ୟାଜ୍ୟମିତି ଚାପରେ ।। ଗୀତା, ୧୮, ୨-୩

"ଭକ୍ତିରେ କୁମ୍ଭକ ଆପେ ହୁଏ । ମନ ଏକାଗ୍ର ହେବାମାତ୍ରେ ବାୟୁ ସ୍ଥିର ହୁଏ ଏବଂ ବାୟୁ ସ୍ଥିର ହେଲେ ମନ ଏକାଗ୍ର ହୁଏ, ବୁଦ୍ଧି ସ୍ଥିର ହୁଏ ସେ ନିଜେ ଜାଣିପାରେ ନାହିଁ ।"

## ପୂର୍ବକଥା—

## ସାଧନାବସ୍ଥାରେ ଜଗନ୍ମାତାଙ୍କ ପାଖରେ ପ୍ରାର୍ଥନା । ଭକ୍ତିଯୋଗ ।

"ଭକ୍ତିଯୋଗରେ ସବୁ ମିଳେ । ମୁଁ ମାଆଙ୍କ ପାଖରେ କାନ୍ଦି କାନ୍ଦି କହିଲି, 'ମା', ଯୋଗୀମାନେ ଯୋଗ କରି ଯାହା ଜାଣିଛନ୍ତି, ଜ୍ଞାନୀମାନେ ବିଚାର କରି ଯାହା ଜାଣିଛନ୍ତି ତାହା ମୋତେ ଜଣାଇଦିଅ ।' ମାଆ ମୋତେ ସବୁ ଦେଖାଇ ଦେଇଛନ୍ତି । ବ୍ୟାକୁଳ ହୋଇ ତାଙ୍କ ପାଖରେ କାନ୍ଦିଲେ ସେ ସବୁ ଜଣାଇ ଦିଅନ୍ତି । ବେଦ, ବେଦାନ୍ତ , ପୁରାଣ, ତନ୍ତ୍ର—ଏହି ଶାସ୍ତ୍ରଗୁଡ଼ିକରେ ଯାହା ଅଛି, ସେ ମୋତେ ସବୁ ଜଣାଇ ଦେଇଛନ୍ତି ।"

ମଣିଲାଲ—ହଠଯୋଗ କଅଣ ?

ଶ୍ରୀରାମକୃଷ୍ଣ—ହଠଯୋଗୀମାନେ ଦେହାଭିମାନୀ ସାଧୁ । କେବଳ ନେତି ଧୌତି କରନ୍ତି—କେବଳ ଦେହର ଯତ୍ନ । ସେମାନଙ୍କର ଉଦ୍ଦେଶ୍ୟ ଆୟୁ ବୃଦ୍ଧି କରିବା । ରାତି ଦିନ ଦେହର ଯତ୍ନ । ଏହା ଭଲ ନୁହେଁ ।

## ମଣି ମଲ୍ଲିକ, ସଂସାରୀ ଓ ମନରେ ତ୍ୟାଗ ।
## କେଶବ ସେନଙ୍କର କଥା ।

"ତୁମ୍ଭମାନଙ୍କର କର୍ତ୍ତବ୍ୟ କଅଣ ? ତୁମ୍ଭେମାନେ ମନରେ କାମିନୀ-କାଞ୍ଚନ ତ୍ୟାଗ କରିବ । ତୁମ୍ଭେମାନେ ସଂସାରକୁ କାକବିଷ୍ଠା ବୋଲି କହିପାରିବ ନାହିଁ ।"

"ଗୋସ୍ୱାମୀମାନେ ଗୃହସ୍ଥ, ତେଣୁ ମୁଁ ସେମାନଙ୍କୁ କହିଲି, 'ତୁମ୍ଭମାନଙ୍କର ଠାକୁର ସେବା ରହିଛି, ତୁମ୍ଭେମାନେ ସଂସାର ତ୍ୟାଗ କିପରି କରିବ ? ତୁମ୍ଭେମାନେ ସଂସାରକୁ ମାୟା ବୋଲି ଉଡ଼ାଇ ଦେଇପାରିବ ନାହିଁ' ।"

"ସଂସାରୀମାନଙ୍କର ଯାହା କର୍ତ୍ତବ୍ୟ ତାହା ଚୈତନ୍ୟଦେବ କହିଥିଲେ—**'ଜୀବରେ ଦୟା, ବୈଷ୍ଣବ-ସେବା, ନାମ-ସଂକୀର୍ତ୍ତନ'** ।"

"କେଶବ ଥରେ ମୋ ବିଷୟରେ କହିଥିଲେ,—'ସେ ବର୍ତ୍ତମାନ ଆମକୁ 'ଦୁଇହିଁ କର' ବୋଲି କହୁଛନ୍ତି । କିନ୍ତୁ ଦିନେ ହଠାତ୍ କାମୁଡ଼ିଦେବେ ।' ଏହା ଠିକ୍ ନୁହେଁ—କାମୁଡ଼ିବି କାହିଁକି ?"

ମଣି ମଲ୍ଲିକ—ତାହାହେଲେ କାମୁଡ଼ନ୍ତୁ ।

ଶ୍ରୀରାମକୃଷ୍ଣ (ସହାସ୍ୟରେ)—କାହିଁକି ? ତୁମେ ତ ଗୃହସ୍ଥ ଅଛ । ତୁମର ତ୍ୟାଗ କରିବାର କି ଦରକାର ?

## (୨)

## ଆଚାର୍ଯ୍ୟଙ୍କର କାମିନୀ–କାଞ୍ଚନ ତ୍ୟାଗ, ତେବେ ଯାଇ ଲୋକଶିକ୍ଷାରେ ଅଧିକାର । ସନ୍ନ୍ୟାସୀଙ୍କ ପାଇଁ କଠିନ ନିୟମ । ବ୍ରାହ୍ମ ମଣି ମଲ୍ଲିକଙ୍କୁ ଶିକ୍ଷା ।

ଯାହାଙ୍କ ଦ୍ୱାରା ସେ ଲୋକଶିକ୍ଷା ଦେବେ, ସେମାନଙ୍କ ପକ୍ଷରେ ସଂସାର ତ୍ୟାଗ କରିବା ଦରକାର । ଯେ ଆଚାର୍ଯ୍ୟ, ସେ କାମିନୀ କାଞ୍ଚନ ତ୍ୟାଗୀ ହେବା ଦରକାର । ତା' ନ ହେଲେ କେହି ଉପଦେଶ ଗ୍ରହଣ କରିବେ ନାହିଁ । କେବଳ ଭିତରେ ତ୍ୟାଗ ହେଲେ ହେବ ନାହିଁ । ବାହାରେ ମଧ ତ୍ୟାଗ ପ୍ରୟୋଜନ, ତେବେ ଯାଇ ଲୋକଶିକ୍ଷା ହେବ । ତାହା ନ ହେଲେ ଲୋକମାନେ ମନେ କରନ୍ତି ଏ କାମିନୀ କାଞ୍ଚନ ତ୍ୟାଗ କରିବାକୁ କହୁଛନ୍ତି, କିନ୍ତୁ ନିଜେ ଭିତରେ ଭିତରେ ଏହିସବୁ ଭୋଗ କରନ୍ତି ।

''ଜଣେ କବିରାଜ ଔଷଧ ଦେଇ ରୋଗୀକୁ କହିଲେ, ତୁମେ ଆଉ ଦିନେ ଆସ, ଖାଇବା ପିଇବାର କଥା କହିଦେବି । ସେଦିନ ତାଙ୍କ ଘରେ କେତେ ମାଠିଆ ଗୁଡ଼ ଥିଲା । ରୋଗୀର ଘର ଅନେକ ଦୂରରେ । ସେ ଆଉ ଦିନେ ଆସି ଦେଖାକଲେ । କବିରାଜ କହିଲେ, 'ଖାଇବା ପିଇବାରେ ସାବଧାନ ରହିବ, ଗୁଡ଼ ଖାଇବା ଭଲ ନୁହେଁ ।' ରୋଗୀ ଚାଲିଯିବା ପରେ ଅନ୍ୟଜଣେ ବୈଦ୍ୟଙ୍କୁ କହିଲେ, 'ତାଙ୍କୁ ଏତେ କଷ୍ଟ ଦେଇ ଅଣାଇଲ କାହିଁକି ? ସେହି ଦିନ କହିଦେଇଥିଲେ ତ ହୋଇଥାଆନ୍ତା । ।' ବୈଦ୍ୟ ହସି କହିଲେ, ଏହାର ମାନେ ଅଛି । ସେଦିନ ଘରେ କେତେ ହାଣ୍ଡି ଗୁଡ଼ ଥିଲା ସେଦିନ ଯଦି କହି ଥାଆନ୍ତି, ରୋଗୀର ବିଶ୍ୱାସ ହୋଇନଥାନ୍ତା । ସେ ମନେ କରିଥାଆନ୍ତା, 'ଏହାଙ୍କ ଘରେ ଯେତେବେଳେ ଏତେ ହାଣ୍ଡି ଗୁଡ଼ ଅଛି, ଏ ନିଶ୍ଚୟ କିଛି କିଛି ଖାଉଥିବେ । ତାହାହେଲେ ଗୁଡ଼ ଜିନିଷଟା ଏପରି ଖରାପ ନୁହେଁ ।' ଆଜି ମୁଁ ଗୁଡ଼ ମାଠିଆଗୁଡ଼ିକ ଲୁଚାଇ ଦେଇଛି, ତେଣୁ ବର୍ତ୍ତମାନ ବିଶ୍ୱାସ ହେବ ।''

''ଆଦି ସମାଜର ଆଚାର୍ଯ୍ୟଙ୍କୁ ଦେଖିଲି । ପରେ ଶୁଣିଲି କଅଣ ନା ସେ ଦ୍ୱିତୀୟ କିମ୍ବା ତୃତୀୟ ପକ୍ଷ ବିବାହ କରିଛନ୍ତି ! ପୁଅମାନେ ବଡ଼ ବଡ଼ !''

''ଏହିମାନେ ପୁଣି ଆଚାର୍ଯ୍ୟ ! ଏମାନେ ଯଦି କହନ୍ତି, 'ଈଶ୍ୱର ସତ୍ୟ ଆଉ ସବୁ ମିଥ୍ୟା' କିଏ କାହିଁକି ବିଶ୍ୱାସ କରିବ ! ଏମାନଙ୍କ ଶିଷ୍ୟ ଯେପରି ହେବେ, ବୁଝିପାରୁଥିବ ।''

''ହଗୁରା ଗୁରୁକୁ ପାରୁଡ଼ା ଶିଷ୍ୟ ! ସନ୍ନ୍ୟାସୀମାନେ ଯଦି କେବଳ ମନରେ ତ୍ୟାଗ କରନ୍ତି ଏବଂ ବାହାରେ କାମିନୀ କାଞ୍ଚନ ନେଇ ରହନ୍ତି, ତାହାଦ୍ୱାରା ଲୋକଶିକ୍ଷା ହୁଏନାହିଁ । ଲୋକେ କହିବେ, ଲୁଚାଇ ଲୁଚାଇ ଗୁଡ଼ ଖାଆନ୍ତି ।''

## ଶ୍ରୀରାମକୃଷ୍ଣଙ୍କର କାଞ୍ଚନ ତ୍ୟାଗ ।
## କବିରାଜଙ୍କର ପାଞ୍ଚଟଙ୍କା ପ୍ରତ୍ୟର୍ପଣ ।

"ସିଁଥିର ମହେନ୍ଦ୍ର କବିରାଜ ରାମଲାଲକୁ ପାଞ୍ଚଟା ଟଙ୍କା ଦେଇଥିଲେ—ମୁଁ ଜାଣି ନ ଥିଲି ।"

"ରାମଲାଲ କହିବାରୁ, ମୁଁ ପ୍ରଶ୍ନ କଲି, କାହାପାଇଁ ଦେଇଛନ୍ତି ? ସେ କହିଲା, ମୋ ପାଇଁ । ପ୍ରଥମେ ଭାବିଲି ଦୁଧର ଦାମ୍ ବାକୀ ଅଛି, ସେଇଟା ଦିଆଯିବ । ରାତିରେ ଟିକିଏ ଶୋଇଛି କି ନାହିଁ ଧଡ଼ପଡ଼ ହୋଇ ଉଠିପଡ଼ିଲି । ଛାତିରେ ଯେପରି ବିରାଡ଼ି ଆଞ୍ଚୁଡ଼ୁଛି । ରାମଲାଲକୁ ସେତେବେଳେ ପୁଣି ପଚାରିଲି—ତୋର ଖୁଡ଼ି ପାଇଁ କଅଣ ଟଙ୍କା ଦେଇଛନ୍ତି ?' ସେ କହିଲା 'ନା' । ସେତେବେଳେ ତାକୁ କହିଲି, 'ତୁ ଏବେ ଯାଇ ଫେରାଇ ଦେଇ ଆସ ।' ରାମଲାଲ ତା' ପରଦିନ ଟଙ୍କା ଫେରାଇଦେଲା ।"

"ସନ୍ନ୍ୟାସୀ ପକ୍ଷରେ ଟଙ୍କା ନେବା ବା ଲୋଭରେ ଆସକ୍ତ ହେବା କିପରି ଜାଣ ? ଯେପରି ବିଧବା ବ୍ରାହ୍ମଣୀ ଅନେକ ଦିନ ହବିଷ୍ୟ ଖାଇ ବ୍ରହ୍ମଚର୍ଯ୍ୟ ପାଳି ପରେ କୈବର୍ତ୍ତକୁ ଉପପତି କରିଥିଲା ।" (ସମସ୍ତେ ସ୍ତମ୍ଭିତ) ।

"କାମାରପୁକୁରରେ ଭଗୀ ତେଲୀର ଶିଷ୍ୟ ସାମନ୍ତ ହେଲେ । ଶୂଦ୍ରକୁ ସମସ୍ତେ ପ୍ରଣାମ କରିବା ଦେଖି, ଜମିଦାର ଗୋଟାଏ ଦୁଷ୍ଟ ଲୋକକୁ ଲଗାଇଦେଲେ । ସେ ଯାଇ ତାହାର ଧର୍ମ ନଷ୍ଟ କରିଦେଲା । ସାଧନ ଭଜନ ସବୁ ବ୍ୟର୍ଥ ହେଲା । ପତିତ ସନ୍ନ୍ୟାସୀ ସେହିପରି ।"

## ସାଧୁସଙ୍ଗର ପରେ ଶ୍ରଦ୍ଧା ।
## କେଶବ ସେନ ଓ ବିଜୟକୃଷ୍ଣ ଗୋସ୍ୱାମୀ ।

"ତୁମେମାନେ ସଂସାରରେ ଅଛ, ତୁମମାନଙ୍କର ସାଧୁସଙ୍ଗ ଦରକାର ।"

"ଆଗେ ସାଧୁସଙ୍ଗ, ତାହା ପରେ ଶ୍ରଦ୍ଧା । ସାଧୁମାନେ ଯଦି ତାଙ୍କର ନାମଗୁଣ କୀର୍ତ୍ତନ ନ କରନ୍ତି, ତାହାହେଲେ ଲୋକଙ୍କର କିପରି ଈଶ୍ୱରଙ୍କ ଠାରେ ଶ୍ରଦ୍ଧା, ବିଶ୍ୱାସ, ଭକ୍ତି ହେବ ? ତିନି ପୁରୁଷ ଧରି ଧନୀ ବୋଲି ଜାଣିଲେ ତେବେ ତ ଲୋକମାନେ ମାନିବେ ?"

(ମାଷ୍ଟରଙ୍କ ପ୍ରତି)—"ଜ୍ଞାନ ହେଲେ ମଧ୍ୟ ସର୍ବଦା ଅନୁଶୀଳନ ପ୍ରୟୋଜନ । ଲଙ୍ଗୁଳୀ କହୁଥିଲେ, ଲୋଟା ଦିନେ ମାଜିଲେ କଅଣ ହେବ—ପକାଇ ରଖିଲେ ପୁଣି କଳଙ୍କି ଲାଗିଯିବ ।"

"ତୁମେ ଘରକୁ ଥରେ ଯିବାକୁ ହେବ । ତୁମର ବୈଠକଖାନାଟା ଜଣାଥିଲେ, ସେଠାରେ ଅନ୍ୟ ଭକ୍ତମାନଙ୍କ ସଙ୍ଗରେ ମଧ୍ୟ ଦେଖାହେବ । ଈଶାନଙ୍କ ପାଖକୁ ଥରେ ଯିବି ।"

(ମଣିଲାଲଙ୍କ ପ୍ରତି)—"'କେଶବ ସେନଙ୍କ ମା' ଆସିଥିଲେ । ତାଙ୍କ ଘରର ଯୁବକମାନେ ହରିନାମ କଲେ । ସେ ସେମାନଙ୍କୁ ପ୍ରଦକ୍ଷିଣ କରି ହାତତାଳି ଦେବାକୁ ଲାଗିଲେ । ଦେଖିଲି ଶୋକରେ କାତର ହୁଅନ୍ତି ନାହିଁ । ଏଠାରେ ଆସି ଏକାଦଶୀ କଲେ, ମାଳାଟି ନେଇ ଜପ କରନ୍ତି । ତାଙ୍କର ବେଶ୍ ଭକ୍ତି ଦେଖିଲି ।"

ମଣିଲାଲ—କେଶବବାବୁ ପିତାମହ ରାମକମଳ ସେନ ଭକ୍ତ ଥିଲେ । ତୁଳସୀ କାନନ ମଧ୍ୟରେ ବସି ନାମ କରୁଥିଲେ । କେଶବଙ୍କର ବାପା ପ୍ୟାରୀମୋହନ ମଧ୍ୟ ବୈଷ୍ଣବ ଭକ୍ତ ଥିଲେ ।

ଶ୍ରୀରାମକୃଷ୍ଣ—ବାପା ଏପରି ନ ହୋଇଥିଲେ ପୁଅ ଏପରି ଭକ୍ତ ହୁଏ ନାହିଁ । ଦେଖୁନାହଁ ବିଜୟଙ୍କର ଅବସ୍ଥା ।

"ବିଜୟଙ୍କର ବାପା ଭାଗବତ ପଢୁ ପଢୁ ଭାବରେ ଅଜ୍ଞାନ ହୋଇ ଯାଉଥିଲେ । ବିଜୟ ମଝିରେ ମଝିରେ 'ହରି ! ହରି !' କହି ଉଠିପଡ଼ନ୍ତି ।"

"ଆଜିକାଲି ବିଜୟ ଯାହାସବୁ ଈଶ୍ୱରୀୟ ରୂପ ଦର୍ଶନ କରନ୍ତି, ସେସବୁ ଠିକ୍‌ଠିକ୍ ।"

"ସାକାର ନିରାକାର କଥା ବିଜୟ କହନ୍ତି—ଯେପରି ବହୁରୂପୀ ରଙ୍ଗ ଲାଲ, ନୀଳ, ସବୁଜ ମଧ୍ୟ ହେଉଛି—ପୁଣି କୌଣସି ରଙ୍ଗ ନାହିଁ । କେତେବେଳେ ସଗୁଣ କେତେବେଳେ ନିର୍ଗୁଣ ।"

## ବିଜୟ ସରଳ । ସରଳ ହେଲେ ଈଶ୍ୱର ଲାଭ ହୁଏ ।

"ବିଜୟ ବେଶ୍ ସରଳ । ଖୁବ୍ ଉଦାର ଓ ସରଳ ନହେଲେ ଈଶ୍ୱର ଲାଭ ହୁଏ ନାହିଁ ।"

"ବିଜୟ କାଲି ଅଧର ସେନଙ୍କ ଘରକୁ ଯାଇଥିଲେ । ସେଠାରେ ଯେପରି ଆପଣାର ଘର—ସମସ୍ତେ ଯେପରି ଆପଣାର ।"

"ବିଷୟ ବୁଦ୍ଧ ନ ଗଲେ କେହି ଉଦାର ଓ ସରଳ ହୁଅନ୍ତି ନାହିଁ ।"

ଏହା କହି ଠାକୁର ଗୀତ ଗାଉଅଛନ୍ତି—

**"ଅମୂଲ୍ୟଧନ ପାଇବୁ ମନ ହେଲେ ଖାଣ୍ଟି ।"**

"ଚିକ୍‌କଣ ମାଟି ନ ହେଲେ ହାଣ୍ଡି ଫାଟିଯାଏ । ତେଣୁ କୁମ୍ଭାର ଆଗେ ମାଟିକୁ ବାଛି ଚିକ୍‌କଣ କରେ ।"

"ଦର୍ପଣରେ ମଇଳା ଥିଲେ ମୁଖ ଦେଖାଯାଏ ନାହିଁ । ଚିତ୍ତ ଶୁଦ୍ଧି ନହେଲେ ସ୍ୱସ୍ୱରୂପ ଦର୍ଶନ ହୁଏନାହିଁ ।"

"ଦେଖୁ ନା, ଯେଉଁଠାରେ ଅବତାର ସେହିଠାରେ ହିଁ ସରଳତା । ନନ୍ଦଘୋଷ, ଦଶରଥ, ବସୁଦେବ—ଏମାନେ ସବୁ ସରଳ ଥିଲେ ।"

"ବେଦାନ୍ତରେ କହିଛି, ଶୁଦ୍ଧ ବୁଦ୍ଧି ନ ହେଲେ ଈଶ୍ୱରଙ୍କୁ ଜାଣିବାକୁ ଇଚ୍ଛା ହୁଏନାହିଁ । ଶେଷ ଜନ୍ମ ବା ଅନେକ ତପସ୍ୟା ନଥିଲେ କେହି ଉଦାର, ସରଳ ହୁଅନ୍ତି ନାହିଁ ।"

## (୩)

## ଶ୍ରୀରାମକୃଷ୍ଣଙ୍କର ବାଳକର ଅବସ୍ଥା ।

ଠାକୁରଙ୍କର ପାଦ ଟିକିଏ ଫୁଲାଫୁଲା ବୋଧ ହେବାରୁ ସେ ବାଳକପରି ଚିନ୍ତିତ ଅଛନ୍ତି ।

ସିଁଥିର ମହେନ୍ଦ୍ର କବିରାଜ ଆସି ପ୍ରଣାମ କଲେ ।

ଶ୍ରୀରାମକୃଷ୍ଣ (ପ୍ରିୟ ମୁଖାର୍ଜୀ ପ୍ରଭୃତି ଭକ୍ତମାନଙ୍କ ପ୍ରତି)—କାଲି ନାରାୟଣକୁ କହିଲି, ତୋର ପାଦ ଚିପି ଦେଖ ତ ଖାଲ ହୁଏ କି ନାହିଁ । ସେ ଚିପି ଦେଖିଲା ଯେ, ଖାଲ ହେଲା, ତେଣୁ ନିଶ୍ଚିନ୍ତ ହେଲି—(ମୁଖାର୍ଜୀଙ୍କ ପ୍ରତି) ତୁମେ ଥରେ ତୁମର ପାଦ ଚିପି ଦେଖ ତ । ଖାଲ ହେଉଛି ?"

ମୁଖାର୍ଜୀ—ଆଜ୍ଞା ହଁ ।

ଶ୍ରୀରାମକୃଷ୍ଣ—ଓଃ ରକ୍ଷା !

ମଣି ମଲ୍ଲିକ—କାହିଁକି ? ଆପଣ ସ୍ରୋତ ଜଳରେ ଗାଧୋଇବେ । ଔଷଧ କାହିଁକି ଖାଇବେ ?

ଶ୍ରୀରାମକୃଷ୍ଣ— ନାହିଁ ହେ, ତୁମମାନଙ୍କର ରକ୍ତ ଜୋର ଅଛି, — ତୁମମାନଙ୍କର ଅଲଗା କଥା !

### "ମୋତେ ବାଳକ ଅବସ୍ଥାରେ ରଖିଛନ୍ତି ।"

"ଘାସ ବଣରେ ଦିନେ କଅଣ କାମୁଡ଼ିଲା । ମୁଁ ଶୁଣିଥିଲି ସାପ ଯଦି ପୁଣି କାମୁଡ଼େ, ତା'ହେଲେ ବିଷ ଟାଣିନିଏ । ତେଣୁ ଗର୍ତ୍ତରେ ହାତ ପୁରାଇ ରହିଲି । ଜଣେ ଆସି କହିଲା—ସେପରି କଅଣ କରୁଛନ୍ତି ? ଯଦି ସାପ କାମୁଡ଼ା ଜାଗାରେ ପୁଣି କାମୁଡ଼େ, ତାହାହେଲେ ଭଲ ହେବ । ଅନ୍ୟ ଜାଗାରେ କାମୁଡ଼ିଲେ ହେବନାହିଁ ।"

"ଶୁଣିଥିଲି ଶରତ ଋତୁର କାକର ଭଲ । କଲିକତାରୁ ଗାଡ଼ିରେ ଆସିବା ସମୟରେ ମୁଣ୍ଡ ବାହାରକୁ ବାହାର କରି ଥଣ୍ଡା ଲଗାଇବାକୁ ଲାଗିଲି ।" (ସମସ୍ତଙ୍କର ହାସ୍ୟ) ।

(ସିଁଥିର ମହେନ୍ଦ୍ରଙ୍କ ପ୍ରତି)—"ତୁମ୍ଭମାନଙ୍କର ସହିଁତିର ସେହି ପଣ୍ଡିତଟି ଭଲ । ବେଦାନ୍ତ ବାଗୀଶ । ମୋତେ ମାନନ୍ତି । ଯେତେବେଳେ କହିଲି, ତୁମେ ଅନେକ ପଢ଼ିଛ, କିନ୍ତୁ 'ମୁଁ ଅମୁକ ପଣ୍ଡିତ' ଏ ଅଭିମାନ ତ୍ୟାଗ କର, ସେତେବେଳେ ତାଙ୍କର ଖୁବ୍ ଆହ୍ଲାଦ ।"

"ତାଙ୍କ ସଙ୍ଗରେ ବେଦାନ୍ତର କଥା ହେଲା ।"

## ମାଷ୍ଟରଙ୍କୁ ଶିକ୍ଷା । ଶୁଦ୍ଧ ଆତ୍ମା, ଅବିଦ୍ୟା, ବ୍ରହ୍ମମାୟା । ବେଦାନ୍ତ ବିଚାର ।

(ମାଷ୍ଟରଙ୍କ ପ୍ରତି)—"ଯେ ଶୁଦ୍ଧ ଆତ୍ମା, ସେ ନିର୍ଲିପ୍ତ । ତାଙ୍କଠାରେ ମାୟା ବା ଅବିଦ୍ୟା ଅଛି । ଏହି ମାୟା ଭିତରେ ତିନିଗୁଣ ରହିଛି—ସତ୍ତ୍ୱ, ରଜଃ, ତମଃ । ଯେ ଶୁଦ୍ଧାତ୍ମା ତାଙ୍କ ଭିତରେ ଏହି ତିନିଗୁଣ ରହିଛି, ଅଥଚ ସେ ନିର୍ଲିପ୍ତ । ଅଗ୍ନିରେ ନୀଳ ରଙ୍ଗ ପକାଅ, ନୀଳ ଦେଖାଯିବ, ଲାଲ ରଙ୍ଗ ପକାଅ, ଲାଲଶିଖା ଦେଖାଯିବ । କିନ୍ତୁ ଅଗ୍ନିର ନିଜର କୌଣସି ରଙ୍ଗ ନାହିଁ ।

"ଜଳରେ ନୀଳରଙ୍ଗ ପକାଇଦିଅ, ନୀଳ ଜଳ ହେବ । ପୁଣି ଫିଟିକିରି ପକାଇ ଦେଲେ ଜଳର ପୂର୍ବ ରଙ୍ଗ ହେବ ।"

"ଚଣ୍ଡାଳ ମାଂସର ଭାର ନେଇଯାଉଛି--ସେ ଶଙ୍କରଙ୍କୁ ଛୁଇଁଥିଲା ! ଶଙ୍କର ଯହୁଁ କହିଲେ, ମୋତେ ଛୁଇଁଲୁ ! ଚଣ୍ଡାଳ କହିଲା, ମହାଶୟ, ମୁଁ ତୁମଙ୍କୁ ଛୁଇଁନାହିଁ,— ତୁମେ ମଧ୍ୟ ମୋତେ ଛୁଇଁନାହଁ ! ତୁମେ **ଶୁଦ୍ଧ ଆତ୍ମା—ନିର୍ଲିପ୍ତ !"**

"ଜଡ଼ ଭରତ ଏହିସବୁ କଥା ରାଜା ରଘୁଗଣଙ୍କୁ କହିଥିଲେ ।"

ଶୁଦ୍ଧ-ଆତ୍ମା ନିର୍ଲିପ୍ତ । ଆଉ ଶୁଦ୍ଧା ଆତ୍ମାଙ୍କୁ ଦେଖାଯାଏ ନାହିଁ । ଜଳରେ ଲବଣ ମିଶ୍ରିତ ରହିଲେ ଲବଣକୁ ଚକ୍ଷୁ ଦ୍ୱାରା ଦେଖାଯାଏ ନାହିଁ ।

"ଯେ ଶୁଦ୍ଧ ଆତ୍ମା, ସେ **ମହାକାରଣ**—କାରଣର କାରଣ । ସ୍ଥୂଳ, ସୂକ୍ଷ୍ମ, କାରଣ, ମହାକାରଣ । ପଞ୍ଚଭୂତ ସ୍ଥୂଳ । ମନ ବୁଦ୍ଧି ଅହଂକାର, ସୂକ୍ଷ୍ମ । ପ୍ରକୃତି ବା ଆଦ୍ୟାଶକ୍ତି ସମସ୍ତଙ୍କର କାରଣ । ବ୍ରହ୍ମ ବା ଶୁଦ୍ଧାତ୍ମା କାରଣର କାରଣ ।"

**"ଏହି ଶୁଦ୍ଧ ଆତ୍ମା ହିଁ ଆମ୍ଭମାନଙ୍କର ସ୍ୱରୂପ !"**

"ଜ୍ଞାନ କାହାକୁ କହନ୍ତି ? ଏହି ସ୍ୱସ୍ୱରୂପକୁ ଜାଣିବା ଓ ସେଥିରେ ମନ ରଖିବା ! ଏହି ଶୁଦ୍ଧ ଆତ୍ମାକୁ ଜାଣିବାକୁ ହେବ ।"

## କର୍ମ କେତେଦିନ ?

"କର୍ମ କେତେ ଦିନ ? ଯେତେଦିନ ପର୍ଯ୍ୟନ୍ତ ଦେହାଭିମାନ ଅର୍ଥାତ୍ ଦେହ ହିଁ ମୁଁ ଏହି ବୁଦ୍ଧି ଥାଏ ।" ଗୀତାରେ ଏହି କଥା ଅଛି ।*

"ଦେହରେ ଆତ୍ମାବୁଦ୍ଧି କରିବା ହିଁ ଅଜ୍ଞାନ ।"

(ଶିବପୁରର ବ୍ରାହ୍ମଭକ୍ତଙ୍କ ପ୍ରତି) ଆପଣ କ'ଣ ବ୍ରାହ୍ମ ?

ବ୍ରାହ୍ମ—ଆଜ୍ଞା ହଁ ।

ଶ୍ରୀରାମକୃଷ୍ଣ (ସହାସ୍ୟରେ)—ମୁଁ ନିରାକାର ସାଧକର ଆଖି ଦେଖିଲେ ବୁଝିପାରେ । ଆପଣ ଟିକିଏ ବୁଡ଼ ଦିଅନ୍ତୁ । ଉପରେ ଭାସିଲେ ରତ୍ନ ମିଳେ ନାହିଁ । ମୁଁ ସାକାର ନିରାକାର ସବୁ ମାନେ ।

## ମାରୁଆଡ଼ି ଭକ୍ତ ଓ ଠାକୁର ଶ୍ରୀରାମକୃଷ୍ଣ । ଜୀବାତ୍ମା । ଚିତ୍ତ ।

ବଡ଼ ବଜାରର ମାରୁଆଡ଼ି ଭକ୍ତମାନେ ପ୍ରଣାମ କଲେ । ଠାକୁର ସେମାନଙ୍କୁ ପ୍ରଶଂସା କରୁଅଛନ୍ତି ।

---

* ନହି ଦେହଭୃତା ଶକ୍ୟଂ ତ୍ୟକ୍ତୁଂ କର୍ମଣ୍ୟଶେଷତଃ ।
ଯସ୍ତୁ କର୍ମ-ଫଳତ୍ୟାଗୀ ସ ତ୍ୟାଗୀତ୍ୟଭିଧୀୟତେ ।।

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)—ଆହା ! ଏମାନେ ଯେ ଭକ୍ତ । ସମସ୍ତେ ମନ୍ଦିରକୁ ଯାଆନ୍ତି, ସ୍ତବ କରନ୍ତି ଓ ପ୍ରସାଦ ସେବନ କରନ୍ତି । ସେମାନେ ଏବର୍ଷ ଯେଉଁ ପୁରୋହିତଙ୍କୁ ରଖିଛନ୍ତି, ସେ ଜଣେ ଭାଗବତରେ ପଣ୍ଡିତ ।

ମାରୁଆଡ଼ି ଭକ୍ତ—ଯେଉଁ 'ମୁଁ' 'ମୁଁ ତୁମର ଦାସ' ବୋଲି କହେ, ସେ 'ମୁଁ'ଟା କିଏ ?

ଶ୍ରୀରାମକୃଷ୍ଣ—ଲିଙ୍ଗ ଶରୀର ବା ଜୀବାତ୍ମା । ମନ, ବୁଦ୍ଧି, ଚିତ୍ତ, ଅହଂକାର ଏହି ଚାରୋଟିକୁ ନେଇ ଲିଙ୍ଗ ଶରୀର ।

ମାରୁଆଡ଼ି—ଜୀବାତ୍ମାଟି କିଏ ?

ଶ୍ରୀରାମକୃଷ୍ଣ—ଅଷ୍ଟପାଶଯୁକ୍ତ ଆତ୍ମା । ଆଉ ଚିତ୍ତ କାହାକୁ କହନ୍ତି ? ଯିଏ ଓହୋ ! କରି ଉଠେ ।

## ମାରୁଆଡ଼ି—'ମୃତ୍ୟୁର ପରେ କଅଣ ହୁଏ ?' 'ଗୀତାର ମତ'।

ମାରୁଆଡ଼ି ଭକ୍ତ—ମହାରାଜ, ମୃତ୍ୟୁ ପରେ କଅଣ ହୁଏ ?

ଶ୍ରୀରାମକୃଷ୍ଣ—ଗୀତା ମତରେ, ମରିବା ସମୟରେ ଯାହା ଭାବିବ, ତାହା ହିଁ ହେବ । ଭରତ ରାଜା ହରିଣକୁ ଚିନ୍ତାକରି ହରିଣ ହୋଇଥିଲେ । ତେଣୁ ଈଶ୍ୱର ଲାଭ କରିବା ପାଇଁ ସାଧନ କରିବା ଦରକାର । ରାତିଦିନ ତାଙ୍କରି ଚିନ୍ତା କଲେ ମରିବା ସମୟରେ ମଧ୍ୟ ସେହି ଚିନ୍ତା ଆସିବ ।

ମାରୁଆଡ଼ି ଭକ୍ତ—ଆଚ୍ଛା, ମହାରାଜ, ବିଷୟ ପ୍ରତି ବୈରାଗ୍ୟ ହୁଏନାହିଁ କାହିଁକି ?

ଶ୍ରୀରାମକୃଷ୍ଣ—**ଏହାର ନାମ ମାୟା** ! ମାୟାରେ ସତ୍‌କୁ ଅସତ୍, ଅସତ୍‌କୁ ସତ୍ ବୋଲି ବୋଧହୁଏ ।

"ସତ୍ ଅର୍ଥାତ୍ ଯେ ନିତ୍ୟ,—ପରବ୍ରହ୍ମ । ଅସତ୍—ସଂସାର, ଅନିତ୍ୟ ।"

ମାରୁଆଡ଼ି ଭକ୍ତ—ଶାସ୍ତ୍ର ପଢ଼ୁଁ, କିନ୍ତୁ ଧାରଣା ହୁଏନାହିଁ କାହିଁକି ?

ଶ୍ରୀରାମକୃଷ୍ଣ—ପଢ଼ିଲେ କଅଣ ହେବ ? ସାଧନା-ତପସ୍ୟା ଦରକାର ! ତାଙ୍କୁ ଡାକ ।

"ସିଦ୍ଧି ସିଦ୍ଧି କହିଲେ କଅଣ ହେବ, ଏହାକୁ ଖାଇବାକୁ ହେବ ।"

"ଏହି ସଂସାର କଣ୍ଟାଗଛ ଭଳି । ହାତ ଦେଲେ ରକ୍ତ ବାହାରିବ । ଯଦି କଣ୍ଟା ଗଛକୁ ଆଣି, ବସି ବସି କହ, ଏହି ଗଛ ପୋଡ଼ିଗଲା', ତେବେ କ'ଣ କହିଲେ ପୋଡ଼ିଯିବ ? ଜ୍ଞାନାଗ୍ନି ଆହରଣ କର । ସେହି ଅଗ୍ନି ଲଗାଇ ଦିଅ, ତେବେ ତ ପୋଡ଼ିବ ।"

"ସାଧନ ଅବସ୍ଥାରେ ଟିକିଏ ଖଟିବାକୁ ହେବ, ତା'ପରେ ସହଜ ପଥ । ବାଙ୍କ ପାରିହୋଇ ଅନୁକୂଳ ବାୟୁରେ ନୌକା ଛାଡ଼ିଦିଅ ।"

## ଆଗେ ମାୟା ସଂସାର ତ୍ୟାଗ, ତାହାପରେ ଜ୍ଞାନଲାଭ— ଈଶ୍ୱର ଲାଭ ।

"ଯେ ପର୍ଯ୍ୟନ୍ତ ମାୟା ଘର ଭିତରେ ଅଛି, ସେ ପର୍ଯ୍ୟନ୍ତ ମାୟାମେଘ ରହିଛି, ଜ୍ଞାନ ସୂର୍ଯ୍ୟ କାର୍ଯ୍ୟ କରେ ନାହିଁ । ମାୟାଘର ଛାଡ଼ି ବାହାରକୁ ଆସି ଠିଆହେଲେ (କାମିନୀ-କାଞ୍ଚନ ତ୍ୟାଗ ପରେ) ତେବେ ଜ୍ଞାନ ସୂର୍ଯ୍ୟ ଅବିଦ୍ୟା ନାଶ କରେ । ଘର ଭିତରକୁ ଆଣିଲେ କାଗଜ ସୂର୍ଯ୍ୟକାନ୍ତ ମଣିରେ ପୋଡ଼େ ନାହିଁ । ଘରର ବାହାରକୁ ଆସି ଠିଆହେଲେ ସୂର୍ଯ୍ୟକିରଣ କାଚରେ ପଡ଼େ,—ସେତେବେଳେ କାଗଜ ପୋଡ଼ିଯାଏ ।"

"ପୁଣି ମେଘ ଥିଲେ, ଯବକାଚରେ କାଗଜ ପୋଡ଼େନାହିଁ । ମେଘଟି ଅପସରି ଗଲେ ତେବେ ଯାଇ ପୋଡ଼ିବ ।"

"କାମିନୀ—କାଞ୍ଚନ ଥିବା ଘରଠାରୁ ଟିକିଏ ହଟି ରହିଲେ—ଅର୍ଥାତ୍ ଟିକିଏ ସାଧନା ତପସ୍ୟା କଲେ—ତେବେ ଯାଇ ମନର ଅନ୍ଧକାର ନାଶ ହୁଏ—ଅବିଦ୍ୟା ଅହଂକାର ମେଘ ଦୂରେଇ ଯାଏ, ସେତେବେଳେ ଜ୍ଞାନ ଲାଭ ହୁଏ !"

"ପୁଣି କାମିନୀ-କାଞ୍ଚନ ହିଁ ମେଘ !"

## (୪)

## ପୂର୍ବକଥା—ଲକ୍ଷ୍ମୀନାରାୟଣଙ୍କର ଦଶହଜାର ଟଙ୍କା ଦେବା କଥାରେ ଶ୍ରୀରାମକୃଷ୍ଣଙ୍କର ଅଚୈତନ୍ୟ ଅବସ୍ଥା । ସନ୍ନ୍ୟାସୀ ପାଇଁ କଠିନ ନିୟମ ।

(ମାରୁଆଡ଼ିଙ୍କ ପ୍ରତି)—"ତ୍ୟାଗୀଙ୍କ ପାଇଁ କଠୋର ନିୟମ । କାମିନୀ-କାଞ୍ଚନର ସଂସ୍ରବ ଲେଶମାତ୍ର ରହିବ ନାହିଁ । ଟଙ୍କା ନିଜ ହାତରେ ତ ନେବେ ନାହିଁ,—ପୁଣି ପାଖରେ ମଧ୍ୟ ରଖିବେ ନାହିଁ ।"

"ଲକ୍ଷ୍ମୀନାରାୟଣ ମାରୁଆଡ଼ି, ବେଦାନ୍ତବାଦୀ, ଏଠାକୁ ପ୍ରାୟ ଆସନ୍ତି । ମୋର ବିଛଣା ମଇଳା ଦେଖି କହିଲେ, 'ମୁଁ ଦଶହଜାର ଟଙ୍କା ଆପଣଙ୍କ ନାମରେ ଲେଖିଦେବି, ଯାହାର ସୁଧରେ ଆପଣଙ୍କର ସେବା ଚଳିବ' ।"

"ଯହୁଁ ସେ ଏହିକଥା କହିଲେ, ସଙ୍ଗେ ସଙ୍ଗେ ଯେପରି ଲାଠିମାଡ଼ ଖାଇ ଅଜ୍ଞାନ ହୋଇଗଲି !"

"ଚୈତନ୍ୟ ହେବାପରେ ତାଙ୍କୁ କହିଲି, ତୁମେ ଏପରି କଥା ଯଦି ଆଉ ମୁହଁରେ ଧର, ତାହାହେଲେ ଏଠାକୁ ଆସିବ ନାହିଁ । **'ମୋର ଟଙ୍କା ଛୁଇଁବାକୁ ଶକ୍ତି ନାହିଁ; ପାଖରେ ରଖିବାକୁ ମଧ୍ୟ ଶକ୍ତି ନାହିଁ'** ।"

"ତାଙ୍କର ଭାରି ସୂକ୍ଷ୍ମବୁଦ୍ଧି,—ସେ କହିଲେ, 'ତାହାହେଲେ ବର୍ତ୍ତମାନ ମଧ୍ୟ ଆପଣଙ୍କର ତ୍ୟାଜ୍ୟ, ଗ୍ରାହ୍ୟ ଅଛି । ତେବେ ଆପଣଙ୍କର ଜ୍ଞାନ ହୋଇନାହିଁ '।"

"ମୁଁ କହିଲି, ବାବା ମୋର ଏତେଦୂର ହୋଇନାହିଁ !" (ସମସ୍ତଙ୍କର ହାସ୍ୟ) ।

"ଲକ୍ଷ୍ମୀନାରାୟଣ ସେତେବେଳେ ହୃଦୟ ପାଖରେ ଦେବାକୁ ଚାହିଁଲେ, ମୁଁ କହିଲି, 'ତାହାହେଲେ ମୋତେ କହିବାକୁ ହେବ 'ଏହାକୁ ଦିଅ, ତାହାକୁ ଦିଅ', ନଦେଲେ ରାଗ ହେବ ! ଟଙ୍କା ପାଖରେ ରହିଲେ ହିଁ ଖରାପ ! ଏ ସବୁ ହେବନାହିଁ ।"

"ଦର୍ପଣ ପାଖରେ ଜିନିଷ ରହିଲେ ପ୍ରତିବିମ୍ବ ପଡ଼ିବ ନାହିଁ ?"

## ଶ୍ରୀରାମକୃଷ୍ଣ ଓ ମୁକ୍ତିତତ୍ତ୍ୱ ।
## 'କଳିରେ ବେଦମତ ନୁହେଁ, ପୁରାଣ ମତ' ।

ମାରୁଆଡ଼ି ଭକ୍ତ—ମହାରାଜ, ଗଙ୍ଗାରେ ଶରୀର ତ୍ୟାଗ କଲେ ତେବେ ମୁକ୍ତି ହେବ ?

ଶ୍ରୀରାମକୃଷ୍ଣ—ଜ୍ଞାନ ହେଲେ ମୁକ୍ତି । ଯେଉଁଠାରେ ରହ—ମଡ଼ା ପଡ଼ିଆରେ ମୃତ୍ୟୁ ହେଉ କିମ୍ବା ଗଙ୍ଗାତୀରରେ ମୃତ୍ୟୁ ହେଉ ଜ୍ଞାନୀର ମୁକ୍ତି ହେବ ।

**"ତେବେ ଅଜ୍ଞାନ ପକ୍ଷରେ ଗଙ୍ଗାତୀରେ ।"**

ମାରୁଆଡ଼ି ଭକ୍ତ—ମହାରାଜ, କାଶୀରେ ମୁକ୍ତି ହୁଏ କାହିଁକି ?

ଶ୍ରୀରାମକୃଷ୍ଣ—କାଶୀରେ ମୃତ୍ୟୁ ହେଲେ ଶିବଙ୍କର ଦର୍ଶନ ମିଳେ । ଶିବ ଦର୍ଶନ ଦେଇ କହନ୍ତି, ମୋର ଏହି ଯେଉଁ ସାକାର ରୂପ ଏହା ମାୟିକ ରୂପ—ଭକ୍ତ ପାଇଁ ଏହି ରୂପ ଧାରଣ କରେ;—ହେଇ ଦେଖ ଅଖଣ୍ଡ ସଚ୍ଚିଦାନନ୍ଦରେ ମିଳି ଯାଉଛି !' ଏହା କହିବା ପରେ ତାଙ୍କର ରୂପ ଅନ୍ତର୍ଦ୍ଧାନ ହୁଏ ।

"ପୁରାଣ ମତରେ ଚଣ୍ଡାଳର ମଧ୍ୟ ଯଦି ଭକ୍ତି ହୁଏ, ତା'ର ମୁକ୍ତି ହେବ । ଏ ମତରେ **ନାମ** କଲେ ହିଁ ହେବ । ଯାଗ, ଯଜ୍ଞ, ତନ୍ତ୍ର, ମନ୍ତ୍ର—ଏସବୁ ଦରକାର ନାହିଁ ।"

"ବେଦ ମତ ଅଲଗା । ବ୍ରାହ୍ମଣ ନ ହେଲେ ମୁକ୍ତି ହୁଏନାହିଁ । ପୁଣି ଠିକ୍ ମନ୍ତ୍ର ଉଚ୍ଚାରଣ ନ ହେଲେ ପୂଜା ଗ୍ରହଣ ଯୋଗ୍ୟ ହୁଏନାହିଁ । ଯାଗ, ଯଜ୍ଞ, ମନ୍ତ୍ର, ତନ୍ତ୍ର—ସବୁ ବିଧି ଅନୁସାରେ କରିବାକୁ ହେବ ।"

## କର୍ମଯୋଗ ବଡ଼ କଠିନ । କଳିରେ ଭକ୍ତିଯୋଗ ।

"କଳିକାଳରେ ବେଦୋକ୍ତ କର୍ମ କରିବାକୁ ସମୟ କାହିଁ ?"

"ତେଣୁ କଳିରେ ନାରଦୀୟ ଭକ୍ତି ।"

"କର୍ମଯୋଗ ବଡ଼ କଠିନ । ନିଷ୍କାମ ଭାବରେ ନ କରି ପାରିଲେ ବନ୍ଧନର କାରଣ ହୁଏ । ସେଥିରେ ପୁଣି ଅନ୍ନଗତ ପ୍ରାଣ—ସବୁ କର୍ମବିଧି ଅନୁଯାୟୀ କରିବାକୁ ସମୟ

ନାହିଁ । ଦଶମୂଳ ପାଞ୍ଚନ ଖୋଇବାକୁ ଗଲେ ରୋଗୀର ଦଫା ଶେଷ ହୋଇଯାଏ । ତେଣୁ ଫିଭର ମିକ୍ସ୍ଚର ।''

''ନାରଦୀୟ ଭକ୍ତି—ତାଙ୍କର ନାମଗୁଣ କୀର୍ତ୍ତନ କରିବା ।''

''କଳିରେ କର୍ମଯୋଗ ଠିକ୍ ନୁହେଁ,—ଭକ୍ତିଯୋଗ ହିଁ ଠିକ୍ ।''

''ସଂସାର ଥାଇ କର୍ମ ଯେତେ ଦିନ ଭୋଗ ଅଛି କର । କିନ୍ତୁ ଭକ୍ତି ଅନୁରାଗ ଦରକାର । ତାଙ୍କର ନାମ ଗୁଣ କୀର୍ତ୍ତନ କଲେ କର୍ମ କ୍ଷୟ ହେବ ।''

''କର୍ମ ଚିରକାଳ କରିବାକୁ ହୁଏନାହିଁ । ଈଶ୍ୱରଙ୍କୁ ଯେତେ ଶ୍ରଦ୍ଧା ଭକ୍ତି କରିବ ଓ ଭଲ ପାଇବ ସେତେ କର୍ମ କମିବ । ତାଙ୍କୁ ଲାଭ କଲେ କର୍ମ ତ୍ୟାଗ ହୁଏ । ଗୃହସ୍ଥର ବୋହୂ ପେଟରେ ପିଲା ହେଲେ ଶାଶୁ କର୍ମ କମାଇ ଦିଏ । ସନ୍ତାନ ହେଲେ ଆଉ କର୍ମ କରିବାକୁ ହୁଏନାହିଁ ।''

## ସତ୍ୟ ସ୍ୱରୂପ ବ୍ରହ୍ମ ! ସଂସ୍କାର ଥିଲେ ଈଶ୍ୱରଙ୍କ ପାଇଁ ବ୍ୟାକୁଳତା ହୁଏ ।

ଦକ୍ଷିଣେଶ୍ୱର ଗ୍ରାମରୁ କେତେଜଣ ଯୁବକ ଆସି ପ୍ରଣାମ କଲେ । ସେମାନେ ଆସନ ଗ୍ରହଣ କରି ଠାକୁରଙ୍କୁ ପ୍ରଶ୍ନ କରୁଅଛନ୍ତି । ବେଳ ୪ଟା ହେବ ।

ଦକ୍ଷିଣେଶ୍ୱର ନିବାସୀ ଯୁବକ—ମହାଶୟ, ଜ୍ଞାନ କାହାକୁ କହନ୍ତି ?

ଶ୍ରୀରାମକୃଷ୍ଣ—ଈଶ୍ୱର ସତ୍, ଆଉ ସମସ୍ତ ଅସତ୍,ଏହିଟି ଜାଣିବାର ନାମ ଜ୍ଞାନ ।

''ଯେ **ସତ୍** ତାଙ୍କର ଗୋଟିଏ ନାମ ବ୍ରହ୍ମ, ଅନ୍ୟ ଗୋଟିଏ ନାମ କାଳ (ମହାକାଳ) । ସେଥିପାଇଁ କହନ୍ତି 'କାଳକ୍ରମେ କେତେ ଆସିଲା- କେତେ ଗଲାରେ ଭାଇ' !''

''କାଳୀ ଯେ କି କାଳ ସହିତ ରମଣ କରନ୍ତି । ଆଦ୍ୟାଶକ୍ତି । କାଳ ଓ କାଳୀ,—ବ୍ରହ୍ମ ଓ ଶକ୍ତି—ଅଭେଦ ।''

''ସେହି ସତ୍ୟ ସ୍ୱରୂପ ବ୍ରହ୍ମ ନିତ୍ୟ ସେ ତିନିକାଳରେ ଅଛନ୍ତି—ଆଦି-ଅନ୍ତ -ରହିତ । ତାଙ୍କୁ ମୁଖରେ ବର୍ଣ୍ଣନା କରି ହୁଏନାହିଁ । ଖୁବ୍ କହିଲେ—ସେ ଚୈତନ୍ୟ ସ୍ୱରୂପ, ଆନନ୍ଦ ସ୍ୱରୂପ ।''

''ଜଗତ ଅନିତ୍ୟ, ସେହି କେବଳ ନିତ୍ୟ ! ଜଗତ ଭେଲ୍କୀ ସ୍ୱରୂପ । ବାଜୀକର ହିଁ ସତ୍ୟ । ବାଜୀକରର ଭେଲ୍କୀ ଅନିତ୍ୟ ।''

ଯୁବକ—ଜଗତ ମାୟା-ଭେଲ୍କୀ—ଏହି ମାୟା ଯାଏନାହିଁ କାହିଁକି ?

ଶ୍ରୀରାମକୃଷ୍ଣ—ସଂସ୍କାର—ଦୋଷରେ ମାୟା ଯାଏ ନାହିଁ । ଅନେକ ଜନ୍ମ ଏହି ମାୟା ସଂସାରରେ ରହି ରହି ମାୟାକୁ ସତ୍ୟ ବୋଲି ବୋଧହୁଏ ।

''ସଂସ୍କାରର କେତେ କ୍ଷମତା ଶୁଣ । ଜଣେ ରାଜାର ପୁଅ ପୂର୍ବ ଜନ୍ମରେ ଧୋବା ଘରେ ଜନ୍ମିଥିଲା । ରାଜାର ପୁଅ ହୋଇ ଯେତେବେଳେ ଖେଳୁଛି ସେତେବେଳେ ସାଙ୍ଗମାନଙ୍କୁ

କହୁଛି, ସେ ସବୁ ଖେଳ ଥାଉ ! ମୁଁ ମୁହଁ ମାଡ଼ି ଶୋଉଛି, ଆଉ ତୁମେମାନେ ମୋ ପିଠିରେ ଜୋରରେ ଲୁଗା କାଚ ।''

## ସଂସ୍କାରବାନ୍ ଗୋବିନ୍ଦ ପାଳ, ଗୋପାଳ ସେନ୍, ନିରଞ୍ଜନ, ହୀରାନନ୍ଦ ।

## ପୂର୍ବକଥା–ଗୋବିନ୍ଦ, ଗୋପାଳ ଓ ଠାକୁର ବଂଶୀୟ ବାଳକମାନଙ୍କର ଆଗମନ । ୧୮୬୩–୬୪ ।

ଶ୍ରୀରାମକୃଷ୍ଣ—ଏଠାକୁ ଅନେକ ପିଲା ଆସନ୍ତି, ତନ୍ମଧ୍ୟରୁ କେହି କେହି ଈଶ୍ୱରଙ୍କ ପାଇଁ ବ୍ୟାକୁଳ । ସେମାନେ ସଂସ୍କାର ନେଇ ଆସିଛନ୍ତି ।

''ସେ ସବୁ ପିଲାମାନେ ବିବାହ କଥାରେ ନାହିଁ ନାହିଁ କରନ୍ତି । ବିବାହ କଥା ମନକୁ ଆଣନ୍ତି ନାହିଁ । ନିରଞ୍ଜନ ପିଲାଦିନରୁ କହେ, ବିବାହ କରିବି ନାହିଁ ।''

''ଅନେକ ଦିନ ହେଲାଣି (କୋଡ଼ିଏ ବର୍ଷରୁ ଅଧିକ) ବରାହନଗର ଠାରୁ ଦୁଇଟି ପିଲା ଆସୁଥିଲେ । ଜଣଙ୍କର ନାମ ଗୋବିନ୍ଦ ପାଳ, ଅନ୍ୟଜଣଙ୍କର ନାମ ଗୋପାଳ ସେନ । ସେମାନଙ୍କର ପିଲାଦିନରୁ ଈଶ୍ୱରଙ୍କ ଠାରେ ମନ । ବିବାହ କଥା ପଡ଼ିଲେ ଭୟଭୀତ ହୁଅନ୍ତି । ଗୋପାଳର ଭାବ ସମାଧି ହୁଏ । ବିଷୟୀ ଦେଖିଲେ ଭୟକରେ, ଯେପରି ମୂଷା ବିରାଡ଼ି ଦେଖିଲେ ଭୟ କରେ । ଯେତେବେଳେ ଠାକୁର ବଂଶୀୟ ପିଲାମାନେ (Tagore) ଏହି ଉଦ୍ୟାନକୁ ବୁଲିବାକୁ ଆସିଥିଲେ ସେତେବେଳେ ସେ କୋଠୀ ଭିତରେ ରହି ଦ୍ୱାର ବନ୍ଦ କରିଦେଲା, କାଳେ ଏମାନଙ୍କ ସଙ୍ଗରେ କଥା ହେବାକୁ ପଡ଼ିବ ।''

''ଗୋପାଳର ପଞ୍ଚବଟୀ ନିକଟରେ ଭାବ ହୋଇଥିଲା ! ଭାବସ୍ଥ ହୋଇ ମୋ ପାଦରେ ହାତଦେଇ କହିଲା, 'ମୁଁ ତେବେ ଯାଉଛି । ମୁଁ ଆଉ ଏ ସଂସାରରେ ରହି ପାରିବି ନାହିଁ । ଆପଣଙ୍କର ଅନେକ ଡେରି ମୁଁ ଯାଉଛି ।' ମୁଁ ମଧ୍ୟ ଭାବାବସ୍ଥାରେ କହିଲି— 'ପୁଣି ଆସିବ, ସେ କହିଲା, ଆଚ୍ଛା, ଆସିବି' ।''

''କିଛିଦିନ ପରେ ଗୋବିନ୍ଦ ଆସି ଦେଖାକଲା । ମୁଁ ପ୍ରଶ୍ନ କଲି, ଗୋପାଳ କାହିଁ ? ସେ କହିଲା, ଗୋପାଳ (ଶରୀର ତ୍ୟାଗ କରି) ଚାଲିଯାଇଛି ।''

''ଅନ୍ୟ ପିଲାମାନେ କିପରି ବୁଲୁଛନ୍ତି ! କିପରି ଟଙ୍କା ହେବ—ଘର-ଗାଡ଼ି-ପୋଷାକ,—ତା'ପରେ ବିବାହ—ଏଥିପାଇଁ ବ୍ୟସ୍ତ ହୋଇ ବୁଲନ୍ତି । ବିବାହ କରିବେ, ଆଗରୁ କିପରି କନ୍ୟା ଖୋଜି ନିଅନ୍ତି । ପୁଣି ସୁନ୍ଦର କି ନା, ନିଜେ ଦେଖିବାକୁ ଯାଆନ୍ତି !''

''ଜଣେ ମୋତେ ଖୁବ୍ ନିନ୍ଦା କରେ । କେବଳ କହେ, ପିଲାମାନଙ୍କୁ ଭଲପାଏ । ଯେଉଁମାନଙ୍କର ସଂସ୍କାର ଅଛି—ଶୁଦ୍ଧ ଆତ୍ମା, ଈଶ୍ୱରଙ୍କ ପାଇଁ ବ୍ୟାକୁଳ,—ଟଙ୍କା, ଦେହସୁଖ, ଏସବୁ ଦିଗରେ ମନ ନାହିଁ—ସେମାନଙ୍କୁ ହିଁ ମୁଁ ଭଲପାଏ ।''

''ଯେଉଁମାନେ ବିବାହ କରିଛନ୍ତି, ଯଦି ଈଶ୍ୱରଙ୍କ ଠାରେ ଭକ୍ତି ଆଏ, ତାହାହେଲେ

ସଂସାରରେ ଆସକ୍ତ ହେବେ ନାହିଁ । ହୀରାନନ୍ଦ ବିବାହ କରିଛି । ତେବେ ବି ସେ ବେଶି ଆସକ୍ତ ହେବନାହିଁ ।''

ହୀରାନନ୍ଦ ସିନ୍ଧୁଦେଶବାସୀ, ବି.ଏ ପାସ୍, ବ୍ରାହ୍ମଭକ୍ତ ।

ମଣିଲାଲ ଶିବପୁରର ବ୍ରାହ୍ମଭକ୍ତ, ମାରୁଆଡ଼ି ଭକ୍ତମାନେ ପ୍ରଣାମ କରି ବିଦାୟ ଗ୍ରହଣ କଲେ ।

## (୫)

## କର୍ମ ତ୍ୟାଗ କେତେବେଳେ ? ଭକ୍ତଙ୍କ ପାଖରେ ଅଙ୍ଗୀକାର ।

ସନ୍ଧ୍ୟା ହେଲା । ଦକ୍ଷିଣେଶ୍ୱର ବାରଣ୍ଡା ଓ ପଶ୍ଚିମର ଗୋଲ ବାରଣ୍ଡାରେ ବତୀବାଲା ଆଲୁଅ ଜଳାଇ ଦେଇଗଲା । ଠାକୁରଙ୍କ ଘରେ ପ୍ରଦୀପ ଜଳାଇ ଦିଆଗଲା ଓ ଝୁଣା ଦିଆଗଲା ।

ଠାକୁର ନିଜ ଆସନରେ ବସି ମାଆଙ୍କର ନାମ କରୁଛନ୍ତି ଓ ତାଙ୍କର ଚିନ୍ତା କରୁଛନ୍ତି । ଘରେ ମାଷ୍ଟର, ଶ୍ରୀଯୁକ୍ତ ପ୍ରିୟ ମୁଖାର୍ଜୀ, ତାଙ୍କର ଆତ୍ମୀୟ ହରି ତଳେ ବସିଅଛନ୍ତି । କିୟତ୍‌କ୍ଷଣ ଧ୍ୟାନ ଚିନ୍ତା କଲାପରେ ଠାକୁର ପୁଣି ଭକ୍ତମାନଙ୍କ ସହିତ କଥା କହୁଅଛନ୍ତି । ବର୍ତ୍ତମାନ ମଧ କାଳୀ ମନ୍ଦିରରେ ଆଳତି ଡେରି ଅଛି ।

### ବେଦାନ୍ତ ଓ ଶ୍ରୀରାମକୃଷ୍ଣ । ଓଁକାର ଓ ସମାଧି । 'ତତ୍ତ୍ୱମସି' । ଓଁ ତତ୍‌ସତ୍ ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—ଯେ ନିଶିଦିନ ଈଶ୍ୱର ଚିନ୍ତା କରୁଛି, ତାହାର ସନ୍ଧ୍ୟା କରିବା କି ଦରକାର !

ତ୍ରିସନ୍ଧ୍ୟା ଯେ ବଲେ କାଲୀ ପୂଜା—ସନ୍ଧ୍ୟା ସେ କି ଚାୟ ।
ସନ୍ଧ୍ୟା ତା'ର ସନ୍ଧାନେ ଫେରେ କଭୁ ସନ୍ଧି ନାହି ପାୟ ।।
ଦୟା ବ୍ରତ, ଦାନ ଆଦି ଆର କିଛୁ ନା ମନେ ଲୟ ।
ମଦନେରଇ ଯାଗ-ଯଜ୍ଞ ବ୍ରହ୍ମମୟୀର ରାଙ୍ଗା ପାୟ ।।

''ସନ୍ଧ୍ୟା ଗାୟତ୍ରୀରେ ଲୟ ହୁଏ, ଗାୟତ୍ରୀ ଓଁକାରରେ ଲୟ ହୁଏ ।''

''ଯେତେବେଳେ ଥରେ ଓଁ କହିଲେ ସମାଧି ହୁଏ ସେତେବେଳେ ଜାଣିବ ପକ୍କା ।''

''ହୃଷିକେଶରେ ଜଣେ ସକାଳୁ ଉଠି ଗୋଟାଏ ବଡ଼ ଝରଣା ପାଖରେ ଠିଆ ହୁଏ । ସମସ୍ତ ଦିନ ସେହି ଝରଣାକୁ ଦେଖେ ଆଉ ଈଶ୍ୱରଙ୍କୁ କହେ 'ବାଃ ବେଶ୍ କରିଛ ! ବାଃ ବେଶ୍ କରିଛ ! କି ଆଶ୍ଚର୍ଯ୍ୟ ! ତାହାର ଅନ୍ୟ ଜପ ତପ ନାହିଁ । ପୁଣି ରାତ୍ରି ହେଲେ କୁଟୀରକୁ ଫେରିଆସେ ।''

''ସେ ସାକାର କି ନିରାକାର ଏସବୁ କଥା ଭାବିବାର ବା କି ଦରକାର ? ନିର୍ଜନରେ

ଗୋପନରେ ବ୍ୟାକୁଳ ହୋଇ କାନ୍ଦି କାନ୍ଦି ତାଙ୍କୁ କହିବାକୁ ହେବ,—ହେ ଈଶ୍ୱର, ତୁମେ ଯେ କିପରି, ତାହା ମୋତେ ଦେଖାଇଦିଅ ।''

''ସେ ଅନ୍ତରରେ ବାହାରେ ଅଛନ୍ତି ।''

''ଅନ୍ତରରେ କେବଳ ସେ ଅଛନ୍ତି । ସେଥିପାଇଁ ବେଦରେ କହେ **'ତତ୍ତ୍ୱମସି'** (ସେ ହିଁ ତୁମେ) ! ଆଉ ବାହାରେ ମଧ୍ୟ ସେ । ମାୟାରେ ଦେଖାଯାଉଛି, ନାନା ରୂପ; କିନ୍ତୁ ବସ୍ତୁତଃ ସେ ଏକ ହିଁ ରହିଛନ୍ତି ।''

''ତେଣୁ ସବୁ ନାମ ରୂପ ବର୍ଣ୍ଣନା କରିବା ଆଗରୁ କହନ୍ତି **ଓଁ ତତ୍ ସତ୍** ।''

''ଦର୍ଶନ କଲେ ଏକ ପ୍ରକାର, ଶାସ୍ତ୍ର ପଢ଼ି ଆଉ ଏକ ପ୍ରକାର । ଶାସ୍ତ୍ରରେ ଆଭାସ ମାତ୍ର ମିଳେ । ତେଣୁ ଅନେକ ଗୁଡ଼ିଏ ଶାସ୍ତ୍ର ପଢ଼ିବାର କୌଣସି ପ୍ରୟୋଜନ ନାହିଁ । **ତାହା ଅପେକ୍ଷା ନିର୍ଜ୍ଜନରେ ତାଙ୍କୁ ଡାକିବା ଭଲ** ।''

''ଗୀତା ସମ୍ପୂର୍ଣ୍ଣ ନ ପଢ଼ିଲେ ମଧ୍ୟ ହୁଏ । ଦଶବାର 'ଗୀତା ଗୀତା' କହିଲେ ଯାହା ହୁଏ ତାହା ହିଁ ସାର । ଅର୍ଥାତ୍ 'ତ୍ୟାଗୀ' । **ହେ ଜୀବ ସବୁ ତ୍ୟାଗ କରି ଈଶ୍ୱରଙ୍କର ଆରାଧନା କର—ଏହା ଗୀତାର ସାରକଥା** ।''

## ଶ୍ରୀରାମକୃଷ୍ଣଙ୍କର ଭବତାରିଣୀଙ୍କ ଆଳତି ଦର୍ଶନ ଓ ଭାବାବେଶ

ଠାକୁର ଭକ୍ତଙ୍କ ସଙ୍ଗରେ ମା' କାଳୀଙ୍କ ଆଳତି ଦେଖୁ ଦେଖୁ ଭାବାବିଷ୍ଟ ହୋଇଅଛନ୍ତି । ସେ ପ୍ରତିମା ସମ୍ମୁଖରେ ଭୂମିଷ୍ଠ ହୋଇ ପ୍ରଣାମ କରି ପାରୁନାହାନ୍ତି ।

ଅତି ସନ୍ତର୍ପଣରେ ଭକ୍ତଙ୍କ ସଙ୍ଗରେ ନିଜ ଘରକୁ ଫେରି ଆସନରେ ଉପବିଷ୍ଟ ହେଲେ । ବର୍ତ୍ତମାନ ମଧ୍ୟ ଭାବାବିଷ୍ଟ । ଭାବାବସ୍ଥାରେ କହୁଅଛନ୍ତି !

ମୁଖାର୍ଜୀଙ୍କର ଆତ୍ମୀୟ ହରିହର ବୟଃକ୍ରମ ଅଠର କିମ୍ବା କୋଡ଼ିଏ ହେବ । ତାଙ୍କର ବିବାହ ହୋଇଅଛି ! ଆପାତତଃ ମୁଖାର୍ଜୀଙ୍କ ଘରେ ରହନ୍ତି—କାମଦାମ କରିବେ । ଠାକୁରଙ୍କ ଉପରେ ଖୁବ୍ ଭକ୍ତି ।

## ଶ୍ରୀରାମକୃଷ୍ଣ ଓ ମନ୍ତ୍ର ଗ୍ରହଣ । ଭକ୍ତଙ୍କ ନିକଟରେ ଶ୍ରୀରାମକୃଷ୍ଣଙ୍କର ଅଙ୍ଗୀକାର ।

ଶ୍ରୀରାମକୃଷ୍ଣ (ଭାବାବେଶରେ, ହରିଙ୍କ ପ୍ରତି)—ତୁମେ ତୁମର ମାଆଙ୍କୁ କହି ମନ୍ତ୍ର ନିଅ ! (ଶ୍ରୀଯୁକ୍ତ ପ୍ରିୟଙ୍କୁ) ଏହାଙ୍କୁ (ହରିଙ୍କୁ) କହି ମଧ୍ୟ ଦେଇପାରିଲି ନାହିଁ; ମନ୍ତ୍ର ଦିଏ ନାହିଁ ।

''ତୁମେ ଯେପରି ଧ୍ୟାନ ଜପ କରୁଛ ତାହା କରିବ ।''

ପ୍ରିୟ—ଆଜ୍ଞା ହଁ ।

ଶ୍ରୀରାମକୃଷ୍ଣ—ମୁଁ ଏ ଅବସ୍ଥାରେ କହୁଛି—କଥାରେ ବିଶ୍ୱାସ କର । ଦେଖ ଏଠାରେ ଢଙ୍ଗ ଫଙ୍ଗ ନାହିଁ ।

"ମୁଁ ଭାବାବସ୍ଥାରେ କହୁଛି,—**ମା' ଏଠାକୁ ଯେଉଁମାନେ ଆନ୍ତରିକ ଚାହାଁନ୍ତି ଆସିବେ, ସେମାନେ ଯେପରି ସିଦ୍ଧ ହୁଅନ୍ତି ।**"

ସିଁଥିର ମହେନ୍ଦ୍ର କବିରାଜ ବାରଣ୍ଡାରେ ବସିଛନ୍ତି । ଶ୍ରୀଯୁକ୍ତ ରାମଲାଲ, ହାଜରା ପ୍ରଭୃତିଙ୍କ ସଙ୍ଗରେ କଥା କହୁଛନ୍ତି ! ଠାକୁର ନିଜର ଆସନରେ ବସି ତାହାଙ୍କୁ ଡାକୁଛନ୍ତି— 'ମହିନ୍ଦର !' 'ମହିନ୍ଦର !'

ମାଷ୍ଟର ଶୀଘ୍ର ଯାଇ କବିରାଜଙ୍କୁ ଡାକିଆଣିଲେ ।

ଶ୍ରୀରାମକୃଷ୍ଣ (କବିରାଜଙ୍କ ପ୍ରତି)—ବସ ନା—ଟିକିଏ ଶୁଣ ।

କବିରାଜ କିଞ୍ଚିତ୍ ଅପ୍ରସ୍ତୁତ ହୋଇ ଉପବେଶନ କଲେ ଓ ଠାକୁରଙ୍କର ଅମୃତୋପମ କଥା ଶ୍ରବଣ କରିବାକୁ ଲାଗିଲେ ।

## ନାନା ପ୍ରକାର ସେବା । ବଳରାମଙ୍କର ଭାବ । ଗୌରାଙ୍ଗଙ୍କର ତିନି ଅବସ୍ଥା ।

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)—ତାଙ୍କୁ ନାନା ପ୍ରକାରରେ ସେବା କରାଯାଏ ।

"ପ୍ରେମିକ ଭକ୍ତ ତାଙ୍କୁ ନାନାରୂପେ ସମ୍ଭୋଗ କରେ । କେତେବେଳେ ମଧ୍ୟ ମନେ କରେ, 'ତୁମେ ପଦ୍ମ, ମୁଁ ଅଳି ! କେତେବେଳେ ମଧ୍ୟ 'ତୁମେ ସଚ୍ଚିଦାନନ୍ଦ, ମୁଁ ମୀନ !'

"ପ୍ରେମିକ ଭକ୍ତ ପୁଣି ଭାବେ 'ମୁଁ ତୁମର ନର୍ତ୍ତକୀ !' —ଆଉ ତାଙ୍କ ସମ୍ମୁଖରେ ନୃତ୍ୟ ଗୀତ କରେ: କେତେବେଳେ ମଧ୍ୟ ସଖୀଭାବ ବା ଦାସୀ ଭାବ । କେତେବେଳେ ମଧ୍ୟ ତାଙ୍କ ଉପରେ ବାତ୍ସଲ୍ୟ ଭାବ—ଯେପରି ଯଶୋଦାଙ୍କର । କେତେବେଳେ ବା ପତିଭାବ—ମଧୁର ଭାବ—ଯେପରି ଗୋପୀମାନଙ୍କର ।"

"ବଳରାମଙ୍କ କେତେବେଳେ ସଖା ଭାବରେ ରହନ୍ତି, କେତେବେଳେ ବା ମନେକରନ୍ତି, ମୁଁ କୃଷ୍ଣଙ୍କର ଛତ୍ର ବା ଆସନ ହୋଇଛି । ସବୁ ପ୍ରକାରେ ତାଙ୍କରି ସେବା କରନ୍ତି ।"

ଠାକୁର ପ୍ରେମିକ ଭକ୍ତର ଅବସ୍ଥା ବର୍ଣ୍ଣନା କରି କ'ଣ ନିଜର ଅବସ୍ଥା କହୁଛନ୍ତି ? ପୁଣି ଚୈତନ୍ୟଦେବଙ୍କର ତିନୋଟି ଅବସ୍ଥା ବର୍ଣ୍ଣନା କରି ଇଙ୍ଗିତ ଦ୍ୱାରା ବୋଧହୁଏ ନିଜର ଅବସ୍ଥା ବୁଝାଉଅଛନ୍ତି ।

ଶ୍ରୀରାମକୃଷ୍ଣ—ଚୈତନ୍ୟଦେବଙ୍କର ତିନୋଟି ଅବସ୍ଥା ଥିଲା । ଅନ୍ତର୍ଦ୍ଦଶାରେ ସମାଧିସ୍ଥ—ବାହ୍ୟଶୂନ୍ୟ ! ଅର୍ଦ୍ଧବାହ୍ୟଦଶାରେ ଆବିଷ୍ଟ ହୋଇ ନୃତ୍ୟ କରିପାରୁଥିଲେ, କିନ୍ତୁ କଥା କହିପାରୁ ନଥିଲେ । ବାହ୍ୟଦଶାରେ ସଂକୀର୍ତ୍ତନ ।

(ଭକ୍ତମାନଙ୍କ ପ୍ରତି)—"ତୁମେମାନେ ଏହିସବୁ କଥା ଶୁଣୁଛ—ଧାରଣା କରିବାକୁ ଚେଷ୍ଟା କରିବ । ବିଷୟୀମାନେ ସାଧୁ ପାଖକୁ ଯେତେବେଳେ ଆସନ୍ତି ସେତେବେଳେ ବିଷୟ କଥା, ବିଷୟ ଚିନ୍ତା, ଏକାବେଳକେ ଲୁଚାଇ ରଖିଦିଅନ୍ତି । ତା'ପରେ ଚାଲିଗଲେ

ସେଗୁଡ଼ିକୁ ବାହାର କରନ୍ତି । ପାରା ମଟର ଖାଇଲା ମନେହେଲା ଯେ, ତାହାର ହଜମ ହୋଇଗଲା । କିନ୍ତୁ ଗଳା ଭିତରେ ସବୁ ରଖିଦିଏ । ଗଳାରେ ମଟର ଗଡ଼ ଗଡ଼ କରେ ।

## ସନ୍ଧ୍ୟାକାଳୀନ ଉପାସନା । ଶ୍ରୀରାମକୃଷ୍ଣ ଓ ମୁସଲମାନ ଧର୍ମ । ଜପ ଓ ଧ୍ୟାନ ।

''ସବୁ କାର୍ଯ୍ୟ ପକାଇ ସନ୍ଧ୍ୟା ସମୟରେ ତୁମେମାନେ ତାଙ୍କୁ ଡାକିବ ।

''ଅନ୍ଧକାରରେ ଈଶ୍ୱରଙ୍କୁ ମନେ ପଡ଼େ; ସବୁ ଏହିକ୍ଷଣି ଦେଖା ଯାଉଥିଲା !— କିଏ ଏପରି କରିଲା ! ମୁସଲମାନମାନେ, ଦେଖ, ସବୁ କାର୍ଯ୍ୟ ଛାଡ଼ି ଠିକ୍ ସମୟରେ ନମାଜ୍‌ଟି ପଢ଼ିବେ ।

ମୁଖାର୍ଜୀ—ଆଜ୍ଞା ଜପ କରିବା ଭଲ ।

ଶ୍ରୀରାମକୃଷ୍ଣ—ହଁ, ଜପଦ୍ୱାରା ଈଶ୍ୱର ଲାଭ ହୁଏ ! ନିର୍ଜ୍ଜନରେ ଗୋପନରେ ତାଙ୍କର ନାମ କରୁ କରୁ ତାଙ୍କର କୃପା ହୁଏ । ତାହାପରେ ଦର୍ଶନ !

''ଯେପରି ଜଳ ଭିତରେ ବୁଡ଼ିଥିବା ଗୋଟିଏ ବଡ଼ କାଠ ଅଛି—ତୀରରେ ଶିକ୍କୁଳି ଦ୍ୱାରା ବନ୍ଧାଯାଇଛି;—ସେହି ଶିକ୍କୁଳିର ଗୋଟିଏ ଗୋଟିଏ କଡ଼ା ଧରି ଗଲେ, ଶେଷରେ ବଡ଼ କାଠକୁ ସ୍ପର୍ଶ କରାଯାଏ ।

''ପୂଜା ଅପେକ୍ଷା ଜପ ଶ୍ରେଷ୍ଠ । ଜପ ଅପେକ୍ଷା ଧ୍ୟାନ ଶ୍ରେଷ୍ଠ । ଧ୍ୟାନ ଅପେକ୍ଷା ଭାବ ଶ୍ରେଷ୍ଠ, ଭାବ ଅପେକ୍ଷା ମହାଭାବ, ପ୍ରେମ ଶ୍ରେଷ୍ଠ । ଚୈତନ୍ୟଦେବଙ୍କର ପ୍ରେମ ହୋଇଥିଲା । ପ୍ରେମ ହେଲେ ଈଶ୍ୱରଙ୍କୁ ବାନ୍ଧିବାର ଦଉଡ଼ି ମିଳିଯାଏ ।''

ହାଜରା ଆସି ବସିଅଛନ୍ତି ।

## ରାଗ ଭକ୍ତି, ମାଳା ଜପିବା ଓ ଠାକୁର ଶ୍ରୀରାମକୃଷ୍ଣ । ନାରାୟଣ ।

ଶ୍ରୀରାମକୃଷ୍ଣ (ହାଜରାଙ୍କୁ)—ଯଦି ତାଙ୍କ ଉପରେ ଶ୍ରଦ୍ଧା ଆସେ, ତା'ର ନାମ **ରାଗ ଭକ୍ତି** । ବୈଧୀ ଭକ୍ତି ଆସିବାରେ ଯେତେକ୍ଷଣ, ଯିବାରେ ମଧ୍ୟ ସେତେକ୍ଷଣ । ରାଗ ଭକ୍ତି ପାତାଳ-ଫୁଟା ଲିଙ୍ଗ ପରି । ତା'ର ମୂଳ ଖୋଜି ମିଳେ ନାହିଁ । ପାତାଳଫୁଟା ଲିଙ୍ଗ ର ମୂଳ କାଶୀ ପର୍ଯ୍ୟନ୍ତ । ରାଗ ଭକ୍ତି, ଅବତାର ଏବଂ ତାଙ୍କର ସାଙ୍ଗୋପାଙ୍ଗଙ୍କର ହୁଏ ।

ହାଜରା—ଆହା !

ଶ୍ରୀରାମକୃଷ୍ଣ—ତୁମେ ଯେତେବେଳେ ଦିନେ ଜପ କରୁଥିଲ—ପଞ୍ଚବଟୀରୁ ଫେରି ମୁଁ ମା'ଙ୍କୁ କହିଲି, ମା' ଏକି ଛୋଟବୁଦ୍ଧି, ଏଠାକୁ ଆସି ମାଳା ଧରି ଜପ କରୁଛି ! ଯେ ଏଠାକୁ ଆସିବ ତା'ର ଏକାବେଳକେ ଚୈତନ୍ୟ ହେବ । ତୁମେ କଲିକତାକୁ ଯଦି ଯିବ, ଦେଖିବ ହଜାର ହଜାର ଲୋକ ମାଳା ଜପ କରୁଛନ୍ତି—ବେଶ୍ୟା ପର୍ଯ୍ୟନ୍ତ !

ଠାକୁର ମାଷ୍ଟରଙ୍କୁ କହୁଅଛନ୍ତି—ତୁମେ ନାରାୟଣକୁ ଗାଡ଼ିରେ ଆଣିବ ।

ଏହାଙ୍କୁ (ମୁଖାର୍ଜୀଙ୍କୁ) ମଧ୍ୟ କହି ରଖିଲି—ନାରାୟଣର କଥା । ସେ ଆସିଲେ କିଛି ଖୁଆଇବି । ଏମାନଙ୍କୁ ଖୁଆଇବାର ଅନେକ କାରଣ ଅଛି ।

## ( ୬ )

## ଠାକୁର ଶ୍ରୀରାମକୃଷ୍ଣ କଲୁଟୋଲାରେ ଶ୍ରୀଯୁକ୍ତ ନବୀନ ସେନଙ୍କ ଘରଠାରେ ବ୍ରାହ୍ମଭକ୍ତଙ୍କ ସଙ୍ଗରେ କୀର୍ତ୍ତନାନନ୍ଦରେ ।

ଆଜି ଶନିବାର କୁମାର ପୂର୍ଣ୍ଣମୀ । ଶ୍ରୀଯୁକ୍ତ କେଶବ ସେନଙ୍କ ଜ୍ୟେଷ୍ଠ ଭ୍ରାତା ନବୀନ ସେନଙ୍କର କଲୁଟୋଲା ଘରକୁ ଠାକୁର ଆସିଛନ୍ତି । ତା ୪ ରିଖ ଅକ୍ଟୋବର, ୧୮୮୪ ଖ୍ରୀଷ୍ଟାବ୍ଦ; ଆଶ୍ୱିନ ମାସ ୧୮ ଦିନ ।

ଗତ ବୃହସ୍ପତିବାର ଦିନ କେଶବ ସେନଙ୍କର ମା' ଠାକୁରଙ୍କୁ ନିମନ୍ତ୍ରଣ କରି ତାଙ୍କ ଘରକୁ ଯିବାକୁ ବାରମ୍ବାର କହିଯାଇଥିଲେ ।

ଠାକୁର ଘରର ଉପର ମହଲାରେ ଗୋଟିଏ କୋଠରୀରେ ବସିଲେ । କେଶବଙ୍କର ନନ୍ଦଲାଲ ପ୍ରଭୃତି ଭ୍ରାତୃଷ୍ପୁତ୍ରଗଣ, କେଶବଙ୍କର ମାତା ଓ ତାଙ୍କର ଆତ୍ମୀୟ ବନ୍ଧୁଗଣ ଠାକୁରଙ୍କର ଯତ୍ନ କରୁଅଛନ୍ତି । ଉପର ଘରେ ସଂକୀର୍ତ୍ତନ ହେଲା ! କଲୁଟୋଲାର ସେନମାନଙ୍କ ଅନେକ ସ୍ତ୍ରୀଲୋକ ମଧ୍ୟ ଆସିଅଛନ୍ତି ।

ଠାକୁରଙ୍କ ସଙ୍ଗରେ ବାବୁରାମ, କିଶୋରୀ, ଆଉ ମଧ୍ୟ ଜଣେ ଦୁଇଜଣ ଭକ୍ତ । ମାଷ୍ଟର ମଧ୍ୟ ଆସିଅଛନ୍ତି । ସେ ତଳ ମହଲାରେ ବସି ଠାକୁରଙ୍କର ମଧୁର ସଂକୀର୍ତ୍ତନ ଶୁଣୁଅଛନ୍ତି ।

ଠାକୁର ବ୍ରାହ୍ମଭକ୍ତମାନଙ୍କୁ କହୁଅଛନ୍ତି—ସଂସାର ଅନିତ୍ୟ; ଆଉ ସର୍ବଦା ମୃତ୍ୟୁ ସ୍ମରଣ କରିବା ଉଚିତ । ଠାକୁର ଗୀତ ଗାଉଅଛନ୍ତି—

ଭେବେ ଦେଖ ମନ କେଉ କାରୁ ନୟ ମିଛେ ଭ୍ରମ ଭୂମଣ୍ଡଳେ ।
ଭୁଲ ନା ଦକ୍ଷିଣ କାଳୀ ବଦ୍ଧ ହୟେ ମାୟାଜାଲେ ।।
ଦିନ ଦୁଇ ତିନେର ଜନ୍ୟ ଭବେ କର୍ତ୍ତା ବଲେ ସବାଇ ମାନେ ।
ସେଇ କର୍ତ୍ତାରେ ଦେବେ ଫେଲେ କାଲାକାଲେର କର୍ତ୍ତା ଏଲେ ।।
ଯାର ଜନ୍ୟ ମର ଭେବେ, ସେ କି ତୋମାର ସଙ୍ଗେ ଯାବେ ।
ସେଇ ପ୍ରେୟସୀ ଦିବେ ଛଡ଼ା ଅମଙ୍ଗଳ ହବେ ବଲେ ।।

ଠାକୁର କହୁଛନ୍ତି—ଗଭୀରକୁ ବୁଡ଼—ଉପରେ ଭାସିଲେ କଅଣ ହେବ ? କିଛିଦିନ ନିର୍ଜ୍ଜନରେ, ସବୁ ଛାଡ଼ି, ଷୋଳଅଣା ମନ ଦେଇ, ତାଙ୍କୁ ଡାକ । ଠାକୁର ଗୀତ ଗାଉଅଛନ୍ତି—

ବୁଡ଼ଦିଅ ରୂପସାଗରେ ମୋହର ମନ ।
ତଳେ, ପାତାଳେ ପାଇବ ପ୍ରେମ-ରତ୍ନଧନ ॥

ଖୋଜିଲେ ପାଇବ ଅନ୍ତରରେ ବୃନ୍ଦାବନ ।
ଦିକ୍ ଦିକ୍ କରି ହୃଦୟ ଜଳିବ ଜ୍ଞାନବତୀ ଅନୁକ୍ଷଣ ॥
ମାଟି ଉପରେ ଚଳାଏ ଡଙ୍ଗା କିଏ ସେ ଜନ ।
କୁବୀର କହେ ଶୁଣ ଶୁଣ, ଧ୍ୟାୟ ଗୁରୁ ଶ୍ରୀଚରଣ ॥

ଠାକୁର ବ୍ରାହ୍ମଭକ୍ତମାନଙ୍କୁ, 'ତୁମି ସର୍ବସ୍ୱ ଆମାର ।' ଏହି ଗୀତଟି ଗାଇବାକୁ କହୁଛନ୍ତି ।

ତୁମି ସର୍ବସ୍ୱ ଆମାର (ହେ ନାଥ) ପ୍ରାଣାଧାର ସାରାତ୍‌ସାର ।
ନାହି ତୋମା ବିନେ, କେହି ତ୍ରିଭୁବନେ, ଆପନାର ବଲିବାର ।।

ଠାକୁର ନିଜେ ଗାଉଅଛନ୍ତି;—

ଯଶୋଦାର ବେଶ ସାଜି, ଆଉ ଥରେ ନାଚ ଗୋ ଶ୍ୟାମା ।
ହସି ବଂଶୀ ସ୍ୱର ମିଳାଇ, ଆଉ ଥରେ ନାଚ ଗୋ ଶ୍ୟାମା ।
ତୋର ଶିବ ହେଉ ବଳରାମ, ଆଉ ଥରେ ନାଚଗୋ ଶ୍ୟାମା ।
ଅଷ୍ଟ ନାୟିକା ଅଷ୍ଟ ସଖୀ କରି, ଆଉ ଥରେ ନାଚଗୋ ଶ୍ୟାମା ।
ଗଗନେ ଗଡ଼ିବାରୁ ବେଳ,
ରାଣୀ ତ ହୁଅନ୍ତି ବ୍ୟାକୁଳ ॥
ବୋଲନ୍ତି ଧର ଧର ରେ ଗୋପାଳ,
କ୍ଷୀର ସର ଲବଣୀ,
ଆଲୁଳାୟିତ କେଶ ରାଶି,
ବାନ୍ଧିଦେବି ବେଣୀ,
ଶ୍ରୀଦାମର ସଙ୍ଗେ ନାଚିଲେ,
ତ୍ରିଭଙ୍ଗେ, ବାଜେ ତାଥେୟା, ତାଥେୟା ।
ତାତା ଥେୟା, ତାତା ଥେୟା,
ବାଜଇ ନୂପୁର ଧ୍ୱନି,
ଶୁଣି ତାହା ଆସୁଥିଲେ,
ଧାଇଁ ବ୍ରଜର ରମଣୀ ॥ (ଗୋ ମା !)

ଏହି ଗୀତ ଶୁଣି କେଶବ ଏହି ସୁରରେ ଗୋଟିଏ ଗୀତ ରଚନା କରିଥିଲେ ।

ବ୍ରାହ୍ମଭକ୍ତମାନେ ଖୋଳ କରତାଳ ଧରି ଗୀତ ଗାଉଛନ୍ତି—

କତ ଭାଲବାସ ଗୋ ମା' ମାନବ ସନ୍ତାନେ,
ମନେ ହଲେ ପ୍ରେମଧାରା ବହେ ଦୁ ନୟନେ ।

ସେମାନେ ପୁଣି ମାଆଙ୍କ ନାମ କରୁଅଛନ୍ତି ।

(୧)—ଅନ୍ତରେ ଜାଗିଛ ଗୋ ମା' ଅନ୍ତର ଯାମିନୀ,
କୋଲେ କରେ ଆଛ ମୋରେ ଦିବସ ଯାମିନୀ ।

(୨)—କେନ ରେ ମନ ଭାବିସ ଏତ, ଦୀନ ହୀନ କାଙ୍ଗାଲେର ମତ,
ଆମାର ମା' ବ୍ରହ୍ମାଣ୍ଡେଶ୍ୱରୀ ସିଦ୍ଧେଶ୍ୱରୀ କ୍ଷେମଙ୍କରୀ ।

ଠାକୁର ଏଥର ହରିନାମ ଓ ଗୌରାଙ୍ଗଙ୍କର ନାମ ସଂକୀର୍ତ୍ତନ କରୁଅଛନ୍ତି ଓ ବ୍ରାହ୍ମଭକ୍ତମାନଙ୍କ ସହିତ ନାଚୁଅଛନ୍ତି ।

(୧)—ମଧୁର ହରିନାମ ଗାଅ ରେ ଜୀବ, ଯଦି ସୁଖେ ରହିବୁ ।
(୨)—ଗୌରପ୍ରେମେର ଢେଉ ଲାଗିଛି ଦେହେ ।
(୩)—ବ୍ରଜେ ଯାଇ କାଙ୍ଗାଳର ବେଶେ କୌପିନ ଦିଅ ହେ ଭାରତୀ ।
(୪)—ଗୌର ନିତାଇ ତୁମେ ଦୁଇଭାଇ, ପରମ ଦୟାଳୁ ହେ ପ୍ରଭୁ ।
(୫)—ହରି ବଲେ ଆମର ଗୌର ନାଚେ ।
(୬)—କିଏ ହରିବୋଲ ହରିବୋଲ ବୋଲି ଯାଏରେ । ଥରେ ଯାଇ ମାଧାଇ ଜାଣି ଆ' ରେ ।

(ବୋଧେ ଗୌର ଯାଏ ଆଉ ନିତାଇ ଯାଏରେ) (ଯାହାର ସୁନାର ନୁପୁର ରାଙ୍ଗାଚରଣେ)
(ଯାହାର ମସ୍ତକ ଲଣ୍ଡିତ କନ୍ଥା ଛିଣ୍ଡାରେ,) (ଦେଖିବାକୁ ଯିଏ ପାଗଳ ପରିରେ) ।

ବ୍ରାହ୍ମ ଭକ୍ତମାନେ ପୁଣି ଗାଉଅଛନ୍ତି,—
କେତେ ଦିନେ ହେବ ସେ ପ୍ରେମ ସଞ୍ଚାର ।
ହୋଇ ପୂର୍ଣ୍ଣକାମ ବୋଲିବି ହରିନାମ, ନୟନେ ବହିବ ପ୍ରେମ ଅଶ୍ରୁଧାର ।।

ଠାକୁର ଉଚ୍ଚ ସ୍ୱରରେ ସଂକୀର୍ତ୍ତନ ଗାଉଅଛନ୍ତି ଓ ନାଚୁଅଛନ୍ତି—
(୧)—ହରି ବୋଲିଲେ ଯା'ଙ୍କ ନୟନୁ ନୀର ଝରେ
ଆସିଛନ୍ତି ସେହି ଦୁଇଭାଇରେ !
(ମାଡ଼ ଖାଇ ଯିଏ ପ୍ରେମ ପରଷନ୍ତି) (ଯିଏ ନିଜେ କାନ୍ଦି ଜଗତ କନ୍ଦାନ୍ତି ) ।
(୨)-ନଦିଆକୁ ଟଳମଳ କରେ ଟଳମଳ କରେ ଗୌର ପ୍ରେମର ହିଲ୍ଲୋଳେ ରେ !

ଠାକୁର ମା'ଙ୍କ ନାମ କରୁଛନ୍ତି—
ଗୋ ଆନନ୍ଦମୟୀ ହୋଇ ମା ମୋତେ ନିରାନନ୍ଦ କରନି ।

ବ୍ରାହ୍ମଭକ୍ତମାନେ ସେମାନଙ୍କର ଦୁଇଟି ଗୀତ ଗାଉଛନ୍ତି ।
(୧)-ଦେ ମା ମୋତେ ପାଗଳ କରି ।
(୨)-ଚିଦାକାଶେ ହେଲା ପୂର୍ଣ୍ଣ ପ୍ରେମ ଚନ୍ଦ୍ରୋଦୟ ହେ ।



# ପଞ୍ଚଦଶ ପରିଚ୍ଛେଦ

## (୧)

## ଦକ୍ଷିଣେଶ୍ୱର ମନ୍ଦିରରେ ବାବୁରାମ, ମାଷ୍ଟର, ନୀଳକଣ୍ଠ, ମନମୋହନ ପ୍ରଭୃତି ଭକ୍ତଙ୍କ ସଙ୍ଗରେ ।

### ହାଜରା ମହାଶୟ-ଅହୈତୁକୀ ଭକ୍ତି ।

ଠାକୁର ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱର ମନ୍ଦିରରେ ଭକ୍ତଙ୍କ ସଙ୍ଗରେ ମଧ୍ୟାହ୍ନ ସେବା ପରେ ନିଜ ଘରେ ବସିଅଛନ୍ତି । ତଳେ ମାଷ୍ଟର, ହାଜରା, ବଡ଼ କାଳୀ, ବାବୁରାମ, ରାମଲାଲ, ମୁଖାର୍ଜୀମାନଙ୍କ ଭିତରୁ ହରି ପ୍ରଭୃତି—କେହି ବସିଅଛନ୍ତି କେହି ଠିଆ ହୋଇଛନ୍ତି । ଶ୍ରୀଯୁକ୍ତ କେଶବଙ୍କର ମାତାଠାକୁରାଣୀଙ୍କ ନିମନ୍ତ୍ରଣରେ ଗତକାଲି ସେମାନଙ୍କର କଲୁଟୋଲାର ଘରକୁ ଯାଇ ଠାକୁର ଖୁବ୍ କୀର୍ତ୍ତନାନନ୍ଦ କରିଥିଲେ ।

ଶ୍ରୀରାମକୃଷ୍ଣ (ହାଜରାଙ୍କ ପ୍ରତି)—ମୁଁ କାଲି କେଶବ ସେନ୍‌ଙ୍କ ଘରେ (ନବୀନ ସେନ୍‌ଙ୍କ ଘର) ବେଶ୍ ଖାଇଲି—ଅତି ଭକ୍ତିରେ ଦେଲେ ।

## ହାଜରା ମହାଶୟ ଓ ତତ୍ତ୍ୱଜ୍ଞାନ । ହାଜରା ଓ ତର୍କବୁଦ୍ଧି ।

ହାଜରା ମହାଶୟ ଅନେକ ଦିନ ଧରି ଠାକୁରଙ୍କ ପାଖରେ ରହିଅଛନ୍ତି । 'ମୁଁ ଜ୍ଞାନୀ' ଏହା ବୋଲି ତାଙ୍କର ଟିକିଏ ଅଭିମାନ ଅଛି । ଲୋକଙ୍କ ପାଖରେ ଠାକୁରଙ୍କର ଟିକିଏ ନିନ୍ଦା ମଧ କରନ୍ତି । ଏଣେ ବାରଣ୍ଡାରେ ନିଜ ଆସନରେ ବସି ଏକ ମନରେ ମାଳା ଜପ କରନ୍ତି । ଚୈତନ୍ୟଦେବଙ୍କୁ 'ହାଲର ଅବତାର' କହି ସାମାନ୍ୟ ଜ୍ଞାନ କରନ୍ତି । କହନ୍ତି, 'ଈଶ୍ୱର ଯେ କେବଳ ଭକ୍ତି ଦିଅନ୍ତି, ତାହା ନୁହେଁ, ତାଙ୍କର ଐଶ୍ୱର୍ଯ୍ୟର କିଛି ଅଭାବ ନାହିଁ,—ସେ ଐଶ୍ୱର୍ଯ୍ୟ ମଧ ଦିଅନ୍ତି । ଈଶ୍ୱର ଲାଭ କଲେ ଅଷ୍ଟସିଦ୍ଧି ପ୍ରଭୃତି ଶକ୍ତି ମଧ ହୁଏ ।' ଘରର କିଛି କରଜ ଅଛି—ପ୍ରାୟ ହଜାର ଟଙ୍କା । ତେଣୁ ସେ ଟିକିଏ ଭାବିତ ଅଛନ୍ତି ।

ବଡ଼ କାଳୀ ଅଫିସରେ କର୍ମ କରନ୍ତି । ସାମାନ୍ୟ ବେତନ । ଘରେ ସ୍ତ୍ରୀ ପିଲାପିଲି ଅଛନ୍ତି । ପରମହଂସଦେବଙ୍କର ଉପରେ ଖୁବ୍ ଭକ୍ତି;ମଝିରେ ମଝିରେ ଅଫିସରେ ଅନୁପସ୍ଥିତ ହୋଇ ତାହାଙ୍କୁ ଦର୍ଶନ କରିବାକୁ ଆସନ୍ତି ।

ବଡ଼କାଳୀ (ହାଜରାଙ୍କ ପ୍ରତି)—ତୁମେ ତ କଷ୍ଟି ପଥର ହୋଇ, କିଏ ଭଲ ସୁନା, କିଏ ମନ୍ଦ ସୁନା ପରଖ କରି କରି ବୁଲୁଛ—ପରର ଏତେ ନିନ୍ଦା କର କାହିଁକି ?

ହାଜରା—ଯାହା କହେ, ତାଙ୍କର ପାଖରେ କହୁଛି ।

ଶ୍ରୀରାମକୃଷ୍ଣ—ତା' ସତ ।

ହାଜରା ତତ୍ତ୍ୱଜ୍ଞାନ ମାନେ ବ୍ୟାଖ୍ୟା କରୁଛନ୍ତି ।

ହାଜରା—ତତ୍ତ୍ୱଜ୍ଞାନ ମାନେ କଅଣ,—ନା ଚବିଶ ତତ୍ତ୍ୱ ଅଛି, ଏଗୁଡ଼ିକୁ ଜାଣିବା ।

ଜଣେ ଭକ୍ତ—ଚବିଶ ତତ୍ତ୍ୱ କି କି ?

ହାଜରା—ପଞ୍ଚ ଭୂତ, ଛଅ ରିପୁ, ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ, ଏହିସବୁ ।

ମାଷ୍ଟର (ଠାକୁରଙ୍କୁ, ସହାସ୍ୟରେ)—ଏ କହୁଛନ୍ତି ଛଅ ରିପୁ ଚବିଶ ତତ୍ତ୍ୱର ଭିତରେ !

ଶ୍ରୀରାମକୃଷ୍ଣ (ସହାସ୍ୟରେ)—ହେଇ ଦେଖ ନା । ତତ୍ତ୍ୱଜ୍ଞାନର ମାନେ କଅଣ କରୁଛନ୍ତି ! ତତ୍ତ୍ୱଜ୍ଞାନ ମାନେ ଆତ୍ମଜ୍ଞାନ ! ତତ୍ ମାନେ ପରମାତ୍ମା, ତ୍ୱଂ ମାନେ ଜୀବାତ୍ମା । ଜୀବାତ୍ମା ଆଉ ପରମାତ୍ମା ଏକ ଜ୍ଞାନ ହେଲେ ତତ୍ତ୍ୱଜ୍ଞାନ ହୁଏ ।

ହାଜରା କିଛିକ୍ଷଣ ପରେ ଘରୁ ବାରଣ୍ଡାକୁ ଆସି ବସିଲେ ।

ଶ୍ରୀରାମକୃଷ୍ଣ (ମାଷ୍ଟର ପ୍ରଭୃତିଙ୍କୁ)—ସେ କେବଳ ତର୍କ କରନ୍ତି । ଏବେ ବେଶ୍ ବୁଝିଗଲେ—ପୁଣି ଟିକିଏ ପରେ ଯେପରିକି ସେପରି !

'ବଡ଼ ମାଛ ଜୋରରେ ଟାଣୁଛି ଦେଖିଲେ ମୁଁ ସୁତାକୁ କୋହଳ କରିଦିଏ । ତାହା ନହେଲେ ସୁତା ଛିଣ୍ଡାଇ ପକାଇବ, ଆଉ ଯେ ଧରିଛି, ସେ ମଧ୍ୟ ଜଳରେ ପଡ଼ିବ ! ମୁଁ ସେଥିପାଇଁ ବେଶି କିଛି କହେ ନାହିଁ ।

## ହାଜରା ଓ ମୁକ୍ତି । ଷଡୈଶ୍ୱର୍ଯ୍ୟ । ସକାମ ଓ ଅହୈତୁକୀ ଭକ୍ତି ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କୁ)—ହାଜରା କହନ୍ତି, 'ବ୍ରାହ୍ମଣ ଶରୀର ନହେଲେ ମୁକ୍ତି ହୁଏନାହିଁ । ମୁଁ କହିଲି, ସେ କଅଣ ! ଭକ୍ତି ଦ୍ୱାରା ହିଁ ମୁକ୍ତି ହେବ । ଶବରୀ ବ୍ୟାଧର କନ୍ୟା, ରୋହି ଦାସ ଯାହାର ଖାଇବା ସମୟରେ ଘଣ୍ଟା ବାଜେ—ଏମାନେ ସବୁ ଶୂଦ୍ର । ଏମାନଙ୍କର ଭକ୍ତି ଦ୍ୱାରା ହିଁ ମୁକ୍ତି ହୋଇଛି ! ହାଜରା ତଥାପି ଯୁକ୍ତି କରନ୍ତି !

''ଧ୍ରୁବଙ୍କୁ ମାନନ୍ତି । ପ୍ରହ୍ଲାଦଙ୍କୁ ଯେତେ ମାନନ୍ତି, ଧ୍ରୁବଙ୍କୁ ସେତେ ନୁହେଁ । ଲାଟୁ କହିଲା, 'ଧ୍ରୁବଙ୍କର ପିଲାଦିନରୁ ଈଶ୍ୱରଙ୍କ ପ୍ରତି ଅନୁରାଗ—ସେତେବେଳେ ଯାଇ ଚୁପ୍ ରହନ୍ତି '।''

''ମୁଁ କହେ ନିଷ୍କାମ ଭକ୍ତି, ଅହୈତୁକୀ ଭକ୍ତି—ଏହାଠାରୁ ବଳି କିଛି ନାହିଁ । ଏକଥା ସେ କାଟି ଦିଅନ୍ତି । ଯେଉଁମାନେ କିଛି ମାଗନ୍ତି, ସେମାନେ ଆସିଲେ, ବଡ଼ଲୋକ ବିରକ୍ତ ହୁଏ—ବିରକ୍ତ ହୋଇ କହେ, 'ହେଇ ଆସୁଛି' । ଆସିବା ପରେ ଏକପ୍ରକାର ବିରକ୍ତ ହୋଇ କହେ 'ବସ୍' ! ଯେଉଁମାନେ କିଛି ଚାହାନ୍ତି, ସେମାନଙ୍କୁ ନିଜ ଗାଡ଼ିରେ ନିଅନ୍ତି ନାହିଁ ।''

''ହାଜରା କହନ୍ତି, ସେ ଏସବୁ ଧନୀମାନଙ୍କ ପରି ନୁହନ୍ତି । ତାଙ୍କର କଅଣ ଐଶ୍ୱର୍ଯ୍ୟର ଅଭାବ ଯେ ଦେବାକୁ କଷ୍ଟ ହେବ ?''

''ହାଜରା ପୁଣି କହନ୍ତି—'ଆକାଶରୁ ଯେତେବେଳେ ବର୍ଷା ଜଳ ପଡ଼େ ସେତେବେଳେ ଗଙ୍ଗା ଓ ଅନ୍ୟାନ୍ୟ ବଡ଼ ବଡ଼ ନଦୀ, ବଡ଼ ବଡ଼ ପୋଖରୀ, ଏସବୁ ବଢ଼ି ଯାଆନ୍ତି;ପୁଣି ଗାଡ଼ିଆ, ଖାଲ, ଖମା ଗୁଡ଼ିକ ମଧ୍ୟ ପରିପୂର୍ଣ୍ଣ ହୋଇଯାଏ । ତାଙ୍କର କୃପା ହେଲେ ଜ୍ଞାନ,

ଭକ୍ତି ଦିଅନ୍ତି,-ଆଉ ଟଙ୍କା କଉଡ଼ି ମଧ୍ୟ ଦିଅନ୍ତି ।''

''କିନ୍ତୁ ଏହାକୁ ସକାମ ଭକ୍ତି କହନ୍ତି । ଶୁଦ୍ଧା ଭକ୍ତିରେ କୌଣସି କାମନା ରହେନାହିଁ । ତୁମେ ଏଠାରେ କିଛି ଚାହଁ ନାହିଁ, କିନ୍ତୁ (ମୋତେ) ଦେଖିବାକୁ ଆଉ (ମୋର) କଥା ଶୁଣିବାକୁ ଭଲପାଅ; ତୁମ ଦିଗରେ ମଧ୍ୟ ମୋର ମନ ପଡ଼ିରହେ । —କିପରି ଅଛ—କାହିଁକି ଆସନାହିଁ—ଏହିସବୁ ଭାବେ ।''

''କିଛି ଚାହଁନାହିଁ । ଅଥଚ ଭଲପାଅ—ଏହାର ନାମ ଅହୈତୁକୀ ଭକ୍ତି, ଶୁଦ୍ଧା ଭକ୍ତି । ପ୍ରହ୍ଲାଦଙ୍କର ଏହା ଥିଲା; ରାଜ୍ୟ ଚାହାନ୍ତି ନାହିଁ, ଐଶ୍ୱର୍ଯ୍ୟ ଚାହାନ୍ତି ନାହିଁ, କେବଳ ହରିଙ୍କୁ ଚାହାନ୍ତି ।''

ମାଷ୍ଟର—ହାଜରା ମହାଶୟ କେବଳ ଗୁଡ଼ାଏ ଗପନ୍ତି । କିନ୍ତୁ ନୀରବ ନ ରହିଲେ କିଛି ହୁଏନାହିଁ ।

## ହାଜରାଙ୍କର ଅହଂକାର ଓ ଲୋକନିନ୍ଦା ।

ଶ୍ରୀରାମକୃଷ୍ଣ—ଥରେ ଥରେ ମୋ ପାଖକୁ ଆସି ନମ୍ରତା ପ୍ରକାଶ କରନ୍ତି । ଏପରି ଗ୍ରହ ଯେ, ପୁଣି ତର୍କ କରନ୍ତି । ଅହଂକାର ଯିବା ବଡ଼ କଷ୍ଟ । ଅଶ୍ୱତ୍ଥ ଗଛକୁ ବର୍ତ୍ତମାନ କାଟି ଦିଅ । କିଛିଦିନ ପରେ ଦେଖିବ, ତାହା ପୁଣି ଗଜୁରିଛି । ଯେପର୍ଯ୍ୟନ୍ତ ଗଛର ଚେର ଅଛି ସେ ପର୍ଯ୍ୟନ୍ତ ଏପରି ହେବ ।

''ମୁଁ ହାଜରାଙ୍କୁ କହେ, କାହାରି ନିନ୍ଦା କରନାହିଁ । ନାରାୟଣ ହିଁ ଏହି ସବୁ ରୂପ ଧରି ରହିଛନ୍ତି । ଦୁଷ୍ଟ ଓ ଖରାପ ଲୋକଙ୍କୁ ମଧ୍ୟ ପୂଜା କରାଯାଏ ।''

''ଦେଖୁନା, କୁମାରୀ ପୂଜା । ଯେ ହଗେ, ମୁତେ, ନାକରୁ ସିଙ୍ଘାଣି ପଡୁଛି, ଏପରି ବାଳିକାକୁ ପୂଜା କରନ୍ତି କାହିଁକି ? କାରଣ ଭଗବତୀଙ୍କର ଗୋଟିଏ ରୂପ ବୋଲି ।''

''ଭକ୍ତ ଭିତରେ ସେ ବିଶେଷ ରୂପରେ ଅଛନ୍ତି । ଭକ୍ତ ଈଶ୍ୱରଙ୍କର ବୈଠକଖାନା ।''

''ଲାଉର ବଡ଼ ଡୋଲ ହେଲେ ତାନ୍‌ପୁରା ଭଲ ହୁଏ,—ବେଶ୍ ବାଜେ ।''

(ସହାସ୍ୟରେ, ରାମଲାଲଙ୍କ ପ୍ରତି)—''ହଇରେ ରାମଲାଲ, ହାଜରା ସେଇଟା କିପରି କହିଲେ—ଅନ୍ତସ୍ ବହିସ୍ ଯଦି ହରିସ୍ (ସ-କାର ଦେଇ) ? ଯେପରି ଜଣେ କହିଥିଲେ 'ମାତାରଂ ଭାତାରଂ ଖାତାରଂ ଅର୍ଥାତ୍ ମା' ଭାତ ଖାଉଛି ।'' (ସମସ୍ତଙ୍କର ହାସ୍ୟ) ।

ରାମଲାଲ (ସହାସ୍ୟେ)—ଅନ୍ତର୍ବହିର୍ଯଦିହରିସ୍ତପସା ତତଃ କିମ୍ ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—ଏହାକୁ ତୁମେ ଅଭ୍ୟାସ କର, ମୋତେ ମଝିରେ ମଝିରେ କହିବ ।

ଠାକୁରଙ୍କ ଘରୁ ଥାଳିଆ ହଜିଛି । ରାମଲାଲ ଓ ବୃନ୍ଦା ଦାସୀ ଏହି କଥା ଠାକୁରଙ୍କୁ କହୁଛନ୍ତି—'ସେ ଥାଳିଆ କ'ଣ ଆପଣ ଜାଣନ୍ତି ?'

ଶ୍ରୀରାମକୃଷ୍ଣ—କାହିଁ ଆଜିକାଲି ତ ତାହା ଦେଖୁନାହିଁ । ଆଗେ ଥିଲା, ଦେଖିଥିଲି ।

## (୨)

## ଶ୍ରୀରାମକୃଷ୍ଣ ଦୁଇଜଣ ସାଧୁଙ୍କ ସଙ୍ଗରେ । ଠାକୁରଙ୍କର ପରମହଂସ ଅବସ୍ଥା ।

ଆଜି ପଞ୍ଚବଟୀକୁ ଦୁଇଜଣ ସାଧୁ ଅତିଥି ଆସିଅଛନ୍ତି । ସେମାନେ ଗୀତା ବେଦାନ୍ତ ପ୍ରଭୃତି ଅଧ୍ୟୟନ କରନ୍ତି । ମଧ୍ୟାହ୍ନ ସେବା ପରେ ଆସି ଠାକୁରଙ୍କୁ ଦର୍ଶନ କରୁଅଛନ୍ତି । ସେ ଛୋଟ ଛୋଟ ଖଟ ଉପରେ ବସିଅଛନ୍ତି । ସାଧୁମାନେ ପ୍ରଣାମ କରି ତଳେ ସପ ଉପରେ ବସିଲେ । ମାଷ୍ଟର ପ୍ରଭୃତି ବସିଅଛନ୍ତି । ଠାକୁର ହିନ୍ଦିରେ କଥା କହୁଅଛନ୍ତି ।

ଶ୍ରୀରାମକୃଷ୍ଣ—ଆପଣମାନେ ଖାଇଲେଣି ?

ସାଧୁମାନେ—ଜୀ, ହାଁ ।

ଶ୍ରୀରାମକୃଷ୍ଣ—କଅଣ ଖାଇଲେ ?

ସାଧୁମାନେ—ଡାଲ୍ ରୁଟି; ଆପଣ ଖାଇବେ ?

## ସାଧୁ ଓ ନିଷ୍କାମ କର୍ମ । ଭକ୍ତି କାମନା । ବେଦାନ୍ତ —ସଂସାରୀ ଓ 'ସୋଽହଂ' ।

ଶ୍ରୀରାମକୃଷ୍ଣ—ନା, ମୁଁ ଗଣ୍ଡାଏ ଭାତ ଖାଏ । ଆଚ୍ଛା ଜୀ, ଆପଣମାନେ ଯେଉଁ ଜପ ଧ୍ୟାନ କରନ୍ତି, ତାହା ନିଷ୍କାମ ଭାବରେ କରନ୍ତି ତ ?

ସାଧୁ—ଜୀ ମହାରାଜ ।

ଶ୍ରୀରାମକୃଷ୍ଣ—ଏହା ଠିକ୍ ମହାରାଜ, ଆଉ ଈଶ୍ୱରଙ୍କଠାରେ ଫଳ ସମର୍ପଣ କରିବାକୁ ହୁଏ;—ନା ? ଗୀତାରେ ଏହିପରି ଅଛି ।

ସାଧୁ (ଅନ୍ୟ ସାଧୁଙ୍କ ପ୍ରତି)—

ଯତ୍ କରୋଷି, ଯଦଶ୍ନାସି ଯଜ୍ଜୁହୋଷି ଦଦାସି ଯତ୍ ।
ଯତ୍ ତପସ୍ୟସି, କୌନ୍ତେୟ ତତ୍ କୁରୁଷ୍ୱ ମଦର୍ପଣମ୍ ।।

ଶ୍ରୀରାମକୃଷ୍ଣ—ତାଙ୍କୁ ଗୁଣେ ଯାହା ଦେବ, ତାହା ହଜାର ଗୁଣରେ ପାଇବ । ତେଣୁ ସବୁ କାର୍ଯ୍ୟ କରିବା ପରେ ଗଣ୍ଡୁଷେ ଜଳ ଅର୍ପଣ ଅର୍ଥାତ୍ କୃଷ୍ଣଙ୍କଠାରେ ଫଳ ସମର୍ପଣ ।

"ଯୁଧିଷ୍ଠିର ଯେତେବେଳେ ସମସ୍ତ ପାପ କୃଷ୍ଣଙ୍କୁ ଅର୍ପଣ କରିବାକୁ ଯାଉଥିଲେ, ସେତେବେଳେ ଭୀମ ତାଙ୍କୁ ସତର୍କ କରାଇଥିଲେ, ଏପରି କର୍ମ କରନ୍ତୁ ନାହିଁ—କାରଣ କୃଷ୍ଣଙ୍କୁ ଯାହା ଅର୍ପଣ କରିବ, ତାହାର ସହସ୍ରଗୁଣ ତୁମେ ପାଇବ !' ଆଚ୍ଛା ଜୀ ନିଷ୍କାମ ହେବାକୁ ହେବ—ସବୁ କାମନା କଅଣ ତ୍ୟାଗ କରିବାକୁ ହେବ ?"

ସାଧୁ—ଜୀ, ହାଁ ।

ଶ୍ରୀରାମକୃଷ୍ଣ—ମୋର କିନ୍ତୁ ଭକ୍ତି କାମନା ଅଛି । ତାହା ମନ୍ଦ ନୁହେଁ, ବରଂ

ଭଲ । ମିଠା ଖାଇଲେ ଅମ୍ଳ ହୁଏ, କିନ୍ତୁ ମିଶିରି ମିଠାରେ ବରଂ ଉପକାର ହୁଏ । ନା, କଅଣ ?

ସାଧୁ—ଜୀ, ମହାରାଜ !

ଶ୍ରୀରାମକୃଷ୍ଣ—ଆଚ୍ଛା ଜୀ, ବେଦାନ୍ତ କୁ କିପରି ମନେକରନ୍ତି ?

ସାଧୁ—ବେଦାନ୍ତ ମେ ଷଡ୍ ଦର୍ଶନ ହ୍ୟାୟ ।

ଶ୍ରୀରାମକୃଷ୍ଣ—କିନ୍ତୁ ବେଦାନ୍ତର ସାର—ବ୍ରହ୍ମ ସତ୍ୟ, ଜଗତ୍ ମିଥ୍ୟା । ମୁଁ କିଛି ଅଲଗା ନୁହେଁ, ମୁଁ ସେହି ବ୍ରହ୍ମ । ନା, କଅଣ ?

ସାଧୁ—ଜୀ, ହାଁ ।

ଶ୍ରୀରାମକୃଷ୍ଣ—କିନ୍ତୁ ଯେଉଁମାନେ ସଂସାରରେ ଅଛନ୍ତି, ଆଉ ଯାହାଙ୍କର ଦେହ ବୁଦ୍ଧି ଅଛି, ସେମାନଙ୍କ ପକ୍ଷରେ ସୋଽହଂ ଏହି ଭାବ ଭଲ ନୁହେଁ । ସଂସାରୀ ପକ୍ଷରେ ଯୋଗବାଶିଷ୍ଟ, ବେଦାନ୍ତ ଭଲ ନୁହେଁ । ବଡ଼ ଖରାପ । ସଂସାରୀମାନେ ସେବ୍ୟ ସେବକ ଭାବରେ ରହିବେ । 'ହେ ଈଶ୍ୱର, ତୁମେ ସେବ୍ୟ—ପ୍ରଭୁ, ମୁଁ ସେବକ—ମୁଁ ତୁମର ଦାସ ।'

''ଯାହାଙ୍କର ଦେହ ବୁଦ୍ଧି ଅଛି, ସେମାନଙ୍କ ପକ୍ଷରେ ସୋଽହଂ ଏ ଭାବ ଭଲ ନୁହେଁ ।''

ସମସ୍ତେ ଚୁପ୍ କରିଅଛନ୍ତି । ଠାକୁର ନିଜେ ନିଜେ ଟିକିଏ ହସୁଅଛନ୍ତି । ଆତ୍ମାରାମ । ନିଜର ଆନନ୍ଦରେ ଆନନ୍ଦିତ !

ଜଣେ ସାଧୁ ଅପରକୁ ଧୀରେ ଧୀରେ କହୁଅଛନ୍ତି—'ଆରେ, ଦେଖୋ ଦେଖୋ ! ଏସ୍‌କୋ ପରମହଂସ ଅବସ୍ଥା ବୋଲ୍‌ତା ହ୍ୟାୟ ।'

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କୁ, ତାଙ୍କ ଆଡ଼କୁ ଅନାଇଁ)—ହସ ଲାଗୁଛି । ଠାକୁର ବାଳକ ପରି ନିଜେ ନିଜେ ହସୁଅଛନ୍ତି ।

## (୩)

## ଠାକୁର ଶ୍ରୀରାମକୃଷ୍ଣ ଓ 'କାମିନୀ'—ସନ୍ନ୍ୟାସୀ ପୂର୍ବକଥା—ଶ୍ୱଶୁରଘରକୁ ଯିବାର ଇଚ୍ଛା । ଉଲୋର ବାମନଦାସଙ୍କ ସଙ୍ଗରେ ଦେଖା ।

ସାଧୁମାନେ ଦର୍ଶନ କରି ଚାଲିଗଲେ ।

ଠାକୁର ଓ ବାବୁରାମ, ମାଷ୍ଟର, ମୁଖାର୍ଜୀଙ୍କର ହରି ପ୍ରଭୃତି ଭକ୍ତମାନେ ଘରେ ଓ ବାରଣ୍ଡାରେ ବୁଲୁଅଛନ୍ତି ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କୁ)—ନବୀନ ସେନଙ୍କ ଘରକୁ ତୁମେ ଯାଇଥିଲ ?

ମାଷ୍ଟର—ଆଜ୍ଞା, ଯାଇଥିଲି । ତଳ ମହଲାରେ ବସି ଗୀତ ଶୁଣିଲି ।

ଶ୍ରୀରାମକୃଷ୍ଣ—ତେବେ ଭଲ କରିଛ । ତୁମର ସେମାନେ ଯାଇଥିଲେ । କେଶବ

ସେନ୍ ସେମାନଙ୍କର ଖୁଡୁତା ଭାଇ ?

ମାଷ୍ଟର—ଟିକିଏ ତଫାତ୍ ଅଛି ।

ଶ୍ରୀଯୁକ୍ତ ନବୀନ ସେନ୍ ଜଣେ ଭକ୍ତଙ୍କ ଶ୍ୱଶୁରଘରର ସଂପର୍କୀୟ ଲୋକ ।

ମଣିଙ୍କ ସହିତ ବୁଲୁ ବୁଲୁ ଠାକୁର ନିଭୃତରେ କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ—ଲୋକମାନେ ଶ୍ୱଶୁରଘରକୁ ଯାଆନ୍ତି । ତେଣୁ ଭାବିଥିଲି, ବିବାହ କରିବି, ଶ୍ୱଶୁରଘରକୁ ଯିବି—ଆମୋଦ ପ୍ରମୋଦ କରିବି ! କିନ୍ତୁ ଦେଖ ଅନ୍ୟ ପ୍ରକାର ହୋଇଗଲା !

ମଣି-ଆଜ୍ଞା, 'ପୁଅ ଯଦି ବାପକୁ ଧରେ, ସେ ପଡ଼ିପାରେ; ବାପ ଯେଉଁ ପୁଅକୁ ଧରିଛନ୍ତି ସେ ପଡ଼ିପାରେ ନାହିଁ ।' —ଏହି କଥା ଆପଣ କହନ୍ତି । ଆପଣଙ୍କର ମଧ ସେହି ଅବସ୍ଥା । ମା' ଆପଣଙ୍କୁ ଧରି ରହିଛନ୍ତି ।

ଶ୍ରୀରାମକୃଷ୍ଣ—ଉଲୋର ବାମନଦାସଙ୍କ ସଙ୍ଗରେ ବିଶ୍ୱାସଙ୍କ ଘରେ ଦେଖାହେଲା । ମୁଁ କହିଲି, ମୁଁ ତୁମ୍ଭଙ୍କୁ ଦେଖିବାକୁ ଆସିଛି । ଯେତେବେଳେ ଚାଲିଆସିଲି, ଶୁଣିବାକୁ ପାଇଲି, ସେ କହୁଛନ୍ତି—'ବାବା, ବାଘ ଯେପରି ମନୁଷ୍ୟକୁ ଧରେ, ସେହିପରି ଭଗବତୀ ଏହାଙ୍କୁ ଧରି ରହିଛନ୍ତି ।' ସେତେବେଳେ ମୁଁ ଯୁବକ ଓ ଶରୀର ହୃଷ୍ଟପୁଷ୍ଟ । ସର୍ବଦା ହିଁ ମୁଁ ଭାବରେ ରହୁଥିଲି ।

''ମୁଁ ସ୍ତ୍ରୀଲୋକଙ୍କୁ ବଡ଼ ଭୟ କରେ । ଦେଖେ, ଯେପରି ବାଘୁଣୀ ଖାଇବାକୁ ଆସୁଛି । ସେମାନଙ୍କର ଅଙ୍ଗ ପ୍ରତ୍ୟଙ୍ଗ ଓ ଦେହର ଲୋମକୂପ ଅତି ବଡ଼ ବଡ଼ ଆକାରରେ ଦେଖେ ! ଦେଖିଲେ ରାକ୍ଷସୀ ଭଳି ମନେହୁଏ । ଆଗେ ଭାରି ଭୟ ଥିଲା ! କାହାରିକୁ ପାଖକୁ ଆସିବାକୁ ଦିଏନାହିଁ । କିନ୍ତୁ ବର୍ତ୍ତମାନ ଅନେକ ଭାବରେ ମନକୁ ବୁଝାଏ ଓ ମା' ଆନନ୍ଦମୟୀଙ୍କର ଗୋଟିଏ ଗୋଟିଏ ରୂପ ବୋଲି ମନେକରେ ।''

''ଭଗବତୀଙ୍କର ଅଂଶ । କିନ୍ତୁ ପୁରୁଷଙ୍କ ପକ୍ଷରେ—ସାଧୁଙ୍କ ପକ୍ଷରେ—ଭକ୍ତଙ୍କ ପକ୍ଷରେ ତ୍ୟାଜ୍ୟ ।''

''ଯେତେ ଭକ୍ତ ହେଲେ ମଧ ସ୍ତ୍ରୀଲୋକଙ୍କୁ ବେଶି ସମୟ ପାଖରେ ବସିବାକୁ ଦିଏନାହିଁ । ଟିକିଏ ପରେ, କହେ, 'ଯାଅ ହେ ଠାକୁର ଦର୍ଶନ କର, ସେଥିରେ ଯଦି ନ ଉଠନ୍ତି, ତାହାହେଲେ ହୁକା ପିଇବା ନାମରେ ଘରୁ ବାହାରି ପଡ଼େ ।''

''ଦେଖିବାକୁ ପାଏ, କାହାରି କାହାରି ସ୍ତ୍ରୀଲୋକଙ୍କ ଆଡ଼କୁ ଆଦୌ ମନ ନାହିଁ । ନିରଞ୍ଜନ କହେ, 'କାହିଁ ମୋର ସ୍ତ୍ରୀଲୋକଙ୍କ ଆଡ଼କୁ ମନ ନାହିଁ' ।''

## ହରିବାବୁ, ନିରଞ୍ଜନ, ପାଣ୍ଡେ ଜମାଦାର, ଜୟନାରାୟଣ ।

''ହରି (ଉପେନ୍ ଡାକ୍ତରଙ୍କ ଭାଇ)କୁ ପ୍ରଶ୍ନ କଲି, ସେ ମଧ କହେ, 'ନା ସ୍ତ୍ରୀଲୋକଙ୍କ ଆଡ଼କୁ ମନ ନାହିଁ' ।''

"ଯେଉଁ ମନ ଭଗବାନଙ୍କୁ ଦେବାକୁ ହେବ, ସେ ମନର ବାରଅଣା ଅଂଶ ସ୍ତ୍ରୀ ନେଇଯାଏ । ତାହାପରେ ତାହାର ସନ୍ତାନ ହେଲେ ପ୍ରାୟ ସମସ୍ତ ମନ ଖର୍ଚ୍ଚ ହୋଇଯାଏ । ତାହାହେଲେ ଭଗବାନଙ୍କୁ ଆଉ କଅଣ ଦେବ ?"

"ପୁଣି କାହାରି କାହାରି ସ୍ତ୍ରୀକୁ ସମ୍ଭାଳିବାରେ ପ୍ରାଣ ବାହାରିଯାଏ । ବୃଦ୍ଧ ପାଣ୍ଡେ ଜମାଦାର ତା'ର ଚୌଦ ବର୍ଷ ବୟସର ସ୍ତ୍ରୀ ! ବୁଢ଼ା ସଙ୍ଗରେ ତାକୁ ରହିବାକୁ ହୁଏ । ଶୁଖିଲା ପତ୍ରରେ ବାଡ଼ଦିଆ ଘର । ପତ୍ର ଖୋଲି କେହି କେହି ଦେଖନ୍ତି । ବର୍ତ୍ତମାନ ସ୍ତ୍ରୀଟା କୁଆଡ଼େ ବାହାରି ଯାଇଛି ।"

"ଆଉ ଜଣଙ୍କର ସ୍ତ୍ରୀ-ସ୍ୱାମୀ ତାକୁ କେଉଁଠି ରଖିବ ଏ ପର୍ଯ୍ୟନ୍ତ ଠିକ୍ କରିପାରୁନାହିଁ । ଘରେ ଅନେକ ଗଣ୍ଡଗୋଳ ହୋଇଥିଲା । ମହା ଭାବିତ । ଯାହାହେଉ ଏ ସବୁ କଥାରେ ଆଉ ଦରକାର ନାହିଁ ।"

"ସ୍ତ୍ରୀଲୋକଙ୍କ ଭିତରେ ରହିଲେ ସେମାନଙ୍କର ବଶ ହୋଇଯିବାକୁ ପଡ଼େ । ସଂସାରୀମାନେ ସ୍ତ୍ରୀମାନଙ୍କ କଥାରେ ଉଠିବାକୁ କହିଲେ ଉଠନ୍ତି, ବସିବାକୁ କହିଲେ ବସନ୍ତି । ସମସ୍ତେ ନିଜର ସ୍ତ୍ରୀଙ୍କୁ ପ୍ରଶଂସା କରନ୍ତି ।"

"ମୁଁ ଗୋଟିଏ ସ୍ଥାନକୁ ଯିବାକୁ ଇଚ୍ଛା କରିଥିଲି । ରାମଲାଲର ଖୁଡ଼ୀଙ୍କୁ ପଚାରିବାରେ ସେ ବାରଣ କଲେ, ଆଉ ଯିବାକୁ ହେଲାନାହିଁ । ଟିକିଏ ପରେ ଭାବିଲି—ଉଃ, ମୁଁ ସଂସାର କରିନାହିଁ, କାମିନୀ-କାଞ୍ଚନ ତ୍ୟାଗୀ, ସେଥିରେ ପୁଣି ଏପରି ! —ଜାଣେନାହିଁ, ସଂସାରୀମାନେ ସ୍ତ୍ରୀମାନଙ୍କ ପାଖରେ କି ପରିମାଣରେ ବଶ !"

ମଣି—କାମିନୀ କାଞ୍ଚନ ଭିତରେ ରହିଲେ ହିଁ କିଛି ନା କିଛି ଦେହରେ ଆଞ୍ଚ ଲାଗିବ । ଆପଣ କହିଥିଲେ, ଜୟ ନାରାୟଣ ଏଡ଼େ ପଣ୍ଡିତ—ବୁଢ଼ା ହୋଇଥିଲେ—ଆପଣ ଯେତେବେଳେ ଗଲେ, ସେ ମାଣ୍ଡି ଫାଣ୍ଡି ଶୁଖାଉଥିଲେ ।

ଶ୍ରୀରାମକୃଷ୍ଣ—କିନ୍ତୁ ପଣ୍ଡିତ ବୋଲି ଅହଂକାର ନଥିଲା । ସେ ଯାହା କହିଥିଲେ, ଶେଷରେ ଆଇନ୍ ମାଫିକ୍ କାଶୀ ବାସ ହେଲା ।

"ପିଲାମାନଙ୍କୁ ଦେଖିଲି, ପାଦରେ ବୁଟ୍ ଜୋତା ପିନ୍ଧା, ଇଂରାଜୀ ପଢ଼ା ।"

## ଠାକୁରଙ୍କ ପ୍ରେମୋନ୍ମାଦ ପ୍ରଭୃତି ନାନା ଅବସ୍ଥା ।

ଠାକୁର ମଣିଙ୍କୁ ପ୍ରଶ୍ନ ଛଳରେ ନିଜର ଅବସ୍ଥା ବୁଝାଉଛନ୍ତି ।

ଶ୍ରୀରାମକୃଷ୍ଣ—ଆଗେ ଖୁବ୍ ଉନ୍ମାଦ ଅବସ୍ଥା ଥିଲା; ଏବେ କମିଲା କାହିଁକି ?—ତେବେ ମଝିରେ ମଝିରେ ହୁଏ ।

ମଣି—ଆପଣଙ୍କର ତ ଏକ ପ୍ରକାର ଅବସ୍ଥା ନୁହେଁ । ଯେପରି କହିଥିଲେ, କେତେବେଳେ ବାଳକବତ୍, —କେତେବେଳେ ଉନ୍ମାଦବତ୍—କେତେବେଳେ ଜଡ଼ବତ୍—କେତେବେଳେ ମଧ୍ୟ ପିଶାଚବତ୍—ଏହି ସବୁ ଅବସ୍ଥା ମଝିରେ ମଝିରେ ହୁଏ । ପୁଣି

କେବେ କେବେ ସହଜ ଅବସ୍ଥା ମଧ୍ୟ ହୁଏ ।

ଶ୍ରୀରାମକୃଷ୍ଣ—ହଁ, ବାଳକବତ୍ । ଏହା ବ୍ୟତୀତ ବାଲ୍ୟ, କୈଶୋର, ଯୁବା—ଏ ସବୁ ଅବସ୍ଥା ହୁଏ । ଯେତେବେଳେ ଜ୍ଞାନ ଉପଦେଶ ଦିଏ, ସେତେବେଳେ ଯୁବକର ଅବସ୍ଥା ।

''ପୁଣି କୈଶୋର ଅବସ୍ଥା । ବାର ତେର ବର୍ଷର ବାଳକ ପରି ଫେଚକାମି କରିବାକୁ ଇଚ୍ଛା ହୁଏ । ତେଣୁ ପିଲାମାନଙ୍କ ସଙ୍ଗରେ ଭଣ୍ଡଚଣ୍ଡ କଥାବାର୍ତ୍ତା କରେ ।

## ନାରାୟଣଙ୍କର ଗୁଣ । କାମିନୀ କାଞ୍ଚନ ତ୍ୟାଗ ହିଁ ସନ୍ନ୍ୟାସୀଙ୍କର କଠିନ ସାଧନା ।

''ଆଚ୍ଛା, ନାରାୟଣ କିପରି ଅଛି ?''

ମଣି—ଆଜ୍ଞା, ଲକ୍ଷଣ ସବୁ ଭଲ ଅଛି ।

ଶ୍ରୀରାମକୃଷ୍ଣ—ନାଉର ଢୋଲଟି ଭଲ—ତେଣୁ ତାନ୍‌ପୁରା ବେଶ୍ ବାଜିବ ।

''ସେ ମୋତେ କହେ, ଆପଣ ତ ସବୁ (ଅର୍ଥାତ୍ ଅବତାର) । ଯାହାର ଯାହା ଧାରଣା, ସେ ତାହା ହିଁ କହେ । କେହି କହନ୍ତି, ଏପରି ସାଧାରଣ ସାଧୁ ବା ଭକ୍ତ ।''

''ଯେଉଁଟି ବାରଣ କରିଦେଇଛି, ସେଇଟି ବେଶ୍ ଧାରଣା କରେ । ପରଦା ଉଠାଇବାକୁ କହିଲି ତାହା ଉଠାଇଲା ନାହିଁ ।''

''ଗଣ୍ଠି ପକାଇବା, ସିଲାଇ କରିବା, ପରଦା ଉଠାଇବା, ଦୁଆରେ ବା ବାକ୍ସରେ ଚାବିଦେଇ ବନ୍ଦ କରିବା ପ୍ରଭୃତି ବାରଣ କରିଥିଲି । ତାହା ସେ ଠିକ୍ ଭାବରେ ଧାରଣା କରିଥିଲା । ଯେ ତ୍ୟାଗ କରିବେ, ସେ ଏଗୁଡ଼ିକୁ ସାଧନ କରିବେ । ସନ୍ନ୍ୟାସୀଙ୍କ ପକ୍ଷରେ ଏଗୁଡ଼ିକୁ ସାଧନ କରିବାକୁ ହୁଏ ।''

''ସାଧନ ଅବସ୍ଥାରେ 'କାମିନୀ' ଦାବାନଳ ସଦୃଶ—କାଳସର୍ପ ପରି ! ସିଦ୍ଧି ଲାଭ କଲେ ବା ଭଗବାନ ଦର୍ଶନ ପରେ—ସେତେବେଳେ ମା' ଆନନ୍ଦମୟୀ ! ତେବେ ମାଆଙ୍କର ଗୋଟିଏ ଗୋଟିଏ ରୂପ ବୋଲି ଦେଖିବ ।''

କିଛିଦିନ ହେଲା, ଠାକୁର ନାରାୟଣଙ୍କୁ କାମିନୀ ସମ୍ବନ୍ଧରେ ଅନେକ ସତର୍କ କରିଥିଲେ । କହିଥିଲେ—'ସ୍ତ୍ରୀଲୋକର ଦେହର ପବନ ଲଗାଇବ ନାହିଁ, ମୋଟା ଚଦର ଦେହରେ ଘୋଡ଼ାଇ ରଖିବ, କାଳେ ସେମାନଙ୍କର ପବନ ଦେହରେ ଲାଗେ;—ଆଉ ମା'ଙ୍କୁ ଛାଡ଼ିଦେଲେ ସମସ୍ତଙ୍କ ଠାରୁ ଆଠହାତ, ନୋହିଲେ ଦୁଇହାତ, ନୋହିଲେ ଅନ୍ତତଃ ଏକହାତ ଦୂରରେ ରହିବ ।'

ଶ୍ରୀରାମକୃଷ୍ଣ (ମଣିଙ୍କ ପ୍ରତି)—ତା'ର ମା' ନାରାୟଣଙ୍କୁ କହିଛନ୍ତି, ତାଙ୍କୁ, ଦେଖି ଆମେମାନେ ତ ମୁଗ୍ଧ ହେଉଁ, ତୁ ତ ପିଲାଲୋକ ! ଆଉ ସରଳ ନ ହେଲେ, ଈଶ୍ୱର ମିଳନ୍ତି ନାହିଁ । ନିରଞ୍ଜନ କିପରି ସରଳ !

ମଣି—ଆଜ୍ଞା ହଁ ।

## ନିରଞ୍ଜନ, ନରେନ୍ଦ୍ର କ'ଣ ସରଳ ?

ଶ୍ରୀରାମକୃଷ୍ଣ—ସେଦିନ କଲିକତା ଯିବା ସମୟରେ ଗାଡ଼ିରେ ଦେଖିଲ ନାହିଁ ? ସବୁ ସମୟରେ ଏକ ପ୍ରକାର ଭାବ—ସରଳ । ଲୋକ ଘର ଭିତରେ ଏକ ପ୍ରକାର ପୁଣି ବାହାରକୁ ଗଲେ ଆଉ ଏକପ୍ରକାର ହୁଏ । ନରେନ୍ଦ୍ର ବର୍ତ୍ତମାନ (ବାପାଙ୍କ ମୃତ୍ୟୁପରେ) ସଂସାର ଭାବନାରେ ପଡ଼ିଛି । ତାହାର ଟିକିଏ ହିସାବୀ ବୁଦ୍ଧି ଅଛି । ସବୁ ପିଲାମାନେ କ'ଣ ଏହାପରି ହୁଅନ୍ତି ?

## ଶ୍ରୀରାମକୃଷ୍ଣ ନବୀନ ନିୟୋଗୀଙ୍କ ଘର । ନୀଳକଣ୍ଠଙ୍କର ଯାତ୍ରା ।

"ଦକ୍ଷିଣେଶ୍ୱରକୁ ନୀଳକଣ୍ଠଙ୍କର ଯାତ୍ରା ଶୁଣିବାକୁ ଯାଇଥିଲି । ଯାତ୍ରା ନବୀନ ନିୟୋଗୀଙ୍କ ଘରଠାରେ ହେଉଥିଲା । ସେଠାର ପିଲାମାନେ ବଡ଼ ଖରାପ । କେବଳ ଯାହାର ତାହାର ନିନ୍ଦା କରନ୍ତି ! ଏ ସବୁ ସ୍ଥାନରେ ଭାବ ସମ୍ବରଣ ହୋଇଯାଏ ।"

"ସେଥର ଯାତ୍ରା ସମୟରେ ମଧ୍ୟ ଡାକ୍ତରଙ୍କ ଆଖିରେ ଲୁହ ଦେଖି ତାଙ୍କ ଆଡ଼କୁ ଅନାଇଁଥିଲି । ଅନ୍ୟ କାହାରି ଆଡ଼କୁ ଅନାଇଁ ପାରିଲି ନାହିଁ ।"

## (୪)

## ଶ୍ରୀରାମକୃଷ୍ଣ, କେଶବ ଓ ବ୍ରାହ୍ମସମାଜ । ସମନ୍ୱୟ ଉପଦେଶ ।

### The Universal Catholic Church of Sri Ramakrishna

ଶ୍ରୀରାମକୃଷ୍ଣ (ମଣିଙ୍କ ପ୍ରତି)—ଆଚ୍ଛା, ଲୋକେ ଯେ ଏତେ ଆକୃଷ୍ଟ ହୋଇ ଏଠାକୁ ଆସନ୍ତି, ତା'ର ମାନେ କଅଣ ?

ମଣି—ମୋର ବ୍ରଜର ଲୀଳା କଥା ମନେପଡ଼େ । କୃଷ୍ଣ ଯେତେବେଳେ ଗୋପାଳ ବାଳକ ଓ ଗୋବତ୍ସ ହେଲେ, ସେତେବେଳେ ଗୋପାଳ ପ୍ରତି ଗୋପୀମାନଙ୍କର, ଆଉ ବତ୍ସଙ୍କ ପ୍ରତି ଗାଭୀମାନଙ୍କର, ଖୁବ୍ ଆକର୍ଷଣ ହୋଇଥିଲା ।

ଶ୍ରୀରାମକୃଷ୍ଣ—ସେ ଆକର୍ଷଣ ଈଶ୍ୱରଙ୍କର । କ'ଣ ଜାଣ, ମା' ଏହିପରି ଭେଳିକି ଲଗାଇ ଦିଅନ୍ତି । ତେଣୁ ଆକର୍ଷଣ ହୁଏ ।

ଶ୍ରୀରାମକୃଷ୍ଣ—ଆଚ୍ଛା, କେଶବ ସେନଙ୍କ ପାଖକୁ ଯେତେଲୋକ ଯାଆନ୍ତି, ଏଠାକୁ ତ ସେତେ ଆସନ୍ତି ନାହିଁ । ଆଉ କେଶବ ସେନଙ୍କୁ କେତେ ଲୋକ ମାନସମ୍ମାନ ଦେଖାନ୍ତି, ତାଙ୍କୁ ବିଲାତରେ ମଧ୍ୟ ଜାଣନ୍ତି,—Queen (ରାଣୀ ଭିକ୍ଟୋରିଆ) କେଶବଙ୍କ ସଙ୍ଗରେ କଥାବାର୍ତ୍ତା କରିଛନ୍ତି ! ଗୀତାରେ ତ ଅଛି, ଯାହାଙ୍କୁ ବହୁଲୋକ ମାନନ୍ତି, ତାଙ୍କଠାରେ ଈଶ୍ୱରଙ୍କର ଶକ୍ତି ରହିଛି ! ଏଠାରେ ତ ଏତେ ହୁଏନାହିଁ ?

ମଣି—କେଶବ ସେନଙ୍କ ପାଖକୁ ସଂସାରୀ ଲୋକ ଯାଆନ୍ତି ।

ଶ୍ରୀରାମକୃଷ୍ଣ—ହଁ, ତାହା ସତ । ସେମାନେ ସଂସାରୀ ଲୋକ ।

ମଣି—କେଶବ ସେନ ଯାହା କରିଗଲେ, ତା' କଅଣ ବେଶିଦିନ ରହିବ ?

ଶ୍ରୀରାମକୃଷ୍ଣ—କାହିଁକି, ସଂହିତା କରି ଯାଇଛନ୍ତି,—ସେଥିରେ କେତେ ନିୟମାବଳୀ ଅଛି !

ମଣି—ଅବତାର ଯେତେବେଳେ ନିଜେ କାର୍ଯ୍ୟ କରନ୍ତି, ସେ ସବୁ କଥା ଅଲଗା । ଯେପରି ଚୈତନ୍ୟଦେବଙ୍କର କାର୍ଯ୍ୟ ।

ଶ୍ରୀରାମକୃଷ୍ଣ—ହଁ, ହଁ, ସତକଥା ।

ମଣି—ଆପଣ ତ କହନ୍ତି—ଚୈତନ୍ୟଦେବ କହିଥିଲେ,—ମୁଁ ଯେଉଁ ମଞ୍ଜି ବୁଣିଦେଇଗଲି, କେତେବେଳେ ନା କେତେବେଳେ ତାହାର ଫଳ ଫଳିବ । ଧର, କାନ୍ଥ ଉପରେ ମଞ୍ଜି ରଖିଥିଲ, ଘର ଭାଙ୍ଗିଗଲା, ସେହି ବୀଜ ପୁଣି ଗଛ ହେବ ।

ଶ୍ରୀରାମକୃଷ୍ଣ—ଆଚ୍ଛା, ଶିବନାଥ ପ୍ରଭୃତି ଯେଉଁ ସମାଜ ଗଢ଼ିଛନ୍ତି, ସେଠାକୁ ମଧ୍ୟ ଅନେକ ଲୋକ ଯାଆନ୍ତି ।

ମଣି—ସେହିପରି ଲୋକ ଯାଆନ୍ତି ।

ଶ୍ରୀରାମକୃଷ୍ଣ (ସହାସ୍ୟରେ)—ଠିକ୍ କଥା, ସଂସାରୀ ଲୋକମାନେ ଯାଆନ୍ତି । ଯେଉଁମାନେ ଈଶ୍ୱରଙ୍କ ପାଇଁ ବ୍ୟାକୁଳ—କାମିନୀ କାଞ୍ଚନ ତ୍ୟାଗ କରିବାକୁ ଚେଷ୍ଟା କରୁଛନ୍ତି—ଏପରି ଲୋକ କମ୍ ଯାଆନ୍ତି ।

ମଣି—ଏଠାରୁ ଯଦି ଗୋଟାଏ ସ୍ରୋତ ବହେ, ତାହାହେଲେ ଭଲ ହୁଅନ୍ତା । ସେହି ସ୍ରୋତ ବେଗରେ ସବୁ ଭାସିଯିବ । ଏଠାର ଭାବ ସମସ୍ତଙ୍କର ଗ୍ରହଣଯୋଗ୍ୟ ହେବ ।

## ଶ୍ରୀରାମକୃଷ୍ଣ ଓ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟାନ । ବୈଷ୍ଣବ ଓ ବ୍ରହ୍ମଜ୍ଞାନୀ ।

ଶ୍ରୀରାମକୃଷ୍ଣ (ସହାସ୍ୟରେ)—ଯାହାର ଯେଉଁ ଭାବ ମୁଁ ସେହି ଭାବ ରକ୍ଷା କରେ । ବୈଷ୍ଣବକୁ ବୈଷ୍ଣବ ଭାବଟି ରଖିବାକୁ କହେ, ଶାକ୍ତକୁ ଶାକ୍ତ ଭାବ । ତେବେ କହେ, 'ଏପରି କହନା—କେବଳ ମୋର ପଥ ସତ୍ୟ ଅନ୍ୟ ସବୁ ମିଥ୍ୟା ବା ଭୁଲ ।' ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟାନ—ନାନା ପଥ ଦେଇ ଏକ ସ୍ଥାନକୁ ଯାଉଛନ୍ତି । ନିଜ ନିଜର ଭାବ ରକ୍ଷାକରି ଆନ୍ତରିକତା ସହ ତାଙ୍କୁ ଡାକିଲେ, ଈଶ୍ୱର ଲାଭ ହେବ ।

''ବିଜୟଙ୍କର ଶାଶୁ କହନ୍ତି, 'ଆପଣ ବଳରାମ ପ୍ରଭୃତିଙ୍କୁ କହିଦିଅନ୍ତୁ ଯେ, ସାକାର ପୂଜାର କି ଦରକାର ? ନିରାକାର ସଚ୍ଚିଦାନନ୍ଦଙ୍କୁ ଡାକିଲେ ହେଲା ।''

''ମୁଁ କହିଲି, 'ଏପରି କଥା ମୁଁ କହିବାକୁ ଯିବି କାହିଁକି—ଆଉ ସେମାନେ ବା ଶୁଣିବେ କାହିଁକି ?' ମା' ମାଛ ରାନ୍ଧିଛନ୍ତି—କେଉଁ ପିଲା ପାଇଁ ପଲାଉ ରାନ୍ଧି ଦିଅନ୍ତି, କିନ୍ତୁ ଯାହାର ପେଟ ଭଲ ନୁହେଁ ତା' ପାଇଁ ମାଛର ଝୋଳ କରିଦିଅନ୍ତି । ରୁଚି ଭେଦରେ, ଅଧିକାରୀ ଭେଦରେ, ଜିନିଷ ଗୋଟିଏ ନାନା ପ୍ରକାରରେ କରିଦେବାକୁ ହୁଏ ।''

ମଣି—ଆଜ୍ଞା ହଁ । ଦେଶ କାଳ ପାତ୍ର ଭେଦରେ ରାସ୍ତା ଅଲଗା ଅଲଗା । ଯେଉଁ ରାସ୍ତା ଦେଇ ଯାଅନା କାହିଁକି ଶୁଦ୍ଧ ମନରେ, ଆନ୍ତରିକତା ସହ ବ୍ୟାକୁଳ ହୋଇ ଡାକିଲେ ଈଶ୍ୱର ଲାଭ ହୁଏ ବୋଲି ଆପଣ କହନ୍ତି ।

## ମୁଖାର୍ଜୀଙ୍କର ହରି । ଶ୍ରୀରାମକୃଷ୍ଣ ଓ ଦାନ ଧ୍ୟାନ ।

ଘରେ ଠାକୁର ନିଜ ଆସନରେ ବସିଅଛନ୍ତି । ତଳେ ମୁଖାର୍ଜୀଙ୍କ ହରି, ମାଷ୍ଟର ପ୍ରଭୃତି ବସିଅଛନ୍ତି । ଜଣେ ଅପରିଚିତ ବ୍ୟକ୍ତି ଠାକୁରଙ୍କୁ ପ୍ରଣାମ କରି ବସିଲେ । ଠାକୁର ପରେ କହିଥିଲେ ସେ ବ୍ୟକ୍ତିଙ୍କ ଚକ୍ଷୁର ଲକ୍ଷଣ ଭଲ ନୁହେଁ—ବିରାଡ଼ି ଚକ୍ଷୁ ପରି ଚକ୍ଷୁ ।

ଠାକୁରଙ୍କୁ ହରି ହୁକା ପିଇବାକୁ ଦେଲେ ।

ଶ୍ରୀରାମକୃଷ୍ଣ (ହୁକା ହାତରେ ଧରି, ହରିଙ୍କ ପ୍ରତି)—ଆଚ୍ଛା ତୋର ହାତ ଦେଖା ତ । ଏ ଯେଉଁ ରେଖା ସବୁ ରହିଛି ଏହାର ଲକ୍ଷଣ ଭଲ ।

''ହାତ ଉପରକୁ ଟେକ ତ । (ନିଜର ହାତ ଉପରେ ହରିଙ୍କ ହାତ ରଖି ଯେପରି ଓଜନ କରୁଛନ୍ତି ।) ପିଲାଳିଆ ବୁଦ୍ଧି ବର୍ତ୍ତମାନ ମଧ୍ୟ ଅଛି; —ଏପର୍ଯ୍ୟନ୍ତ ଏହାର ମନ ଦୂଷିତ ହୋଇନାହିଁ । (ଭକ୍ତମାନଙ୍କ ପ୍ରତି) ମୁଁ ହାତ ଦେଖିଲେ କିଏ ଖଳ କିଏ ସରଳ କହିପାରେ । (ହରିଙ୍କ ପ୍ରତି) କାହିଁକି, ତୁ ଶ୍ୱଶୁର ଘରକୁ ଯିବୁ—ସ୍ତ୍ରୀ ସଙ୍ଗରେ କଥାବାର୍ତ୍ତା କରିବୁ—ଆଉ ଯଦି ଇଚ୍ଛା ହେବ ଟିକିଏ ଆମୋଦ ପ୍ରମୋଦ କରିବୁ ।''

(ମାଷ୍ଟରଙ୍କ ପ୍ରତି) ତୁମେ କଅଣ କହୁଛ ? (ମାଷ୍ଟର ପ୍ରଭୃତିଙ୍କର ହାସ୍ୟ) ।

ମାଷ୍ଟର—ଆଜ୍ଞା, ନୂତନ ହାଣ୍ଡି ଯଦି ଖରାପ ହୋଇଯାଏ, ତାହାହେଲେ ଆଉ ଦୁଧ ରଖାଯିବ ନାହିଁ ।

ଶ୍ରୀରାମକୃଷ୍ଣ (ସହାସ୍ୟରେ)—ବର୍ତ୍ତମାନ ଯେ ହୋଇନାହିଁ ତାହା କିପରି ଜାଣିଲ ?

ମୁଖାର୍ଜୀ ଦୁଇଭାଇ—ମହେନ୍ଦ୍ର ଓ ପ୍ରିୟନାଥ । ସେମାନେ ଚାକିରି କରନ୍ତି ନାହିଁ । ସେମାନଙ୍କର ମଇଦା କଳ ଅଛି । ପ୍ରିୟନାଥ ପୂର୍ବେ ଇଞ୍ଜିନିୟର କର୍ମ କରୁଥିଲେ । ଠାକୁର ହରିଙ୍କ ପାଖରେ ମୁଖାର୍ଜୀ ଭ୍ରାତୃଦ୍ୱୟଙ୍କ କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ (ହରିଙ୍କ ପ୍ରତି)—ବଡ଼ ଭାଇଟି ବେଶ୍, ନା ? —ବେଶ୍ ସରଳ ।

ହରି—ଆଜ୍ଞା, ହଁ ।

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)—ସାନଭାଇଟି କ'ଣ କୃପଣ ? —ଏଠାକୁ ଆସି ଅନେକ ଭଲ ହୋଇଛନ୍ତି । ମୋତେ କହନ୍ତି, 'ମୁଁ କିଛି ଜାଣୁନଥିଲି ।' (ହରିଙ୍କୁ) ଏମାନେ କିଛି ଦାନ ଧ୍ୟାନ କରନ୍ତି ?

ହରି—ସେପରି ଦେଖିନାହିଁ । ଏମାନଙ୍କ ଭିତରେ ଯେ ବଡ଼ଭାଇ ଥିଲେ; ତାଙ୍କର କାଳ ହୋଇଛି । ସେ ଭଲଲୋକ ଥିଲେ—ଖୁବ୍ ଦାନ ଧ୍ୟାନ ଥିଲା ।

## ଠାକୁର ଶ୍ରୀରାମକୃଷ୍ଣ ଓ ଦେହର ଲକ୍ଷଣ । ୰ ମହେଶ ନ୍ୟାୟରତ୍ନଙ୍କର ଛାତ୍ର ।

ଶ୍ରୀରାମକୃଷ୍ଣ (ମାଷ୍ଟର ପ୍ରଭୃତିଙ୍କୁ)—ଯାହାର ଆଧ୍ୟାତ୍ମିକ ଉନ୍ନତି ହେବ ତାହାର ଶରୀର ଲକ୍ଷଣ ଦେଖିଲେ ଅନେକ ବୁଝାଯାଏ । ଖଳ ଲୋକର ହାତ ଭାରୀ ହୁଏ ।

''ଚେପଟା ନାକ ଭଲ ନୁହେଁ । ଶମ୍ଭୁଙ୍କର ନାକଟି ଚେପ୍‌ଟା ଥିଲା । ତେଣୁ ଏତେ ଜ୍ଞାନ ଥିଲେ ମଧ୍ୟ ସେତେ ସରଳ ନଥିଲେ ।''

''ଆହୁରି ମଧ୍ୟ ସରୁ ଅଥଚ ସାମନାକୁ ବାହାରିଥିବା ଛାତି—କହୁଣୀର ଗଣ୍ଠି ମୋଟା, ଟାଣୁଆ ହାଡ଼, ସରୁ ହାତ, ବିରାଡ଼ି ଚକ୍ଷୁ ପରି ଚକ୍ଷୁ ।''

''(ଡମ ପରି) ଓଠ ମୋଟା ଥିଲେ ନୀଚ ବୁଦ୍ଧି ହୁଏ । ବିଷ୍ଣୁମନ୍ଦିରର ପୁରୋହିତ କେତେମାସ ଅସ୍ଥାୟୀ ଭାବରେ କାମ କରୁଥିଲା । ମୁଁ ତାହା ହାତରେ ଖାଇନାହିଁ—ହଠାତ୍ କହିପକାଇଲି, 'ଆରେ ଡମ' । ତା'ପରେ ସେ ଦିନେ କହିଲା, 'ହଁ, ମୋର ଘର ଡମପଡ଼ାରେ । ମୁଁ ଡମଙ୍କ ପରି ବାଉଁସିଆ, ଡାଙ୍ଗୁଣୀ ବୁଣି ଜାଣେ ।''

''ଆଉ ଏକ ଚକ୍ଷୁ ହେଉଛି ଖରାପ ଲକ୍ଷଣ, ଟେରା ଆଖି । ବରଂ ଗୋଟିଏ ଚକ୍ଷୁ କଣା ଭଲ, କିନ୍ତୁ ଟେରା ଭଲ ନୁହେଁ । ଏପରି ଲୋକ ଦୁଷ୍ଟ ବା ଖଳ ହୁଏ ।''

''୰ମହେଶ ନ୍ୟାୟରତ୍ନଙ୍କର ଜଣେ ଛାତ୍ର ଆସିଥିଲେ । ସେ କହନ୍ତି, 'ମୁଁ ନାସ୍ତିକ' । ସେ ହୃଦୁକୁ କହିଲେ, 'ମୁଁ ନାସ୍ତିକ, ତୁମେ ଆସ୍ତିକ ହୋଇ ମୋ ସଙ୍ଗରେ ତର୍କ କର ।' ସେତେବେଳେ ତାଙ୍କୁ ଭଲକରି ଦେଖିଲି । ତାଙ୍କର ବିରାଡ଼ି ଚକ୍ଷୁ ପରି ଚକ୍ଷୁ ।''

''ପୁଣି ଚାଲି ଚଳଣରୁ ଭଲ ମନ୍ଦ ଲକ୍ଷଣ ବୁଝାଯାଏ ।''

''ପୁରୁଷାଙ୍ଗ ଉପରେ ଚମଡ଼ାଟି ମୁସଲମାନଙ୍କ ପରି ଯଦି ଖୋଲା ଥାଏ, ତାହାହେଲେ ଖରାପ ଲକ୍ଷଣ । (ମାଷ୍ଟର ପ୍ରଭୃତିଙ୍କର ହାସ୍ୟ) । (ମାଷ୍ଟରଙ୍କୁ ସହାସ୍ୟରେ) ହଁ ତୁମେ ତାହା ଦେଖ—ସେ ଖରାପ ଲକ୍ଷଣ । (ସମସ୍ତଙ୍କର ହାସ୍ୟ) ।''

ଘରୁ ଆସି ଠାକୁର ବାରଣ୍ଡାରେ ବୁଲୁଅଛନ୍ତି । ସଙ୍ଗରେ ମାଷ୍ଟର ଓ ବାବୁରାମ ।

ଶ୍ରୀରାମକୃଷ୍ଣ (ହାଜରାଙ୍କ ପ୍ରତି)—ଜଣେ ଆସିଥିଲା,—ଦେଖିଲି ତାହାର ଚକ୍ଷୁ ବିରାଡ଼ିର ଚକ୍ଷୁ ପରି । ସେ କହିଲା, 'ଆପଣ ଜ୍ୟୋତିଷ ଜାଣନ୍ତି ? —ମୋର କ'ଣ କିଛି କଷ୍ଟ ଅଛି ?' ମୁଁ କହିଲି, 'ନା—ବରାହନଗରରେ ଜ୍ୟୋତିଷ ପଣ୍ଡିତ ଅଛି । ସେଠାକୁ ଯାଅ ।'

ବାବୁରାମ ଓ ମାଷ୍ଟର ନୀଳକଣ୍ଠଙ୍କ ଯାତ୍ରା କଥା କହୁଅଛନ୍ତି । ବାବୁରାମ ନବୀନ ସେନଙ୍କ ଘରୁ ଫେରି କାଲି ରାତ୍ରିରେ ଏଠାରେ ଥିଲେ । ସକାଳେ ଠାକୁରଙ୍କ ସଙ୍ଗରେ ଦକ୍ଷିଣେଶ୍ୱରଠାରେ ନବୀନ ସେନଙ୍କ ଘରେ ନୀଳକଣ୍ଠଙ୍କର ଯାତ୍ରା ଶୁଣିଥିଲେ ।

## ଶ୍ରୀରାମକୃଷ୍ଣ, ମଣି ଓ ନିଭୃତ ଚିନ୍ତା । 'ଈଶ୍ୱରଙ୍କ ଇଚ୍ଛା' । ନାରାୟଣଙ୍କ ପାଇଁ ଭାବନା ।

ଶ୍ରୀରାମକୃଷ୍ଣ (ମାଷ୍ଟର ଓ ବାବୁରାମଙ୍କ ପ୍ରତି)—ତୁମମାନଙ୍କର କି କଥା ହେଉଛି ?

ମାଷ୍ଟର ଓ ବାବୁରାମ—ଆଜ୍ଞା, ନୀଳକଣ୍ଠଙ୍କର ଯାତ୍ରା କଥା ହେଉଛି, —ଆଉ ସେହି ଗୀତଟିର କଥା—'ଶ୍ୟାମାପଦେ ଆଶ, ନଦୀ ତୀରେ ବାସ ।'

ଠାକୁର ବାରଣ୍ଡାରେ ବୁଲୁବୁଲୁ ହଠାତ୍ ମଣିଙ୍କୁ ନିଭୃତକୁ ନେଇ କହୁଅଛନ୍ତି—ଈଶ୍ୱର ଚିନ୍ତା କଲେ ଲୋକେ ତାହା ଯେତେ ନଜାଣିପାରନ୍ତି ସେତେ ଭଲ । ଠାକୁର ହଠାତ୍ ଏହି କଥା କହି ଚାଲିଗଲେ ।

ଠାକୁର ହାଜରାଙ୍କ ସଙ୍ଗରେ କଥା କହୁଛନ୍ତି ।

ହାଜରା—ନୀଳକଣ୍ଠ ତ ଆପଣଙ୍କୁ କହିଛନ୍ତି ଯେ, ସେ ଆସିବେ । ତଥାପି କେହି ଡାକିବାକୁ ଗଲେ ଭଲ ହୁଅନ୍ତା ।

ଶ୍ରୀରାମକୃଷ୍ଣ—ନା, ସେ ରାତି ଅନିଦ୍ରା ହୋଇଛନ୍ତି । ଈଶ୍ୱରଙ୍କ ଇଚ୍ଛାରେ ସେ ଯଦି ନିଜେ ଆସନ୍ତି, ସେ କଥା ଅଲଗା ।

ବାବୁରାମଙ୍କୁ ନାରାୟଣଙ୍କ ଘରକୁ ଯାଇ ଦେଖା କରିବାକୁ କହୁଅଛନ୍ତି । ନାରାୟଣଙ୍କୁ ସାକ୍ଷାତ୍ ନାରାୟଣ ଭାବରେ ଦେଖନ୍ତି । ସେଥିପାଇଁ ତାଙ୍କୁ ଦେଖିବା ପାଇଁ ବ୍ୟାକୁଳ ହୋଇଅଛନ୍ତି । ବାବୁରାମଙ୍କୁ କହୁଅଛନ୍ତି, —'ତୁମେ ବରଂ ଖଣ୍ଡିଏ ଇଂରାଜୀ ବହି ନେଇ ତା ପାଖକୁ ଯାଅ ।'

## (୫)

## ନୀଳକଣ୍ଠ ପ୍ରଭୃତି ଭକ୍ତଗଣଙ୍କ ସଙ୍ଗରେ ସଂକୀର୍ତ୍ତନାନନ୍ଦରେ ।

ଠାକୁର ଶ୍ରୀରାମକୃଷ୍ଣ ଘର ଭିତରେ ନିଜ ଆସନରେ ବସିଅଛନ୍ତି । ବେଳ ପ୍ରାୟ ତିନିଟା ହେବ । ନୀଳକଣ୍ଠ ପାଞ୍ଚ ସାତଜଣ ବନ୍ଧୁଙ୍କ ସହିତ ଠାକୁରଙ୍କ ଘର ପାଖରେ ଉପସ୍ଥିତ । ଠାକୁର ପୂର୍ବାସ୍ୟ ହୋଇ ତାହାଙ୍କୁ ଯେପରି ଅଭ୍ୟର୍ଥନା କରିବାକୁ ଅଗ୍ରସର ହେଲେ । ନୀଳକଣ୍ଠ ଘରର ପୂର୍ବଦ୍ୱାର ଦେଇ ଆସି ଠାକୁରଙ୍କୁ ଭୂମିଷ୍ଠ ହୋଇ ପ୍ରଣାମ କରୁଅଛନ୍ତି ।

ଠାକୁର ସମାଧିସ୍ଥ !—ତାଙ୍କ ପଛରେ ବାବୁରାମ, —ସମ୍ମୁଖରେ ମାଷ୍ଟର, ନୀଳକଣ୍ଠ ଓ ଅନ୍ୟାନ୍ୟ ଭଲ ଭଲ ଯାତ୍ରାବାଲାସବୁ । ଖଟର ଉତ୍ତର ପାଖରେ ଦୀନନାଥ ଖାଜାଚି ଆସି ଦର୍ଶନ କରୁଅଛନ୍ତି । ଦେଖୁ ଦେଖୁ ଘରଟି ଲୋକଙ୍କ ଦ୍ୱାରା ପରିପୂର୍ଣ୍ଣ ହେଲା । କିୟତ୍କ୍ଷଣ ପରେ ଠାକୁରଙ୍କର କିଞ୍ଚିତ ଭାବ ଉପଶମ ହେଉଅଛି । ଠାକୁର ତଳେ ସପ ଉପରେ ବସିଅଛନ୍ତି-ସମ୍ମୁଖରେ ନୀଳକଣ୍ଠ ଓ ଚତୁର୍ଦ୍ଦିଗରେ ଭକ୍ତଗଣ ।

ଶ୍ରୀରାମକୃଷ୍ଣ (ଆବିଷ୍ଟ ହୋଇ)—ମୁଁ ଭଲ ଅଛି ।

ନୀଳକଣ୍ଠ (କୃତାଞ୍ଜଳି ହୋଇ)—ମୋତେ ମଧ୍ୟ ଭଲ କରିଦିଅନ୍ତୁ ।

ଶ୍ରୀରାମକୃଷ୍ଣ (ସହାସ୍ୟରେ)—ତୁମେ ତ ଭଲ ଅଛ । 'କରେ ଆକାର 'କା', ପୁଣି ଆକାର ଦେଇ କଅଣ ହେବ ? 'କା'ରେ ପୁଣି ଆକର ଦେଲେ ସେହି କା ହିଁ ରହେ । (ସମସ୍ତଙ୍କର ହାସ୍ୟ) ।

ନୀଳକଣ୍ଠ—ଆଜ୍ଞା, ଏହି ସଂସାରରେ ପଡ଼ିରହିଛି !

ଶ୍ରୀରାମକୃଷ୍ଣ (ସହାସ୍ୟରେ)—ତୁମକୁ ଆଉ ପାଞ୍ଚଜଣଙ୍କ ପାଇଁ ସଂସାରରେ ରଖିଅଛନ୍ତି ।

''ଅଷ୍ଟପାଶ । ଏ ସବୁ ଯାଏ ନାହିଁ । ଗୋଟାଏ ଦୁଇଟା ପାଶ ସେ ରଖିଦିଅନ୍ତି—ଲୋକଶିକ୍ଷା ପାଇଁ । ତୁମେ ଏ ଯାତ୍ରାଟି କରିଛ, ତୁମର ଭକ୍ତି ଦେଖି ଲୋକଙ୍କର କେତେ ଉପକାର ହେଉଛି । ଯଦି ତୁମେ ଏସବୁ ଛାଡ଼ିଦେବ ଆଉ ଏମାନେ (ଯାତ୍ରାବାଲାମାନେ) କୁଆଡ଼େ ଯିବେ ।''

''ଈଶ୍ୱର ତୁମଦ୍ୱାରା କାର୍ଯ୍ୟ କରାଇନେଉଛନ୍ତି । କାର୍ଯ୍ୟ ଶେଷ ହେଲେ ତୁମେ ଆଉ ଫେରିବ ନାହିଁ । ଗୃହିଣୀ ସଂସାରର ସମସ୍ତ କାର୍ଯ୍ୟ ସାରି, —ସମସ୍ତଙ୍କୁ ଖୁଆଇ ପିଆଇ ଗାଧୋଇବାକୁ ଯାଏ । ସେତେବେଳେ ଆଉ ଡକାଡକି କଲେ ମଧ୍ୟ ଫେରେନାହିଁ ।''

ନୀଳକଣ୍ଠ—ମୋତେ ଆଶୀର୍ବାଦ ଦିଅନ୍ତୁ ।

ଶ୍ରୀରାମକୃଷ୍ଣ—କୃଷ୍ଣଙ୍କ ବିରହରେ ଯଶୋଦା ଉନ୍ମାଦିନୀ, —ଶ୍ରୀମତୀଙ୍କ ପାଖକୁ ଯାଇଛନ୍ତି । ଶ୍ରୀମତୀ ସେତେବେଳେ ଧ୍ୟାନ କରୁଥିଲେ । ସେ ଭାବାଷ୍ଟ ହୋଇ ଯଶୋଦାଙ୍କୁ କହିଲେ, —'ମୁଁ ସେହି ମୂଳ ପ୍ରକୃତି ଆଦ୍ୟାଶକ୍ତି ! ତୁମେ ମୋଠାରୁ ବର ନିଅ ! ଯଶୋଦା କହିଲେ, 'ଆଉ କଅଣ ବର ଦେବ ! ଏତିକି କର, ଯେପରି କାୟମନୋବାକ୍ୟରେ ତାଙ୍କର ଚିନ୍ତା, ତାଙ୍କର ସେବା କରିପାରେ । କର୍ଣ୍ଣରେ ଯେପରି ତାଙ୍କର ନାମ ଗୁଣ ଗାନ ଶୁଣିବାକୁ ପାଏ, ହାତରେ ଯେପରି ତାଙ୍କର ଓ ତାଙ୍କ ଭକ୍ତମାନଙ୍କର ସେବା କରିପାରେ, —ଚକ୍ଷୁରେ, ଯେପରି ତାଙ୍କର ରୂପ, ତାଙ୍କର ଭକ୍ତମାନଙ୍କୁ ଦର୍ଶନ କରିପାରେ ।'

''ତୁମର ଯେତେବେଳେ ତାଙ୍କର ନାମ କରି ଚକ୍ଷୁରୁ ଅଶ୍ରୁ ବହୁଛି, ସେତେବେଳେ ତୁମର ଆଉ ଭାବନା କଅଣ ? —ତୁମର ତାଙ୍କ ଉପରେ ଶ୍ରଦ୍ଧା ଆସିଛି ।''

''ଅନେକ ଜାଣିବାର ନାମ ଅଜ୍ଞାନ, —ଏକକୁ ଜାଣିବାର ନାମ ଜ୍ଞାନ—ଅର୍ଥାତ୍ ଏକ ଈଶ୍ୱର ସତ୍ୟ ଯେ କି ସର୍ବଭୂତରେ ରହିଛନ୍ତି । ତାଙ୍କ ସହିତ ଆଳାପର ନାମ ବିଜ୍ଞାନ । ତାଙ୍କୁ ଲାଭ କରି ନାନା ଭାବରେ ଭଲ ପାଇବାର ନାମ ହେଉଛି ବିଜ୍ଞାନ ।''

''ପୁଣି ଅଛି—ସେ ଏକ ଓ ଦୁଇର ପାର—ବାକ୍ୟ ମନର ଅତୀତ । ଲୀଳାରୁ ନିତ୍ୟ, ପୁଣି ନିତ୍ୟରୁ ଲୀଳାକୁ ଆସିବା, —ଏହାର ନାମ ପକ୍‌କା ଭକ୍ତି ।''

''ତୁମର ସେହି ଗୀତଟି ଭଲ—'ଶ୍ୟାମା ପଦେ ଆଶ ନଦୀ ତୀରେ ବାସ' ।''

''ମାମାନେଲେ ତ ହେଲା—ତାଙ୍କ କୃପା ଉପରେ ନିର୍ଭର କରୁଛି ।''

''କିନ୍ତୁ ଯାହାହେଉ ତାଙ୍କୁ ଡାକିବାକୁ ହେବ । ଚୁପ୍ କରି ତ ରହିହେବ ନାହିଁ । ଓକିଲ ହାକିମଙ୍କୁ ସବୁ କହି ଶେଷରେ କହନ୍ତି—'ମୁଁ ଯାହା କହିବାର କହିଲି, ବର୍ତ୍ତମାନ ହାକିମଙ୍କର ହାତ' ।''

କିୟତ୍‌କ୍ଷଣ ପରେ ଠାକୁର କହୁଅଛନ୍ତି—ତୁମେ ସକାଳେ ଏତେ ଗୀତ ଗାଇଲ, ପୁଣି ଏଠାକୁ କଷ୍ଟ କରି ଆସିଛ । ଏଠାରେ କିନ୍ତୁ ଅନରାରୀ (hohourary) ।

ନୀଳକଣ୍ଠ—କାହିଁକି ?

ଶ୍ରୀରାମକୃଷ୍ଣ (ସହାସ୍ୟ)—ବୁଝିଛି, ତୁମେ ଯାହା କହିବ ।

ନୀଳକଣ୍ଠ—ଅମୂଲ୍ୟ ରତନ ନେଇଯିବି !!!

ଶ୍ରୀରାମକୃଷ୍ଣ—ସେ ଅମୂଲ୍ୟ ରତନ ନିଜ ପାଖରେ ଅଛି । ପୁଣି କା' ରେ ଆକାର ଦେଲେ କଅଣ ହେବ ? ତା' ନ ହୋଇଥିଲେ, ତୁମର ଗୀତ ଏତେ ଭଲ ଲାଗନ୍ତା କାହିଁକି ? ରାମପ୍ରସାଦ ସିଦ୍ଧ ଥିଲେ, ସେଥିପାଇଁ ତାଙ୍କର ଗୀତ ଭଲ ଲାଗେ ।

''ସାଧାରଣ ଜୀବକୁ କହନ୍ତି ମନୁଷ୍ୟ । ଯାହାର ଚୈତନ୍ୟ ହୋଇଛି ସେ ମାନହୁଁସ । ତୁମେ ସେହି ମାନହୁଁସ ।''

''ତୁମର ଗୀତ ହେବ ଶୁଣି ମୁଁ ନିଜେ ଯାଉଥିଲି—କିନ୍ତୁ ଲୋକ ମଧ୍ୟ କହିବାକୁ ଆସିଥିଲା ।''

ଠାକୁର ଛୋଟ ତକ୍ତପୋଷ ଉପରେ ନିଜ ଆସନରେ ଯାଇ ବସିଅଛନ୍ତି । ନୀଳକଣ୍ଠଙ୍କୁ କହୁଅଛନ୍ତି, ଟିକିଏ ମାଆଙ୍କ ନାମ ଶୁଣିବି ।

ନୀଳକଣ୍ଠ ତାଙ୍କ ସାଥିସାଙ୍ଗ ନେଇ ଗୀତ ଗାଉଅଛନ୍ତି—

ଗୀତ—ଶ୍ୟାମାପଦେ ଆଶ, ନଦୀ ତୀରେ ବାସ

ଗୀତ—ମହିଷମର୍ଦ୍ଦିନୀ ।

ଏହି ଗୀତ ଶୁଣୁ ଶୁଣୁ ଠାକୁର ଠିଆ ହୋଇ ସମାଧିସ୍ଥ ।

ନୀଳକଣ୍ଠ ଗୀତରେ କହୁଅଛନ୍ତି, 'ଯାହାଙ୍କର ଜଟାରେ ଗଙ୍ଗା,ସେ ରାଜ-ରାଜେଶ୍ୱରୀଙ୍କୁ ହୃଦରେ ଧାରଣ କରିଅଛନ୍ତି ।'

ଠାକୁର ପ୍ରେମୋନ୍ମତ୍ତ ହୋଇ ନୃତ୍ୟ କରୁଅଛନ୍ତି । ନୀଳକଣ୍ଠ ଓ ଭକ୍ତଗଣ ତାଙ୍କ ଚାରିପଟରେ ବୁଲି ଗୀତ ଗାଉଅଛନ୍ତି ଓ ନୃତ୍ୟ କରୁଅଛନ୍ତି ।

ଗୀତ—ଶିବ ଶିବ ।

ଏହି ଗୀତ ସଙ୍ଗରେ ମଧ୍ୟ ଠାକୁର ଭକ୍ତଙ୍କ ସହିତ ନୃତ୍ୟ କରିବାକୁ ଲାଗିଲେ ।

ଗୀତ ସମାପ୍ତ ହେଲା । ଠାକୁର ନୀଳକଣ୍ଠଙ୍କୁ କହୁଅଛନ୍ତି, —ମୁଁ ତୁମର ସେହି ଗୀତଟି ଶୁଣିବି, କଲିକତାରେ ଯାହା ଶୁଣିଥିଲି ।

ମାଷ୍ଟର—ଶ୍ରୀଗୌରାଙ୍ଗ ସୁନ୍ଦର, ନବ ନଟବର, ତପତ କାଞ୍ଚନକାୟ ।

ଶ୍ରୀରାମକୃଷ୍ଣ—ହଁ, ହଁ ।

ନୀଳକଣ୍ଠ ଗାଉଛନ୍ତି—

ଗୀତ—ଶ୍ରୀଗୌରାଙ୍ଗ ସୁନ୍ଦର, ନବନଟବର, ତପତକାଞ୍ଚନକାୟ ।

'ପ୍ରେମେର ବନ୍ୟେ ଭେସେ ଯାୟ' —ଏହି ପଦ ଧରି ଠାକୁର ନୀଳକଣ୍ଠାଦି ଭକ୍ତଙ୍କ ସଙ୍ଗରେ ପୁଣି ନାଚୁଅଛନ୍ତି । ସେ ଅପୂର୍ବ ନୃତ୍ୟ ଯେଉଁମାନେ ଦେଖିଲେ, ସେମାନେ କେତେବେଳେ ହେଲେ ଭୁଲିବେ ନାହିଁ । ଘର ଲୋକରେ ପରିପୂର୍ଣ୍ଣ, ସମସ୍ତେ ଉନ୍ମତ୍ତ ପ୍ରାୟ ! ଘରଟି ଯେପରି ଶ୍ରୀବାସଙ୍କ ପ୍ରାଙ୍ଗଣ ପରି ହୋଇଅଛି ।

ଶ୍ରୀଯୁକ୍ତ ମନମୋହନ ଭାବାବିଷ୍ଟ ହେଲେ । ତାଙ୍କ ଘରର କେତେଜଣ ସ୍ତ୍ରୀଲୋକ ଆସିଅଛନ୍ତି; ସେମାନେ ଉତ୍ତର ବାରଣ୍ଡାରୁ ଏହି ଅପୂର୍ବ ନୃତ୍ୟ ଓ ସଂକୀର୍ତ୍ତନ ଦର୍ଶନ କରୁଅଛନ୍ତି । ସେମାନଙ୍କ ମଧ୍ୟରୁ ଜଣଙ୍କର ଭାବ ହୋଇଥିଲା । ମନମୋହନ ଠାକୁରଙ୍କ ଭକ୍ତ ଓ ଶ୍ରୀଯୁକ୍ତ ରାଖାଲଙ୍କର ଶାଳକ ।

ଠାକୁର ପୁଣି ଗୀତ ଗାଇଲେ—

ଗୀତ—ଯାଦେର ହରି ବଲତେ ନୟନ ଝରେ,
ତାରା ତାରା ଦୁଭାଇ ଏସେଛେରେ !

ସଂକୀର୍ତ୍ତନ କରୁ କରୁ ଠାକୁର ନୀଳକଣ୍ଠାଦି ଭକ୍ତଙ୍କ ସଙ୍ଗରେ ନୃତ୍ୟ କରୁଛନ୍ତି ଓ ପଦ ଯୋଡ଼ି ଗୀତ ଗାଉଅଛନ୍ତି—

ଗୀତ—'ରାଧାର ପ୍ରେମେ ମାତୋୟାରା, ତାରା ଦୁ ଭାଇ ଏସେଛେରେ ।'

ଉଚ୍ଚ ସ୍ୱରରେ ହେଉଥିବା ସଂକୀର୍ତ୍ତନ ଶୁଣି ଚତୁର୍ଦ୍ଦିଗରୁ ଲୋକେ ଆସି ଜମିଅଛନ୍ତି । ଦକ୍ଷିଣ ଓ ଉତ୍ତର ଦିଗର ବାରଣ୍ଡା ଏବଂ ପଶ୍ଚିମ ଦିଗର ଗୋଲ ବାରଣ୍ଡାରେ ବହୁଲୋକ ଠିଆହୋଇଛନ୍ତି । ଯେଉଁମାନେ ନୌକାରେ ଯାଉଅଛନ୍ତି, ସେମାନେ ମଧ୍ୟ ଏହି ମଧୁର ସଂକୀର୍ତ୍ତନର ଶବ୍ଦ ଶୁଣି ଆକୃଷ୍ଟ ହୋଇଅଛନ୍ତି ।

କୀର୍ତ୍ତନ ସମାପ୍ତ ହେଲା । ଠାକୁର ଜଗନ୍ମାତାଙ୍କୁ ପ୍ରଣାମ କରି କହୁଅଛନ୍ତି—ଭାଗବତ, ଭକ୍ତ, ଭଗବାନ—ଜ୍ଞାନୀମାନଙ୍କୁ ନମସ୍କାର, ଯୋଗୀମାନଙ୍କୁ ନମସ୍କାର, ଭକ୍ତମାନଙ୍କୁ ନମସ୍କାର ।

ଏଥର ଠାକୁର ନୀଳକଣ୍ଠାଦି ଭକ୍ତଙ୍କ ସଙ୍ଗରେ ପଶ୍ଚିମର ଗୋଲ ବାରଣ୍ଡାରେ ଆସି ବସିଅଛନ୍ତି । ସନ୍ଧ୍ୟା ହୋଇଯାଇଛି । ଆଜି କୁମାର ପୂର୍ଣ୍ଣିମାର ପରଦିନ । ଚତୁର୍ଦ୍ଦିଗରେ ଚନ୍ଦ୍ରାଲୋକ । ଠାକୁର ନୀଳକଣ୍ଠଙ୍କ ସହିତ ଆନନ୍ଦରେ କଥା କହୁଅଛନ୍ତି ।

## ଠାକୁର କିଏ ? 'ମୁଁ'କୁ ଖୋଜି ପାଇନାହିଁ । ଘରକୁ ଆଣିବି ଚଣ୍ଡୀ ।'

ନୀଳକଣ୍ଠ—ଆପଣ ସାକ୍ଷାତ୍ ଗୌରାଙ୍ଗ ।

ଶ୍ରୀରାମକୃଷ୍ଣ—ଏସବୁ କଅଣ ! —ମୁଁ ସମସ୍ତଙ୍କର ଦାସ ।

"ଗଙ୍ଗାର ହିଁ ଢେଉ । ଢେଉର କେବେ ଗଙ୍ଗା ହୁଏନାହିଁ ।"

ନୀଳକଣ୍ଠ—ଆପଣ ଯାହା କହନ୍ତୁ, ଆମେମାନେ ଆପଣଙ୍କୁ ସେହିପରି ଦେଖୁଛୁ !

ଶ୍ରୀରାମକୃଷ୍ଣ (କିଞ୍ଚିତ ଭାବାବିଷ୍ଟ ହୋଇ, କରୁଣ ସ୍ୱରରେ)—ବାବା, ମୋର 'ମୁଁ'କୁ ଖୋଜିବାକୁ ଚେଷ୍ଟା କରେ, କିନ୍ତୁ ଖୋଜି ପାଏନାହିଁ ।

"ହନୁମାନ କହିଥିଲେ—ହେ ରାମ, କେତେବେଳେ ଭାବେ ତୁମେ ପୂର୍ଣ୍ଣ, ମୁଁ ଅଂଶ, —ତୁମେ ପ୍ରଭୁ ମୁଁ ଦାସ, —ପୁଣି ଯେତେବେଳେ ତତ୍ତ୍ୱଜ୍ଞାନ ହୁଏ—ସେତେବେଳେ ଦେଖେ, ତୁମେ ହିଁ ମୁଁ, ମୁଁ ହିଁ ତୁମେ ।"

ନୀଳକଣ୍ଠ—ଆଉ କଅଣ କହିବି, ଆମମାନଙ୍କୁ କୃପା କରିବେ ।

ଶ୍ରୀରାମକୃଷ୍ଣ (ସହାସ୍ୟରେ)—ତୁମେ କେତେ ଲୋକଙ୍କୁ ପାର କରୁଛ—ତୁମର ଗୀତ ଶୁଣି କେତେ ଲୋକଙ୍କର ଉଦ୍ଦୀପନା ହେଉଛି ।

ନୀଳକଣ୍ଠ—ପାର କରୁଛି କହୁଛନ୍ତି । କିନ୍ତୁ ଆଶୀର୍ବାଦ କରନ୍ତୁ, ଯେପରି ନିଜେ ନ ବୁଡ଼େ !

ଶ୍ରୀରାମକୃଷ୍ଣ (ସହାସ୍ୟରେ)—ଯଦି ବୁଡ଼ ତ ଏହି ସୁଧା-ହ୍ରଦରେ !

ଠାକୁର ନୀଳକଣ୍ଠଙ୍କୁ ପାଇ ଆନନ୍ଦିତ ହୋଇଅଛନ୍ତି । ତାଙ୍କୁ ପୁଣି କହୁଅଛନ୍ତି—'ତୁମେ ଯେ ଏଠାକୁ ଆସୁଛ, ଏପରି ସୁଯୋଗ ଲୋକେ ଅନେକ ସାଧନା କଲେ ତେବେ ପାଆନ୍ତି ! ତେବେ ଗୋଟିଏ ଗୀତ ଶୁଣ—

ଗୀତ— ଗିରି ! ଗଣେଶ ଆମାର ଶୁଭକାରୀ ।
ପୂଜେ ଗଣପତି, ପେଲାମ ହୈମବତୀ,
ଯାଓ ହେ ଗିରିରାଜ, ଆନ ଗିୟେ ଗୌରୀ ।।
ବିଲ୍ୱ ବୃକ୍ଷମୂଳେ ପାତିୟା ବୋଧନ,
ଗଣେଶେର କଲ୍ୟାଣେ ଗୌରୀର ଆଗମନ,
ଘରେ ଆନ୍‌ବୋ ଚଣ୍ଡୀ, ଶୁନ୍‌ବୋ କତ ଚଣ୍ଡୀ,
କତ ଆସବେନ ଦଣ୍ଡୀ, ଯୋଗୀ ଜଟାଧାରୀ ।।

"ଚଣ୍ଡୀ ଯେତେବେଳେ ଆସିଛନ୍ତି, ସେତେବେଳେ କେତେ ଯୋଗୀ ଜଟାଧାରୀ ମଧ୍ୟ ଆସିବେ !"

ଠାକୁର ହସୁଅଛନ୍ତି । କିୟତ୍‌କ୍ଷଣ ପରେ ମାଷ୍ଟର, ବାବୁରାମ ପ୍ରଭୃତି ଭକ୍ତମାନଙ୍କୁ କହୁଅଛନ୍ତି—"ମୋତେ ବଡ଼ ହସ ଲାଗୁଛି । ଭାବୁଛି—ଏମାନଙ୍କୁ (ଯାତ୍ରାବାଲାମାନଙ୍କୁ) ପୁଣି ମୁଁ ଗୀତ ଶୁଣାଉଛି ।"

ନୀଳକଣ୍ଠ—ଆମେମାନେ ଯେଉଁ ଗୀତ ଗାଇବୁଲୁ, ତାହାର ପୁରସ୍କାର ଆଜି ମିଳିଲା ।

ଶ୍ରୀରାମକୃଷ୍ଣ (ସହାସ୍ୟରେ)—କୌଣସି ଜିନିଷ ବିକ୍ରି କଲେ ମୁଠାରେ ଲାଭ ଦିଅନ୍ତି—ତୁମ୍ଭେମାନେ ସେଠାରେ ଗାଇଲ କିନ୍ତୁ ଏଠାରେ ଲାଭ ଦେଲ । (ସମସ୍ତଙ୍କର ହାସ୍ୟ) ।



# ଷୋଡ଼ଶ ପରିଚ୍ଛେଦ

## (୧)

## ଦକ୍ଷିଣେଶ୍ୱରରେ ବେଦାନ୍ତ ବାଗୀଶ, ଈଶାନ ପ୍ରଭୃତି ଭକ୍ତଙ୍କ ସଙ୍ଗରେ ।

ଆଜି ଶନିବାର, ୧୧ ତାରିଖ ଅକ୍ଟୋବର ୧୮୮୪ ଖ୍ରୀଷ୍ଟାବ୍ଦ । ଠାକୁର ଦକ୍ଷିଣେଶ୍ୱର କାଳୀ ମନ୍ଦିର ବେଢ଼ାରେ ନିଜ ଘରର ଛୋଟ ତକ୍ତପୋଷ ଉପରେ ଶୋଇଅଛନ୍ତି । ବେଳ ଅନ୍ଦାଜ ୨ଟା ବାଜିଛି । ତଳେ ମାଷ୍ଟର ଓ ପ୍ରିୟ ମୁଖାର୍ଜୀ ବସିଅଛନ୍ତି ।

ମାଷ୍ଟର ସ୍କୁଲରୁ ୧ଟା ସମୟରେ ବାହାରି ଦକ୍ଷିଣେଶ୍ୱରଠାରେ ପ୍ରାୟ ୨ଟା ବେଳେ ପହଞ୍ଚିଛନ୍ତି ।

ଶ୍ରୀରାମକୃଷ୍ଣ—ଯଦୁ ମଲ୍ଲିକଙ୍କ ଘରକୁ ଯାଇଥିଲି । ସେ ପ୍ରଶ୍ନ କଲେ ଗାଡ଼ି ଭଡ଼ା କେତେ ! ଯହୁଁ କେହି ଜଣେ କହିଲେ ତିନିଟଙ୍କା ଦୁଇଅଣା, ତହୁଁ ସେ ପୁଣି ମୋତେ ପ୍ରଶ୍ନ କଲେ । ତାହାପରେ ଶୁକ୍ଳ ଠାକୁର ଆଢୁଆଳରେ ଗାଡ଼ିବାଲାକୁ ପଚାରିଲେ । ସେ କହିଲା ତିନିଅଣା ଚାରିଅଣା । (ସମସ୍ତଙ୍କର ହାସ୍ୟ) । ସେତେବେଳେ ପୁଣି ଆମ ପାଖକୁ ଦୌଡ଼ିଆସି କହିଲେ, ଭଡ଼ା କେତେ ?

"ପାଖକୁ ଦଲାଲ ଆସି ଯଦୁଙ୍କୁ କହିଲା, ବଡ଼ ବଜାରରେ ଖଣ୍ଡିଏ ଜାଗା ବିକ୍ରି ହେଉଛି, ନେବେ ? ଯଦୁ କହିଲେ, କେତେ ଦାମ୍ ? ଦାମ୍‌ଟା କିଛି କମାଇବ ନାହିଁ ? ମୁଁ କହିଲି, 'ତୁମେ ନେବ ନାହିଁ, ଖାଲି ମୁଲେଇ କରୁଛ । ନା ? ସେତେବେଳେ ମୋ ଆଡ଼କୁ ଚାହିଁ ହସିଲେ । ବିଷୟୀ ଲୋକର ଏହି ଦସ୍ତୁର: ପାଞ୍ଚଲୋକ ତା' ପାଖକୁ ଯାଆନ୍ତୁ, ଯେପରି ବଜାରରେ ତା'ର ଖୁବ୍ ନାମ ହେବ ।"

"ଯଦୁ ଅଧରଙ୍କ ଘରକୁ ଯାଇଥିଲେ, ତେଣୁ ମୁଁ କହିଲି, ତୁମେ ଅଧରଙ୍କ ଘରକୁ ଯାଇଥିଲ, ଏଥିପାଇଁ ଅଧର ବଡ଼ ଖୁସି ହୋଇଛନ୍ତି । ଏହାପରେ ସେ କହିଲେ, "ଏଁ, ଖୁସି ହୋଇଛନ୍ତି ?"

"ଯଦୁଙ୍କ ଘରକୁ—ଜଣେ ମଲିକ ଆସିଥିଲେ । ମୁଁ ତାଙ୍କ ଆଖି ଦେଖି ବୁଝିପାରିଲି ଯେ, ସେ ବଡ଼ ଚତୁର ଓ ଶଠ । ଆଖି ଆଡ଼କୁ ଅନାଇଁ କହିଲି, "ଚତୁର ହେବା ଭଲ ନୁହେଁ, କାକ ବଡ଼ ଚତୁର, କିନ୍ତୁ ପରର ବିଷ୍ଠା ଖାଏ !" ଆଉ ମଧ ଦେଖିଲି, ଲକ୍ଷ୍ମୀଛଡ଼ା । ଯଦୁଙ୍କ ମା' ଅବାକ୍ ହୋଇ କହିଲେ, ବାବା, ତୁମେ କିପରି ଜାଣିଲ, ତାଙ୍କର କିଛି ନାହିଁ ବୋଲି । କହିଲି, ଦେଖି ବୁଝିପାରିଥିଲି ନାରାୟଣ ଆସି ତଳେ ବସିଅଛନ୍ତି ।"

ଶ୍ରୀରାମକୃଷ୍ଣ (ପ୍ରିୟନାଥଙ୍କ ପ୍ରତି)—ଆଚ୍ଛା ଦେଖ, ତୁମର ହରିଟି କିନ୍ତୁ ଭଲ ପିଲା ।

ପ୍ରିୟନାଥ—ଆଜ୍ଞା, ଏପରି ଭଲ କଅଣ ? ତେବେ ପିଲାଲୋକ ।

ନାରାୟଣ—ନିଜ ସ୍ତ୍ରୀଙ୍କୁ ମା' ବୋଲି କହନ୍ତି ।

ଶ୍ରୀରାମକୃଷ୍ଣ—କ'ଣ ! ମୁଁ ମଧ୍ୟ ଏପରି କହିପାରେ ନାହିଁ, ଆଉ ସେ ମା' ବୋଲି କହନ୍ତି ! (ପ୍ରିୟନାଥଙ୍କ ପ୍ରତି) କଅଣ ଜାଣ, ପିଲାଟି ବଡ଼ ଶାନ୍ତ , ଈଶ୍ୱରଙ୍କ ଆଡ଼େ ମନ ଅଛି !

ଠାକୁର ଅନ୍ୟକଥା ପକାଇଲେ ।

ଶ୍ରୀରାମକୃଷ୍ଣ—ହେମ କଅଣ କହିଥିଲେ ଜାଣ ? ବାବୁରାମଙ୍କୁ କହିଲେ, ଈଶ୍ୱର ଏକମାତ୍ର ସତ୍ୟ, ଆଉ ସବୁ ମିଥ୍ୟା (ସମସ୍ତଙ୍କର ହାସ୍ୟ) । ନାହିଁ ହେ, ସେ ଆନ୍ତରିକତା ସହ କହିଛନ୍ତି । ପୁଣି ମୋତେ ଘରକୁ ନେଇ କୀର୍ତ୍ତନ ଶୁଣାଇବେ କହିଥିଲେ । ତାହା କାର୍ଯ୍ୟତଃ ହୋଇପାରିନାହିଁ । ତା'ପରେ କଅଣ କହିଥିଲେ ନା ''ମୁଁ ଖୋଳ କରତାଳ ନେଇ କୀର୍ତ୍ତନ କରାଇଲେ ଲୋକେ କଅଣ କହିବେ ।'' ଭୟ କଲେ, ହୁଏତ ସେ ପାଗଳ ହୋଇଛି ବୋଲି ଲୋକେ କହିବେ ।

## ଘୋଷପଡ଼ା ସ୍ତ୍ରୀଲୋକର ହରିପଦଙ୍କ ପ୍ରତି ଗୋପାଳ ଭାବ । କୌମାର ବୈରାଗ୍ୟ ଓ ସ୍ତ୍ରୀଲୋକ ।

ଶ୍ରୀରାମକୃଷ୍ଣ—ହରିପଦ ଘୋଷପଡ଼ାର ଜଣେ ସ୍ତ୍ରୀର ପାଲରେ ପଡ଼ିଛି । ଛାଡ଼େନାହିଁ । କହେ, କୋଳରେ ବସାଇ ଖୁଆଏ । ସେ (ସ୍ତ୍ରୀ) କହେ କ'ଣ ନା ଗୋପାଳ ଭାବ । ମୁଁ ବାରମ୍ବାର ସାବଧାନ କରି ଦେଇଛି । କିନ୍ତୁ ସ୍ତ୍ରୀଲୋକ କହେ ବାତ୍ସଲ୍ୟ ଭାବ ! ଏହି ବାତ୍ସଲ୍ୟରୁ ପୁଣି ତାଚ୍ଛଲ୍ୟ ହୁଏ ।

''କ'ଣ ଜାଣ ? ସ୍ତ୍ରୀଲୋକଙ୍କ ଠାରୁ ଅନେକ ଦୂରେ ରହିବାକୁ ହୁଏ, ତେବେ ଯାଇ ଭଗବାନ ଲାଭ ହୁଏ । ଯାହାଙ୍କର ଉଦ୍ଦେଶ୍ୟ ଖରାପ, ସେହି ସବୁ ସ୍ତ୍ରୀଲୋକଙ୍କ ନିକଟକୁ ଯିବା ଆସିବା କରିବା କିମ୍ବା ତାଙ୍କ ହାତରେ କିଛି ଖାଇବା, ଭଲ ନୁହେଁ ! ଏହାଦ୍ୱାରା ଆଧ୍ୟାତ୍ମିକ ଭାବ ନଷ୍ଟ ହୁଏ । ଅନେକ ସାବଧାନ ରହିଲେ ତେବେ ଭକ୍ତି ବଜାୟ ରହେ । ଭବନାଥ ରାଖାଲ ଏମାନେ ସବୁ ନିଜେ ରାନ୍ଧିଲେ ! ସେମାନେ ଖାଇ ବସିଛନ୍ତି, ଏପରି ସମୟରେ ଜଣେ ବାଉଲ ଆସି ସେମାନଙ୍କ ପଙ୍ଗତରେ ବସି ଖାଇବାକୁ କହିଲେ । ମୁଁ କହିଲି, ଅଣ୍ଟିବ ନାହିଁ, ତେବେ ଯଦି ବଳେ, ତୁମପାଇଁ ରଖିବେ । କିନ୍ତୁ ସେ ରାଗରେ ଉଠିଗଲେ ! ବିଜୟା ଦିନରେ ଯେକୌଣସି ଲୋକ ଅନ୍ୟକୁ ନିଜ ହାତରେ ଖୁଆଇ ଦିଅନ୍ତି, ଏହା ଭଲ ନୁହେଁ । ଶୁଦ୍ଧସତ୍ତ୍ୱ ଭକ୍ତଙ୍କ ହାତରୁ ଖିଆଯାଏ ।''

''ସ୍ତ୍ରୀଲୋକ ପାଖରେ ଖୁବ୍ ସାବଧାନ ରହିବାକୁ ହୁଏ । ଗୋପାଳ ଭାବ, ଏସବୁ କଥା ଶୁଣନାହିଁ । କଥାରେ ଅଛି, 'ସ୍ତ୍ରୀ ତ୍ରିଭୁବନ ଖାଇଦେଲା ।' ଅନେକ ସ୍ତ୍ରୀଲୋକ ସୁନ୍ଦର ଯୁବକ ଦେଖିଲେ ପ୍ରଲୋଭନରେ ପକାଇବାକୁ ଚେଷ୍ଟା କରନ୍ତି ।''

''ଯେଉଁମାନଙ୍କର କୌମାର-ବୈରାଗ୍ୟ, ଯେଉଁମାନେ ପିଲାଦିନଠାରୁ ଈଶ୍ୱରଙ୍କ ପାଇଁ ବ୍ୟାକୁଳ, ସଂସାର କରିବାକୁ ଅନିଚ୍ଛୁକ, ସେମାନେ ଗୋଟିଏ ଅଲଗା ଥାକ । ସେମାନେ ଅତ୍ୟନ୍ତ ପବିତ୍ରାତ୍ମା । ଠିକ୍ ଠିକ୍ ବୈରାଗ୍ୟ ହେଲେ ସେମାନେ ସ୍ତ୍ରୀଲୋକଙ୍କ ଠାରୁ ୫୦ ହାତ ଦୂରରେ ରହନ୍ତି, କାଳେ ସେମାନଙ୍କର ଭାବ ଭଙ୍ଗ ହେବ । ସେମାନେ ଯଦି ସ୍ତ୍ରୀଲୋକଙ୍କର ପାଲରେ ପଡ଼ନ୍ତି, ତାହାହେଲେ ଆଉ ପବିତ୍ରତା ରକ୍ଷାକରିପାରନ୍ତି ନାହିଁ, ଭାବ ଭଙ୍ଗ ହୁଏ; ତାଙ୍କର ସ୍ତର ନୀଚ ହୋଇଯାଏ । ଯାହାଙ୍କର ଠିକ୍ କୌମାର-ବୈରାଗ୍ୟ; ସେମାନେ ଉଚ୍ଚ ଶ୍ରେଣୀର; ସେମାନଙ୍କ ଭାବ ଅତି ଶୁଦ୍ଧ । ସେମାନଙ୍କ ଠାରେ କୌଣସି କାଳିମା ଲାଗେନାହିଁ ।''

## ଜିତେନ୍ଦ୍ରିୟ ହେବାର ଉପାୟ । ପ୍ରକୃତି ଭାବ ସାଧନ ।

ଶ୍ରୀରାମକୃଷ୍ଣ—କିପରି ଜିତେନ୍ଦ୍ରିୟ ହେବାକୁ ହେବ ? ନିଜ ଠାରେ ସ୍ତ୍ରୀଭାବ ଆରୋପ କରିବାକୁ ହୁଏ । ଅନେକ ଦିନ ସଖୀ ଭାବରେ ଥିଲି । ସ୍ତ୍ରୀଲୋକଙ୍କ ପରି ଲୁଗା, ଗହଣା ପିନ୍ଧେ, ଓଢ଼ଣା ଦିଏ । ଓଢ଼ଣା ଦେଇ ଆଳତି କରେ ! ତାହା ନହୋଇଥିଲେ ସ୍ତ୍ରୀକୁ ଆଠମାସ କାଳ ପାଖରେ ଆଣି ରଖିଥାଆନ୍ତି କିପରି ? ଦୁଇଜଣ ମାଆଙ୍କର ସଖୀ ।

''ମୁଁ ନିଜକୁ ପୁରୁଷ ବୋଲି କହିପାରେ ନାହିଁ । ଦିନେ ଭାବାବସ୍ଥାରେ ଥିଲି, ମୋର ସ୍ତ୍ରୀ ପ୍ରଶ୍ନ କଲେ, ମୁଁ ତାଙ୍କୁ କିପରି ଦେଖେ ? ଉତ୍ତରରେ ମୁଁ କହିଲି, ଆନନ୍ଦମୟୀ ।''

''ଏକ ମତରେ ଅଛି, ଯାହାର ସ୍ତନରେ ଚୁଚୁକ ଅଛି, ସେ ହେଉଛି ସ୍ତ୍ରୀ । ଅର୍ଜୁନ ଓ କୃଷ୍ଣଙ୍କର ସ୍ତନରେ ଚୁଚୁକ ନଥିଲା । ଶିବ ପୂଜାର ଭାବ କ'ଣ ଜାଣ ? ଶିବଲିଙ୍ଗ ର ପୂଜା, ମାତୃସ୍ଥାନର ଓ ପିତୃସ୍ଥାନର ପୂଜା । ଭକ୍ତ ଏହା କହି ପୂଜା କରେ, ପ୍ରଭୁ ଦେଖ ଯେପରି ଆଉ ଜନ୍ମ ନହୁଏ । ଶୋଣିତ—ଶୁକ୍ର ମଧ୍ୟ ଦେଇ ମାତୃସ୍ଥାନ ଦେଇ ପୁଣି ଯେପରି ଆସିବାକୁ ନହୁଏ ।''

## (୨)

## ସ୍ତ୍ରୀଲୋକ ନେଇ ସାଧନ ଶ୍ରୀରାମକୃଷ୍ଣଙ୍କର ପୁନଃ ପୁନଃ ନିଷେଧ ।

ଠାକୁର ଶ୍ରୀରାମକୃଷ୍ଣ ପ୍ରକୃତି ଭାବର କଥା କହୁଅଛନ୍ତି । ଶ୍ରୀଯୁକ୍ତ ପ୍ରିୟ ମୁଖାର୍ଜୀ, ମାଷ୍ଟର, ଆଉ ମଧ୍ୟ କେତେ ଜଣ ଭକ୍ତ ବସିଅଛନ୍ତି । ଏପରି ସମୟରେ, ଠାକୁର ବଂଶୀୟ ଜଣେ ଶିକ୍ଷକ ସେହି ବଂଶୀୟ କେତେଜଣ ପିଲାଙ୍କୁ ସଙ୍ଗରେ ଧରି ଉପସ୍ଥିତ ହେଲେ ।

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)—ଶ୍ରୀକୃଷ୍ଣଙ୍କ ଶରୀରରେ ମୟୂର ଚନ୍ଦ୍ରିକା, ମୟୂର ଚନ୍ଦ୍ରିକାରେ ଯୋନି ଚିହ୍ନ ଅଛି, ଅର୍ଥାତ୍ ପ୍ରକୃତିକୁ ମୁଣ୍ଡରେ ଧରିଛନ୍ତି ।

''କୃଷ୍ଣ ରାସ ମଣ୍ଡଳକୁ ଗଲେ । କିନ୍ତୁ ସେଠାରେ ନିଜେ ପ୍ରକୃତି ହେଲେ । ସେଥିପାଇଁ

ଦେଖ ରାସମଣ୍ଡଳରେ ତାଙ୍କର ସ୍ତ୍ରୀ ବେଶ । ନିଜେ ପ୍ରକୃତି ଭାବ ଧାରଣ ନ କଲେ ପ୍ରକୃତି ସାଥିର ଅଧିକାରୀ ହୁଏନାହିଁ । ପ୍ରକୃତିଭାବ ଧାରଣ କଲେ ତେବେ ରାସ, ତେବେ ସମ୍ଭୋଗ । କିନ୍ତୁ ସାଧକ ଅବସ୍ଥାରେ ଖୁବ୍ ସାବଧାନ ରହିବାକୁ ହୁଏ । ସେତେବେଳେ ସ୍ତ୍ରୀଲୋକଙ୍କ ଠାରୁ ଅନେକ ଦୂରରେ ରହିବାକୁ ହୁଏ । ଏପରିକି, ଭକ୍ତିମତୀ ହେଲେ ମଧ୍ୟ ବେଶି ପାଖକୁ ଯିବା ଉଚିତ ନୁହେଁ । ଛାତକୁ ଉଠିବା ସମୟରେ ହଲଚଲ ହେବା ଠିକ୍ ନୁହେଁ । ହଲଚଲ ହେଲେ ପଡ଼ିଯିବାର ଖୁବ୍ ସମ୍ଭାବନା ଅଛି । ଯେଉଁମାନେ ଦୁର୍ବଳ, ସେମାନଙ୍କ ପକ୍ଷରେ ଧରି ଧରି ଉଠିବାକୁ ହୁଏ । ସିଦ୍ଧ ଅବସ୍ଥାରେ ଅଲଗା କଥା । ଭଗବାନଙ୍କୁ ଦର୍ଶନ କରିବା ପରେ ସେତେ ଭୟ ନାହିଁ; ଅନେକଟା ନିର୍ଭୟ । ଛାତକୁ ଥରେ ଉଠିପାରିଲେ ହେଲା । ଉଠିବା ପରେ ଛାତରେ ନାଚି ମଧ୍ୟ ପାର । ସିଡ଼ିରେ କିନ୍ତୁ ନଚାନଚି ଚଳେ ନାହିଁ । ପୁଣି ଦେଖ, —ଯାହାକୁ ତ୍ୟାଗ କରାଯାଇଛି, ଛାତକୁ ଉଠିବା ପରେ ତାହା ଆଉ ତ୍ୟାଗ କରିବାକୁ ପଡ଼େନାହିଁ । ଛାତ, ଇଟା ସୁରକିରେ ତିଆରି, ପୁଣି ସିଡ଼ି ମଧ୍ୟ ସେହି ଜିନିଷରେ ତିଆରି । ଯେଉଁ ସ୍ତ୍ରୀଲୋକ ପାଖରେ ଏତେ ସାବଧାନ ହେବାକୁ ପଡ଼େ, ଈଶ୍ୱର ଦର୍ଶନ ପରେ ବୋଧହେବ, ସେହି ସ୍ତ୍ରୀଲୋକ ସାକ୍ଷାତ ଭଗବତୀ । ସେତେବେଳେ ତାଙ୍କୁ ମାତୃଜ୍ଞାନରେ ପୂଜା କରିବ । ଆଉ ସେତେ ଭୟ ନାହିଁ ।"

"କଥାଟା ଏହି, ବୁଢ଼ୀକୁ ଛୁଇଁ ଯାହା ଇଚ୍ଛା ତାହା କର ।"

## ଧ୍ୟାନଯୋଗ ଓ ଶ୍ରୀରାମକୃଷ୍ଣ । ଅନ୍ତର୍ମୁଖ ଓ ବହିର୍ମୁଖ ।

ଶ୍ରୀରାମକୃଷ୍ଣ—ବହିର୍ମୁଖ ଅବସ୍ଥାରେ ସ୍ଥୂଳ ଦେଖନ୍ତି । ଅନ୍ନମୟ କୋଷରେ ମନ ରହେ । ତା'ପରେ ସୂକ୍ଷ୍ମ ଶରୀର । ଲିଙ୍ଗ ଶରୀର । ମନୋମୟ ଓ ବିଜ୍ଞାନମୟ କୋଷରେ ମନ ରହେ । ଏହାପରେ କାରଣ ଶରୀର; ଯେତେବେଳେ ମନ କାରଣ ଶରୀରକୁ ଆସେ, ସେତେବେଳେ ଆନନ୍ଦ–ଆନନ୍ଦମୟ କୋଷରେ ମନ ରହେ । ଏଇଟି ଚୈତନ୍ୟଦେବଙ୍କର ଅର୍ଦ୍ଧବାହ୍ୟ ଦଶା ।

"ତା'ପରେ ମନ ଲୀନ ହୋଇଯାଏ । ମନର ନାଶ ହୁଏ । ମହାକାରଣରେ ନାଶହୁଏ । ମନର ନାଶ ହେଲେ ଆଉ ଖବର ମିଳେନାହିଁ । ଏଇଟି ଚୈତନ୍ୟଦେବଙ୍କର ଅନ୍ତର୍ଦ୍ଦଶା ।

"ଅନ୍ତର୍ମୁଖ ଅବସ୍ଥା କଅଣ ଜାଣ ? ଦୟାନନ୍ଦ କହିଥିଲେ, କବାଟ ବନ୍ଦ କରି ଭିତରକୁ ଆସ । ଅନ୍ତଃପୁରକୁ ଯେ କେହି ଯାଇପାରନ୍ତି ନାହିଁ ।"

"ମୁଁ ଦୀପଶିଖାରେ ଏହା ଆରୋପ କରେ । ଲାଲ ରଙ୍ଗଟାକୁ କହେ ସ୍ଥୂଳ : ତା'ର ଭିତରେ ସାଧା । ସାଧା ଅଂଶଟାକୁ କହେ ସୂକ୍ଷ୍ମ, କିନ୍ତୁ ସବୁ ଭିତରେ କଳା ଖଡ଼ିକା ପରି ଯେଉଁ ଭାଗଟା ତାକୁ କହେ କାରଣ ଶରୀର ।"

ଶ୍ରୀରାମକୃଷ୍ଣ—ଧ୍ୟାନ ଯେ ଠିକ୍ ଠିକ୍ ହେଉଛି, ତା'ର ଲକ୍ଷଣ ଅଛି । ଗୋଟିଏ ଲକ୍ଷଣ—ମୁଣ୍ଡରେ ପକ୍ଷୀ ବସିବେ, ଜଡ଼ ମନେକରି ।

## ପୂର୍ବକଥା—କେଶବଙ୍କୁ ପ୍ରଥମ ଦର୍ଶନ ୧୮୬୪ ଖ୍ରୀଷ୍ଟାବ୍ଦରେ ଧ୍ୟାନସ୍ଥ ଅବସ୍ଥାରେ । ଚକ୍ଷୁ ଖୋଲି ମଧ୍ୟ ଧ୍ୟାନ ହୁଏ ।

''କେଶବ ସେନଙ୍କୁ ପ୍ରଥମରେ ଦେଖେ, ଆଦି ସମାଜରେ । ବେଦି ଉପରେ କେତେଜଣ ବସିଛନ୍ତି, କେଶବ ମଝିରେ । ଦେଖିଲି ଯେପରି କାଠ୍ । ମଥୁରବାବୁଙ୍କୁ କହିଲି, ଦେଖ ଏହାଙ୍କ ବନିଶୀରେ ମାଛ ଖାଇଛି । ଏହି ଧ୍ୟାନ ଟିକକ ଥିଲା ବୋଲି ଈଶ୍ୱରଙ୍କ ଇଚ୍ଛାରେ ସେ ଯାହା ମନେ କରିଥିଲେ (ମାନ ଯଶାଦି) ତାହା ପାଇଥିଲେ ।

''ଚକ୍ଷୁ ଖୋଲି ମଧ୍ୟ ଧ୍ୟାନ ହୁଏ । କଥା କହୁଛି, ତେବେ ମଧ୍ୟ ଧ୍ୟାନ ହୁଏ । ଯେପରି ମନେକର, ଜଣଙ୍କର ଦାନ୍ତ ମୂଳରେ କଷ୍ଟ ହେଉଛି, ଶୁଲେଇ ହେଉଛି ! —''

ଠାକୁର ବଂଶୀୟ ଶିକ୍ଷକ—ଆଜ୍ଞା, ଏଇଟି ଭଲକରି ଜାଣେ । (ହାସ୍ୟ) ।

ଶ୍ରୀରାମକୃଷ୍ଣ (ସହାସ୍ୟରେ)—ହଁ ହେ, ଦାନ୍ତ ମୂଳରେ ଦରଜ ଅଛି, ଅଥଚ ସବୁ କର୍ମ କରୁଛ, କିନ୍ତୁ ଦରଜ ଦିଗରେ ମନଟା ଅଛି । ତାହାହେଲେ ଚକ୍ଷୁ ଖୋଲି ଧ୍ୟାନ ହୁଏ, କଥା କହୁ କହୁ ମଧ୍ୟ ହୁଏ ।

ଶିକ୍ଷକ—ତାଙ୍କର ନାମ ହେଉଛି ପତିତପାବନ, ତେଣୁ ଭରସା ଅଛି । ସେ ଦୟାମୟ ।

## ପୂର୍ବକଥା—ଶିଖ ଓ ଶ୍ରୀଯୁକ୍ତ କୃଷ୍ଣଦାସଙ୍କ ସହିତ କଥା ।

ଶ୍ରୀରାମକୃଷ୍ଣ—ଶିଖମାନେ କହନ୍ତି, ଈଶ୍ୱର ଦୟାମୟ । ମୁଁ କହିଲି, ସେ ଦୟାମୟ କିପରି ? ସେମାନେ କହିଲେ, କାହିଁକି ମହାରାଜ ? ସେ ଆମମାନଙ୍କୁ ସୃଷ୍ଟି କରିଛନ୍ତି, ଆମମାନଙ୍କ ପାଇଁ ଏତେ ଜିନିଷ ତିଆରି କରିଛନ୍ତି, ଆମମାନଙ୍କୁ ମନୁଷ୍ୟ କରିଛନ୍ତି, ଆମମାନଙ୍କୁ ପଦେ ପଦେ ବିପଦରୁ ରକ୍ଷା କରୁଛନ୍ତି । ସେଥିରେ ମୁଁ କହିଲି, ସେ ଆମମାନଙ୍କୁ ଜନ୍ମ ଦେଇ ପାଳୁଅଛନ୍ତି, ଖୁଆଉଛନ୍ତି, ଏହା କଅଣ ବଡ଼ ବାହାଦୁରୀ ? ତୁମର ଯଦି ସନ୍ତାନ ହୁଏ, ତାକୁ କ'ଣ କେହି ବ୍ରାହ୍ମଣପଡ଼ାର ଲୋକ ଆସି ମଣିଷ କରିବ ?

ଶିକ୍ଷକ—ଆଜ୍ଞା, କାହାର ଆଧ୍ୟାତ୍ମିକ ଉନ୍ନତି ଶୀଘ୍ର ହୁଏ, କାହାର ପୁଣି ଆଦୌ ହୁଏନାହିଁ, ଏହାର କାରଣ କଅଣ ?

## ଲାଲାବାବୁ ଓ ରାଣୀ ଭବାନୀଙ୍କର ବୈରାଗ୍ୟ । ସଂସ୍କାର ଥିଲେ ସତ୍ତ୍ୱଗୁଣ ହୁଏ ।

ଶ୍ରୀରାମକୃଷ୍ଣ—କ'ଣ ଜାଣ ? ଅନେକଟା ପୂର୍ବ ଜନ୍ମର ସଂସ୍କାର ଯୋଗୁ ହୁଏ । ଲୋକେ ମନେ କରନ୍ତି, ହଠାତ୍ ହେଉଛି ।

''ଜଣେ ସକାଳେ ଏକ ବୋତଲ ମଦ ପିଇଥିଲା, ତେଣୁ ପୁରା ମାତାଲ, ଟଳାଟଳି

ଆରମ୍ଭ କଲା । ଲୋକମାନେ ଅବାକ୍ । ଏକ ବୋତଲରେ ଏତେ ମାତାଲ କିପରି ହେଲା ? ଜଣେ କହିଲା, ଆରେ, ସାରା ରାତି ମଦ ପିଇଛି !''

''ହନୁମାନ ସୁନାର ଲଙ୍କା ଦଗ୍ଧ କଲେ । ଲୋକେ ଦେଖି ଅବାକ୍ । ଗୋଟିଏ ବାନର ଆସି ସବୁ ପୋଡ଼ିଦେଲା । କିନ୍ତୁ ପୁଣି କହନ୍ତି, ଅସଲ କଥା ଏହି—ସୀତାଙ୍କର ନିଃଶ୍ୱାସରେ ଓ ରାମଙ୍କର କୋପରେ ଏପରି ପୋଡ଼ି ଯାଇଥିଲା ।''

''ଆଉ ଦେଖ ଲାଲାବାବୁ । *ଏତେ ଐଶ୍ୱର୍ଯ୍ୟ; ପୂର୍ବଜନ୍ମର ସଂସ୍କାର ନଥିଲେ ହଠାତ୍ କ'ଣ ବୈରାଗ୍ୟ ହୁଏ ? ପୁଣି ରାଣୀ ଭବାନୀ । ସ୍ତ୍ରୀଲୋକ ହୋଇ ଏତେ ଜ୍ଞାନ ଭକ୍ତି ।''

## କୃଷ୍ଣଦାସଙ୍କର ରଜୋଗୁଣ । ତେଣୁ 'ଜଗତର ଉପକାର' ।

''ଶେଷ ଜନ୍ମରେ ସତ୍ତ୍ୱଗୁଣ ଥାଏ, ଭଗବାନଙ୍କ ଠାରେ ମନହୁଏ, ତାଙ୍କ ପାଇଁ ମନ ବ୍ୟାକୁଳ ହୁଏ; ନାନା ବିଷୟ କର୍ମରୁ ମନ ଛାଡ଼ିଆସେ ।''

''କୃଷ୍ଣଦାସ ପାଲ ଆସିଥିଲେ । ଦେଖିଲି ରଜୋଗୁଣ । ତେବେ ହିନ୍ଦୁ; ଜୋତା ବାହାରେ ରଖିଲେ । ଟିକିଏ କଥା କହି ଦେଖିଲି, ଭିତରେ କିଛି ନାହିଁ । ପ୍ରଶ୍ନ କଲି, ମନୁଷ୍ୟର କଅଣ କର୍ତ୍ତବ୍ୟ ? ସେ କହିଲେ, 'ଜଗତର ଉପକାର କରିବା ।' ମୁଁ କହିଲି ଆହେ, ତୁମେ କିଏ ? ଆଉ କି ଉପକାର କରିବ ? ଜଗତ କଅଣ ସାମାନ୍ୟ ଟିକିଏ ଯେ, ତୁମେ ଉପକାର କରିବ ?''

ନାରାୟଣ ଆସିଛନ୍ତି । ଠାକୁରଙ୍କର ଭାରି ଆନନ୍ଦ । ନାରାୟଣଙ୍କୁ ଛୋଟ ଖଟ ଉପରେ ନିଜ ପାଖରେ ବସାଇଲେ । ଦେହରେ ହାତ ମାରି ଆଦର କରିବାକୁ ଲାଗିଲେ । ମିଷ୍ଟାନ୍ନ ଖୁଆଇବାକୁ ଦେଲେ । ସସ୍ନେହରେ କହିଲେ, ପାଣି ପିଇବୁ ? ନାରାୟଣ ମାଷ୍ଟରଙ୍କ ସ୍କୁଲରେ ପଢ଼ନ୍ତି । ଠାକୁରଙ୍କ ପାଖକୁ ଆସନ୍ତି ବୋଲି ଘରେ ମାଡ଼ ଖାଆନ୍ତି । ଠାକୁର ସସ୍ନେହରେ ହସି ହସି ନାରାୟଣଙ୍କୁ କହୁଛନ୍ତି, ଗୋଟାଏ ଦୁଇଟା ଚମଡ଼ାର ଜାମା କର, ତାହାହେଲେ ମାରିଲେ ବେଶି ବାଧିବ ନାହିଁ । ଠାକୁର ହରିଶକୁ କହିଲେ, 'ତମାଖୁ ଖାଇବି ।'

---

*ଲାଲାବାବୁ ବଙ୍ଗଳାରେ, ପାଇକପଡ଼ାର ବିଖ୍ୟାତ ଜମିଦାର ସ୍ୱର୍ଗତ କୃଷ୍ଣଚନ୍ଦ୍ର ସିଂହ । ଯୌବନରେ ବୈରାଗ୍ୟ-ବାର୍ଷିକ ସାତଲକ୍ଷ ଟଙ୍କା ଆୟର ସମ୍ପତ୍ତି ତ୍ୟାଗ । ତିରିଶ ବର୍ଷ ବୟସରେ ମଥୁରାବାସ । ଚାଳିଶ ବର୍ଷରେ ମାଧୁକରୀ, ଭିକ୍ଷାଜୀବୀ । ବୟାଳିଶରେ ସ୍ୱର୍ଗ ପ୍ରାପ୍ତି । ପତ୍ନୀ 'ରାଣୀ କାତ୍ୟାୟନୀ' । ନିଃସନ୍ତାନ । ଗୁରୁ କୃଷ୍ଣଦାସ ବାବାଜୀ, ଭକ୍ତମାଳା ନାମକ ଗ୍ରନ୍ଥର ଅନୁବାଦକ ।

## ସ୍ତ୍ରୀଲୋକ ନେଇ ସାଧନ, ଠାକୁରଙ୍କର ବାରମ୍ବାର ନିଷେଧ । ଘୋଷପଡ଼ାର ମତ ।

ପୁଣି ନାରାୟଣଙ୍କୁ ସମ୍ବୋଧନ କରି କହୁଅଛନ୍ତି, ହରିପଦର ସେହି ଧର୍ମ ମା' ଆସିଥିଲେ । ମୁଁ ହରିପଦକୁ ଖୁବ୍ ସାବଧାନ କରିଦେଇଛି । ସେମାନଙ୍କର ଘୋଷପଡ଼ାର ମତ । ମୁଁ ତାଙ୍କୁ ପ୍ରଶ୍ନ କଲି, ତୁମର କେହି ଆଶ୍ରୟ ଅଛନ୍ତି ? ସେ କହିଲେ, ହଁ—ଅମୁକ ଚକ୍ରବର୍ତ୍ତୀ ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—ଆହା, ନୀଳକଣ୍ଠ ସେଦିନ ଆସିଥିଲେ, ଏପରି ଭାବ ! ଆଉ ଦିନେ ଆସିବେ, କହିଯାଇଛନ୍ତି । ଗୀତ ଶୁଣାଇବେ । ଆଜି ସେଠାରେ ନାଚ ହେଉଛି, ଦେଖିବ, ଯାଅନା । (ରାମଲାଲଙ୍କୁ) ତେଲ ନାହିଁ ଯେ, (ଭାଣ୍ଡ ଦୃଷ୍ଟେ) କାହିଁ, ତେଲ ଭାଣ୍ଡରେ ତ ନାହିଁ ।

## (୩)

## ପୁରୁଷ ପ୍ରକୃତି ବିବେକ ଯୋଗ । ରାଧାକୃଷ୍ଣ, ସେମାନେ କିଏ ? ଆଦ୍ୟାଶକ୍ତି ।

## ବେଦାନ୍ତ ବାଗୀଶ, ଦୟାନନ୍ଦ ସରସ୍ୱତୀ, କର୍ଣ୍ଣେଲ ଅଲ୍‌କଟ୍, ସୁରେନ୍ଦ୍ର, ନାରାୟଣ ।

ଏଥର ଠାକୁର ଶ୍ରୀରାମକୃଷ୍ଣ ପାଦଚାରଣ କରୁଅଛନ୍ତି: କେତେବେଳେ ଘର ଭିତରେ, କେତେବେଳେ ଘରର ଦକ୍ଷିଣ ଦିଗର ବାରଣ୍ଡାରେ, କେତେବେଳେ ଘରର ପଶ୍ଚିମ ଦିଗ ଗୋଲାକାର ବାରଣ୍ଡାରେ ଠିଆହୋଇ, ଗଙ୍ଗା ଦର୍ଶନ କରୁଅଛନ୍ତି ।

### ସଙ୍ଗରେ (enviornment) ଦୋଷଗୁଣ, ଛବି, ଗଛ, ବାଳକ ।

କିଛିକ୍ଷଣ ପରେ ପୁଣି ଛୋଟ ଖଟ ଉପରେ ବସିଲେ । ବେଳ ତିନିଟା ବାଜିଯାଇଛି । ଭକ୍ତମାନେ ପୁଣି ତଳେ ଆସି ବସିଲେ । ଠାକୁର ଚୁପ ହୋଇ ବସିଅଛନ୍ତି । ଥରେ ଥରେ ଘରର କାନ୍ଥ ଆଡ଼କୁ ଦୃଷ୍ଟିପାତ କରୁଅଛନ୍ତି । କାନ୍ଥରେ ଅନେକଗୁଡ଼ିଏ ଫଟୋ ଅଛି ! ଠାକୁରଙ୍କ ବାମ ଦିଗରେ ଶ୍ରୀଶ୍ରୀବୀଣାପାଣିଙ୍କର ଫଟୋ, ଏହାର କିଛି ଦୂରରେ ନିତାଇଗୌର ଭକ୍ତଙ୍କ ସଙ୍ଗରେ କୀର୍ତ୍ତନ କରୁଅଛନ୍ତି । ଠାକୁରଙ୍କର ସମ୍ମୁଖରେ ଧ୍ରୁବ, ପ୍ରହ୍ଲାଦଙ୍କର ଛବି ଓ ମା' କାଳୀଙ୍କ ଛବି । ଠାକୁରଙ୍କର ଡାହାଣ ଦିଗରେ କାନ୍ଥ ଉପରେ ରାଜରାଜେଶ୍ୱରୀ ଛବି, ପଛ କାନ୍ଥରେ ଯୀଶୁଙ୍କର ଛବି ରହିଅଛି—ପିଟର ବୁଡ଼ି ଯାଉଅଛନ୍ତି, ଯୀଶୁ ଉଠାଉଅଛନ୍ତି । ଠାକୁର ହଠାତ୍ ମାଷ୍ଟରଙ୍କୁ କହୁଅଛନ୍ତି, ଦେଖ, ସାଧୁ ସନ୍ନ୍ୟାସୀଙ୍କ ମୁଖ ଦେଖି ଉଠିବା ଭଲ । କାନ୍ଥରେ ଇଂରାଜୀ ଛବି—ଧନୀ, ରାଜା, ରାଣୀ ରାଣୀଙ୍କ ପିଲାଙ୍କ ଛବି, ସାହେବ

ଓ ମେମ୍ ଏକସଙ୍ଗରେ ବୁଲୁଅଛନ୍ତି, ଏହିସବୁ ଛବି ରଖିବା ରଜୋଗୁଣରୁ ହୁଏ ।''

''ଯେପରି ସଙ୍ଗରେ ରହିବ, ସେପରି ସ୍ୱଭାବ ହୋଇଯାଏ । ତେଣୁ ଛବିରେ ମଧ୍ୟ ଦୋଷ ଅଛି । ନିଜର ଯେପରି ସ୍ୱଭାବ, ଲୋକେ ସେହିପରି ସାଥି ଖୋଜନ୍ତି । ପରମହଂସମାନେ ଚାରି ପାଞ୍ଚଜଣ ପିଲା ପାଖରେ ରଖିଦିଅନ୍ତି-ପାଖକୁ ଆସିବାକୁ ଦିଅନ୍ତି— ପାଞ୍ଚ ଛଅ ବର୍ଷର ପିଲା ! ସେ ଅବସ୍ଥାରେ ପିଲାମାନଙ୍କ ଭିତରେ ରହିବାକୁ ଭଲ ଲାଗେ । ପିଲାମାନେ ସତ୍ତ୍ୱ, ରଜ, ତମଃ କୌଣସି ଗୁଣର ବଶ ନୁହନ୍ତି ।''

''ଗଛ ଦେଖିଲେ ତପୋବନ ଓ ସେଥିରେ ଋଷି ତପସ୍ୟା କରୁଛନ୍ତି ବୋଲି ମନେପଡ଼େ ।''

ସେଁଥିର ଜଣେ ବ୍ରାହ୍ମଣ ଆସି ଘରେ ପ୍ରବେଶ କଲେ ଓ ଠାକୁରଙ୍କୁ ପ୍ରଣାମ କଲେ । ସେ କାଶୀରେ ବେଦାନ୍ତ ପଢ଼ିଥିଲେ । ସ୍ଥୂଳକାୟ, ସଦା ହାସ୍ୟମୁଖ ।

ଶ୍ରୀରାମକୃଷ୍ଣ—ଆହେ, କିପରି ସବୁ ଅଛ ? ଅନେକ ଦିନରୁ ଆସିନାହଁ ।

ପଣ୍ଡିତ (ସହାସ୍ୟରେ)—ଆଜ୍ଞା, ସଂସାରେ କାମ । ଆପଣ ଜାଣନ୍ତି ତ, ସମୟ ହୁଏନାହିଁ !

ପଣ୍ଡିତ ଆସନ ଗ୍ରହଣ କଲେ । ତାଙ୍କ ସହିତ କଥା ହେଉଅଛି !

ଶ୍ରୀରାମକୃଷ୍ଣ—ତୁମେ କାଶୀରେ ଅନେକ ଦିନ ଥିଲ, କଅଣ ସବୁ ଦେଖିଲ, କିଛି କହ । ଦୟାନନ୍ଦଙ୍କର କଥା ଟିକିଏ କହ ।*

ପଣ୍ଡିତ—ଦୟାନନ୍ଦଙ୍କ ସଙ୍ଗରେ ଦେଖା ହୋଇଥିଲା । ଆପଣ ତ ଦେଖିଥିଲେ ?

ଶ୍ରୀରାମକୃଷ୍ଣ—ଦେଖିବାକୁ ଯାଇଥିଲି,—ସେତେବେଳେ ସେଠାରେ ଗୋଟିଏ ବଗିଚାରେ ସେ ଥିଲେ । କେଶବ ସେନଙ୍କର ସେଦିନ ଆସିବାର କଥା ଥିଲା । ତେଣୁ ଚାତକ ପରି କେଶବଙ୍କ ପାଇଁ ଅପେକ୍ଷା କରିବାକୁ ଲାଗିଲେ । ବଡ଼ ପଣ୍ଡିତ । ବଙ୍ଗଳା ଭାଷାକୁ କହୁଥିଲେ, ଗୌରାଣ୍ଡ ଭାଷା । ସେ ଦେବତା ମାନୁଥିଲେ—କେଶବ ମାନୁ ନଥିଲେ ! ତେଣୁ ସେ କହୁଥିଲେ, ଈଶ୍ୱର ଏତେ ଜିନିଷ କରିଛନ୍ତି ଆଉ ଦେବତା କରିପାରନ୍ତି ନାହିଁ ? ନିରାକାରବାଦୀ ! କପ୍ତାନ 'ରାମ ରାମ, କହୁଥିଲେ, ସେଥିରେ ସେ କହିଲେ ଏହା ଅପେକ୍ଷା 'ସନ୍ଦେଶ, ସନ୍ଦେଶ' କହ ।

ପଣ୍ଡିତ—କାଶୀରେ ଦୟାନନ୍ଦଙ୍କର ସଙ୍ଗରେ ପଣ୍ଡିତମାନଙ୍କର ଖୁବ୍ ବିଚାର ହେଲା । ଶେଷରେ ସମସ୍ତେ ଏକ ପକ୍ଷରେ ଆଉ ସେ ନିଜେ ଅନ୍ୟପକ୍ଷରେ ! ତା'ପରେ ଏପରି

---

* ଦୟାନନ୍ଦ ସରସ୍ୱତୀ, ୧୮୨୪-୧୮୮୩ । କାଶୀର ଆନନ୍ଦବାଗରେ ବିଚାର ୧୮୬୯ । କଲିକତାରେ ଥିଲେ, ଠାକୁରଙ୍କର (Tagore) ପ୍ରମୋଦକାନନଠାରେ, ଡିସେମ୍ବର ୧୮୭୨ ଠାରୁ ମାର୍ଚ୍ଚ ୧୮୭୩ ପର୍ଯ୍ୟନ୍ତ । ଏହି ସମୟରେ ଶ୍ରୀରାମକୃଷ୍ଣଙ୍କୁ କେଶବ ଓ କପ୍ତାନଙ୍କର ଦର୍ଶନ ।

କରି ପକାଇଲେ ଯେ ବରଂ ପଳାଇଗଲେ ରକ୍ଷା । ସମସ୍ତେ ଏକ ସଙ୍ଗରେ ଉଚ୍ଚୈଃସ୍ୱରରେ କହିବାକୁ ଲାଗିଲେ—'ଦୟାନନ୍ଦେନ ଯଦୁକ୍ତଂ ତଦ୍ଦେୟମ୍ ।

## ଶ୍ରୀରାମକୃଷ୍ଣ ଓ ଥିୟୋସଫି । ସେମାନେ କ'ଣ ଈଶ୍ୱରଙ୍କୁ ବ୍ୟାକୁଳ ହୋଇ ଖୋଜନ୍ତି ?

ପଣ୍ଡିତ—କର୍ଣ୍ଣେଲ ଅଲ୍‌କଟଙ୍କୁ ମଧ୍ୟ ଦେଖିଥିଲି । ସେମାନେ କହନ୍ତି 'ମହାତ୍ମା ସବୁ' ଅଛନ୍ତି । ଚନ୍ଦ୍ରଲୋକ, ସୂର୍ଯ୍ୟଲୋକ, ନକ୍ଷତ୍ରଲୋକ ଏହି ସବୁ ଅଛି । ସୂକ୍ଷ୍ମ ଶରୀର ଏହିସବୁ ସ୍ଥାନକୁ ଯାଏ । ଏହିପରି ଅନେକ କଥା । ଆଚ୍ଛା ମହାଶୟ, ଆପଣଙ୍କର ଥିୟୋସଫି କିପରି ବୋଧ ହୁଏ ?

ଶ୍ରୀରାମକୃଷ୍ଣ—ଭକ୍ତି ହିଁ ଏକମାତ୍ର ସାର—ଈଶ୍ୱରଙ୍କଠାରେ ଭକ୍ତି ! ସେମାନେ କଅଣ ଭକ୍ତି ଖୋଜନ୍ତି ? ତାହାହେଲେ ଭଲ । ଭଗବାନ ଲାଭ ଯଦି ଉଦ୍ଦେଶ୍ୟ ହୁଏ ତାହାହେଲେ ଭଲ । ଚନ୍ଦ୍ରଲୋକ, ସୂର୍ଯ୍ୟଲୋକ, ନକ୍ଷତ୍ରଲୋକ, ମହାତ୍ମା କେବଳ ଏହିସବୁ ନେଇ ରହିଲେ ଈଶ୍ୱରଙ୍କୁ ଖୋଜା ହେଲାନାହିଁ । ତାଙ୍କ ପାଦପଦ୍ମରେ ଭକ୍ତି ଲାଭ ପାଇଁ ସାଧନା କରିବା ଦରକାର, ବ୍ୟାକୁଳ ହୋଇ ଡାକିବା ଦରକାର । ନାନା ବିଷୟରୁ ମନ କାଢ଼ି ଆଣି ତାଙ୍କ ଠାରେ ଲଗାଇବାକୁ ହୁଏ । ଏହା କହି ଠାକୁର ରାମପ୍ରସାଦଙ୍କର ଗୀତ ଆରମ୍ଭ କଲେ ।

ମନ କର କି ତତ୍ତ୍ୱ ତାଁରେ ଯେନ ଉନ୍ମତ୍ତ ଆଁଧାର ଘରେ ।
ସେ ଯେ ଭାବେର ବିଷୟ, ଭାବ ବ୍ୟତୀତ ଅଭାବେ କି ଧ'ରତେ ପାରେ ॥
ସେ ଭାବ ଲାଗି ପରମ ଯୋଗୀ ଯୋଗ କରେ ଯୁଗ ଯୁଗାନ୍ତ ରେ ।
ହ'ଲେ ଭାବେର ଉଦୟ ଲୟ ସେ ଯେମନ ଲୋହାକେ ଚୁମ୍ବକେ ଧରେ ॥

''ଆଉ ଶାସ୍ତ୍ର କହ, ଦର୍ଶନ କହ, ବେଦାନ୍ତ କହ କୌଣସିଥିରେ ସେ ନାହାନ୍ତି । ତାଙ୍କ ପାଇଁ ବ୍ୟାକୁଳ ନ ହେଲେ କିଛି ହେବନାହିଁ ।''

''ଷଡ଼ ଦରଶନେ ନ ପାଏ ଦର୍ଶନ,ଆଗମ ନିଗମ ତନ୍ତ୍ରସାରେ,
ସେ ଯେ ଭକ୍ତି ରସର ରସିକ, ସଦାନନ୍ଦେ ବିରାଜେ ପୁରେ ॥''
''ଖୁବ୍ ବ୍ୟାକୁଳ ହେବାକୁ ହୁଏ । ଗୋଟିଏ ଗୀତ ଶୁଣନ୍ତୁ ।
ରାଧାର ଦେଖା କି ପାୟ ସକଲେ'' ଇତ୍ୟାଦି ॥

## ଅବତାରମାନେ ମଧ୍ୟ ସାଧନ କରନ୍ତି—ଲୋକ ଶିକ୍ଷାର୍ଥ—ସାଧନ, ତେବେ ଈଶ୍ୱର ଦର୍ଶନ ।

''ସାଧନର ଖୁବ୍ ଦରକାର, ହଠାତ୍ କ'ଣ ଈଶ୍ୱର—ଦର୍ଶନ ହୁଏ ?''

''ଜଣେ ପ୍ରଶ୍ନ କଲେ, ଈଶ୍ୱରଙ୍କୁ ଦେଖିପାରୁନାହୁଁ କାହିଁକି ? ତହୁଁ ମନେହେଲା,

କହିଲି, ବଡ଼ ମାଛ ଧରିବ, ସେଥିପାଇଁ ଆୟୋଜନ କର । ଥୋପ ପକାଅ । ବନିଶୀ ଥୋପ ଯୋଗାଡ଼ କର ! ଗନ୍ଧ ପାଇଲେ ଗଭୀର ଜଳରୁ ମାଛ ଆସିବେ । ପାଣି ଚହଲିଲେ ଜାଣିପାରିବ, ବଡ଼ ମାଛ ଆସିଛି ।''

''ଲହୁଣୀ ଖାଇବାକୁ ଇଚ୍ଛା । ସୁତରାଂ ଦୁଧରେ ଲହୁଣୀ ଅଛି, ଦୁଧରେ ଲହୁଣୀ ଅଛି, କହିଲେ କଅଣ ହେବ ? ପରିଶ୍ରମ କରିବାକୁ ହେବ ତେବେ ଲହୁଣୀ ବାହାରିବ । ଈଶ୍ୱର ଅଛନ୍ତି, ଈଶ୍ୱର ଅଛନ୍ତି, କହିଲେ କ'ଣ ଈଶ୍ୱରଙ୍କୁ ଦେଖାଯାଏ ? ସାଧନ ଦରକାର ।''

''ଭଗବତୀ ନିଜେ—ପଞ୍ଚମୁଣ୍ଡୀ ଆସନ ଉପରେ ବସି କଠୋର ତପସ୍ୟା କରିଥିଲେ,—ଲୋକଶିକ୍ଷା ପାଇଁ । ଶ୍ରୀକୃଷ୍ଣ ସାକ୍ଷାତ୍ ପୂର୍ଣ୍ଣବ୍ରହ୍ମ, ସେ ମଧ୍ୟ ରାଧା ମନ୍ତ୍ର ପାଇ ଲୋକଶିକ୍ଷା ପାଇଁ ତପସ୍ୟା କରିଥିଲେ ।

## ରାଧା ହିଁ ଆଦ୍ୟାଶକ୍ତି ବା ପ୍ରକୃତି ।
## ପୁରୁଷ ଓ ପ୍ରକୃତି, ବ୍ରହ୍ମ ଓ ଶକ୍ତି ଅଭେଦ ।

ଶ୍ରୀରାମକୃଷ୍ଣ—ଶ୍ରୀକୃଷ୍ଣ ପୁରୁଷ, ରାଧା ପ୍ରକୃତି, ଚିଚ୍ଛକ୍ତି—ଆଦ୍ୟାଶକ୍ତି । ରାଧା ପ୍ରକୃତି, ତ୍ରିଗୁଣମୟୀ ! ଏହାଙ୍କ ଭିତରେ ସତ୍ତ୍ୱ, ରଜଃ, ତମଃ ତିନିଗୁଣ । ଯେପରି ପିଆଜ ଚୋପା ଛଡ଼ାଇ ଯାଅ, ପ୍ରଥମେ ଲାଲ କଳା ମିଶା, ତାହାପରେ ଲାଲ, ତାହାପରେ ସାଦା ଚୋପା ବାହାରୁଥାଏ । ବୈଷ୍ଣବ ଶାସ୍ତ୍ରରେ ଅଛି, କାମ ରାଧା, ପ୍ରେମ ରାଧା, ନିତ୍ୟ ରାଧା । କାମ ରାଧା ଚନ୍ଦ୍ରାବଳୀ, ପ୍ରେମ ରାଧା ଶ୍ରୀମତୀ, ନିତ୍ୟ ରାଧା ନନ୍ଦ ଦେଖିଥିଲେ—ଗୋପାଳ କୋଳରେ ।

''ଏହି ଚିଚ୍ଛକ୍ତି ଆଉ ବେଦାନ୍ତ ର ବ୍ରହ୍ମ (ପୁରୁଷ) ଅଭେଦ । ଯେପରି ଜଳ ଆଉ ତାହାର ହିମଶକ୍ତି । ଜଳର ହିମଶକ୍ତି ଭାବିଲେ ଜଳକୁ ଭାବିବାକୁ ପଡ଼େ, ପୁଣି ଜଳକୁ ଭାବିଲେ ଜଳର ହିମଶକ୍ତିର ଭାବନା ଆସି ପଡ଼େ ! ସାପ, ଆଉ ସାପର ତୀର୍ଯ୍ୟକ୍‌ଗତି, ତିର୍ଯ୍ୟକ୍‌ଗତି ଭାବିଲେ ହିଁ ସାପକୁ ଭାବିବାକୁ ହେବ । ବ୍ରହ୍ମ ବୋଲି କେତେବେଳେ କୁହାଯାଏ ? ଯେତେବେଳେ ନିଷ୍କ୍ରିୟ ବା କାର୍ଯ୍ୟରେ ନିର୍ଲିପ୍ତ । ପୁରୁଷ ଯେତେବେଳେ ଲୁଗା ପିନ୍ଧେ, ସେତେବେଳେ ସେହି ପୁରୁଷ ହିଁ ଥାଏ । ଥିଲା ଦିଗମ୍ବର, ହେଲା ସାମ୍ବର ପୁଣି ହେବ ଦିଗମ୍ବର ! ସାପ ଭିତରେ ବିଷ ଅଛି, ସାପର କିଛି କ୍ଷତି ହୁଏନାହିଁ । ଯାହାକୁ କାମୁଡ଼ିବ, ତାହା ପକ୍ଷରେ ବିଷ । ବ୍ରହ୍ମ ନିଜେ ନିର୍ଲିପ୍ତ ।

''ଯେଉଁଠାରେ ନାମ ରୂପ, ସେହିଠାରେ ହିଁ ଐଶ୍ୱର୍ଯ୍ୟ । ସୀତା ହନୁମାନଙ୍କୁ କହିଥିଲେ, 'ବତ୍ସ ! ମୁଁ ହିଁ କେବଳ ଏକ ରୂପରେ ରାମ, ଏକ ରୂପରେ ସୀତା ହୋଇଅଛି, ଏକ ରୂପରେ ଇନ୍ଦ୍ର, ଏକ ରୂପରେ ଇନ୍ଦ୍ରାଣୀ,—ଏକ ରୂପରେ ବ୍ରହ୍ମା, ଏକ ରୂପରେ ବ୍ରହ୍ମାଣୀ—ଏକ ରୂପରେ ରୂଦ୍ର, ଏକ ରୂପରେ ରୂଦ୍ରାଣୀ ହୋଇଅଛି'—ନାମ ରୂପ ଯାହା ଅଛି, ସବୁ ଚିତ୍‌ଶକ୍ତିର ଐଶ୍ୱର୍ଯ୍ୟ । ସମସ୍ତ ହିଁ ଚିଦ୍‌ଶକ୍ତିର ଐଶ୍ୱର୍ଯ୍ୟ, ଏପରିକି ଧ୍ୟାନ ଧ୍ୟାତା ପର୍ଯ୍ୟନ୍ତ । ମୁଁ ଧ୍ୟାନ କରୁଛି, ଯେତେକ୍ଷଣ ଏହି ବୋଧ ରହିଛି ସେତେକ୍ଷଣ ତାଙ୍କରି ଇଲାକାରେ ଅଛି ।

(ମାଷ୍ଟରଙ୍କ ପ୍ରତି)—ଏଗୁଡ଼ିକ ଧାରଣ କର । ବେଦ ପୁରାଣ ଶୁଣିବାକୁ ହୁଏ, ଏସବୁଥିରେ ଯାହା କୁହାଯାଇଛି ସେସବୁ କରିବାକୁ ହୁଏ ।''

(ପଣ୍ଡିତଙ୍କ ପ୍ରତି)—''ମଝିରେ ମଝିରେ ସାଧୁସଙ୍ଗ ଭଲ । ମନୁଷ୍ୟର ରୋଗ ଲାଗି ରହିଛି । ସାଧୁସଙ୍ଗ ଦ୍ୱାରା ଅନେକ ଉପଶମ ହୁଏ ।''

## ବେଦାନ୍ତବାଗୀଶଙ୍କୁ ଶିକ୍ଷା—ସାଧୁସଙ୍ଗ କର—ମୋର କେହି ନୁହନ୍ତି ; ଦାସ ଭାବ ।

''ମୁଁ ଓ ମୋର । ଏହାର ନାମ ହିଁ ଠିକ୍ ଜ୍ଞାନ,—'ହେ ଈଶ୍ୱର ! ତୁମେ ହିଁ ସବୁ କରୁଛ, ଆଉ ତୁମେ ହିଁ ମୋର ଆପଣାର ଲୋକ । ତୁମର ଏହି ସମସ୍ତ ଘରଦ୍ୱାର, ପରିବାର, ଆତ୍ମୀୟ, ବନ୍ଧୁ, ସମସ୍ତ ଜଗତ୍ । ସବୁ ତୁମର !' ଆଉ ମୁଁ ସବୁ କରୁଛି, ମୁଁ କର୍ତ୍ତା ! ମୋର ଘର, ଦ୍ୱାର, ପରିବାର, ସ୍ତ୍ରୀ, ପୁତ୍ର, ବନ୍ଧୁ, ବିଷୟ—ଏସବୁ ଅଜ୍ଞାନ ।''

''ଗୁରୁ ଶିଷ୍ୟକୁ ଏହିକଥା ବୁଝାଉଥିଲେ । ଈଶ୍ୱର ତୁମର ଆପଣାର, ଅନ୍ୟ କେହି ଆପଣାର ନୁହନ୍ତି । ଶିଷ୍ୟ କହିଲେ ଆଜ୍ଞା, ମା' ସ୍ତ୍ରୀ ଏମାନେ ତ ଅନେକ ଯତ୍ନ କରନ୍ତି; ନ ଦେଖିଲେ ଅନ୍ଧ ପରି ହୋଇଯାଆନ୍ତି, କେତେ ଭଲ ପାଆନ୍ତି । ଗୁରୁ କହିଲେ, ଏହା ତୁମର ଭୁଲ । ମୁଁ ତୁମକୁ ଦେଖାଇଦେଉଛି, କେହି ତୁମର ନୁହନ୍ତି । ଏହି ଔଷଧ ବଟିକା କେତୋଟି ତୁମ ପାଖରେ ରଖିଦିଅ । ତୁମେ ଘରକୁ ଯାଇ ଖାଇଦେଇ ଶୋଇ ରହ । ଲୋକେ ମନେ କରିବେ ଯେ, ତୁମର ତ୍ୟାଗ ହୋଇଯାଇଛି । କିନ୍ତୁ ତୁମର ସବୁ ବାହ୍ୟଜ୍ଞାନ ରହିବ, ତୁମେ ସବୁ ଦେଖି ଶୁଣିପାରିବ,—ମୁଁ ସେହି ସମୟରେ ଯାଇ ପହଞ୍ଚିବି ।''

''ଶିଷ୍ୟଟି ତାହା ହିଁ କଲା । ଘରକୁ ଯାଇ କେତୋଟି ବଟିକା ଖାଇଲା, ଖାଇ ଅଚେତନ ହୋଇ ଶୋଇ ପଡ଼ିରହିଲା । ମା, ସ୍ତ୍ରୀ, ଘରର ସମସ୍ତେ କନ୍ଦାକଟା ଆରମ୍ଭ କଲେ । ଏହି ସମୟରେ ଗୁରୁ କବିରାଜ ବେଶରେ ଆସି ଉପସ୍ଥିତ ହେଲେ । ସମସ୍ତ ଶୁଣି କହିଲେ ଆଚ୍ଛା, ଏହାର ଔଷଧ ଅଛି—ପୁଣି ବଞ୍ଚି ଉଠିବ । ତେବେ ଗୋଟିଏ କଥା ଅଛି । ଏହି ଔଷଧ ଆଗେ କେହି ଜଣେ ନିଜର ଲୋକ ଖାଇବ, ତାହାପରେ ତାହାକୁ ଦିଆଯିବ । ନିଜର ଯେଉଁ ଲୋକ ଏହି ବଟିକା ଖାଇବ, ତା'ର କିନ୍ତୁ ମୃତ୍ୟୁ ହେବ । ତେଣୁ ଏଠାରେ ତାହାର ମା' କିମ୍ବା ପରିବାର ଏମାନେ ତ ସବୁ ଅଛନ୍ତି, ଜଣେ କେହି ଖାଇବେ, ସନ୍ଦେହ ନାହିଁ । ତାହାହେଲେ ପୁଅଟି ବଞ୍ଚିଉଠିବ ।''

''ଶିଷ୍ୟ ସମସ୍ତ ଶୁଣୁଛି ! କବିରାଜ ଆଗେ ମାଆକୁ ଡାକିଲେ । ମା' କାତର ହୋଇ ଧୂଳିରେ ଗଡ଼ି କାନ୍ଦୁଛି । କବିରାଜ କହିଲେ ମା ! ଆଉ କାନ୍ଦିବାକୁ ହେବନାହିଁ । ତୁମେ ଏହି ଔଷଧଟି ଖାଅ, ତାହାହେଲେ ପୁଅଟି ବଞ୍ଚିଉଠିବ । ତେବେ ତୁମର ଏଥିରେ ମୃତ୍ୟୁ ହେବ । ମା' ଔଷଧ ହାତରେ ଧରି ଭାବିଲା । ଅନେକ ଭାବି କାନ୍ଦି କାନ୍ଦି କହିଲା, ବାବା, ମୋର ଆଉ କେତୋଟି ପିଲାପିଲି ଅଛନ୍ତି, ମୁଁ ଗଲେ କଅଣ ହେବ, ଏହିକଥା ଭାବୁଛି ! କିଏ ଏମାନଙ୍କୁ ଦେଖିବ, ଖୁଆଇବ, ଏମାନଙ୍କ ପାଇଁ ଭାବୁଛି । ତା'ପରେ

ସ୍ତ୍ରୀକୁ ଡାକି ଔଷଧ ଦିଆଗଲା,—ସ୍ତ୍ରୀ ମଧ୍ୟ ଖୁବ୍ କାନ୍ଦୁଥିଲା, ହେଲେ ଔଷଧ ହାତରେ ଧରି ସେ ମଧ୍ୟ ଭାବିବାକୁ ଲାଗିଲା । ଶୁଣିଲା ଯେ, ଔଷଧ ଖାଇଲେ ମରିବାକୁ ହେବ । ସେତେବେଳେ କାନ୍ଦି କାନ୍ଦି କହିଲା, ଆହେ, ତାଙ୍କର ଯାହା ହେବାର, ତାହା ତ ହୋଇଯାଇଛି, ମୋର ଛୋଟ ଛୋଟ ପିଲାଗୁଡ଼ିକଙ୍କ ଅବସ୍ଥା ବର୍ତ୍ତମାନ କଅଣ ହେବ କହ ଦେଖି ? କିଏ ସେମାନଙ୍କୁ ବଞ୍ଚାଇବ ? ମୁଁ କିପରି ଏ ଔଷଧ ଖାଇବି ? ଶିଷ୍ୟର ସେତେବେଳକୁ ଔଷଧ ନିଶା ଚାଲିଯାଇଛି । ବୁଝିଲା ଯେ, କେହି କାହାର ନୁହନ୍ତି । ଧଡ଼ପଡ଼ ହୋଇ ଉଠି ଗୁରୁଙ୍କ ସଙ୍ଗରେ ଚାଲିଗଲା । ଗୁରୁ କହିଲେ, ତୁମର ଆପଣାର କେବଳ ଜଣେ,—ଈଶ୍ୱର ।''

''ସେଥିପାଇଁ ତାଙ୍କ ପାଦପଦ୍ମରେ ଯେପରି ଭକ୍ତି ହେବ,—ଯେଉଁଥିରେ ସେହି କେବଳ 'ମୋର' ବୋଲି ମନେହେବ,—ତାହା ହିଁ କରିବା ଭଲ । ସଂସାର ଦେଖୁଛ, ଦୁଇଦିନ ପାଇଁ ଏବଂ ଏଥିରେ ସାର ବୋଲି କିଛି ନାହିଁ ।''

## ଗୃହସ୍ଥ ସର୍ବତ୍ୟାଗ କରିପାରେ ନାହିଁ । ଜ୍ଞାନ ଅନ୍ତଃପୁରକୁ ଯାଇପାରେ ନାହିଁ । ଭକ୍ତି ଯାଇପାରେ ।

ପଣ୍ଡିତ (ସହାସ୍ୟରେ)—ଆଜ୍ଞା, ମୁଁ ଏଠାକୁ ଯେଉଁଦିନ ଆସେ ସେଦିନ ମୋର ପୂର୍ଣ୍ଣ ବୈରାଗ୍ୟ ହୁଏ । ଇଚ୍ଛା କରୁଛି—ସଂସାର ତ୍ୟାଗ କରି ଚାଲିଯିବି ।

ଶ୍ରୀରାମକୃଷ୍ଣ—ନା, ତ୍ୟାଗ କରିବ କାହିଁକି ? ନିଜ ମନରେ ତ୍ୟାଗ କରିବ ! ସଂସାରରେ ଅନାସକ୍ତ ହୋଇ ରହିବ ।

''ସୁରେନ୍ଦ୍ର ଏଠାରେ ମଝିରେ ମଝିରେ ରାତିରେ ରହିବ ବୋଲି ଗୋଟାଏ ବିଛଣା ଆଣି ରଖିଥିଲା । ଦିନେ ଦୁଇଦିନ ମଧ୍ୟ ଆସିଥିଲା, ତାହାପରେ ତା'ର ସ୍ତ୍ରୀ କହିଲା, ଦିନବେଳା ଯେଉଁଠାକୁ ଇଚ୍ଛା ସେଠାକୁ ଯାଅ, ରାତିରେ ଘର ବାହାରକୁ ଯାଇପାରିବ ନାହିଁ । ତେଣୁ ସୁରେନ୍ଦ୍ର ଆଉ କଅଣ କରିବ ? ରାତିରେ ରହିବାକୁ ଉପାୟ ନାହିଁ ।''

''ଦେଖ, କେବଳ ବିଚାର କଲେ କଅଣ ହେବ ? ତାଙ୍କ ପାଇଁ ବ୍ୟାକୁଳ ହୁଅ, ତାଙ୍କୁ ଭଲ ପାଇବାକୁ ଶିଖ । ଜ୍ଞାନ—ବିଚାର—ପୁରୁଷ ଲୋକ, ବାହାର ଘରର ଦୁଆର ପର୍ଯ୍ୟନ୍ତ ଯାଏ । ଭକ୍ତି ସ୍ତ୍ରୀଲୋକ, ଅନ୍ତଃପୁର ପର୍ଯ୍ୟନ୍ତ ଯାଏ । ଯେକୌଣସି ଗୋଟିଏ ପ୍ରକାର ଭାବ ଆଶ୍ରୟ କରିବାକୁ ହୁଏ । ତେବେ ଈଶ୍ୱର ଲାଭ ହୁଏ । ସନକାଦି ଋଷିମାନେ ଶାନ୍ତ ଭାବ ନେଇଥିଲେ । ହନୁମାନ, ଦାସ ଭାବ ନେଇଥିଲା । ଶ୍ରୀଦାମ, ସୁଦାମ ବ୍ରଜର ଗୋପାଳମାନଙ୍କର—ସଖ୍ୟଭାବ । ଯଶୋଦାଙ୍କର ବାତ୍ସଲ୍ୟ ଭାବ—ଈଶ୍ୱରଙ୍କଠାରେ ସନ୍ତାନ ବୁଦ୍ଧି । ଶ୍ରୀମତୀଙ୍କର ମଧୁରଭାବ ।''

''ହେ ଈଶ୍ୱର ! ତୁମେ ପ୍ରଭୁ, ମୁଁ ଦାସ, —ଏହି ଭାବଟିର ନାମ ଦାସ ଭାବ । ସାଧକ ପକ୍ଷରେ ଏ ଭାବଟି ଖୁବ୍ ଭଲ ।''

ପଣ୍ଡିତ—ଆଜ୍ଞା, ହଁ ।

## (୪)

## ଈଶାନଙ୍କୁ ଉପଦେଶ । ଭକ୍ତିଯୋଗ ଓ କର୍ମଯୋଗ । ଜ୍ଞାନର ଲକ୍ଷଣ ।

ସିଁଥିର ପଣ୍ଡିତ ଚାଲିଯାଇଛନ୍ତି । କ୍ରମେ ସଂଧ୍ୟା ହେଲା । ଢ଼ କାଳୀମନ୍ଦିରରେ ଦେବାଦେବୀମାନଙ୍କର ଆଳତିର ବାଜଣା ବାଜି ଉଠିଲା । ଶ୍ରୀରାମକୃଷ୍ଣ ଦେବାଦେବୀମାନଙ୍କୁ ନମସ୍କାର କରୁଅଛନ୍ତି । ଛୋଟ ଖଟ ଉପରେ ବସିଛନ୍ତି, ଅନ୍ୟମନସ୍କ । କେତେଜଣ ଭକ୍ତ ଆସି ତଳେ ପୁଣି ବସିଲେ । ଘର ନିଃଶବ୍ଦ । ଘଣ୍ଟାଏ ରାତି ହେଲାଣି । ଈଶାନ ମୁଖୋପାଧ୍ୟାୟ ଓ କିଶୋରୀ ଆସି ଉପସ୍ଥିତ । ସେମାନେ ଠାକୁରଙ୍କୁ ପ୍ରଣାମ କରି ଆସନ ଗ୍ରହଣ କଲେ । ଈଶାନଙ୍କର ପୁରଶ୍ଚରଣାଦି ଶାସ୍ତ୍ରୋଚିତୋ କର୍ମରେ ଖୁବ୍ ଅନୁରାଗ । ଈଶାନ କର୍ମଯୋଗୀ । ଏଥର ଠାକୁର କହୁଛନ୍ତି ।

ଶ୍ରୀରାମକୃଷ୍ଣ—ଜ୍ଞାନ ଜ୍ଞାନ କହିଲେ କ'ଣ ହୁଏ ? ଜ୍ଞାନ ହେବାର ଲକ୍ଷଣ ଅଛି । ଦୁଇଟି ଲକ୍ଷଣ । ପ୍ରଥମ ଅନୁରାଗ ଅର୍ଥାତ୍ ଈଶ୍ୱରଙ୍କୁ ଭଲ ପାଇବା । ତୁଚ୍ଛା ଜ୍ଞାନ ବିଚାର କରୁଛି, କିନ୍ତୁ ଈଶ୍ୱରଙ୍କ ଠାରେ ଅନୁରାଗ ନାହିଁ, ଶ୍ରଦ୍ଧା ନାହିଁ, ତାହା ମିଥ୍ୟା । ଅନ୍ୟ ଗୋଟିଏ ଲକ୍ଷଣ କୁଣ୍ଡଳିନୀ ଶକ୍ତିର ଜାଗରଣ । କୁଳକୁଣ୍ଡଳିନୀ ଯେ ପର୍ଯ୍ୟନ୍ତ ନିଦ୍ରିତ ଥାଏ, ସେ ପର୍ଯ୍ୟନ୍ତ ଜ୍ଞାନ ହୁଏନାହିଁ । ବସି ବସି ବହି ପଢ଼ିଯାଉଛି, ବିଚାର କରୁଛି, କିନ୍ତୁ ଭିତରେ ବ୍ୟାକୁଳତା ନାହିଁ ଏଇଟି ଜ୍ଞାନର ଲକ୍ଷଣ ନୁହେଁ ।

''କୁଣ୍ଡଳିନୀ ଶକ୍ତିର ଜାଗରଣ ହେଲେ ଭାବ, ଭକ୍ତି, ପ୍ରେମ ଏହିସବୁ ହୁଏ । ଏହାର ନାମ ଭକ୍ତିଯୋଗ ।''

''କର୍ମଯୋଗ ବଡ଼ କଠିନ । କର୍ମଯୋଗରେ କେତେଗୁଡ଼ିଏ ଶକ୍ତି ହୁଏ—ସିଦ୍ଧି ହୁଏ ।''

ଈଶାନ—ମୁଁ ହାଜରା ମହାଶୟଙ୍କ ପାଖକୁ ଯାଉଛି ।

ଠାକୁର ଚୁପ୍ ହୋଇ ରହିଲେ । କିୟତ୍‌କ୍ଷଣ ପରେ ଈଶାନ ପୁଣି ଘର ଭିତରେ ପ୍ରବେଶ କଲେ । ସଙ୍ଗରେ ହାଜରା । ଠାକୁର ନିଃଶବ୍ଦରେ ବସିଅଛନ୍ତି । ଟିକିଏ ପରେ ହାଜରା ଈଶାନଙ୍କୁ କହିଲେ, ଚାଲନ୍ତୁ, ଏ ବର୍ତ୍ତମାନ ଧ୍ୟାନ କରିବେ । ଈଶାନ ଓ ହାଜରା ଚାଲିଗଲେ ।

ଠାକୁର ନିଃଶବ୍ଦରେ ବସିଛନ୍ତି । କ୍ରମେ ସତକୁ ସତ ଧ୍ୟାନ କରୁଛନ୍ତି । ପରେ ଜପ କରୁଛନ୍ତି । ସେହି ହାତ ଥରେ ମୁଣ୍ଡ ଉପରେ ରଖିଲେ, ତାହାପରେ କପାଳରେ, ତାହାପରେ କଣ୍ଠରେ, ତାହାପରେ ହୃଦୟରେ, ତାହାପରେ ନାଭି ଦେଶରେ ।

ଶ୍ରୀରାମକୃଷ୍ଣ କ'ଣ ଷଟଚକ୍ରରେ ଆଦ୍ୟାଶକ୍ତିର ଧ୍ୟାନ କରୁଛନ୍ତି ? ଶିବ ସଂହିତାଦି ଶାସ୍ତ୍ରରେ ଯେଉଁ ଯୋଗର କଥା ଅଛି, ଏ କ'ଣ ତାହା !

## (୫)

## ନିବୃତ୍ତି ମାର୍ଗ । ଈଶ୍ୱର ଲାଭ ପରେ କର୍ମତ୍ୟାଗ ।

### ଈଶାନଙ୍କୁ ଶିକ୍ଷା—ଉତ୍ତିଷ୍ଠତ, ଜାଗ୍ରତ, କର୍ମଯୋଗ ବଡ଼ କଠିନ ।

ଈଶାନ ହାଜରାଙ୍କ ସହିତ କାଳୀମନ୍ଦିରକୁ ଯାଇଅଛନ୍ତି । ଠାକୁର ଧ୍ୟାନ କରୁଥିଲେ । ରାତି ପ୍ରାୟ ସାଢ଼େ ସାତଟା । ଇତିମଧ୍ୟରେ ଅଧର ଆସି ପହଞ୍ଚିଛନ୍ତି ।

କିଛିକ୍ଷଣ ପରେ ଠାକୁର ମା' କାଳୀଙ୍କୁ ଦର୍ଶନ କରିବାକୁ ଯାଇଅଛନ୍ତି । ଦର୍ଶନ କରି,—ପାଦପଦ୍ମରୁ ପ୍ରସାଦୀ ଫୁଲ ଆଣି ମସ୍ତକରେ ଧାରଣ କଲେ—ମାଆଙ୍କୁ ପ୍ରଣାମ ଓ ପ୍ରଦକ୍ଷିଣ କଲେ ଏବଂ ଚାମର ନେଇ ବ୍ୟଜନ କଲେ । ଠାକୁର ଭାବରେ ବିଭୋଳ । ବାହାରକୁ ଆସିବା ସମୟରେ ଦେଖିଲେ, ଈଶାନ କୋଶାକୁଶୀ ନେଇ ସନ୍ଧ୍ୟା କରୁଛନ୍ତି ।

ଶ୍ରୀରାମକୃଷ୍ଣ (ଈଶାନଙ୍କ ପ୍ରତି)—ଆପଣ କ'ଣ ସେହି ସମୟରୁ ଅଛନ୍ତି ? ଆହ୍ନିକ କରୁଛନ୍ତି ! ଗୋଟିଏ ଗୀତ ଶୁଣନ୍ତୁ ।

ଭାବରେ ଉନ୍ମତ୍ତ ହୋଇ ଈଶାନଙ୍କ ପାଖରେ ବସି ମଧୁର କଣ୍ଠରେ ଗାଉଅଛନ୍ତି—

ଗୟା ଗଙ୍ଗାପ୍ରଭାସାଦି କାଶୀ କାଞ୍ଚି କେବା ଚାୟ !
କାଲୀ କାଲୀ କାଲୀ ବଲେ ଆମାର ଅଜପା ଯଦି ଫୁରାୟ ।।
ତ୍ରିସନ୍ଧ୍ୟା ଯେ ବଲେ କାଲୀ, ପୂଜା ସନ୍ଧ୍ୟା ସେ କି ଚାୟ ।
ସନ୍ଧ୍ୟା ତା'ର ସନ୍ଧାନେ ଫେରେ କଭୁ ସନ୍ଧି ନାହିଁ ପାୟ ।।
ଦୟା ବ୍ରତ ଦାନ ଆଦି ଆର କିଛୁ ନା ମନେ ଲୟ,
ମଦନେର ଯାଗଯଜ୍ଞ ବ୍ରହ୍ମମୟୀର ରାଙ୍ଗା ପାୟ ।।

''ସନ୍ଧ୍ୟାଦି କେତେଦିନ ? ଯେତେଦିନ ଯାଏ ତାଙ୍କର ପାଦପଦ୍ମରେ ଭକ୍ତି ନହୁଏ—ତାଙ୍କର ନାମ କରୁ କରୁ ଯେତେଦିନ ଯାଏ ଚକ୍ଷୁରୁ ଜଳ ନ ପଡ଼େ,—ଆଉ ଯେତେଦିନ ଶରୀର ରୋମାଞ୍ଚନ ହୁଏ ।''

ରାମପ୍ରସାଦ ବଲେ ଭକ୍ତି ମୁକ୍ତି ଉଭୟେ ମାଥାୟ ରେଖେଛି,
ଆମି କାଲୀ ବ୍ରହ୍ମ ଜେନେ ମର୍ମ ଧର୍ମାଧର୍ମ ସବ ଛେଡ଼େଛି ।

''ଯେତେବେଳେ ଫଳ ହୁଏ, ସେତେବେଳେ ଫୁଲ ଝଡ଼ିପଡ଼େ; ଯେତେବେଳେ ଭକ୍ତି ହୁଏ, ସେତେବେଳେ ଈଶ୍ୱର ଲାଭ ହୁଏ, —ସେତେବେଳେ ସନ୍ଧ୍ୟାଦି କର୍ମ ଚାଲିଯାଏ ।''

''ଗୃହସ୍ଥର ବୋହୂର ପେଟରେ ଯେତେବେଳେ ସନ୍ତାନ ହୁଏ, ଶାଶୁ କାମ କମାଇଦିଏ । ଦଶମାସ ହେଲେ ଘରର କାମ କରିବାକୁ ଦିଏ ନାହିଁ । ଏହାପରେ ସନ୍ତାନ ପ୍ରସବ ହେଲେ, ସେ କେବଳ ପିଲାଟିକୁ କୋଳରେ ଧରି ତା'ର ସେବା କରେ । ଆଉ କୌଣସି କାମ ରହେ ନାହିଁ । ଈଶ୍ୱରଲାଭ ହେଲେ ସନ୍ଧ୍ୟାଦି କର୍ମ ତ୍ୟାଗ ହୋଇଯାଏ ।''

''ତୁମେ ଏପରି ମନ୍ଥର ହେଲେ ଚଳିବ୍ ନାହିଁ । ତୀବ୍ର ବୈରାଗ୍ୟ ଦରକାର ।

ପନ୍ଦର ମାସରେ ଏକବର୍ଷ କଲେ କ'ଣ ହୁଏ ? ତୁମ ଭିତରେ ଯେପରି ଜୋର ନାହିଁ । ଶକ୍ତି ନାହିଁ । ଚୂଡ଼ା ଚକଟା । ଉଠିପଡ଼ି ଲାଗ ଆଉ ଅଣ୍ଟା ଭିଡ଼ ।''

''ସେଥିପାଇଁ ମୋତେ ଏ ଗୀତଟି ଭଲ ଲାଗେ ନାହିଁ । ହରିସେ ଲାଗି ରହରେ ଭାଇ; ତେରା ବନ୍‌ତ ବନ୍‌ତ ବନିଯାଇ । ବନ୍‌ତ ବନ୍‌ତ ବନିଯାଇ'—ମୋତେ ଭଲ ଲାଗେନାହିଁ । ତୀବ୍ର ବୈରାଗ୍ୟ ଦରକାର । ହାଜରାଙ୍କୁ ସେଥିପାଇଁ ମୁଁ କହେ ।''

## ଶ୍ରୀରାମକୃଷ୍ଣ ଓ ଯୋଗତତ୍ତ୍ୱ । କାମିନୀ କାଞ୍ଚନ ଯୋଗର ବିଘ୍ନ ।

''କାହିଁକି ତୀବ୍ର ବୈରାଗ୍ୟ ହୁଏ ନାହିଁ ପ୍ରଶ୍ନ କରୁଛ ? ତା'ର ମାନେ ଅଛି । ଭିତରେ ବାସନା ଓ ପ୍ରବୃତ୍ତି ସବୁ ଅଛି । ହାଜରାଙ୍କୁ ତେଣୁ କହେ, କାମାରପୁକୁରରେ ବିଲକୁ ପାଣି ଆଣନ୍ତି, ବିଲର ଚାରିଦିଗରେ ବନ୍ଧ ଦିଆଯାଇଛି, ଅଥଚ ପାଣି ବାହାରିଯାଏ । ମାଟିର ବନ୍ଧ, କିନ୍ତୁ ବନ୍ଧର ମଝିରେ ମଝିରେ ଘଳିଆ । ଗର୍ତ୍ତ । ପ୍ରାଣପଣେ ତ ଜଳ ଆଣୁଛନ୍ତି, କିନ୍ତୁ ଘଳିଆ ଦେଇ ବାହାରିଯାଉଛି । ବାସନା ଘଳିଆ । ଜପ ତପ କରୁଛ ସତ, କିନ୍ତୁ ପଛରେ ବାସନା ଘଳିଆ ଦେଇ ସବୁ ବାହାରି ଯାଉଛି ।''

''ମୁଗୁରା ଦେଇ ମାଛ ଧରନ୍ତି । ବାଉଁଶ ଖଡ଼ିକା ସିଧା ରଖିବାର କଥା, କିନ୍ତୁ ବଙ୍କେଇ ରଖନ୍ତି କାହିଁକି ? ମାଛ ଧରିବେ ବୋଲି । ବାସନା ମାଛ । ସେଥିପାଇଁ ମନ ସଂସାର ଆଡ଼କୁ ନଇଁ ରହିଛି । ବାସନା ନ ରହିଲେ ମନ ସହଜରେ ଈଶ୍ୱରଙ୍କ ଦିଗରେ ରହେ ।''

''କିପରି ଜାଣ ? ଯେପରି ନିକ୍ତିର କଣ୍ଟା ! କାମିନୀକାଞ୍ଚନର ଭାର ଅଛି ବୋଲି ଉପର କଣ୍ଟା ତଳ କଣ୍ଟା ଏକ ହୁଏ ନାହିଁ । ତେଣୁ ଯୋଗ ଭ୍ରଷ୍ଟ ହୁଅନ୍ତି । ଦୀପ-ଶିଖା ଦେଖ ନାହିଁ ? ଟିକିଏ ପବନ ହେଲେ ଦୋହଲେ । ଯୋଗାବସ୍ଥା ଦୀପ - ଶିଖା ପରି, — ଯେଉଁଠାରେ ପବନ ନାହିଁ ।''

''ମନ ଚାରିଆଡ଼େ ବିକ୍ଷିପ୍ତ ହୋଇଯାଇଛି, —କିଛି ଅଂଶ ଯାଇଛି ଢାକା, କିଛି ଅଂଶ ଯାଇଛି ଦିଲ୍ଲୀ, କିଛି ଅଂଶ ଯାଇଛି କୁଚ୍‌ବିହାର । ସେହି ମନକୁ ଏକତ୍ର କରିବାକୁ ହେବ । ଗୋଟାଏ ଜାଗାରେ ଏକାଗ୍ର କରିବାକୁ ହେବ । ତୁମେ ଯଦି ଷୋଳଅଣା ଦାମ୍‌ର ଲୁଗା ଚାହଁ, ତେବେ ତୁମକୁ ତ ଲୁଗାବାଲାକୁ ଷୋଳଅଣା ଦେବାକୁ ହେବ । ଟିକିଏ ବିଘ୍ନ ହେଲେ ଯୋଗ କରିହେବ ନାହିଁ । ଟେଲିଗ୍ରା-ଫ ତାରରେ ଯଦି ଟିକିଏ କଣା ରହେ, ତାହାହେଲେ ଆଉ ଖବର ଯିବ ନାହିଁ ।''

## ତ୍ରୈଲୋକ୍ୟ ବିଶ୍ୱାସଙ୍କର ଜୋର । ନିଷ୍କାମ କର୍ମ । ଜୋର କରି କହ 'ମୋର ମା' ।

''ତେବେ ସଂସାରରେ ଅଛ, ରହିଲେ କଅଣ ହେଲା ? ତେବେ ସମସ୍ତ କର୍ମଫଳ

ଈଶ୍ୱରଙ୍କ ଠାରେ ସମର୍ପଣ କରିବାକୁ ହେବ । ନିଜେ କୌଣସି ଫଳ କାମନା କରିବା ଉଚିତ୍ ନୁହେଁ ।''

''ତେବେ ଗୋଟିଏ କଥା ଅଛି । ଭକ୍ତି କାମନା, କାମନା ମଧ୍ୟରେ ନୁହେଁ । ଭକ୍ତି କାମନା, ଭକ୍ତି ପ୍ରାର୍ଥନା, —କରିପାର ।''

''ଭକ୍ତିର ତମଃ ଆଣିବ । ମା'ଙ୍କ ପାଖରେ ଜୋର କର ।''—

''ମାୟେ ପୋୟେ ମୋକଦ୍ଦମା ଧୁମ ହବେ ରାମପ୍ରସାଦ ବଲେ,
ତଖନ ଶାନ୍ତ ହବୋ କ୍ଷାନ୍ତ ହୟେ ଆମାୟ ଯଖନ କରବି କୋଲେ ।''

''ତ୍ରୈଲୋକ୍ୟ କହିଥିଲେ, ମୁଁ ଯେତେବେଳେ ତାଙ୍କ ଘରେ ଜନ୍ମିଛି, ସେତେବେଳେ ମୋର ଭାଗ ଅଛି ।''

''ତୁମର ଯେ ଆପଣାର ମା, ହେ ! ଏ କ'ଣ ସାବତ ମା', ଏ କଅଣ ଧର୍ମ ମା' ! ଏହାଙ୍କ ପାଖରେ ଜୋର ଚଳିବ ନାହିଁ ତ କାହା ପାଖରେ ଚଳିବ ? କହ—

''ମା' ଆମି କି ଆଟାଶେ ଛେଲେ, ଆମି ଭୟ କରିନି ଚୋଖ ରାଙ୍ଗାଲେ ।
ଏବାର କରବୋ ନାଲିଶ୍ ଶ୍ରୀନାଥେର ଆଗେ, ଡିକ୍ରି ଲବ ଏକ ସଓୟାଲେ ।''

''ଆପଣାର ମା' ! ଜୋର କର ! ଯାହାର ଯେଉଁଥିରେ ସତ୍ତା ଥାଏ, ତାହାର ସେଥିରେ ଟାଣ ମଧ୍ୟ ଥାଏ । ମା'ର ସତ୍ତା ମୋ ଭିତରେ ଅଛି ବୋଲି ତ ମାଆଙ୍କ ଦିଗରେ ଏତେ ଟାଣ ହୁଏ । ଯେ ଠିକ୍ ଶୈବ, ସେ ଶିବଙ୍କର ସତ୍ତା ପାଏ କିଛି ଅଂଶ ତା' ଭିତରେ ଆସି ପଡ଼େ । ଯେ ଠିକ୍ ବୈଷ୍ଣବ ତାହା ଭିତରେ ନାରାୟଣଙ୍କର ସତ୍ତା ଆସେ । ଆଜିକାଲି ତୁମ୍ଭଙ୍କୁ ତ ବିଷୟ କର୍ମ କରିବାକୁ ପଡ଼େନାହିଁ, ତେଣୁ କିଛିଦିନ ତାଙ୍କର ଚିନ୍ତା କର । ଦେଖିଲ ତ ସଂସାରରେ କିଛି ନାହିଁ ।'' ଠାକୁର ସେହି ମଧୁର କଣ୍ଠରେ ଗାଉଛନ୍ତି—

ଭେବେ ଦେଖ ମନ କେଉ କାରୁନୟ ମିଛେ ଭ୍ରମ ଭୂମଣ୍ଡଳେ ।
ଭୁଲୋ ନା ଦକ୍ଷିଣକାଳୀ ବଦ୍ଧ ହୟେ ମାୟାଜାଲେ ।।
ଦିନ ଦୁଇ ତିନି ଦିନେର ତରେ କର୍ତ୍ତା ବଲେ ସବାଇ ମାନେ ।
ସେଇ କର୍ତ୍ତାକେ ଦେବେ ଫେଲେ କାଲାକାଲେର କର୍ତ୍ତା ଏଲେ ।।
ଯା'ର ଜନ୍ୟ ମର ଭେବେ ସେ କି ତୋମାର ସଙ୍ଗେ ଯାବେ ।
ସେଇ ପ୍ରେୟସୀ ଦିବେ ଛଡ଼ା ଅମଙ୍ଗଲ ହବେ ବ'ଲେ ।।

## ସାଲିଶ୍, ମଧ୍ୟସ୍ଥତା, ହାସପାତାଳ, ଡିସ୍‌ପେନ୍‌ସରୀ କରିବାର ବାସନା—ଲୋକମାନ୍ୟ, ପାଣ୍ଡିତ୍ୟ, ବାସନା—ଏସବୁ ଆଦିକାଣ୍ଡ । ଖେଳନା ତ୍ୟାଗ କଲେ ତେବେ ଈଶ୍ୱର ଲାଭ ।

''ଆଉ ତୁମେ ସାଲିଶ୍, ମଧ୍ୟସ୍ଥତା ଏସବୁ କଅଣ କରୁଛ ? ଲୋକଙ୍କର ଝଗଡ଼ା ବିବାଦ ମେଣ୍ଟାଅ—ତୁମକୁ ଲୋକେ ମଧ୍ୟସ୍ଥ ବୋଲି ଧରନ୍ତି, ଶୁଣିବାକୁ ପାଏ । ଏହାର

ଅନେକ ଦିନ ଧରି କରୁଛ । ଯେଉଁମାନେ କରିବେ ସେମାନେ କରନ୍ତୁ । ତୁମେ ବର୍ତ୍ତମାନ ତାଙ୍କର ପାଦପଦ୍ମରେ ବେଶି ମନ ଦିଅ । କହନ୍ତି, 'ଲଙ୍କାରେ ରାବଣ ମଲା, ବେହୁଲା କାନ୍ଦି ଆକୁଳ ହେଲା ।''

''ତେବେ ଶମ୍ଭୁ ମଧ୍ୟ କହିଥିଲା ! କହିଲା, ହାସପାତାଳ ଡିସ୍‌ପେନ୍‌ସେରୀ କରିବି । ଲୋକଟି ଭକ୍ତ ଥିଲା । ସେଥିପାଇଁ ମୁଁ କହିଲି, ଭଗବାନଙ୍କର ସାକ୍ଷାତ୍‌କାର ହେଲେ କ'ଣ ହାସପାତାଳ ଡିସ୍‌ପେନ୍‌ସେରୀ ଚାହିଁବ !''

''କେଶବ ସେନ କହିଲେ, ଈଶ୍ୱର ଦର୍ଶନ ହୁଏନାହିଁ କାହିଁକି ? ମୁଁ କହିଲି ତୁମେ ଲୋକ-ମାନ୍ୟ, ପାଣ୍ଡିତ୍ୟ ଏହିସବୁ ନେଇ ଅଛ କି ନା, ସେଥିପାଇଁ ହୁଏନାହିଁ । ଯେତେକ୍ଷଣ ପର୍ଯ୍ୟନ୍ତ ଛୋଟପିଲା ଖେଳନା ନେଇ ଖେଳୁଥାଏ, ସେତେକ୍ଷଣ ପର୍ଯ୍ୟନ୍ତ ତାହାର ମା' ତା' ପାଖକୁ ଆସେନାହିଁ । କିନ୍ତୁ କିଛିକ୍ଷଣ ପରେ ଯେତେବେଳେ ପିଲା ଖେଳନା ଛାଡ଼ି କାନ୍ଦିବାକୁ ଆରମ୍ଭ କରେ, ସେତେବେଳେ ମା' ଭାତହାଣ୍ଡି ତଳକୁ ଓହ୍ଲାଇ ଦୌଡ଼ିଆସେ ।''

''ତୁମେ ସେହିପରି ମଧ୍ୟସ୍ଥତା କରୁଛ । ମା' ଭାବୁଛି, 'ପୁଅ ମୋର ମଧ୍ୟସ୍ଥତା କରି ବେଶ୍ ଅଛି । ଅଛି ତ ଥାଉ ।''

ଈଶାନ ଇତିମଧ୍ୟରେ ଠାକୁରଙ୍କ ଚରଣ ସ୍ପର୍ଶ କରିଅଛନ୍ତି । ଚରଣ ଧରି ବିନୀତ ଭାବରେ କହୁଛନ୍ତି—ମୁଁ ଯେ ଇଚ୍ଛାକରି ଏ ସବୁ କରେ, ତାହା ନୁହେଁ ।

## ବାସନାର ମୂଳ ମହାମାୟା । ତେଣୁ କର୍ମକାଣ୍ଡ ।

ଶ୍ରୀରାମକୃଷ୍ଣ-ଏହା ଜାଣେ । ଏହା ମାଆଙ୍କର ଖେଳା ! ତାଙ୍କରି ହିଁ ଲୀଳା ! ସଂସାରରେ ବଦ୍ଧ କରି ରଖିବା ଏହା ମହାମାୟାଙ୍କର ଇଚ୍ଛା । କ'ଣ ଜାଣ ? 'ଭବସାଗରେ ଉଠୁଛି ବୁଡୁଛି କେତେ ଯେ ତରୀ' । ପୁଣି—'ଗୁଡ଼ି ଲକ୍ଷକରେ କାଟେ ଦୁଇଟା ଗୋଟା ହସି ମାରେ ମା' ଦିଏ ହାତରେ ତାଳି ! ଲକ୍ଷକ ମଧ୍ୟରେ ଜଣେ ଦୁଇଜଣ ମୁକ୍ତ ହୋଇ ଯାଆନ୍ତି । ବାକି ସମସ୍ତେ ମାଆଙ୍କ ଇଚ୍ଛାରେ ବଦ୍ଧ ହୋଇଛନ୍ତି ।

''ଲୁଚକାଳି ଖେଳ ଦେଖିନାହଁ ? ବୁଢ଼ୀର ଇଚ୍ଛା ଯେ ଖେଳଟା ଚାଲୁ । ସମସ୍ତେ ଯଦି ବୁଢ଼ୀକୁ ଛୁଇଁ ପକାନ୍ତି, ତାହାହେଲେ ଖେଳ ଆଉ ଚାଲିବ ନାହିଁ । ତେଣୁ ବୁଢ଼ୀର ଇଚ୍ଛା ନୁହେଁ ଯେ, ସମସ୍ତେ ଛୁଅନ୍ତୁ ।''

''ଆଉ ଦେଖ, ବଡ଼ ବଡ଼ ଗୋଦାମରେ ଛାତ ଉଚ୍ଚରେ ବଡ଼ ବଡ଼ ଚାଉଳ ଗଦା ଥାଏ, ଡାଲି ମଧ୍ୟ ଥାଏ । କିନ୍ତୁ କାଳେ ମୂଷା ପଶି ଖାଇବେ, ସେଥିପାଇଁ ଗୋଦାମର ମାଲିକ କୁଲାରେ ଖଇ ଉଖୁଡ଼ା ବାହାରେ ରଖିଦିଅନ୍ତି । ଏହା ମିଠା ଲାଗେ ଏବଂ ଏଥିରୁ ବାସନା ବାହାରେ । ତେଣୁ ମୂଷା ସବୁ ସେହି କୁଲା ଚାରିପାଖରେ ବେଢ଼ି ରହନ୍ତି ! ଚାଉଳ ଡାଲି ଗଦାର ସନ୍ଧାନ ପାଆନ୍ତି ନାହିଁ ! ସେହିପରି ଜୀବ କାମିନୀ କାଞ୍ଚନରେ ମୁଗ୍‌ଧ ହୁଏ । ଈଶ୍ୱରଙ୍କ ଖବର ପାଏନାହିଁ ।''

## (୬)

## ଶ୍ରୀରାମକୃଷ୍ଣଙ୍କର ସମସ୍ତ କାମନା ତ୍ୟାଗ । କେବଳ ଭକ୍ତି କାମନା ।

''ରାମ ନାରଦଙ୍କୁ କହିଲେ, ତୁମେ ମୋ ପାଖରୁ କିଛି ବର ନିଅ । ନାରଦ କହିଲେ, ରାମ ! ମୋର ଆଉ କଅଣ ବାକି ଅଛି ? କି ବର ନେବି ? ତେବେ ଯଦି ନିଶ୍ଚୟ ବର ଦେବ, ଏହି ବର ଦିଅନ୍ତୁ, ଯେପରି ଆପଣଙ୍କ ପାଦପଦ୍ମରେ ଶୁଦ୍ଧାଭକ୍ତି ରହେ, ଆଉ ଯେପରି ଆପଣଙ୍କର ଭୁବନମୋହିନୀ ମାୟାରେ ମୁଗ୍ଧ ହୁଏ । ରାମ କହିଲେ, ନାରଦ ! ଆଉ କିଛି ବର ମାଗ । ନାରଦ ପୁଣି କହିଲେ, ରାମ ! ଆଉ କିଛି ମୁଁ ଚାହେଁନାହିଁ, କେବଳ ଆପଣଙ୍କର ପାଦପଦ୍ମରେ ମୋର ଶୁଦ୍ଧାଭକ୍ତି ରହୁ, ଏତିକି କରନ୍ତୁ !''

''ମୁଁ ମାଆଙ୍କ ପାଖରେ ପ୍ରାର୍ଥନା କରି କହିଥିଲି, ମା' ମୁଁ ଲୋକମାନ୍ୟ ଚାହେଁନାହିଁ, କେବଳ ଏତିକି କରନ୍ତୁ ଯେପରି ତୁମରି ପାଦପଦ୍ମରେ ଶୁଦ୍ଧା-ଭକ୍ତି ହୁଏ ।''

''ଆଧ୍ୟାତ୍ମରେ ଅଛି, ଲକ୍ଷ୍ମଣ ରାମଙ୍କୁ ପ୍ରଶ୍ନ କଲେ, ରାମ ! ତୁମେ କେତେ ଭାବରେ କେତେ ରୂପରେ ଥାଅ, କିପରି ତୁମଙ୍କୁ ଚିହ୍ନିପାରିବି ? ରାମ କହିଲେ, 'ଭାଇ ! ଏହି କଥାଟି ଜାଣିରଖ, ଯେଉଁଠାରେ ଉର୍ଜୀତା ଭକ୍ତି ସେ ହସେ କାନ୍ଦେ ନାଚେ ଗାଏ । ଯଦି କାହାର ଏପରି ଭକ୍ତି ହୁଏ, ନିଶ୍ଚୟ ଜାଣିବ ଈଶ୍ୱର ସେଠାରେ ସ୍ୱୟଂ ବର୍ତ୍ତମାନ । ଚୈତନ୍ୟଦେବଙ୍କର ଏପରି ହୋଇଥିଲା ।''

ଭକ୍ତମାନେ ଅବାକ୍ ହୋଇ ଶୁଣିବାକୁ ଲାଗିଲେ । ଦୈବବାଣୀ ପରି ଏହି ସମସ୍ତ କଥା ଶୁଣୁଥିଲେ । କେହି ଭାବୁଛନ୍ତି, ଠାକୁର କହୁଛନ୍ତି 'ପ୍ରେମରେ ହସେ, କାନ୍ଦେ ନାଚେ ଗାଏ, ଏହା ତ କେବଳ ଚୈତନ୍ୟଦେବଙ୍କର ଅବସ୍ଥା ନୁହେଁ, ଠାକୁରଙ୍କର ତ ଏହି ଅବସ୍ଥା । ତେବେ କଅଣ ଏଠାରେ ସ୍ୱୟଂ ଈଶ୍ୱର ସାକ୍ଷାତ୍ ବର୍ତ୍ତମାନ ?

ଠାକୁରଙ୍କର ଅମୃତମୟୀ କଥା ହେଉଅଛି । ନିବୃତ୍ତିମାର୍ଗର କଥା । ଈଶାନଙ୍କୁ ଯାହା ମେଘ ଗମ୍ଭୀର ସ୍ୱରରେ କହୁଛନ୍ତି,—ସେହି କଥା ହେଉଅଛି ।

## ଈଶାନ, ଖୁସାମଦିଆଙ୍କ ପ୍ରତି ସାବଧାନ ।
## ଶ୍ରୀରାମକୃଷ୍ଣ ଓ ଜଗତର ଉପକାର ।

''ବିଷୟୀ ଲୋକ ଦେଖିଲେ ଖୁସାମଦିଆ ସବୁ ଆସି ଜୁଟନ୍ତି । ଗୋଟାଏ ମଡ଼ ଦେଖିଲେ ସେଠାରେ ଶକୁନି ଦଳ ଆସିପଡ଼ନ୍ତି ।''

## ସଂସାରୀର ଶିକ୍ଷା, କର୍ମକାଣ୍ଡ । ସର୍ବତ୍ୟାଗୀର ଶିକ୍ଷା,
## କେବଳ ଈଶ୍ୱରଙ୍କ ପାଦପଦ୍ମ ଚିନ୍ତା ।

''ବିଷୟୀ ଲୋକଙ୍କର କିଛି ହେଲେ ସାରବତ୍ତା ନଥାଏ । ଯେପରି ଗୋବରଗଦା ।

ଖୁସାମଦିଆମାନେ ଆସି କହିବେ, ଆପଣ ଦାନୀ, ଜ୍ଞାନୀ, ଧ୍ୟାନୀ । ଏଗୁଡ଼ିକ କେବଳ କଥା ନୁହେଁ, ବରଂ ବାଉଁଶ ଖୋଜାରେ ଭୁଷିବା ଭଳି । କି ନିର୍ବୋଧତା ! ପଣ୍ଡିତଙ୍କୁ ନେଇ ରାତିଦିନ ବସିରହନ୍ତି ଓ ତୋଷାମଦ ଶୁଣନ୍ତି ।''

''ସଂସାରୀ ଲୋକମାନେ ତିନୋଟି ଜିନିଷର ଦାସ, ସ୍ତ୍ରୀର ଦାସ, ଟଙ୍କାର ଦାସ, ମାଲିକର ଦାସ । ଏମାନଙ୍କର କ'ଣ କିଛି ସାରବତ୍ତା ଥାଏ ? ଜଣେ ଲୋକ, ତାଙ୍କର ନାମ କହିବି ନାହିଁ । ଆଠଶହ ଟଙ୍କା ମାସକୁ ଦରମା କିନ୍ତୁ ସ୍ତ୍ରୀର ଦାସ, ଉଠିବାକୁ କହିଲେ ଉଠେ, ବସିବାକୁ କହିଲେ ବସେ ।''

''ଆଉ ସାଲିଶ୍, ସର୍ଦ୍ଦାରୀ, ଏସବୁ କାମ କଅଣ ? ଦୟା ପରୋପକାର ?— ଏସବୁ ତ ଅନେକ ହେଲା । ସେସବୁ କାମ ଯେଉଁମାନେ କରିବେ ସେମାନଙ୍କର ଅଲଗା ଥାକ । ତୁମର ଈଶ୍ୱରଙ୍କ ପାଦପଦ୍ମରେ ମନ ଦେବାର ସମୟ ହୋଇଛି । ତାଙ୍କୁ ପାଇଲେ ସବୁ ମିଳେ । ଆଗେ ଈଶ୍ୱର, ତା'ପରେ ଦୟା, ପରୋପକାର, ଜଗତର ଉପକାର, ଜୀବ ଉଦ୍ଧାର । ତୁମର ସେ ଭାବନାରେ ପ୍ରୟୋଜନ କଅଣ ?''

''ଲଙ୍କାରେ ରାବଣ ମଲା, ବେହୁଲା କାନ୍ଦି ଆକୁଳ ହେଲା ।''

''ତୁମର ତାହା ହିଁ ହୋଇଛି । ଜଣେ ସର୍ବତ୍ୟାଗୀ ଯଦି ତୁମକୁ କହିଦିଅନ୍ତି, ଏଇ ଏଇ କର, ତେବେ ବେଶ୍ ହୁଅନ୍ତା ! ସଂସାରୀ ଲୋକର ପରାମର୍ଶରେ ଠିକ୍ ହେବ ନାହିଁ । ସେ ଲୋକ ବ୍ରାହ୍ମଣ ପଣ୍ଡିତ ବା ଅନ୍ୟ କେହି ହେଉ ।''

## ଈଶାନ ପାଗଳ ହୁଅ—'ଏହି ସମସ୍ତ ଉପଦେଶ ମା' ଦେଲେ' ।

ଶ୍ରୀରାମକୃଷ୍ଣ—ପାଗଳ ହୁଅ, ଈଶ୍ୱରଙ୍କ ପ୍ରେମରେ ପାଗଳ ହୁଅ ! ପ୍ରକୃତରେ ଲୋକ ଜାଣନ୍ତୁ ଯେ, ଈଶାନ ବର୍ତ୍ତମାନ ପାଗଳ ହୋଇଛନ୍ତି ଆଉ ପାରୁନାହାନ୍ତି । ତାହାହେଲେ ସେମାନେ ସାଲିଶ୍ ଓ ମଧ୍ୟସ୍ଥ କରାଇବାକୁ ଏଣିକି ତୁମପାଖକୁ ଆସିବେ ନାହିଁ । କୋଶାକୁଶି ଫିଙ୍ଗି ଦିଅ, ଈଶାନ ନାମ ସାର୍ଥକ କର ।

ଈଶାନ—ଦେ ମା' ପାଗଲ କରେ । ଆର କାଜ ନାଇ ମା' ଜ୍ଞାନ ବିଚାରେ ।

ଶ୍ରୀରାମକୃଷ୍ଣ—ପାଗଳ ନା ସୁସ୍ଥ ମସ୍ତିଷ୍କ ? ଶିବନାଥ କହିଥିଲେ, ବେଶି ଈଶ୍ୱର ଚିନ୍ତା କଲେ ଅଚୈତନ୍ୟ ହୋଇଯିବାକୁ ହୁଏ । ମୁଁ କହିଲି, କଅଣ ! —ଚୈତନ୍ୟଙ୍କୁ ଚିନ୍ତା କରି କ'ଣ କେହି ଅଚୈତନ୍ୟ ହୋଇପାରେ ? ସେ ନିତ୍ୟଶୁଦ୍ଧ ବୋଧସ୍ୱରୂପ ଯାହାଙ୍କ ବୋଧରେ ସବୁ ବୋଧ ହେଉଛି, ଯାହାଙ୍କ ଚୈତନ୍ୟରେ ସବୁ ଚୈତନ୍ୟମୟ ! କହନ୍ତି କଅଣ ନା କେତେକ ସାହେବଙ୍କର ହୋଇଥିଲା, —ବେଶି ଚିନ୍ତା କରି ବେହୋସ ହୋଇଯାଇଥିଲେ । ସେପରି ହୋଇପାରେ । ସେମାନେ ଐହିକ ପଦାର୍ଥ ଚିନ୍ତା କରନ୍ତି । 'ଭାବେତେ ଭରଲ ତନୁ, ହରଲ ଗେୟାନ !' ଏଥିରେ ଯେଉଁ ଜ୍ଞାନର କଥା ଅଛି, ସେ ଜ୍ଞାନ ମାନେ ବାହ୍ୟଜ୍ଞାନ ।''

ଠାକୁର ଶ୍ରୀରାମକୃଷ୍ଣଙ୍କ ଚରଣ ସ୍ପର୍ଶ କରି ଈଶାନ ବସିଅଛନ୍ତି ଓ ସମସ୍ତ କଥା ଶୁଣୁଛନ୍ତି । ସେ ଥରେ ଥରେ ମନ୍ଦିରର ପାଷାଣମୟୀ କାଳୀ ପ୍ରତିମାଙ୍କ ଆଡ଼କୁ ଚାହୁଁଥିଲେ । ଦୀପ ଲୋକରେ ମାଆଙ୍କ ମୁଖ ହାସ୍ୟମୟୀ, ଯେପରି ଦେବୀ ଆବିର୍ଭୂତା ହୋଇ ଠାକୁର ଶ୍ରୀରାମକୃଷ୍ଣଙ୍କର ମୁଖ ବିନିଃସୃତ ବେଦମନ୍ତ୍ରତୁଲ୍ୟ କଥାଗୁଡ଼ିକ ଶୁଣି ଆନନ୍ଦ କରୁଛନ୍ତି ।

ଈଶାନ (ଶ୍ରୀରାମକୃଷ୍ଣଙ୍କ ପ୍ରତି)—ଯେଉଁସବୁ କଥା ଆପଣ ଶ୍ରୀମୁଖରେ କହନ୍ତି, ସେହିସବୁ କଥା (ମୂର୍ତ୍ତି ଆଡ଼କୁ ଅନାଇଁ) ଏହାଙ୍କ ଠାରୁ ଆସିଛି ।

ଶ୍ରୀରାମକୃଷ୍ଣ—ମୁଁ ଯନ୍ତ୍ର, ସେ ଯନ୍ତ୍ରୀ—ମୁଁ ଘର, ସେ ଘରଣୀ,—ମୁଁ ରଥ, ସେ ରଥୀ, ସେ ଯେପରି ଚଳାନ୍ତି, ସେପରି ଚଳେ, ଯେପରି କୁହାନ୍ତି, ସେପରି କହେ ।

"କଳିଯୁଗରେ ଅନ୍ୟ ପ୍ରକାର ଦୈବବାଣୀ ହୁଏ ନାହିଁ । ତେଣୁ ଅଛି, ବାଳକ କିମ୍ବା ପାଗଳ, ଏମାନଙ୍କ ମୁଖ ମାଧ୍ୟମରେ ସେ କଥା କହନ୍ତି ।"

"ମନୁଷ୍ୟ ଗୁରୁ ହୋଇପାରେ ନାହିଁ । ଈଶ୍ୱରଙ୍କର ଇଚ୍ଛାରେ ହିଁ ସବୁ ହେଉଛି । ମହାପାତକ, ଅନେକ ଦିନର ପାତକ, ଅନେକ ଦିନର ଅଜ୍ଞାନ, ତାଙ୍କର କୃପା ହେଲେ କ୍ଷଣକରେ ପଳାଇ ଯାଏ ।"

"ହଜାର ବର୍ଷର ଅନ୍ଧକାର, ଅନ୍ଧକାର ଘର ଭିତରକୁ ଯଦି ଆଲୋକ ଆସେ, ତାହାହେଲେ ସେହି ହଜାର ବର୍ଷର ଅନ୍ଧକାର କ'ଣ ଟିକିଏ ଟିକିଏ ଦୂର ହୁଏ, ନା କ୍ଷଣକରେ ଦୂର ହୁଏ ? ଆଲୋକ ଆଣିଲେ ନିଶ୍ଚୟ ସମସ୍ତ ଅନ୍ଧକାର ଦୂର ହୋଇଯାଏ ।"

"ମନୁଷ୍ୟ କଅଣ କରିବ । ମନୁଷ୍ୟ ଅନେକ କଥା କହିଦେଇପାରେ, କିନ୍ତୁ ଶେଷରେ ସବୁ ଈଶ୍ୱରଙ୍କ ହାତରେ । ଓକିଲ କହେ, 'ମୁଁ ଯାହା କହିବାର ସବୁ କହିଛି, ବର୍ତ୍ତମାନ ହାକିମଙ୍କ ହାତରେ ।"

"ବ୍ରହ୍ମ ନିଷ୍କ୍ରିୟ । ସେ ଯେତେବେଳେ ସୃଷ୍ଟି-ସ୍ଥିତି-ପ୍ରଳୟ, ଏହି ସମସ୍ତ କାର୍ଯ୍ୟ କରନ୍ତି, ସେତେବେଳେ ତାହାଙ୍କୁ ଆଦ୍ୟାଶକ୍ତି କହନ୍ତି । ସେହି ଆଦ୍ୟାଶକ୍ତିଙ୍କୁ ପ୍ରସନ୍ନ କରିବାକୁ ହୁଏ । ଚଣ୍ଡିରେ ଅଛି ଜାଣ ନା ? ଦେବତାମାନେ ଆଗେ ଆଦ୍ୟାଶକ୍ତିଙ୍କର ସ୍ତବ କଲେ । ସେ ପ୍ରସନ୍ନ ହେଲେ ତେବେ ହରିଙ୍କର ଯୋଗନିଦ୍ରା ଭାଙ୍ଗିବ ।"

ଈଶାନ—ଆଜ୍ଞା, ମଧୁକୈଟଭ ବଧ ସମୟରେ ବ୍ରହ୍ମାଦି ଦେବତାମାନେ ସ୍ତବ କରୁଛନ୍ତି—

ତ୍ୱଂ ସ୍ୱାହା ତ୍ୱଂ ସ୍ୱଧା ତ୍ୱଂ ହି ବଷଟକାର ସ୍ୱରାତ୍ମିକା ।
ସୁଧା ତ୍ୱମକ୍ଷରେ ନିତ୍ୟେ କ୍ରିଧା ମାତ୍ରାତ୍ମିକା ସ୍ଥିତା ।।
ଅର୍ଦ୍ଧମାତ୍ରା ସ୍ଥିତା ନିତ୍ୟା ଯାନୁଚ୍ଚାର୍ଯ୍ୟା ବିଶେଷତଃ ।
ତମେବ ସା ତ୍ୱଂ ସାବିତ୍ରୀ ତ୍ୱଂ ଦେବୀଜନନୀ ପରା ।।
ତ୍ୱୟୈବ ଧାର୍ଯ୍ୟତେ ସର୍ବଂ ତ୍ୱୟୈତଦ୍ ସୃଜ୍ୟତେ ଜଗଦ୍ ।
ତ୍ୱୟୈତଦ୍ ପାଲ୍ୟତେ ଦେବି ତ୍ୱମଦ୍ସ୍ୟନ୍ତେ ଚ ସର୍ବଦା ।।

ବିସୃଷ୍ଟୌ ସୃଷ୍ଟିରୂପା ତ୍ୱଂ ସ୍ଥିତିରୂପା ଚ ପାଳନେ ।
ତଥା ସଂହୃତି ରୂପାନ୍ତେ ଜଗତୋଽସ୍ୟ ଜଗନ୍ମୟେ ।।*

ଶ୍ରୀରାମକୃଷ୍ଣ—ହଁ ଏଇଟି ଧାରଣା କରିବା ଦରକାର ।

## (୭)

## ଶ୍ରୀରାମକୃଷ୍ଣ ଓ କର୍ମକାଣ୍ଡ । କର୍ମକାଣ୍ଡ କଠିନ । ସେଥିପାଇଁ ଭକ୍ତିଯୋଗ ।

କାଳୀ ମନ୍ଦିର ସମ୍ମୁଖରେ ଭକ୍ତମାନେ ଶ୍ରୀରାମକୃଷ୍ଣଙ୍କୁ ଘେରି ଚତୁର୍ଦ୍ଦିଗରେ ବସିଛନ୍ତି । ଏତେକ୍ଷଣ ଅବାକ୍ ହୋଇ ଶ୍ରୀମୁଖରୁ ଶୁଣୁଥିଲେ ।

ଏଥର ଠାକୁର ଗାତ୍ରୋତ୍ଥାନ କଲେ । ମନ୍ଦିର ସମ୍ମୁଖସ୍ଥ ଚାନ୍ଦିନୀରେ ଆସି ଭୂମିଷ୍ଠ ହୋଇ ମାଆଙ୍କୁ ପ୍ରଣାମ କଲେ । ଭକ୍ତମାନେ ସମସ୍ତେ ତାଙ୍କ ପାଖକୁ ଶୀଘ୍ର ଆସି ତାଙ୍କର ପାଦମୂଳରେ ଭୂମିଷ୍ଠ ହୋଇପଡ଼ିଲେ । ସମସ୍ତେ ଚରଣଧୂଳିର ଭିଖାରୀ । ସମସ୍ତେ ଚରଣ ବନ୍ଦନା କରିବା ପରେ, ଠାକୁର ଚାନ୍ଦିନୀରୁ ଓହ୍ଲାଉଛନ୍ତି ଓ ମାଷ୍ଟରଙ୍କ ସଙ୍ଗରେ କଥା କହି କହି ନିଜ ଘରଆଡ଼କୁ ଆସୁଛନ୍ତି ।

ଶ୍ରୀରାମକୃଷ୍ଣ (ଗୀତ ଗାଉ ଗାଉ ମାଷ୍ଟରଙ୍କ ପ୍ରତି)—

''ପ୍ରସାଦ ବଲେ ଭୁକ୍ତି ମୁକ୍ତି ଉଭୟେ ମାଥାୟ ରେଖେଛି ।
ଆମି କାଲୀ ବ୍ରହ୍ମ ଜେନେ ମର୍ମ, ଧର୍ମାଧର୍ମ ସବ ଛେଡ଼େଛି !''

''ଧର୍ମାଧର୍ମ କଅଣ ଜାଣ ? ଏଠାରେ 'ଧର୍ମ ମାନେ ବୈଧୀଧର୍ମ' । ଯେପରି

---

*ତୁମେ ହୋମ ଶ୍ରାଦ୍ଧ ଓ ଯଜ୍ଞରେ ପ୍ରଯୁଜ୍ୟ ସ୍ୱାହା, ସ୍ୱଧା ଓ ବଷଟ୍‌କାର ରୂପରେ ମନ୍ତ୍ର ସ୍ୱରୂପା ଏବଂ ଦେବଭୋକ୍ଷ୍ୟ ସୁଧା ମଧ ତୁମେ । ହେ ନିତ୍ୟେ ! ତୁମେ ଅକ୍ଷର ସମୁଦାୟରେ ହ୍ରସ୍ୱ ଦୀର୍ଘ ଓ ପ୍ଲୁତ ଏହି ତିନିପ୍ରକାର ମାତ୍ରା ସ୍ୱରୂପ ହୋଇ ଅବସ୍ଥାନ କରୁଅଛ ଏବଂ ଯାହା ବିଶେଷ ରୂପରେ ଅନୁଚ୍ଚାର୍ଯ୍ୟ ଓ ଅର୍ଦ୍ଧମାତ୍ରା ରୂପରେ ଅବସ୍ଥିତ, ତାହା ମଧ ତୁମେ । ତୁମେ ହିଁ ସେହି (ବେଦ-ସାରଭୂତା) ସାବିତ୍ରୀ; ହେ ଦେବୀ ! ତୁମେ ହିଁ ଆଦି ଜନନୀ । ତୁମ କର୍ତ୍ତୃକ ସମସ୍ତ ଜଗତ୍ ଧୃତ ଏବଂ ତୁମ କର୍ତ୍ତୃକ ହିଁ ଜଗତ୍ ସୃଷ୍ଟି ହୋଇଅଛି ଏବଂ ତୁମେ ହିଁ ଶେଷରେ ଏହା ଭକ୍ଷଣ (ଧ୍ୱଂସ) କରିଥାଅ । ହେ ଜଗଦ୍ରୂପେ ! ତୁମେ ହିଁ ଏହି ଜଗତର ନାନା ପ୍ରକାର ନିର୍ମାଣ କାର୍ଯ୍ୟରେ ସୃଷ୍ଟିରୂପା ଓ ପାଳନ କାର୍ଯ୍ୟରେ ସ୍ଥିତିରୂପା ଏବଂ ଅନ୍ତେ ଏହାର ସଂହାର କାର୍ଯ୍ୟରେ ତଦ୍ରୂପ ସଂହାରରୂପା !

(ମାର୍କଣ୍ଡେୟ ଚଣ୍ଡୀ, ୭୨-୭୬)

ଦାନ କରିବାକୁ ହେବ, ଶ୍ରାଦ୍ଧ, କାଙ୍ଗାଳୀ ଭୋଜନ, ଏହିସବୁ ।''

''ଏହି ଧର୍ମକୁ କର୍ମକାଣ୍ଡ କହନ୍ତି । ଏ ପଥ ବଡ଼ କଠିନ ! ତେଣୁ ଭକ୍ତିପଥ ଆଶ୍ରୟ କରିବାକୁ କୁହାଯାଇଛି ।''

''ଜଣେ ଲୋକ ତାହାର ଘରେ ଶ୍ରାଦ୍ଧ କରିଥିଲା । ଅନେକ ଲୋକ ଖାଉଥିଲେ । ଜଣେ କଂସାଇ ଗୋଟାଏ ଗୋରୁକୁ କାଟିବ ବୋଲି ନେଇଯାଉଛି । ଗୋରୁ ବୋଲ ମାନୁନଥିଲା,—କଂସାଇ ଧକାଇ ପଡ଼ିଥିଲା । ସେତେବେଳେ ସେ ଭାବିଲା ଶ୍ରାଦ୍ଧ ଘରକୁ ଯାଇ ଖାଇନେବ: ଖାଇ ଦେହରେ ଜୋର ଆସିଲେ, ତାହାପରେ ଗୋରୁଟାକୁ ନେଇଯିବ । ଶେଷରେ ତାହା ହିଁ କଲା, କିନ୍ତୁ ଯେତେବେଳେ ସେହି ଗୋରୁକୁ କାଟିଲା ସେତେବେଳେ ଯେଉଁ ଲୋକ ଶ୍ରାଦ୍ଧ କରୁଥିଲା, ତାହାରି ହିଁ ଗୋହତ୍ୟାର ପାପ ହେଲା ।''

''ସେଥିପାଇଁ କହୁଛି, କର୍ମକାଣ୍ଡ ଅପେକ୍ଷା ଭକ୍ତି ପଥ ଭଲ ।''

ଠାକୁର ଘରେ ପ୍ରବେଶ କରୁଛନ୍ତି, ସଙ୍ଗରେ ମାଷ୍ଟର ଅଛନ୍ତି । ଠାକୁର ଗୁଣୁଗୁଣୁ ସ୍ୱରରେ ଗାଉଅଛନ୍ତି । ନିବୃତ୍ତ ମାର୍ଗର ଯେଉଁ ବିଷୟ କହିଲେ, ତାଙ୍କ ଗୁଣୁଗୁଣୁ ଶବ୍ଦରୁ ତାହାହିଁ ପ୍ରକାଶ ପାଉଛି । ସେ ଧୀରେ ଧୀରେ କହୁଛନ୍ତି-'ଅବଶେଷେ ରାଖ ଗୋ ମା, ହାଡ଼େର ମାଲା ସିଦ୍ଧି ଘୋଟା' ।''

ଠାକୁର ଛୋଟ ଖଟ ଉପରେ ବସିଲେ । ଅଧର, କିଶୋରି ଓ ଅନ୍ୟାନ୍ୟ ଭକ୍ତମାନେ ଆସି ବସିଲେ ।

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)—ଈଶାନଙ୍କୁ ଦେଖିଲି, କାହିଁକି କିଛି ତ ହୋଇନାହିଁ ! କଅଣ କହୁଛ ? ପୁରଶ୍ଚରଣ ପାଞ୍ଚମାସ କରିଛନ୍ତି ! ଅନ୍ୟଲୋକ ଏହା କରିଥିଲେ କିଛି ଗୋଟାଏ କାଣ୍ଡ କରିଥାଆନ୍ତା !

ଅଧର—ଆମ୍ଭମାନଙ୍କ ସମ୍ମୁଖରେ ଏତେ କଥା କହିବା ଭଲ ହୋଇନାହିଁ ।

ଶ୍ରୀରାମକୃଷ୍ଣ—ଏ କଅଣ ! ସେ ଜାପକ ଲୋକ, ତାଙ୍କର ଏଥିରେ କଅଣ ଅଛି ?

କିଛିକ୍ଷଣ କଥାବାର୍ତ୍ତା ପରେ ଠାକୁର ଅଧରଙ୍କୁ କହୁଛନ୍ତି ଈଶାନ ଖୁବ୍ ଦାନୀ, ଆଉ ଦେଖ, ଜପ ତପ କରୁଛନ୍ତି । ଠାକୁର କିଛି ସମୟ ଚୁପ୍ ହୋଇ ରହିଛନ୍ତି । ଭକ୍ତମାନେ ତଳେ ବସି ଏକ ଦୃଷ୍ଟିରେ ଚାହିଁଛନ୍ତି । ହଠାତ୍ ଠାକୁରେ ଅଧରଙ୍କୁ ଉଦ୍ଦେଶ୍ୟ କରି କହୁଛନ୍ତି, ତୁମର ଯୋଗ ଓ ଭୋଗ ଦୁଇ ଅଛି ।



# ସପ୍ତଦଶ ପରିଚ୍ଛେଦ

## (୧)

## ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱରରେ କାଳୀପୂଜା ମହାନିଶାରେ ଭକ୍ତଙ୍କ ସଙ୍ଗରେ ।

### ମାଷ୍ଟର, ବାବୁରାମ, ଗୋପାଳ, ହରିପଦ, ନିରଞ୍ଜନଙ୍କର ଆତ୍ମୀୟ, ରାମଲାଲ ଓ ହାଜରା ।

ଆଜି କାଳୀପୂଜା, ୧୮ ତାରିଖ ଅକ୍ଟୋବର, ୧୮୮୪ ଖ୍ରୀଷ୍ଟାବ୍ଦ, ଶନିବାର ରାତି ଦଶଟା ଏଗାରଟା ସମୟରେ କାଳୀପୂଜା ଆରମ୍ଭ ହେବ । କେତେଜଣ ଭକ୍ତ ଗଭୀର ଅମାବାସ୍ୟା ରାତ୍ରିରେ ଠାକୁର ଶ୍ରୀରାମକୃଷ୍ଣଙ୍କୁ ଦର୍ଶନ କରିବେ, ସେଥିପାଇଁ ଶୀଘ୍ର ଆସୁଛନ୍ତି ।

ମାଷ୍ଟର ରାତିରେ ଅନ୍ଦାଜ ଆଠଟା ସମୟରେ ଏକାକୀ ଆସି ପହଞ୍ଚିଲେ । ଉଦ୍ୟାନକୁ ଆସି ଦେଖିଲେ, କାଳୀମନ୍ଦିରରେ ମହୋତ୍ସବ ଆରମ୍ଭ ହୋଇଅଛି । ଉଦ୍ୟାନ ମଧ୍ୟରେ ମଝିରେ ମଝିରେ ଦ୍ୱୀପ—ଦେବ—ମନ୍ଦିର ଆଲୋକରେ ସୁଶୋଭିତ ହୋଇଅଛି;—ବେଳେବେଳେ ନାନା ପ୍ରକାରର ବାଦ୍ୟ ବାଜୁଅଛି, —କର୍ମଚାରୀମାନେ ଦ୍ରୁତ ପଦରେ ମନ୍ଦିରର ଏ ସ୍ଥାନରୁ ସେ ସ୍ଥାନକୁ ଯାତାୟତ କରୁଅଛନ୍ତି । ଆଜି ରାସମଣିର କାଳୀ ମନ୍ଦିରରେ ଭିଡ଼ ହେବ, ଦକ୍ଷିଣେଶ୍ୱର ଗ୍ରାମବାସୀମାନେ ଶୁଣିଛନ୍ତି, ପୁଣି ଶେଷ ରାତିରେ ଯାତ୍ରା ହେବ । ଗ୍ରାମରୁ ଆବାଳ-ବୃଦ୍ଧ ବନିତା ବହୁ ସଂଖ୍ୟକ ଲୋକ ମନ୍ଦିର ଦର୍ଶନ କରିବାକୁ ସର୍ବଦା ଆସୁଛନ୍ତି ।

ଅପରାହ୍ନରେ ଚଣ୍ଡୀର ଗୀତ ହେଉଥିଲା—ରାଜ ନାରାୟଣଙ୍କର ଚଣ୍ଡୀ ଗୀତ । ଠାକୁର ଭକ୍ତଙ୍କ ସଙ୍ଗରେ ପ୍ରେମାନନ୍ଦରେ ଗୀତ ଶୁଣିଛନ୍ତି । ଆଜି ଜଗଜ୍ଜନନୀଙ୍କର ପୂଜା ହେବ । ଠାକୁର ଆନନ୍ଦରେ ବିଭୋଳ ହୋଇଛନ୍ତି ।

ରାତି ଆଠଟା ସମୟରେ ମାଷ୍ଟର ଉପସ୍ଥିତ ହୋଇ ଦେଖିଲେ, ଠାକୁର ଛୋଟ ଖଟ ଉପରେ ବସିଛନ୍ତି, ତାଙ୍କ ଆଡ଼କୁ ମୁହଁ କରି କେତେଜଣ ଭକ୍ତ ତଳେ ବସିଛନ୍ତି—ବାବୁରାମ, ଛୋଟଗୋପାଳ, ହରିପଦ, କିଶୋରୀ, ନିରଞ୍ଜନଙ୍କର ଜଣେ ଆତ୍ମୀୟ ଯୁବକ ଓ ଏଁଡ଼େଦାର ଅନ୍ୟଜଣେ ଯୁବକ । ରାମଲାଲ ଓ ହାଜରା ମଝିରେ ମଝିରେ ଆସୁଛନ୍ତି ଓ ଯାଉଛନ୍ତି ।

ନିରଞ୍ଜନଙ୍କର ଆତ୍ମୀୟ ଯୁବକ ଜଣକ ଠାକୁରଙ୍କ ସମ୍ମୁଖରେ ଧ୍ୟାନ କରୁଅଛନ୍ତି,—ଠାକୁର ତାଙ୍କୁ ଧ୍ୟାନ କରିବାକୁ କହିଛନ୍ତି ।

ମାଷ୍ଟର ପ୍ରଣାମ କରି ଉପବିଷ୍ଟ ହେଲେ । କିୟତ୍‌କ୍ଷଣ ପରେ ନିରଞ୍ଜନଙ୍କର ଆତ୍ମୀୟ ପ୍ରଣାମ କରି ବିଦାୟ ଗ୍ରହଣ କଲେ । ଏଁଡ଼େଦାର ଦ୍ୱିତୀୟ ଯୁବକ ମଧ୍ୟ ପ୍ରଣାମ କରି ଠିଆହେଲେ—ଏହାଙ୍କ ସଙ୍ଗରେ ଯିବେ ।

ଶ୍ରୀରାମକୃଷ୍ଣ (ନିରଞ୍ଜନଙ୍କର ଆତ୍ମୀୟଙ୍କ ପ୍ରତି)—ତୁମେ କେବେ ଆସିବ ?

ଭକ୍ତ—ଆଜ୍ଞା, ବୋଧହୁଏ ସୋମବାର ଦିନ ।

ଶ୍ରୀରାମକୃଷ୍ଣ (ଆଗ୍ରହର ସହିତ)—ଲଣ୍ଠନ ଦରକାର, ସଙ୍ଗରେ ନେଇଯିବ ?

ଭକ୍ତ—ଆଜ୍ଞା, ନା ଏହି ଉଦ୍ୟାନର ପାଖରେ; ଦରକାର ନାହିଁ ।

ଶ୍ରୀରାମକୃଷ୍ଣ (ଏଁଡ଼େଦାର ଯୁବକଙ୍କ ପ୍ରତି)—ତୁମେ ମଧ୍ୟ ଚାଲିଲ ?

ଯୁବକ—ଆଜ୍ଞା, ସର୍ଦ୍ଦି ହୋଇଛି ।

ଶ୍ରୀରାମକୃଷ୍ଣ—ଆଚ୍ଛା, ତେବେ ମୁଣ୍ଡରେ ଲୁଗା ଘୋଡ଼ାଇ ଯିବ । ଯୁବକ ଦୁଇଜଣ ପୁଣି ପ୍ରଣାମ କରି ଚାଲିଗଲେ ।

## (୨)

## ଦକ୍ଷିଣେଶ୍ୱରଠାରେ ଵ କାଳୀପୂଜା ମହାନିଶାରେ ଶ୍ରୀରାମକୃଷ୍ଣ ଭଜନାନନ୍ଦରେ ।

ଅମାବାସ୍ୟାର ଗଭୀର ରାତ୍ରି । ପୁଣି ଜଗଜ୍ଜନନୀଙ୍କର ପୂଜା । ଶ୍ରୀରାମକୃଷ୍ଣ ଛୋଟ ଖଟ ଉପରେ ତକିଆରେ ଭରା ଦେଇ ବସିଅଛନ୍ତି । କିନ୍ତୁ ଅନ୍ତର୍ମୁଖ, ମଝିରେ ମଝିରେ ଭକ୍ତମାନଙ୍କ ସଙ୍ଗରେ ପଦେ ଅଧେ କଥା କହୁଛନ୍ତି ।

ହଠାତ୍ ମାଷ୍ଟର ଓ ଭକ୍ତମାନଙ୍କୁ ଅନାଇଁ କହୁଛନ୍ତି, —ଆହା, ଯୁବକଟିର କିପରି ଧ୍ୟାନ ! (ହରିପଦଙ୍କ ପ୍ରତି)—କି ରକମ ? କିପରି ଧ୍ୟାନ !

ହରିପଦ—ଆଜ୍ଞା ହଁ ଠିକ୍ କାଷ୍ଠ ସଦୃଶ ।

ଶ୍ରୀରାମକୃଷ୍ଣ (କିଶୋରୀଙ୍କ ପ୍ରତି)—ସେ ଯୁବକଟିକୁ ଜାଣ ? ନିରଞ୍ଜନର କିପରି ଭାଇ ହୁଏ ।

ପୁଣି ସମସ୍ତେ ନିଃଶବ୍ଦ । ହରିପଦ ଠାକୁରଙ୍କର ପଦସେବା କରୁଅଛନ୍ତି ।

ଠାକୁର ଅପରାହ୍ନରେ ଚଣ୍ଡୀଙ୍କ ଗୀତ ଶୁଣିଛନ୍ତି । ଗୀତର ଭାବ ଜାଗ୍ରତ ହେଉଛି । ଆସ୍ତେ ଗାଉଛନ୍ତି—

କେ ଜାନେ କାଲୀ କେମନ, ଷଡ଼ ଦର୍ଶନେ ନ ପାୟ ଦରଶନ ।।
ମୂଳାଧାରେ ସହସ୍ରାରେ ସଦା ଯୋଗୀ କରେ ମନନ ।
କାଲୀ ପଦ୍ମବନେ ହଂସସନେ ହଂସୀରୂପେ କରେ ରମଣ ।।
ଆତ୍ମାରାମେର ଆତ୍ମା କାଲୀ, ପ୍ରମାଣ ପ୍ରଣବେର ମତନ ।
ତିନି ଘଟେ ଘଟେ ବିରାଜ କରେନ ଇଚ୍ଛାମୟୀର ଇଚ୍ଛା ଯେମନ ।।
ମାୟେର ଉଦରେ ବ୍ରହ୍ମାଣ୍ଡ—ଭାଣ୍ଡ ପ୍ରକାଣ୍ଡ ତା' ଜାନ କେମନ ।
ମହାକାଲ ଜେନେଛେନ କାଲୀର ମର୍ମ ଅନ୍ୟ କେବା ଜାନେ ତେମନ ।।
ପ୍ରସାଦ ଭାସେ ଲୋକେ ହାସେ ସନ୍ତରଣେ ସିନ୍ଧୁ ତରଣ ।

ଆମାର ମନ ବୁଝେଛେ ପ୍ରାଣ ବୁଝେନା, ଧରବେ ଶଶୀ ହ'ୟେ ବାମନ ।

ଠାକୁର ଉଠି ବସିଲେ । ଆଜି ମାଆଙ୍କର ପୂଜା—ମାଆଙ୍କର ନାମ କରିବେ । ପୁଣି ଉତ୍ସାହରେ ଗାଉଛନ୍ତି,—

**ଏ ସବ କ୍ଷେପା ମାୟେର ଖେଲା ।**

(ଯା'ର ମାୟାୟ ତ୍ରିଭୁବନ ବିଭୋଲା) (ମାଗୀର ଆପ୍ତଭାବେ ଗୁପ୍ତଲୀଳା)
ସେ ଯେ ଆପନି କ୍ଷେପା, କର୍ତ୍ତା କ୍ଷେପା, କ୍ଷେପା ଦୁଟା ଚେଲା ।।
କି ରୂପ କି ଗୁଣ ଭଙ୍ଗୀ, କି ଭାବ କିଛୁଇ ଯାୟ ନା ବଲା ।
ଯା'ର ନାମ ଜପିୟେ କପାଲ ପୋଡ଼େ କଣ୍ଠେ ବିଷେର ଜ୍ୱାଲା ।।
ସଗୁଣେ ନିର୍ଗୁଣେ ବାଁଧିୟେ ବିବାଦ, ଢ୍ୟାଲା ଦିୟେ ଭାଙ୍ଗଛେ ଢ୍ୟାଲା ।।
ମାଗୀ ସକଲ ବିଷୟେ ସମାନ ରାଜୀ ନାରାଜ କେବଲ କାଜେର ବେଲା ।।

ଠାକୁର ଗୀତ ଗାଇ ଗାଇ ବିଭୋଳ ହୋଇଛନ୍ତି, କହିଲେ ଯେ ମାଆଙ୍କ ଭାବରେ ଉନ୍ମତ୍ତ, ତାହାରି ଏହିପରି ଗୀତ । ଏହା କହି ଗାଉଛନ୍ତି,—

(୧)—ଏବାର କାଲୀ ତୋମାୟ ଖାବୋ । ଇତ୍ୟାଦି

(୨)—ତାଇ ତୋମାକେ ସୁଧାଇ କାଲୀ ।

(୩)—ସଦାନନ୍ଦମୟୀ କାଲୀ ମହାକାଲେର ମନୋମୋହିନୀ ।
ତୁମି ଆପନି ନାଚ, ଆପନି ଗାଓ, ଆପନି ଦାଓ ମା' କରତାଲି ।
ଆଦିଭୂତା ସନାତନୀ, ଶୂନ୍ୟରୂପା ଶଶୀଭାଲୀ ।
ବ୍ରହ୍ମାଣ୍ଡ ଛିଲନା ଯଖନ, ମୁଣ୍ଡମାଲା କୋଥାୟ ପେଲି ।।
ସବେ ମାତ୍ର ତୁମି ଯନ୍ତ୍ରୀ, ଆମରା ତୋମାର ଯନ୍ତ୍ରେ ଚଲି ।
ଯେମନ ରାଖ ତେମନି ଥାକି ମା, ଯେମନ ବଲାଓ ତେମନି ବଲି ।।
ଅଶାନ୍ତ କମଲାକାନ୍ତ ଦିୟେ ବଲେ ଗାଲାଗାଲି ।
ଏବାର ସର୍ବନାଶୀ ଧରେ ଅସି, ଧର୍ମାଧର୍ମ ଦୁଟୋ ଖେଲି ।।

(୪)—ଜୟ କାଲୀ ଜୟ କାଲୀ ବଲେ ଯଦି ଆମାର ପ୍ରାଣ ଯାୟ ।
ଶିବତ୍ୱ ହଇବ ପ୍ରାପ୍ତ, କାଜ କି ବାରାଣସୀ ତାୟ ।।
ଅନନ୍ତ ରୂପିଣୀ କାଲୀ, କାଲୀର ଅନ୍ତ କେବା ପାୟ ?
କିଞ୍ଚିତ୍ ମାହାତ୍ମ୍ୟ ଜେନେ ଶିବ ପଡ଼େଛେନ ରାଙ୍ଗା ପାୟ ।।

ଗୀତ ସମାପ୍ତ ହେଲା, ଏପରି ସମୟରେ ରାଜନାରାୟଣଙ୍କର ଦୁଇଟି ପୁଅ ଆସି ପ୍ରଣାମ କଲେ । ରାଜନାରାୟଣ ନାଟମନ୍ଦିରରେ ଉପରବେଳା ଚଣ୍ଡୀଙ୍କ ଗୀତ ଗାଇଥିଲେ, ପୁଅ ଦୁଇଜଣ ମଧ୍ୟ ସଙ୍ଗରେ ଗାଇଥିଲେ । ଠାକୁର ସେମାନଙ୍କ ସଙ୍ଗରେ ପୁଣି ଗାଉଛନ୍ତି । —'ଏ ସବ କ୍ଷେପା ମେୟେର ଖେଲା' ।

ସାନପୁଅଟି ଠାକୁରଙ୍କୁ କହୁଛନ୍ତି, —ଏହି ଗୀତଟି ଥରେ ହେଉ—"ପରମ ଦୟାଲ

ହେ ପ୍ରଭୁ''—ଠାକୁର କହିଲେ, ''ଗୌର ନିତାଇ ତୋମରା ଦୁ'ଭାଇ ?'—ଏହା କହି ଗୀତଟି ଗାଉଛନ୍ତି—

ଗୀତ—ଗୌର ନିତାଇ ତୋମରା ଦୁ'ଭାଇ ପରମ ଦୟାଲ ହେ ପ୍ରଭୁ । ଇତ୍ୟାଦି ।

ଗୀତ ସମାପ୍ତ ହେଲା । ରାମଲାଲ ଘର ଭିତରକୁ ଆସିଅଛନ୍ତି । ଠାକୁର କହୁଅଛନ୍ତି, 'ଟିକିଏ ଗା, ଆଜି ପୂଜା' । ରାମଲାଲ ଗାଉଅଛନ୍ତି;—

(୧) ସମର ଆଲୋ କରେ କାର କାମିନୀ !
ସଜଳ ଜଳଦ ଜିନିୟା କାୟ, ଦଶନେ ପ୍ରକାଶେ ଦାମିନୀ ।।
ଏଲାୟୋ ଚାଁଚର ଚିକୁର ପାଶ, ସୁରାସୁର ମାଝେ ନା କରେ ତ୍ରାସ,
ଅଟ୍ଟହାସେ ଦାନବ ନାଶେ, ରଣ, ପ୍ରକାଶେ ରଙ୍ଗିଣୀ ।।
କିବା ଶୋଭା କରେ ଶ୍ରମଜ ବିନ୍ଦୁ, ଘନତନୁ ଘେରି କୁମୁଦବନ୍ଧୁ,
ଅମିୟ ସିନ୍ଧୁ ହେରିୟା ଇନ୍ଦୁ, ମଳିନ ଏ କୋନ ମୋହିନୀ ।।
ଏକି ଅସମ୍ଭବ ଭବ ପରାଭବ, ପଦତଳେ ଶବସଦୃଶ ନୀରବ,
କମଳାକାନ୍ତ କର ଅନୁଭବ, କେ ବଟେ ଓ ଗଜଗାମିନୀ ।।

(୨) କେ ରଣେ ଏସେଛେ ବାମା ନୀରଦବରଣ ।
ଶୋଣିତ ସାୟରେ ଭାସେ ଯେନ ନୀଳ ନଳିନୀ ।। ଇତ୍ୟାଦି

ଠାକୁର ପ୍ରେମାନନ୍ଦରେ ନାଚୁଅଛନ୍ତି;ନାଚି ନାଚି ଗୀତ ଗାଇଲେ,—

ମଜଲୋ ଆମାର ମନ ଭ୍ରମରା ଶ୍ୟାମପଦ ନୀଲକମଲେ ! ଇତ୍ୟାଦି

ଗୀତ ଓ ନୃତ୍ୟ ସମାପ୍ତ ହେଲା । ଭକ୍ତମାନେ ପୁଣି ତଳେ ବସିଅଛନ୍ତି । ଠାକୁର ମଧ୍ୟ ଛୋଟ ଖଟ ଉପରେ ବସିଲେ ।

ମାଷ୍ଟରଙ୍କୁ କହୁଅଛନ୍ତି,—ତୁମେ ଆସିଲ ନାହିଁ, ଚଣ୍ଡୀଙ୍କ ଗୀତ କିପରି ହେଲା ।

## (୩)

## କାଳୀପୂଜା ରାତ୍ରିରେ ଠାକୁର ସମାଧିସ୍ଥ ।
## ସାଙ୍ଗୋପାଙ୍ଗଙ୍କ ସମ୍ବନ୍ଧରେ ଦୈବବାଣୀ ।

ଭକ୍ତମାନେ କେହି କେହି କାଳୀ ମନ୍ଦିରକୁ ଠାକୁର ଦର୍ଶନ କରିବାକୁ ଗମନ କଲେ । କେହି ଅବା ଦର୍ଶନ କରି ଗଙ୍ଗାତୀରରେ ବନ୍ଧାଘାଟ ଉପରେ ଏକାକୀ ବସି ନିର୍ଜ୍ଜନରେ ନିଃଶବ୍ଦରେ ନାମ କରୁଅଛନ୍ତି । ରାତି ପ୍ରାୟ ୧୧ଟା । ମହାନିଶା । ଜୁଆର ଏକ୍ଷଣି ଆସିଅଛି—ଭାଗୀରଥୀ ଉତ୍ତରବାହିନୀ, ତୀରସ୍ଥ ଦୀପାଲୋକରେ ଥରେ ଥରେ ଜଳ କଳାରଙ୍ଗ ଦେଖାଯାଉଛି ।

ରାମଲାଲ ପୂଜା ପଦ୍ଧତି ନାମକ ପୁସ୍ତକ ହାତରେ ଧରି ମାଆଙ୍କ ମନ୍ଦିରକୁ ଆସିଲେ । ପୁସ୍ତକଟି ମନ୍ଦିର ଭିତରେ ରଖିଦେବେ । ମଣି ମାଆଙ୍କୁ ସତୃଷ୍ଣ ନୟନରେ ଦର୍ଶନ କରୁଛନ୍ତି

ଦେଖି ରାମଲାଲ କହିଲେ, ଭିତରକୁ ଆସିବେକି ? ମଣି ଅନୁଗୃହୀତ ହୋଇ ଭିତରେ ପ୍ରବେଶ କଲେ । ଦେଖିଲେ, ମାଆଙ୍କୁ ବେଶ କରାଯାଉଛି । ଘର ଆଲୋକିତ ହୋଇଛି । ମାଆଙ୍କ ସମ୍ମୁଖରେ ଦୁଇଟି ଝାଡ଼ ଉପରେ ଝୁଲୁଅଛି । ମନ୍ଦିର ତଳ ନୈବେଦ୍ୟରେ ପରିପୂର୍ଣ୍ଣ । ମାଆଙ୍କ ପାଦପଦ୍ମରେ ଜବାବିଲ୍ୱ । ନାନାବିଧ ପୁଷ୍ପମାଳାରେ ବେଶକାରୀ ମାଆଙ୍କୁ ସଜାଇଅଛନ୍ତି । ମଣି ଦେଖିଲେ, ସମ୍ମୁଖରେ ଚାମର ଝୁଲୁଅଛି । ହଠାତ୍ ମନେପଡ଼ିଲା, ଠାକୁର ଶ୍ରୀରାମକୃଷ୍ଣ ଏହି ଚାମର ନେଇ ମାଆଙ୍କୁ କେତେ ବ୍ୟଜନ କରିଥିଲେ । ସେତେବେଳେ ସେ ସଂକୁଚିତ ଭାବରେ ରାମଲାଲଙ୍କୁ କହୁଛନ୍ତି, ଏହି ଚାମରଟି ଟିକିଏ ନେଇପାରେ ? ରାମଲାଲ ଅନୁମତି ପ୍ରଦାନ କଲେ, ସେ ମାଆଙ୍କୁ ବ୍ୟଜନ କରିବାକୁ ଲାଗିଲେ । ଏ ପର୍ଯ୍ୟନ୍ତ ମଧ୍ୟ ପୂଜା ଆରମ୍ଭ ହୋଇନାହିଁ ।

ଯେଉଁସବୁ ଭକ୍ତ ବାହାରକୁ ଯାଇଥିଲେ, ସେମାନେ ପୁଣି ଠାକୁର ଶ୍ରୀରାମକୃଷ୍ଣଙ୍କ ଘରେ ଆସି ମିଳିତ ହେଲେ ।

ଶ୍ରୀଯୁକ୍ତ ବେଣୀପାଳ ନିମନ୍ତ୍ରଣ କରିଛନ୍ତି । ଆସନ୍ତା କାଲି ସିଁଥି ବ୍ରାହ୍ମସମାଜକୁ ଯିବାକୁ ହେବ । ଠାକୁରଙ୍କୁ ନିମନ୍ତ୍ରଣ । ନିମନ୍ତ୍ରଣ ପତ୍ରରେ କିନ୍ତୁ ତାରିଖ ଭୁଲ ହୋଇଅଛି ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—ବେଣୀପାଳ ନିମନ୍ତ୍ରଣ କରିଛନ୍ତି । ତେବେ ଏପରି ଲେଖିଲେ କାହିଁକି କହ ଦେଖି ?

ମାଷ୍ଟର—ଆଜ୍ଞା, ଲେଖାଟା ଠିକ୍ ହୋଇନାହିଁ । ତେବେ ଏତେ ଭାବିଚିନ୍ତି ଲେଖି ନାହାନ୍ତି ।

ଘର ମଧ୍ୟରେ ଠାକୁର ଠିଆ ହୋଇଛନ୍ତି । ନିକଟରେ ବାବୁରାମ ଠିଆ ହୋଇଛନ୍ତି । ଠାକୁର ବେଣୀପାଳଙ୍କର ଚିଠି କଥା କହୁଛନ୍ତି । ବାବୁରାମଙ୍କୁ ସ୍ପର୍ଶ କରି ଠିଆ ହୋଇଅଛନ୍ତି । ହଠାତ୍ ସମାଧିସ୍ଥ ।

ଭକ୍ତମାନେ ତାହାଙ୍କୁ ଘେରି ଠିଆ ହୋଇଛନ୍ତି । ସମାଧିସ୍ଥ ଏହି ମହାପୁରୁଷଙ୍କୁ ଅବାକ୍ ହୋଇ ଦେଖୁଛନ୍ତି । ଠାକୁର ସମାଧିସ୍ଥ, ବାମପାଦ ଟିକିଏ ଆଗକୁ ବଢ଼ାଇ ଠିଆ ହୋଇଛନ୍ତି—ଗ୍ରୀବାଦେଶ ଈଷତ୍ କୁଞ୍ଚିତ । ବାବୁରାମଙ୍କର ପଶ୍ଚାତଦେଶରେ କାନ୍ଧରେ ହାତଟି ରହିଛି ।

କିୟତ୍କ୍ଷଣ ପରେ ସମାଧି ଭଙ୍ଗ ହେଲା । ସେତେବେଳେ ମଧ୍ୟ ଠିଆ ହୋଇଛନ୍ତି । ଏଥର ଗାଲରେ ହାତ ଦେଇ ଯେପରି କେତେ ଚିନ୍ତିତ ହେଲାପରି ଠିଆହେଲେ ।

ଈଷତ୍ ହାସ୍ୟ କରି ଏଥର ଭକ୍ତମାନଙ୍କୁ ସମ୍ବୋଧନକରି କହୁଛନ୍ତି—

ଶ୍ରୀରାମକୃଷ୍ଣ—ସବୁ ଦେଖିଲି—କାହାର କେତେଦୂର ଆଗେଇଛି । ରାଖାଲ, ଏ (ମଣି), ସୁରେନ୍ଦ୍ର, ବାବୁରାମ, ଅନେକଙ୍କୁ ଦେଖିଲି ।

ହାଜରା—ଏଠାରେ ?

ଶ୍ରୀରାମକୃଷ୍ଣ—ହଁ ।

ହାଜରା—କ'ଣ ବେଶୀ ବନ୍ଧନ ଅଛି ?

ଶ୍ରୀରାମକୃଷ୍ଣ—ନା ।

ହାଜରା—ନରେନ୍ଦ୍ରଙ୍କୁ ଦେଖିଲେ ?

ଶ୍ରୀରାମକୃଷ୍ଣ—ଦେଖିନାହିଁ, —କିନ୍ତୁ ବର୍ତ୍ତମାନ କହିପାରେ, —ଟିକିଏ ଅସୁବିଧାରେ ପଡ଼ିଛି, କିନ୍ତୁ ଦେଖିଲି ସମସ୍ତଙ୍କର ହୋଇଯିବ ।

(ମଣିଙ୍କ ଆଡ଼କୁ ଅନାଇ) ଦେଖିଲି, ସବୁ ଲୁଚି ରହିଛନ୍ତି !

ଭକ୍ତମାନେ ଅବାକ୍, ଦୈବବାଣୀ ପରି ଅଦ୍ଭୁତ ସମ୍ବାଦ ଶୁଣୁଛନ୍ତି ।

ଶ୍ରୀରାମକୃଷ୍ଣ—କିନ୍ତୁ ଏହାକୁ (ବାବୁରାମଙ୍କ) ଛୁଇଁ ଏପରି ହେଲା !

ହାଜରା ଫାଷ୍ଟ କିଏ ?

ଠାକୁର ଶ୍ରୀରାମକୃଷ୍ଣ ଚୁପ୍ ହୋଇ ରହିଲେ । କିୟତ୍‌କ୍ଷଣ ପରେ କହୁଛନ୍ତି—'ନିତ୍ୟଗୋପାଳ ପରି ଖୁବ୍ କମ୍ ହେବେ !'

ପୁଣି ଚିନ୍ତା କରୁଛନ୍ତି । ବର୍ତ୍ତମାନ ମଧ୍ୟ ସେହିଭାବରେ ଠିଆହୋଇ ରହିଛନ୍ତି !

ପୁଣି କହୁଛନ୍ତି,—''ଅଧର ସେନଙ୍କର ଯଦି କାମଦାମ କମିଯିବ, ତା'ହେଲେ ଭୟ ଅଛି, ହୁଏତ ସାହେବ ବକିବେ ଓ କହିବେ, ଏ କ୍ୟା ହାୟ ! (ସମସ୍ତଙ୍କର ହାସ୍ୟ) ।''

ଠାକୁର ପୁଣି ନିଜାସନରେ ଯାଇ ବସିଲେ । ଭକ୍ତମାନେ ତଳେ ବସିଲେ । ବାବୁରାମ ଓ କିଶୋରୀ ଛୋଟ ଖଟ ନିକଟକୁ ଯାଇ ଠାକୁରଙ୍କ ପାଦ ନିକଟରେ ବସି ତାଙ୍କ ପଦସେବା କଲେ ।

ଶ୍ରୀରାମକୃଷ୍ଣ (କିଶୋରୀଙ୍କ ଆଡ଼କୁ ଅନାଇଁ)—ଆଜି ତ ଖୁବ୍ ସେବା । ରାମଲାଲ ଆସି ଭୂମିଷ୍ଠ ହୋଇ ପ୍ରଣାମ କଲେ; ଓ ଅତିଶୟ ଭକ୍ତିଭାବରେ ପଦଧୂଳି ଗ୍ରହଣ କଲେ । ମାଆଙ୍କର ପୂଜା କରିବାକୁ ଯାଉଛନ୍ତି ।

ରାମଲାଲ (ଠାକୁରଙ୍କ ପ୍ରତି)—ତେବେ ମୁଁ ଆସୁଛି !

ଶ୍ରୀରାମକୃଷ୍ଣ—ଓଁ କାଳୀ, ଓଁ କାଳୀ । ସାବଧାନରେ ପୂଜା କର । ମେଷ ବଳି ଦେବାକୁ ହେବ ।

ମହାନିଶା । ପୂଜା ଆରମ୍ଭ ହୋଇଅଛି । ଠାକୁର ଶ୍ରୀରାମକୃଷ୍ଣ ପୂଜା ଦେଖିବାକୁ ଆସିଅଛନ୍ତି । ମାଆଙ୍କ ପାଖକୁ ଯାଇ ଦର୍ଶନ କରୁଛନ୍ତି । ଏଥର ବଳି ହେବ—ଲୋକ ଧାଡ଼ିହୋଇ ଠିଆ ହୋଇଛନ୍ତି । ବଧ୍ୟ ପଶୁର ଉତ୍ସର୍ଗ ହେଲା । ପଶୁକୁ ବଳିଦାନ ପାଇଁ ନେଇଯିବାକୁ ଉଦ୍ୟୋଗ ହେଉଅଛି । ଠାକୁର ଶ୍ରୀରାମକୃଷ୍ଣ ମନ୍ଦିର ତ୍ୟାଗ କରି ନିଜ ଘରକୁ ଫେରି ଆସିଲେ ।

ଠାକୁରଙ୍କର ସେପରି ଅବସ୍ଥା ନାହିଁ । ତେଣୁ ପଶୁବଧ ଦେଖି ପାରିବେ ନାହିଁ, ରାତି ଦୁଇଟା ପର୍ଯ୍ୟନ୍ତ କେହି କେହି ଭକ୍ତ ମା' କାଳୀଙ୍କ ମନ୍ଦିରରେ ବସିଥିଲେ । ହରିପଦ ସେଠାକୁ ଆସି କହିଲେ, ଚାଲନ୍ତୁ, ସେ ଡାକୁଛନ୍ତି, ଖାଇବା ଜିନିଷ ସବୁ ପ୍ରସ୍ତୁତ । ଭକ୍ତମାନେ

ଠାକୁରଙ୍କର ପ୍ରସାଦ ପାଇଲେ ଓ ଯେ ଯେଉଁଠି ପାରିଲେ ସେଠାରେ ଟିକିଏ ଶୋଇପଡ଼ିଲେ ।

ଭୋର ହେଲା; ମାଆଙ୍କର ମଙ୍ଗଳ ଆଳତି ହୋଇଯାଇଛି । ମାଆଙ୍କର ସମ୍ମୁଖରେ ନାଟ ମନ୍ଦିର । ନାଟ ମନ୍ଦିରରେ ଯାତ୍ରା ହେଉଅଛି । ମା' ଯାତ୍ରା ଶୁଣୁଛନ୍ତି । ଠାକୁର ଶ୍ରୀରାମକୃଷ୍ଣ କାଳୀମନ୍ଦିରର ବୃହତ୍ ପ୍ରାଙ୍ଗଣ ଦେଇ ଯାତ୍ରା ଶୁଣିବାକୁ ଆସୁଛନ୍ତି । ମଣି ସଙ୍ଗେ ସଙ୍ଗେ ଆସୁଛନ୍ତି—ଠାକୁରଙ୍କ ପାଖରୁ ବିଦାୟ ନେବେ ।

ଶ୍ରୀରାମକୃଷ୍ଣ—କାହିଁକି ତୁମେ ବର୍ତ୍ତମାନ ଯିବ ?

ମଣି—ଆଜି ଆପଣ ସିଁଥିକୁ ଉପରବେଳା ଯିବେ, ମୋର ମଧ୍ୟ ଯିବାର ଇଚ୍ଛା ଅଛି, ସେଥିପାଇଁ ଥରେ ଘରକୁ ଯାଉଛି ।

କଥା କହୁ କହୁ ମା' କାଳୀଙ୍କ ମନ୍ଦିର ନିକଟରେ ଆସି ଉପସ୍ଥିତ । ଅଦୂରେ ନାଟମନ୍ଦିର, ଯାତ୍ରା ହେଉଅଛି । ମଣି ସୋପାନମୂଳରେ ଭୂମିଷ୍ଠ ହୋଇ ଠାକୁରଙ୍କର ଚରଣ ବନ୍ଦନା କରୁଛନ୍ତି ।

ଠାକୁର କହିଲେ, ''ଆଚ୍ଛା ଆସ । ତୁମେ ମୋ ପାଇଁ ଦୁଇଖଣ୍ଡ ଅଳ୍ପ ଦାମ୍‌ର ଗାମୁଛା ଆଣିବ । ମୁଁ ତାହା ସ୍ନାନ କରିବା ସମୟରେ ବ୍ୟବହାର କରିବି ।



# ଅଷ୍ଟାଦଶ ପରିଚ୍ଛେଦ

## (୧)

## ସିଁଥି ବ୍ରାହ୍ମସମାଜ ପୁନର୍ବାର ଦର୍ଶନ । ଶ୍ରୀଯୁକ୍ତ ବିଜୟକୃଷ୍ଣ ଗୋସ୍ୱାମୀ ଓ ଅନ୍ୟାନ୍ୟ ବ୍ରାହ୍ମଭକ୍ତମାନଙ୍କ ପ୍ରତି ଉପଦେଶ ଏବଂ ସେମାନଙ୍କ ସହିତ ଆନନ୍ଦ ।

### ଶ୍ରୀରାମକୃଷ୍ଣ ସମାଧି ମନ୍ଦିରରେ ।

ପୁଣି ବ୍ରାହ୍ମଭକ୍ତମାନେ ସିଁଥିର ବ୍ରାହ୍ମସମାଜଠାରେ ମିଳିତ ହେଲେ । ଶ୍ରୀ କାଳୀ ପୂଜାର ପରଦିନ, କାର୍ତ୍ତିକ ମାସର ଶୁକ୍ଳ ପ୍ରତିପଦ ତିଥି, ଇଂରାଜୀ ୧୯ ତାରିଖ ଅକ୍ଟୋବର ୧୮୮୪ ଖ୍ରୀଷ୍ଟାବ୍ଦ । ଏଥର ଶରତ ଋତୁରେ ମହୋତ୍ସବ । ଶ୍ରୀଯୁକ୍ତ ବେଣୀମାଧବ ପାଲଙ୍କର ମନୋହର ଉଦ୍ୟାନ ଘରଠାରେ ପୁଣି ବ୍ରାହ୍ମସମାଜର ଅଧିବେଶନ ହେଲା । ପ୍ରାତଃକାଳର ଉପାସନାଦି ହୋଇଯାଇଛି । ଶ୍ରୀଶ୍ରୀପରମହଂସଦେବ ସାଢ଼େ ଚାରିଟା ସମୟରେ ଆସି ଉପସ୍ଥିତ ହେଲେ । ତାଙ୍କର ଗାଡ଼ି ଆସି ଉଦ୍ୟାନ ମଧ୍ୟରେ ଠିଆହେଲା । ସଙ୍ଗେ ସଙ୍ଗେ ଦଳେ ଦଳେ ଭକ୍ତ ଆସି ମଣ୍ଡଳାକାରରେ ତାହାଙ୍କୁ ଘେରିବାକୁ ଲାଗିଲେ । ପ୍ରଧାନ ପ୍ରକୋଷ୍ଠ ମଧ୍ୟରେ ସମାଜର ବେଦୀ ରଚନା ହୋଇଅଛି । ତାହାର ସମ୍ମୁଖରେ ପ୍ରାଙ୍ଗଣ । ସେହି ପ୍ରାଙ୍ଗଣରେ ଠାକୁର ଉପବେଶନ କଲେ । ଏହିପରି ଭକ୍ତଗଣ ଚତୁର୍ଦ୍ଦିଗରେ ତାହାଙ୍କୁ ବେଷ୍ଟନ କରି ବସିଲେ । ବିଜୟ, ତ୍ରୈଲୋକ୍ୟ ଓ ଅନେକ ବ୍ରାହ୍ମଭକ୍ତ ଉପସ୍ଥିତ ହେଲେ । ତନ୍ମଧ୍ୟରେ ବ୍ରାହ୍ମସମାଜଭୁକ୍ତ ଜଣେ ସବ୍‌ଜଜ ମଧ୍ୟ ଅଛନ୍ତି ।

ସମାଜ ଗୃହ ମହୋତ୍ସବ ଉପଲକ୍ଷରେ ବିଚିତ୍ର ଶୋଭା ଧାରଣ କରିଅଛି । କେଉଁଠାରେ ନାନାବର୍ଣ୍ଣର ପତାକା; ମଧ୍ୟେ ମଧ୍ୟେ ହର୍ମ୍ମ୍ୟୋପରି ବା ବାତାୟନ ପଥରେ ନୟନ ରଞ୍ଜନ, ସୁନ୍ଦର ପାଦବ—ବିଭ୍ରମକାରୀ ବୃକ୍ଷପଲ୍ଲବରାଜି । ସମ୍ମୁଖରେ ପୂର୍ବପରିଚିତ ସେହି ସରୋବରର ସ୍ୱଚ୍ଛ ସଲିଳ ମଧ୍ୟରେ ଶରତର ସୁନୀଳ ନଭୋମଣ୍ଡଳ ପ୍ରତିଭାସିତ ହେଉଅଛି । ଉଦ୍ୟାନସ୍ଥିତ ଲାଲ ରଙ୍ଗ ପଥଗୁଡ଼ିକର ଦୁଇ ପାର୍ଶ୍ୱରେ ସେହି ପୂର୍ବପରିଚିତ ଫଳ-ପୁଷ୍ପର ବୃକ୍ଷଶ୍ରେଣୀ । ଆଜି ଠାକୁରଙ୍କର ଶ୍ରୀମୁଖନିଃସୃତ ସେହି ବେଦଧ୍ୱନି ଭକ୍ତମାନେ ପୁଣି ଶୁଣିବାକୁ ପାଇବେ—ଯେଉଁ ଧ୍ୱନି ଆର୍ଯ୍ୟ ଋଷିମାନଙ୍କ ମୁଖରୁ ବେଦାକାରରେ ଏକ ସମୟରେ ବହିର୍ଗତ ହୋଇଥିଲା—ଯେଉଁ ଧ୍ୱନି ପୁଣି ଥରେ ନରରୂପଧାରୀ ପରମ ସନ୍ନ୍ୟାସୀ, ବ୍ରହ୍ମଗତ ପ୍ରାଣ, ଜୀବର ଦୁଃଖରେ କାତର, ଭକ୍ତବତ୍ସଳ, ଭକ୍ତାବତାର ହରି ପ୍ରେମ ବିହ୍ୱଳ ଈଶାଙ୍କର (Jesus) ମୁଖରୁ ତାଙ୍କର ଦ୍ୱାଦଶ ଶିଷ୍ୟ ନିରକ୍ଷର ମତ୍ସ୍ୟଜୀବୀଗଣ ଶୁଣିଲେ, ଯେଉଁ ଧ୍ୱନି ପୁଣ୍ୟକ୍ଷେତ୍ର କୁରୁକ୍ଷେତ୍ରରେ ଭଗବାନ ଶ୍ରୀକୃଷ୍ଣଙ୍କ ମୁଖରୁ ଶ୍ରୀମଦ୍‌ଭଗବଦ୍ ଗୀତାକାରରେ ଏକ ସମୟରେ ବହିର୍ଗତ ହୋଇଥିଲା ଏବଂ ବିନୟ—

ନମ୍ର, ବ୍ୟାକୁଳ, 'ଗୁଡ଼ାକେଶ କୌନ୍ତେୟ' ସାରଥି ବେଶଧାରୀ ମାନବାକାର ସଚ୍ଚିଦାନନ୍ଦ ଗୁରୁଙ୍କ ମୁଖରୁ ଯେଉଁ ମେଘ-ଗମ୍ଭୀର ଧ୍ୱନି ମଧ୍ୟରେ ଏହି କଥାମୃତ ପାନ କରିଥିଲେ ଯଥା —

କବିଂ ପୁରାଣମନୁଶାସିତାର ମଣୋରଣୀୟାଂ ସମନୁ ସ୍ମରେଦ୍ ଯଃ
ସର୍ବସ୍ୱ ଧାତାର ମଚିନ୍ତ୍ୟରୂପମ୍, ଆଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ।।
ପ୍ରୟାଣ-କାଳେ ମନସାଦ୍ଧଚଳନେ, ଭକ୍ତ୍ୟା ଯୁକ୍ତୋ ଯୋଗବଳେନ ଚୈବ ।
ଭ୍ରୁବୋର୍ମଧ୍ୟେ ପ୍ରାଣମାବେଶ୍ୟ ସମ୍ୟକ, ସ ତତ୍ ପରଂ ପୁରୁଷମୁପୈତି ଦିବ୍ୟମ୍ ।।
ଯଦକ୍ଷରଂ ବେଦବିଦୋ ବଦନ୍ତି, ବିଶନ୍ତି ଯଦ ଯତୟୋ ବୀତରାଗାଃ ।
ଯଦିଛନ୍ତୋ ବ୍ରହ୍ମଚର୍ଯ୍ୟଂ ଚରନ୍ତି ତତ୍ ତେ ପଦଂ ସଂଗ୍ରହେଣ ପ୍ରବକ୍ଷ୍ୟେ ।।

ଠାକୁର ଶ୍ରୀରାମକୃଷ୍ଣ ଆସନ ଗ୍ରହଣ କରିବା ପରେ ସମାଜର ସୁରଚିତ ବେଦି ଆଡ଼କୁ ଦୃଷ୍ଟିପାତ କରିବା ମାତ୍ରେ ସଙ୍ଗେ ସଙ୍ଗେ ନତଶିର ହୋଇ ପ୍ରଣାମ କଲେ । ବେଦୀରେ ଶ୍ରୀଭଗବାନଙ୍କର କଥା ହୁଏ — ସେଥିପାଇଁ ସେ ଦେଖୁଅଛନ୍ତି ଯେ, ବେଦୀକ୍ଷେତ୍ର ପୁଣ୍ୟ କ୍ଷେତ୍ର । ଦେଖିଅଛନ୍ତି, ଏଠାରେ ଅଚ୍ୟୁତଙ୍କର କଥା ହୁଏ, ସେଥିପାଇଁ ସର୍ବତୀର୍ଥର ସମାଗମ ହୋଇଅଛି । ଅଦାଲତ ଗୃହ ଦେଖିଲେ ଯେପରି ମୋକଦ୍ଦମା ମନେପଡ଼େ ଓ ଜଜ୍ ମନେପଡ଼େ, ସେହିପରି ଏହି ହରିକଥାର ସ୍ଥାନ ଦେଖି ତାଙ୍କର ଭଗବାନଙ୍କର ଉଦ୍ଦୀପନ ହେଲା ।

ଶ୍ରୀଯୁକ୍ତ ତ୍ରୈଲୋକ୍ୟ ଗୀତ ଗାଇଥିଲେ । ଶ୍ରୀରାମକୃଷ୍ଣ କହିଲେ ଆଚ୍ଛା ସେହି ଗୀତଟି ତୁମର ବେଶ୍, 'ଦେ ମା' ପାଗଲ କରେ: ଏଇଟି ଗାଅ ତ । ସେ ଗାଇଲେ; —

ଆମାୟ ଦେ ମା' ପାଗଲ କ'ରେ (ବ୍ରହ୍ମମୟୀ) ।
ଆର କାଜ ନାଇ ଜ୍ଞାନ ବିଚାରେ ।।
ତୋମାର ପ୍ରେମେର ସୁରା, ପାନେ କର ମାତୋୟାରା,
ଓ ମା' ଭକ୍ତ ଚିତ୍ତହରା ଡୁବାଓ ପ୍ରେମସାଗରେ ।।
ତୋମାର ଏ ପାଗଲା ଗାରଦେ, କେହ ହାସେ କେହ କାନ୍ଦେ,
କେହ ନାଚେ ଆନନ୍ଦ ଭରେ ।
ଈଶା ମୁସା ଶ୍ରୀଚୈତନ୍ୟ, ଓ ମା' ପ୍ରେମେର ଭରେ ଅଚୈତନ୍ୟ,
ହାୟ କବେ ହବ ମା' ଧନ୍ୟ, (ଓମା) ମିଶେ ତା'ର ଭିତରେ ।।
ସ୍ୱର୍ଗେତେ ପାଗଲେର ମେଲା, ଯେମନ ଗୁରୁ ତେମିନି ଚେଲା,
ପ୍ରେମେର ଖେଲା କେ ବୁଝତେ ପାରେ ।
ତୁଇ ପ୍ରେମେ ଉନ୍ମାଦିନୀ, ଓମା ପାଗଲେର ଶିରୋମଣି,
ପ୍ରେମଧନେ କର ମା' ଧନୀ, କାଙ୍ଗାଲ ପ୍ରେମଦାସେରେ ।।

ଗୀତ ଶୁଣୁ ଶୁଣୁ ଠାକୁର ଶ୍ରୀରାମକୃଷ୍ଣଙ୍କର ଭାବାନ୍ତର ହେଲା । ଏକାବେଳକେ

ସମାଧିସ୍ଥ–'ଉପେକ୍ଷିୟା ମହତତ୍ତ୍ୱ, ତ୍ୟାଜି ଚତୁର୍ବିଂଶ ତତ୍ତ୍ୱ, ସର୍ବତତ୍ତ୍ୱାତୀତ ତତ୍ତ୍ୱ ଦେଖି ଆପନି ଆପନେ' । କର୍ମେନ୍ଦ୍ରିୟ, ଜ୍ଞାନେନ୍ଦ୍ରିୟ, ମନ, ବୁଦ୍ଧି ଅହଂକାର ସମସ୍ତ ଯେପରି ପୋଛି ହୋଇଯାଇଛି । ଦେହ ମାତ୍ର ଚିତ୍ର ପୁତ୍ତଳିକା ସଦୃଶ ବିଦ୍ୟମାନ । ଦିନେ ଭଗବାନ ପାଣ୍ଡବମାନଙ୍କର ଏହିପରି ଅବସ୍ଥା ଦେଖି ଯୁଧିଷ୍ଠିର ପ୍ରମୁଖ ଶ୍ରୀକୃଷ୍ଣଗତାନ୍ତରାତ୍ମା ପାଣ୍ଡବଗଣ କ୍ରନ୍ଦନ କରିଥିଲେ । ସେତେବେଳେ ଆର୍ଯ୍ୟକୁଳ ଗୌରବ ଭୀଷ୍ମଦେବ ଶରଶଯ୍ୟାରେ ଶାୟିତ ଥାଇ ଅନ୍ତିମକାଳରେ ଭଗବାନଙ୍କର ଧ୍ୟାନ ନିରତ ଥିଲେ । ସେତେବେଳେ କୁରୁକ୍ଷେତ୍ରରେ ଯୁଦ୍ଧ ଏଇମାତ୍ର ସମାପ୍ତ ହୋଇଯାଇଛି । ସହଜରେ କାନ୍ଦିବାର ଦିନ । ଶ୍ରୀକୃଷ୍ଣଙ୍କର ଏହି ସମାଧି ପ୍ରାପ୍ତ ଅବସ୍ଥା ବୁଝି ନ ପାରି ପାଣ୍ଡବମାନେ କାନ୍ଦିଥିଲେ; ଭାବିଥିଲେ ସେ ବୋଧହୁଏ ଦେହତ୍ୟାଗ କଲେ ।

## (୨)

## ହରି କଥା ପ୍ରସଙ୍ଗରେ । ବ୍ରାହ୍ମସମାଜରେ ନିରାକାରବାଦ ।

କିୟତ୍‌କ୍ଷଣ ପରେ ଠାକୁର ଶ୍ରୀରାମକୃଷ୍ଣ କିଞ୍ଚିତ୍ ପ୍ରକୃତିସ୍ଥ ହୋଇ ଭାବାବସ୍ଥାରେ ବ୍ରାହ୍ମ ଭକ୍ତମାନଙ୍କୁ ଉପଦେଶ ଦେବାକୁ ଲାଗିଲେ । ଏହି ଈଶ୍ୱରୀୟ ଭାବ ଖୁବ୍ ଘନୀଭୂତ, ଯେପରି ବକ୍ତା ଭାବ ବିହ୍ୱଳ ହୋଇ କଅଣ କହୁଛନ୍ତି । ଭାବ କ୍ରମେ କ୍ରମେ କମି ଆସୁଛି, ଅବଶେଷରେ ପୂର୍ବର ଠିକ୍ ସହଜାବସ୍ଥା ।

## 'ମୁଁ ସିଦ୍ଧି ଖାଇବି ।' ଗୀତା ଓ ଅଷ୍ଟସିଦ୍ଧି ।

ଶ୍ରୀରାମକୃଷ୍ଣ (ଭାବସ୍ଥ)—ମା ! କାରଣାନନ୍ଦ ଚାହେଁ ନାହିଁ । ସିଦ୍ଧି ଖାଇବି ।

''ସିଦ୍ଧି କଅଣ ନା ବସ୍ତୁଲାଭ । 'ଅଷ୍ଟସିଦ୍ଧିର ସିଦ୍ଧି ନୁହେଁ । ସେହି ଅଣିମା ଲଘିମାଦି ସିଦ୍ଧିର କଥା କୃଷ୍ଣ ଅର୍ଜୁନଙ୍କୁ କହିଥିଲେ, 'ଭାଇ, ଯଦି ଦେଖ ଯେ, ଅଷ୍ଟସିଦ୍ଧିରୁ ଗୋଟିଏ ସିଦ୍ଧି କାହାର ଅଛି, ତାହାହେଲେ ଜାଣିବ ଯେ, ସେ ବ୍ୟକ୍ତି ମୋତେ ପାଇବ ନାହିଁ ।' କାହିଁକି ନା, ସିଦ୍ଧି ରହିଲେ ହିଁ ଅହଂକାର ରହିବ, ଆଉ ଅହଂକାରର ଲେଶ ରହିଲେ ଭଗବାନ ଲାଭ ହୁଏ ନାହିଁ ।''

## ଈଶ୍ୱର ଲାଭ କଅଣ ?

''ଆଉ ଗୋଟିଏ ଅଛି, ପ୍ରବର୍ତ୍ତକ, ସାଧକ ଓ ସିଦ୍ଧ । ଯେଉଁମାନେ ଈଶ୍ୱରଙ୍କର ଆରାଧନାରେ ପ୍ରବୃତ୍ତ ହୋଇଛନ୍ତି, ସେମାନେ ପ୍ରବର୍ତ୍ତକ ଶ୍ରେଣୀର । ସେପରି ଲୋକ ଟିପା କରନ୍ତି, ତିଳକ ମାଳା ପିନ୍ଧନ୍ତି, ବାହାରେ ଖୁବ୍ ଆଚାର କରନ୍ତି । ସାଧକ କିନ୍ତୁ ଆଗେଇ ଯାଇଛି । ଲୋକ ଦେଖାଣିଆ ଭାବ କମିଯାଇଛି । ସାଧକ ଈଶ୍ୱରଙ୍କୁ ପାଇବା ପାଇଁ ବ୍ୟାକୁଳ ହୁଅନ୍ତି, ଆନ୍ତରିକ ତାଙ୍କୁ ଡାକନ୍ତି, ତାଙ୍କର ନାମ କରନ୍ତି, ତାଙ୍କୁ ସରଳାନ୍ତଃ କରଣରେ

ପ୍ରାର୍ଥନା କରନ୍ତି । ସିଦ୍ଧ କିଏ ? ଯାହାଙ୍କର ନିଶ୍ଚୟାତ୍ମିକା ବୁଦ୍ଧି ହୋଇଛି ଯେ ଈଶ୍ୱର ଅଛନ୍ତି ଓ ସେହି କେବଳ ସବୁ କରୁଅଛନ୍ତି; ଯେ ଈଶ୍ୱରଙ୍କୁ ଦର୍ଶନ କରିଛନ୍ତି । 'ସିଦ୍ଧର ସିଦ୍ଧ' କିଏ ? ଯେ ତାଙ୍କ ସଙ୍ଗରେ ଆଳାପ କରିଛନ୍ତି । କେବଳ ଦର୍ଶନ ନୁହେଁ, କେହି ପିତୃ ଭାବରେ, କେହି ବାତ୍ସଲ୍ୟ ଭାବରେ, କେହି ସଖ୍ୟ ଭାବରେ, କେହି ମଧୁର ଭାବରେ, ତାଙ୍କ ସଙ୍ଗରେ ଆଳାପ କରନ୍ତି ।''

''କାଷ୍ଠରେ ଅଗ୍ନି ନିଶ୍ଚୟ ଅଛି, ଏହି ବିଶ୍ୱାସ; ଆଉ କାଷ୍ଠରୁ ଅଗ୍ନି ବାହାର କରି ଭାତ ରାନ୍ଧି, ଖାଇ, ଶାନ୍ତି ଓ ତୃପ୍ତିଲାଭ କରିବା, ଦୁଇଟି ଭିନ୍ନ ଜିନିଷ ।''

''ଈଶ୍ୱରୀୟ ଅବସ୍ଥାର ଇତି କରାଯାଏ ନାହିଁ । ତାକୁ ବଳି ତାକୁ ବଳି ଅଛି ।''

ଶ୍ରୀରାମକୃଷ୍ଣ (ଭାବସ୍ଥ)—ଏମାନେ ବ୍ରହ୍ମଜ୍ଞାନୀ, ନିରାକାରବାଦୀ । ଏହା ଭଲ ।

(ବ୍ରାହ୍ମ ଭକ୍ତମାନଙ୍କ ପ୍ରତି)—''ଗୋଟାକରେ ଦୃଢ଼ ହୁଅ, ହୁଏତ ସାକାରରେ ନୋହିଲେ ନିରାକାରରେ । ଦୃଢ଼ତା ଆସିଲେ ତେବେ ଈଶ୍ୱର ଲାଭ ହୁଏ, ନଚେତ୍ ହୁଏ ନାହିଁ । ଦୃଢ଼ ହେଲେ ସାକାରବାଦୀ ଈଶ୍ୱର ଲାଭ କରେ, ନିରାକାରବାଦୀ ମଧ ଈଶ୍ୱର ଲାଭ କରିବେ । ମିଶିରିର ରୁଟି ସିଧା ଭାବରେ ଖାଅ କିମ୍ବା ବଙ୍କା ଭାବରେ ଖାଅ, ମିଠା ଲାଗିବ । (ସମସ୍ତଙ୍କର ହାସ୍ୟ) ।''

## ବିଷୟୀର ଈଶ୍ୱର, ବ୍ୟାକୁଳତା ଓ ଈଶ୍ୱର ଲାଭ ।

''କିନ୍ତୁ ଦୃଢ଼ ହେବାକୁ ହେବ, ବ୍ୟାକୁଳ ହୋଇ ତାଙ୍କୁ ଡାକିବାକୁ ହେବ । ବିଷୟୀର ଈଶ୍ୱର କିପରି ଜାଣ ? ଯେପରି ଖୁଡ଼ୀ ବଡ଼ବୋଉର କଳିଗୋଳରୁ ଶୁଣି ପିଲାମାନେ ଖେଳିବା ସମୟରେ ପରସ୍ପର କହନ୍ତି, 'ଈଶ୍ୱରଙ୍କ ରାଣ' । ଆଉ ଯେପରି କୌଣସି ଫିଟ୍ ଫାଟ୍ ବାବୁ ପାନ ଚୋବାଇ ହାତରେ ଷ୍ଟିକ୍ (stick) ଧରି ବଗିଚାରେ ବୁଲୁ ବୁଲୁ ଗୋଟିଏ ଫୁଲ ତୋଳି ବନ୍ଧୁକୁ କହେ, 'ଈଶ୍ୱର କି beautiful (ସୁନ୍ଦର) -ଫୁଲ କରିଛନ୍ତି ।' କିନ୍ତୁ ବିଷୟୀର ଏପରି ଭାବ କ୍ଷଣିକ, ଯେପରି ତପ୍ତ ଲୁହା ଉପରେ ଜଳର ଛିଟା ।''

''ଗୋଟାକ ଉପରେ ଦୃଢ଼ ହେବାକୁ ହେବ। ବୁଡ଼ ଦିଅ । ବୁଡ଼ ନଦେଲେ ସମୁଦ୍ର ଭିତରୁ ରତ୍ନ ମିଳେ ନାହିଁ । ଜଳର ଉପରେ ଉପରେ କେବଳ ଭାସିଲେ ମିଳେ ନାହିଁ ।''

ଏହା କହି ଠାକୁର ଶ୍ରୀରାମକୃଷ୍ଣ ଯେଉଁ ଗୀତ ଗାଇ ଗାଇ କେଶବାଦି ଭକ୍ତମାନଙ୍କର ମନ ମୁଗ୍‌ଧ କରନ୍ତି, ସେହି ଗୀତ ମଧୁର କଣ୍ଠରେ ଗାଇବାକୁ ଲାଗିଲେ । ସମସ୍ତଙ୍କୁ ବୋଧହେଲା, ଯେପରି ସେମାନେ ସ୍ୱର୍ଗଧାମରେ ବା ବୈକୁଣ୍ଠରେ ବସିଛନ୍ତି ।

ବୁଡ଼ଦିଅ ରୂପସାଗରେ ମୋହର ମନ ।
ତଳେ, ପାତାଳେ ପାଇବ ପ୍ରେମ-ରତ୍ନଧନ ॥
ଖୋଜିଲେ ପାଇବ ଅନ୍ତରରେ ବୃନ୍ଦାବନ ।
ଦିକ୍ ଦିକ୍ କରି ହୃଦୟ ଜଳିବ ଜ୍ଞାନବତୀ ଅନୁକ୍ଷଣ ॥
ମାଟି ଉପରେ ଚଳାଏ ଡଙ୍ଗା କିଏ ସେ ଜନ ।
କବୀର କହେ ଶୁଣ ଶୁଣ, ଧ୍ୟାୟ ଗୁରୁ ଶ୍ରୀଚରଣ ॥

## (୩)

## ବ୍ରାହ୍ମସମାଜ ଓ ଈଶ୍ୱରଙ୍କର ଐଶ୍ୱର୍ଯ୍ୟ ବର୍ଣ୍ଣନା ।

ଶ୍ରୀରାମକୃଷ୍ଣ—ବୁଡ଼ି ଯାଅ । ଈଶ୍ୱରଙ୍କୁ ଭଲ ପାଇବାକୁ ଶିଖ । ତାଙ୍କର ପ୍ରେମରେ ମଗ୍ନ ହୁଅ । ଦେଖ, ତୁମ୍ଭମାନଙ୍କର ଉପାସନା ଶୁଣିଛି । କିନ୍ତୁ ତୁମ୍ଭମାନଙ୍କର ବ୍ରାହ୍ମସମାଜରେ ଈଶ୍ୱରଙ୍କର ଐଶ୍ୱର୍ଯ୍ୟ ଏତେ ବର୍ଣ୍ଣନା କର କାହିଁକି ? ଈଶ୍ୱର, ତୁମେ ଆକାଶ କରିଅଛ, ବଡ଼ ବଡ଼ ସମୁଦ୍ର କରିଅଛ, ଚନ୍ଦ୍ରଲୋକ, ସୂର୍ଯ୍ୟଲୋକ, ନକ୍ଷତ୍ରଲୋକ ସବୁ କରିଛ, ଏସବୁ କଥାରେ ଆମର ଦରକାର କଅଣ ?

"ସବୁ ଲୋକ ବାବୁଙ୍କର ଉଦ୍ୟାନ ଦେଖିବା ମାତ୍ରେ ଅବାକ୍—କିପରି ଗଛ, କିପରି –ଫୁଲ, କିପରି ପୋଖରୀ, କିପରି ବୈଠକଖାନା, କିପରି ତାହା ଭିତରେ ଛବି, ଏହିସବୁ ଦେଖିବା ମାତ୍ରେ ଅବାକ୍ ! କିନ୍ତୁ କାହିଁ; ଉଦ୍ୟାନର ମାଲିକଙ୍କୁ ଖୋଜନ୍ତି କେତେ ଜଣ ? ମାଲିକଙ୍କୁ ଖୋଜନ୍ତି ଜଣେ ଦୁଇଜଣ । ଈଶ୍ୱରଙ୍କୁ ବ୍ୟାକୁଳ ହୋଇ ଖୋଜିଲେ ତାଙ୍କର ଦର୍ଶନ ମିଳେ, ତାଙ୍କ ସଙ୍ଗରେ ଆଳାପ ହୁଏ, କଥା ହୁଏ, ଯେପରି ମୁଁ ତୁମମାନଙ୍କ ସଙ୍ଗରେ କଥା କହୁଛି । ସତ୍ୟ କହୁଛି ଦର୍ଶନ ହୁଏ ! ଏକଥା କାହାକୁ ବା କହୁଛି, କିଏ ବା ବିଶ୍ୱାସ କରିବ !"

## ଶାସ୍ତ୍ର ନା ପ୍ରତ୍ୟକ୍ଷ (The Law or Revelation)

ଶ୍ରୀରାମକୃଷ୍ଣ—ଶାସ୍ତ୍ର ଭିତରେ କ'ଣ ଈଶ୍ୱର ମିଳନ୍ତି ? ଶାସ୍ତ୍ର ପଢ଼ି କେବଳ ଅସ୍ତିମାତ୍ର ବୋଧହୁଏ । କିନ୍ତୁ ନିଜେ ବୁଡ଼ ନଦେଲେ ଈଶ୍ୱରଙ୍କୁ ଦେଖାମିଳେ ନାହିଁ । ବୁଡ଼ଦେବା ପରେ, ସେ ନିଜେ ଜଣାଇଦେଲେ ତେବେ ସବୁ ସନ୍ଦେହ ଦୂର ହୁଏ । ହଜାରେ ବହି ପଢ଼, ମୁଖରେ ହଜାର ଶ୍ଳୋକ ବୋଲ, ବ୍ୟାକୁଳ ହୋଇ ତାଙ୍କୁ ନ ଡାକି ପାରିଲେ ତାଙ୍କୁ ଧରି ପାରିବ ନାହିଁ । ତୁଚ୍ଛା ପାଣ୍ଡିତ୍ୟରେ ମନୁଷ୍ୟକୁ ଭୁଲାଇ ପାରିବ, କିନ୍ତୁ ତାଙ୍କୁ ପାରିବ ନାହିଁ ।

"ଶାସ୍ତ୍ର, ବହି, ଏସବୁଥିରେ କ'ଣ ହେବ ? ତାଙ୍କ କୃପା ନ ହେଲେ କିଛି ହେବ ନାହିଁ । ଯେଉଁଥିରେ ତାଙ୍କର କୃପା ହେବ, ବ୍ୟାକୁଳ ହୋଇ ତା'ର ଚେଷ୍ଟା କର । କୃପା ହେଲେ ତାଙ୍କର ଦର୍ଶନ ହେବ । ସେ ତୁମ୍ଭମାନଙ୍କ ସଙ୍ଗରେ କଥା କହିବେ ।"

## ବ୍ରାହ୍ମସମାଜ ଓ ସାମ୍ୟ । 'ଈଶ୍ୱରଙ୍କର ବୈଷମ୍ୟ ଦୋଷ' ।

ସଦରଓ୍ୱାଲା—ମହାଶୟ, ତାଙ୍କ କୃପା କ'ଣ ଜଣଙ୍କ ଉପରେ ବେଶି ଆଉ ଜଣଙ୍କ ଉପରେ କମ୍ ? ତାହାହେଲେ ତ ଈଶ୍ୱରଙ୍କର ବୈଷମ୍ୟ—ଦୋଷ ରହେ ।

ଶ୍ରୀରାମକୃଷ୍ଣ—ସେ କଅଣ ! ଘୋଡ଼ାଟା ଯାହା ଆଉ ସରାଟା ମଧ ତାହା ! ତୁମେ ଯାହା କହୁଛ, ଈଶ୍ୱର ବିଦ୍ୟାସାଗର ଏହି କଥା କହିଥିଲେ । କହିଲେ, ମହାଶୟ,

ସେ କଅଣ କାହାକୁ ବେଶି ଶକ୍ତି ଦେଇଛନ୍ତି, କାହାରିକୁ କମ୍ ଶକ୍ତି ଦେଇଛନ୍ତି ? ମୁଁ କହିଲି, ବିଭୁରୂପରେ ସେ ସମସ୍ତଙ୍କ ଭିତରେ ଅଛନ୍ତି—ମୋ ଭିତରେ ଯେପରି, ପିମ୍ପୁଡ଼ିଟିର ଭିତରେ ମଧ୍ୟ ସେହିପରି । କିନ୍ତୁ ଶକ୍ତିବିଶେଷ ଅଛି । ଯଦି ସମସ୍ତେ ସମାନ ହେବେ, ତେବେ ଈଶ୍ୱର ବିଦ୍ୟାସାଗର ନାମ ଶୁଣି ତୁମକୁ ଆମ୍ଭେମାନେ ଦେଖିବାକୁ ଆସିଛୁ କାହିଁକି ? ତୁମର କ'ଣ ଦୁଇଟା ସିଙ୍ଘ ବାହାରିଛି, ତେଣୁ ଦେଖିବାକୁ ଆସିଛୁ । ତାହା ନୁହେଁ, ତୁମେ ଦୟାଳୁ, ତୁମେ ପଣ୍ଡିତ ଏହିସବୁ ଗୁଣ ତୁମର ଅନ୍ୟ ଅପେକ୍ଷା ଅଧିକ ଅଛି, ସେଥିପାଇଁ ତୁମର ଏତେ ନାମ । ଦେଖୁନା, ଏପରି ଲୋକ ଅଛନ୍ତି ଯେ, ସେ ଏକାକୀ ଶହେ ଲୋକଙ୍କୁ ହରାଇ ପାରନ୍ତି, ପୁଣି ଏପରି ଲୋକ ଅଛନ୍ତି, ଜଣଙ୍କୁ ଭୟ କରି ପଳାନ୍ତି ।

"ଯଦି ଶକ୍ତି ବିଶେଷ ନ ହୋଇଥାଆନ୍ତା, ଲୋକେ କେଶବଙ୍କୁ ଏତେ ମାନନ୍ତେ କାହିଁକି ?"

"ଗୀତାରେ ଅଛି, ଯାହାଙ୍କୁ ଅନେକ ଲୋକ ମାନନ୍ତି ଗଣନ୍ତି, ତାଙ୍କ ବିଦ୍ୟା ପାଇଁ ହେଉ, ଗାଉଣା ବାଜଣା ପାଇଁ ହେଉ, ବକ୍ତୃତା ଦେବାପାଇଁ ହେଉ ବା ଅନ୍ୟକିଛି ପାଇଁ ହେଉ—ନିଶ୍ଚୟ ଜାଣିବ, ତାଙ୍କଠାରେ ଈଶ୍ୱରଙ୍କର ବିଶେଷ ଶକ୍ତି ନିହିତ ଅଛି ।"

ବ୍ରାହ୍ମଭକ୍ତ (ସଦରୱାଲାଙ୍କ ପ୍ରତି)—ଯାହା କହୁଛନ୍ତି, ମାନି ନିଅନ୍ତୁ ନା ।

ଶ୍ରୀରାମକୃଷ୍ଣ (ବ୍ରାହ୍ମଭକ୍ତଙ୍କ ପ୍ରତି)—ତୁମେ କିପରି ଲୋକ ହେ । କଥାରେ ବିଶ୍ୱାସ ନ କରି ଖାଲି ମାନି ନେବାଟା ହେଉଛି କପଟତା, ତୁମକୁ ଦେଖୁଛି ଯେପରି ନକଲି କାଚ !

ବ୍ରାହ୍ମଭକ୍ତଟି ଅତିଶୟ ଲଜ୍ଜିତ ହେଲେ ।

## (୪)

## ବ୍ରାହ୍ମସମାଜ, ଶ୍ରୀଯୁକ୍ତ କେଶବ ଓ ନିର୍ଲିପ୍ତ ସଂସାର; ସଂସାର ତ୍ୟାଗ ।

ସଦରୱାଲା—ମହାଶୟ, ସଂସାର କ'ଣ ତ୍ୟାଗ କରିବାକୁ ହେବ ?

ଶ୍ରୀରାମକୃଷ୍ଣ—ନା, ତୁମେମାନେ କାହିଁକି ତ୍ୟାଗ କରିବ ? ସଂସାରରେ ରହି ମଧ୍ୟ ହୋଇପାରେ । ତେବେ ଆଗେ କିଛିଦିନ ନିର୍ଜନରେ ରହିବାକୁ ହୁଏ । ନିର୍ଜନରେ ରହି ଈଶ୍ୱରଙ୍କ ସାଧନା କରିବାକୁ ହୁଏ । ଘର ପାଖରେ ଏପରି ଗୋଟିଏ ବସା କରିବାକୁ ହେବ, ଯେଉଁଠାରେ ରହି ଘରକୁ ଆସି ଥରେ ଭାତଖାଇ ଯାଇପାର । କେଶବ ସେନ୍, ପ୍ରତାପ, ଏମାନେ ସବୁ କହିଥିଲେ, ମହାଶୟ, ଆମେମାନେ ଜନକରାଜାଙ୍କ ପରି । ମୁଁ କହିଲି, ଜନକରାଜା ଏପରି ମୁହଁରେ କହିଲେ ହେବ ନାହିଁ । ଜନକରାଜା ଏପରି ତଳକୁ ମୁଣ୍ଡ କରି ଆଗେ ନିର୍ଜନରେ କେତେ ତପସ୍ୟା କରିଥିଲେ । ତୁମେମାନେ କିଛି କର, ତେବେ ତ ଜନକରାଜା ହେବ । ଅମୁକ ଖୁବ୍ ଚଡ୍ ଚଡ୍ କରି ଇଂରାଜୀ ଲେଖିପାରେ; ତାହା କଅଣ ଏକାବେଳକେ ଲେଖିପାରିଥିଲା ? ସେ ଗରିବର ପିଲା, ଆଗେ ଜଣକଙ୍କର ଘରେ ରହି ତାଙ୍କର ରାନ୍ଧିଦିଏ ଆଉ ଗଣ୍ଡିଏ ଗଣ୍ଡିଏ ଖାଏ, ଅନେକ କଷ୍ଟରେ ଲେଖାପଢ଼ା ଶିଖିଥିଲା, ସେଥିପାଇଁ ବର୍ତ୍ତମାନ ଚଡ୍ ଚଡ୍ କରି ଲେଖିପାରେ ।

"କେଶବ ସେନଙ୍କୁ ଆଉ ମଧ୍ୟ କହିଥିଲି, ନିର୍ଜନକୁ ନ ଗଲେ, କଠିନ ରୋଗ ଛାଡ଼ିବ କିପରି ? ରୋଗଟି ହେଉଛି ବିକାର । ପୁଣି ଯେଉଁ ଘରେ ବିକାରୀ ରୋଗୀ, ସେହି ଘରେ ହିଁ ତେନ୍ତୁଳି ଆଚାର, ଆଉ ପାଣି ମାଠିଆ । ତେବେ ରୋଗ ଛାଡ଼ିବ କିପରି ? ତେନ୍ତୁଳି ଆଚାର—ହେଇ ଦେଖ, କହୁ କହୁ ମୋ ଜିଭରେ ଲାଳ ଆସୁଛି । (ସମସ୍ତଙ୍କର ହାସ୍ୟ) । ସମ୍ମୁଖରେ ରହିଲେ କ'ଣ ହୁଏ, ସମସ୍ତେ ତ ଜାଣ । ସ୍ତ୍ରୀଲୋକ ପୁରୁଷ ପକ୍ଷରେ ଏହି ତେନ୍ତୁଳି ଆଚାର, ପୁଣି ରୋଗ—ବାସନା ପାଣିମାଠିଆ । ବିଷୟ ତୃଷ୍ଣାର ଶେଷ ନାହିଁ, ପୁଣି ଏହି ବିଷୟୀ ରୋଗୀର ଘରେ । ଏଥିରେ କ'ଣ ବିକାର ରୋଗ ଛାଡ଼େ ? କେତେକ ଦିନ ଅନ୍ୟ ଜାଗାରେ ରହିବାକୁ ହୁଏ, ଯେଉଁଠାରେ ତେନ୍ତୁଳି ଆଚାର ନାହିଁ, ପାଣି ମାଠିଆ ନାହିଁ । ତା'ପରେ ନୀରୋଗ ହୋଇ ପୁଣି ସେହି ଘରକୁ ଆସିଲେ ଆଉ ଭୟ ନାହିଁ । ତାଙ୍କୁ ଲାଭ କରି ସଂସାରରେ ଆସି ରହିଲେ ଆଉ କାମିନୀ-କାଞ୍ଚନ କିଛି କରିପାରେ ନାହିଁ । ସେତେବେଳେ ଜନକ ପରି ନିର୍ଲିପ୍ତ ହୋଇପାରିବ ।"

"କିନ୍ତୁ ପ୍ରଥମ ଅବସ୍ଥାରେ ସାବଧାନ ରହିବା ଦରକାର । ଖୁବ୍ ନିର୍ଜନରେ ରହି ସାଧନ କରିବା ଦରକାର । ଅଶ୍ୱତ୍ଥ ଗଛ ଯେତେବେଳେ ଚାରାବସ୍ଥାରେ ଥାଏ, ସେତେବେଳେ ଚତୁର୍ଦ୍ଦିଗରେ ବାଡ଼ ଦିଅନ୍ତି, ତା' ନ ହେଲେ ଛେଳି ଗୋରୁ ନଷ୍ଟ କରିବେ । କିନ୍ତୁ ଗଣ୍ଡି ମୋଟା ହୋଇଗଲେ ଆଉ ବାଡ଼ ଦରକାର ହୁଏ ନାହିଁ । ହାତୀ ବାନ୍ଧିଦେଲେ ମଧ୍ୟ ଗଛର କିଛି କ୍ଷତି ହୁଏନାହିଁ । ଯଦି ନିର୍ଜନରେ ସାଧନ କରି, ଈଶ୍ୱରଙ୍କ ପାଦପଦ୍ମରେ ଭକ୍ତିଲାଭ କରି, ଶକ୍ତି ଅର୍ଜନ କରି, ଘରକୁ ଫେରି ସଂସାର କର, ତାହାହେଲେ କାମିନୀ-କାଞ୍ଚନ ତୁମର କିଛି କରିପାରିବ ନାହିଁ ।"

"ନିର୍ଜନରେ ଦହି ବସାଇ ଲହୁଣୀ ବାହାର କରିବାକୁ ହୁଏ । ଜ୍ଞାନ ଭକ୍ତି ରୂପ ଲହୁଣୀ ଯଦି ଥରେ ମନ ରୂପ ଦୁଧରୁ ବାହାର କରାଯାଏ, ତାହାହେଲେ ସଂସାର ରୂପ ଜଳ ଉପରେ ରଖିଲେ ନିର୍ଲିପ୍ତ ହୋଇ ଭାସିବ । କିନ୍ତୁ ମନକୁ କଞ୍ଚା ଅବସ୍ଥାରେ ଦୁଧ ଅବସ୍ଥାରେ, ଯଦି ସଂସାର ରୂପ ଜଳ ଉପରେ ରଖ, ତାହା ହେଲେ ଦୁଧରେ ଜଳ ମିଶିଯିବ । ସେତେବେଳେ ଆଉ ମନ ନିର୍ଲିପ୍ତ ହୋଇ ଭାସିପାରିବ ନାହିଁ ।"

"ଈଶ୍ୱର ଲାଭ କରିବାକୁ ହେଲେ ସଂସାରରେ ରହି, ଏକ ହାତରେ ଈଶ୍ୱରଙ୍କର ପାଦପଦ୍ମ ଧରି ରହିବ, ଅନ୍ୟ ଏକ ହାତରେ କାର୍ଯ୍ୟ କରିବ । ଯେତେବେଳେ କାର୍ଯ୍ୟରୁ ଅବସର ମିଳିବ, ସେତେବେଳେ ଦୁଇ ହାତରେ ହିଁ ଈଶ୍ୱରଙ୍କର ପାଦପଦ୍ମ ଧରି ରହିବ, ସେତେବେଳେ ନିର୍ଜନରେ ବାସ କରି, କେବଳ ତାଙ୍କର ଚିନ୍ତା ଆଉ ସେବା କରିବ ।"

ସଦରଓ୍ୱାଲା (ଆନନ୍ଦିତ ହୋଇ)—ମହାଶୟ, ଏ ଅତି ସୁନ୍ଦର କଥା ! ନିର୍ଜନରେ ସାଧନ ନିଶ୍ଚୟ ଦରକାର । କିନ୍ତୁ ଏକଥା ଆମ୍ଭେମାନେ ଭୁଲିଯାଉ । ମନେକରୁ ଏକାବେଳକେ ଜନକରାଜା ହୋଇପଡ଼ିଛୁ ! (ଶ୍ରୀରାମକୃଷ୍ଣ ଓ ସମସ୍ତଙ୍କର ହାସ୍ୟ) । ସଂସାର ତ୍ୟାଗର ଯେ ପ୍ରୟୋଜନ ନାହିଁ । ଘରେ ରହି ମଧ୍ୟ ଈଶ୍ୱର ଲାଭ ହୁଏ, ଏକଥା ଶୁଣି ମୋର ଶାନ୍ତି ଓ ଆନନ୍ଦ ହେଲା ।

ଶ୍ରୀରାମକୃଷ୍ଣ—ତୁମ୍ଭମାନଙ୍କୁ କାହିଁକି ତ୍ୟାଗ କରିବାକୁ ହେବ ? ଯେତେବେଳେ ଯୁଦ୍ଧ କରିବାକୁ ହେବ, କିଲ୍ଲାରେ ରହି ଯୁଦ୍ଧ କରିବା ଭଲ । ଇନ୍ଦ୍ରିୟମାନଙ୍କ ସଙ୍ଗରେ ଯୁଦ୍ଧ କରିବାକୁ ହେବ; କ୍ଷୁଧା ତୃଷ୍ଣା ଏମାନଙ୍କ ସଙ୍ଗରେ ଯୁଦ୍ଧ କରିବାକୁ ହେବ । ଏ ଯୁଦ୍ଧ ସଂସାରରେ ରହି କରିବା ଭଲ । ପୁଣି କଳିରେ ଅନ୍ନଗତ ପ୍ରାଣ, ହୁଏତ ଖାଇବାକୁ ପାଇଲ ନାହିଁ, ସେତେବେଳେ ଈଶ୍ୱରଙ୍କୁ ଭୁଲିଯିବ । ଜଣେ ତା'ର ସ୍ତ୍ରୀକୁ କହିଲା, 'ମୁଁ ସଂସାର ତ୍ୟାଗ କରି ଚାଲିଯିବି ।' ସ୍ତ୍ରୀଟି ଟିକିଏ ଜ୍ଞାନୀ ଥିଲା । ସେ ତାକୁ କହିଲା, 'କାହିଁକି ତୁମେ ଏଣେ ତେଣେ ଘୁରିବୁଲିବ ? ଯଦି ପେଟ ପାଇଁ ଦଶ ଘର ବୁଲିବାକୁ ନ ହୁଏ, ତେବେ ଯାଅ । ତାହା ଯଦି ହୁଏ, ବରଂ ଏହି ଏକ ଘର ଭଲ ।

''ତୁମେମାନେ କାହିଁକି ତ୍ୟାଗ କରିବ ? ଘରେ ବରଂ ସୁବିଧା । ଆହାର ପାଇଁ ଭାବିବାକୁ ହେବ ନାହିଁ । ନିଜ ସ୍ତ୍ରୀ ସଙ୍ଗରେ ବାସ, ସେଥିରେ ଦୋଷ ନାହିଁ । ଶରୀରର ଯେତେବେଳେ ଯେଉଁଟି ଦରକାର ତାହା ପାଖରେ ପାଇବ । ରୋଗ ହେଲେ ସେବା କରିବାର ଲୋକ ପାଖରେ ପାଇବ ।''

''ଜନକ, ବ୍ୟାସ, ବଶିଷ୍ଠ ଏମାନେ ଜ୍ଞାନଲାଭ କରି ସଂସାରରେ ଥିଲେ । ଏମାନେ ଦୁଇଖଣ୍ଡ ତରବାରୀ ଘୁରାଉଥିଲେ । ଖଣ୍ଡେ ଜ୍ଞାନର ଆଉ ଖଣ୍ଡେ କର୍ମର ।''

## ଜ୍ଞାନର ଲକ୍ଷଣ ।

ସଦରଓ୍ୱାଲା—ମହାଶୟ ! ଜ୍ଞାନ ଯେ ହୋଇଛି, ତାହା କିପରି ଜାଣିବୁ ?

ଶ୍ରୀରାମକୃଷ୍ଣ—ଜ୍ଞାନ ହେଲେ ସେ (ଈଶ୍ୱର) ଆଉ ଦୂରରେ ବୋଲି ମନେ ହୁଏ ନାହିଁ । ସେ ଆଉ ସେ ବୋଲି ବୋଧ ହୁଏ ନାହିଁ । ସେତେବେଳେ ଏ ହୃଦୟ ମଧ୍ୟରେ ତାଙ୍କୁ ଦେଖିହୁଏ । ସେ ସମସ୍ତଙ୍କର ଭିତରେ ଅଛନ୍ତି, ଯେ ଖୋଜେ ସେ ପାଏ ।

ସଦରଓ୍ୱାଲା—ମହାଶୟ, ମୁଁ ପାପୀ, କିପରି କହିବି ଯେ, ସେ ମୋ ଭିତରେ ଅଛନ୍ତି ?

## ବ୍ରାହ୍ମସମାଜ, ଖ୍ରୀଷ୍ଟଧର୍ମ ଓ ପାପବାଦ ।

ଶ୍ରୀରାମକୃଷ୍ଣ (ସଦରଓ୍ୱାଲଙ୍କ ପ୍ରତି)-ଏଇ କେବଳ ତୁମ୍ଭମାନଙ୍କର ପାପ ଆଉ ପାପ ! ଏସବୁ ବୋଧହୁଏ ଖ୍ରୀଷ୍ଟାନୀ ମତ । ମୋତେ ଜଣେ ଖଣ୍ଡେ ବହି ଦେଲେ (Bible), ପଢ଼ା ଟିକିଏ ଶୁଣିଲି, ସେଥିରେ କେବଳ ଏହି ଏକ କଥା ! ପାପ ଆଉ ପାପ । ମୁଁ ତାଙ୍କର ନାମ କରିଛି, ଈଶ୍ୱର ବା ରାମ ବା ହରି କହିଛି—ମୋର ପୁଣି ପାପ ! ଏହିପରି ବିଶ୍ୱାସ ରହିବା ଉଚିତ ! ନାମ ମହାତ୍ମ୍ୟରେ ବିଶ୍ୱାସ ରହିବା ଦରକାର ।

ସଦରଓ୍ୱାଲା—ମହାଶୟ ! କିପରି ଏହି ବିଶ୍ୱାସ ହୁଏ ?

ଶ୍ରୀରାମକୃଷ୍ଣ—ତାଙ୍କ ପ୍ରତି ଅନୁରାଗ ଆଣ । ତୁମର ଗୀତରେ ମଧ୍ୟ ଅଛି, 'ପ୍ରଭୁ ! ବିନେ ଅନୁରାଗ, କରେ ଯଜ୍ଞ ଯାଗ, ତୋମାରେ କି ଯାୟ ଜାନା ।' ଯେଉଁଥିରେ ଏପରି ଅନୁରାଗ ଏବଂ ଈଶ୍ୱରଙ୍କ ପ୍ରତି ଶ୍ରଦ୍ଧା ଜାତହୁଏ, ସେଥିପାଇଁ ତାଙ୍କ ପାଖରେ ଗୋପନରେ

ବ୍ୟାକୁଳ ହୋଇ ପ୍ରାର୍ଥନା କର ଆଉ କାନ୍ଦ । ସ୍ତ୍ରୀର ବେରାମ ହେଲେ, କି ଟଙ୍କା ଲୋକସାନ୍ ହେଲେ କି ଚାକିରି ପାଇଁ, ଲୋକମାନେ ବ୍ୟାକୁଳରେ କେତେ କାନ୍ଦନ୍ତି, ଈଶ୍ୱରଙ୍କ ପାଇଁ କିଏ କାନ୍ଦୁଛି କହ ଦେଖି ?

## (୫)

## ଆମୋକ୍ତାରୀ ଦିଅ—ଗୃହସ୍ଥର କର୍ତ୍ତବ୍ୟ କେତେଦିନ ?

ତ୍ରୈଲୋକ୍ୟ—ମହାଶୟ, ଏହାଙ୍କର ଏତେ ସମୟ କାହିଁ ? ସାହେବଙ୍କ ପାଖରେ ଚାକିରୀ କରିବାକୁ ହୁଏ ।

ଶ୍ରୀରାମକୃଷ୍ଣ (ସଦରଓ୍ୱାଲଙ୍କ ପ୍ରତି)—ତେବେ ତାଙ୍କୁ ଅମୋକ୍ତାରୀ ଦିଅ । ଭଲ ଲୋକ ଉପରେ ଯଦି କେହି ଭାର ଦିଏ, ସେ ଲୋକ କଅଣ ତା'ର ମନ୍ଦ କରେ ? ତାଙ୍କ ଉପରେ ବିଶ୍ୱାସ ରଖି ସବୁ ଭାର ଦେଇ ତୁମେ ନିଶ୍ଚିନ୍ତ ହୋଇ ବସିରହ । ସେ ଯେଉଁ କାର୍ଯ୍ୟ କରିବାକୁ ଦେଇଛନ୍ତି, ତାହା ହିଁ କର ।

''ବିରାଡ଼ି ଛୁଆର ହିସାବୀ ବୁଦ୍ଧି ନାହିଁ, ମାଆ ମାଆ କରେ । ମାଆ ଯଦି ହେଁସରେ ରଖେ ସେହିଠାରେ ପଡ଼ିଥାଏ । କେବଳ ମ୍ୟାଉଁ ମ୍ୟାଉଁ କରି ଡାକେ । ପୁଣି ମାଆ ଯେତେବେଳେ ଗୃହସ୍ଥର ବିଛଣା ଉପରେ ରଖେ, ସେତେବେଳେ ମଧ୍ୟ ସେହି ଭାବ । ମା' ମା' କରେ ।''

ସଦରଓ୍ୱାଲା—ଆମ୍ଭେମାନେ ଗୃହସ୍ଥ, କେତେ ଦିନ ଏସବୁ କର୍ତ୍ତବ୍ୟ କରିବାକୁ ହେବ ?

ଶ୍ରୀରାମକୃଷ୍ଣ—ତୁମ୍ଭମାନଙ୍କର ଅବଶ୍ୟ କର୍ତ୍ତବ୍ୟ ଅଛି । ପିଲାମାନଙ୍କୁ ମନୁଷ୍ୟ କରିବାକୁ ହେବ—ସ୍ତ୍ରୀର ଭରଣପୋଷଣ କରିବାକୁ ହେବ ଓ ନିଜର ଅବର୍ତ୍ତମାନରେ ସ୍ତ୍ରୀର ଭରଣ ପୋଷଣର ଯୋଗାଡ଼ କରି ରଖିବାକୁ ହେବ । ତାହା ଯଦି ନକର, ତୁମେ ନିର୍ଦ୍ଦୟ । ଶୁକଦେବାଦି ଦୟା ରଖିଥିଲେ । ଯାହାର ଦୟା ନାହିଁ, ସେ ମନୁଷ୍ୟ ନୁହେଁ ।

ସଦରଓ୍ୱାଲା—ସନ୍ତାନ ପ୍ରତିପାଳନ କେତେଦିନ ?

ଶ୍ରୀରାମକୃଷ୍ଣ—ସାବାଳକ ହେବା ପର୍ଯ୍ୟନ୍ତ । ପକ୍ଷୀ ବଡ଼ ହେଲେ ଯେତେବେଳେ ସେ ଆପଣାର ଭାର ନେଇପାରେ, ସେତେବେଳେ ତାକୁ ତା'ର ମାଆ ଅଣ୍ଟରେ ଖୁମ୍ପେ, ପାଖକୁ ଆସିବାକୁ ଦିଏ ନାହିଁ । (ସମସ୍ତଙ୍କର ହାସ୍ୟ) ।

## ଗୃହସ୍ଥର କର୍ତ୍ତବ୍ୟ । ଜ୍ଞାନୋନ୍ମାଦ ଓ କର୍ତ୍ତବ୍ୟ ।

ସଦରଓ୍ୱାଲା—ସ୍ତ୍ରୀ ପ୍ରତି କି କର୍ତ୍ତବ୍ୟ ?

ଶ୍ରୀରାମକୃଷ୍ଣ—ତୁମେ ବଞ୍ଚି ଥାଉ ଥାଉ ଧର୍ମୋପଦେଶ ଦେବ, ଭରଣପୋଷଣ କରିବ । ଯଦି ସତୀ ସ୍ତ୍ରୀ ହୁଏ, ତୁମର ଦେହ ତ୍ୟାଗ ପରେ ତା' ପାଇଁ ଖାଦ୍ୟ ଯୋଗାଡ଼ କରିଯିବାକୁ ହେବ ।

"ତେବେ ଜ୍ଞାନୋନ୍ମାଦ ହେଲେ ଆଉ କର୍ତ୍ତବ୍ୟ ରହେନାହିଁ । ସେତେବେଳେ କାଲି ପାଇଁ ତୁମେ ନ ଭାବିଲେ ମଧ୍ୟ ଈଶ୍ୱର ଭାବନ୍ତି । ଜ୍ଞାନୋନ୍ମାଦ ହେଲେ ସେ ତୁମ ସ୍ତ୍ରୀଙ୍କ ପାଇଁ ଭାବିବେ । ଯେତେବେଳେ ଜମିଦାର ନାବାଳକ ପିଲା ରଖି ମରିଯାଆନ୍ତି, ସେତେବେଳେ ଜଣେ ମୁରବୀ ସେହି ପିଲାର ଭାର ନିଅନ୍ତି । (ସଦରୱାଲାଙ୍କ ପ୍ରତି) ଏସବୁ ଆଇନ୍‌ର ବ୍ୟାପାର, ତୁମେ ତ ସବୁ ଜାଣ ।"

ସଦରୱାଲ—ଆଜ୍ଞା ହଁ ।

ବିଜୟ ଗୋସ୍ୱାମୀ—ଆହା ! କି ସୁନ୍ଦର କଥା ! ଯେ ଅନନ୍ୟମନ ହୋଇ ତାଙ୍କର ଚିନ୍ତା କରନ୍ତି, ଯେ ତାଙ୍କର ପ୍ରେମରେ ପାଗଳ, ତାଙ୍କର ଭାର ଭଗବାନ ନିଜେ ବହନ କରନ୍ତି ! ନାବାଳକର 'ମୁରବୀ' ସହଜରେ ଆସି ଜୁଟେ ! ଆହା କେବେ ସେହି ଅବସ୍ଥା ହେବ ? ଯେଉଁମାନଙ୍କର ହୁଏ ସେମାନେ କିପରି ଭାଗ୍ୟବାନ !

ତ୍ରୈଲୋକ୍ୟ—ମହାଶୟ, ସଂସାରରେ କଅଣ ଯଥାର୍ଥ ଜ୍ଞାନ ହୁଏ ? ଈଶ୍ୱର ଲାଭ ହୁଏ ?

ଶ୍ରୀରାମକୃଷ୍ଣ (ହସି ହସି)—କାହିଁକି ହେ ତୁମେ ତ ଶୁଖିଲା ଗୁଡ଼ ଓ ପାଣିଗୁଡ଼ ଉଭୟରେ ଅଛ (ସମସ୍ତଙ୍କର ହାସ୍ୟ) । ଈଶ୍ୱରଙ୍କଠାରେ ମନ ରଖି ତ ସଂସାରରେ ଅଛ । କାହିଁକି ସଂସାରରେ ହେବନାହିଁ ? ଅବଶ୍ୟ ହେବ ।

## ସଂସାରରେ ଜ୍ଞାନୀର ଲକ୍ଷଣ; ଜୀବନ୍ମୁକ୍ତ ।

ତ୍ରୈଲୋକ୍ୟ—ସଂସାରରେ ଜ୍ଞାନଲାଭ ହୋଇଛି, ତାହାର ଲକ୍ଷଣ କଅଣ ?

ଶ୍ରୀରାମକୃଷ୍ଣ—ହରି ନାମରେ ଧାରା ଆଉ ପୁଲକ । ତାଙ୍କର ମଧୁର ନାମ ଶୁଣିବା ମାତ୍ରେ ଶରୀର ରୋମାଞ୍ଚ ହେବ, ଆଉ ଚକ୍ଷୁରୁ ଅଶ୍ରୁଧାରା ବହିପଡ଼ିବ ।

"ଯେତେକ୍ଷଣ ବିଷୟାସକ୍ତି ଥାଏ, କାମିନୀ କାଞ୍ଚନରେ ମନ ଥାଏ, ସେତେକ୍ଷଣ ଦେହବୁଦ୍ଧି ଯାଏନାହିଁ । ବିଷୟାସକ୍ତି ଯେତେ କମିବ, ଆତ୍ମଜ୍ଞାନ ଦିଗରେ ସେତେ ଅଗ୍ରସର ହେବ, ଆଉ ଦେହ ବୁଦ୍ଧି କମିବ । ବିଷୟାସକ୍ତି ଏକାବେଳକେ ଚାଲିଗଲେ ଆତ୍ମଜ୍ଞାନ ହୁଏ, ସେତେବେଳେ ଆତ୍ମା ଅଲଗା, ଆଉ ଦେହ ଅଲଗା ବୋଲି ବୋଧହୁଏ । ନଡ଼ିଆର ପାଣି ନ ଶୁଖିଲେ ଛୁରୀରେ କାଟି ନଡ଼ିଆ ଅଲଗା ଷଢ଼େଇ ଅଲଗା କରିବାକୁ କଷ୍ଟ ହୁଏ । ଯଦି ପାଣି ଶୁଖିଯାଏ, ତାହାହେଲେ ନଡ଼ିଆକୁ ହଲାଇ ଶସ ଅଲଗା କରାଯାଏ । ଏହାକୁ ଖୁରୁଡ଼ ନଡ଼ିଆ କହନ୍ତି । ଈଶ୍ୱର ଲାଭ ହେଲେ ତାହାର ଲକ୍ଷଣ ହେଉଛି, ସେ ବ୍ୟକ୍ତି ଖୁରୁଡ଼ ନଡ଼ିଆ ଭଳି ହୋଇଯାଏ—ଦେହାତ୍ମବୁଦ୍ଧି ଚାଲିଯାଏ । ଦେହର ସୁଖ ଦୁଃଖରେ ତାହାର ସୁଖ ଦୁଃଖ ବୋଧ ହୁଏନାହିଁ । ସେ ବ୍ୟକ୍ତି ଦେହ ସୁଖ ଚାହେଁନାହିଁ । ସେ ଜୀବନ୍ମୁକ୍ତ ହୋଇ ଚଳେ ।"

"କାଳୀଙ୍କ ଭକ୍ତ ଜୀବନ୍ମୁକ୍ତ ନିତ୍ୟାନନ୍ଦମୟ ।"

''ଯେତେବେଳେ ଦେଖିବ, ଈଶ୍ୱରଙ୍କର ନାମ କରିବା ମାତ୍ରେ ଅଶ୍ରୁ ଓ ପୁଲକ ହେଉଛି, ସେତେବେଳେ ଜାଣିବ, କାମିନୀ—କାଞ୍ଚନ ପ୍ରତି ଆସକ୍ତି ଚାଲିଯାଇଛି, ଈଶ୍ୱର ଲାଭ ହୋଇଛି । ଦିଆସିଲି କାଠି ଯଦି ଶୁଖିଲା ଥାଏ, ଥରେ ଘସିଲା ମାତ୍ରେ ଦପ୍ କରି ଜଳି ଉଠେ । କିନ୍ତୁ ଯଦି ଓଦା ଥାଏ, ତାହେଲେ ପଚାଶଟା କାଠି ଘସିଲେ ମଧ୍ୟ କିଛି ହୁଏନାହିଁ । କେବଳ କାଠିଗୁଡ଼ାଏ ନଷ୍ଟ ହୁଏ । ବିଷୟ ରସରେ ମଜ୍ଜି ରହିଲେ, କାମିନୀ-କାଞ୍ଚନ ରସରେ ମନ ଓଦା ରହିଲେ ଈଶ୍ୱରଙ୍କର ଉଦ୍ଦୀପନ ହୁଏନାହିଁ । ହଜାରେ ଚେଷ୍ଟା କର, କେବଳ ପଣ୍ଡ ଶ୍ରମ । ବିଷୟ ରସ ଶୁଖିଲେ ତତ୍‌କ୍ଷଣାତ୍ ଉଦ୍ଦୀପନ ହୁଏ ।''

## ଉପାୟ ବ୍ୟାକୁଳତା — ସେ ଯେ ଆପଣାର ମା' ।

ତ୍ରୈଲୋକ୍ୟ—ବିଷୟ—ରସ ଶୁଖିବାର ବର୍ତ୍ତମାନ ଉପାୟ କଅଣ ?

ଶ୍ରୀରାମକୃଷ୍ଣ—ମା'ଙ୍କ ପାଖରେ ବ୍ୟାକୁଳ ହୋଇ ଡାକ । ତାଙ୍କର ଦର୍ଶନ ହେଲେ ବିଷୟ ରସ ଶୁଖିଯିବ । କାମିନୀ-କାଞ୍ଚନ ପ୍ରତି ସମସ୍ତ ଆସକ୍ତି ଚାଲିଯିବ । ଆପଣାର ମା' ବୋଲି ବୋଧ ହେଲେ ସଙ୍ଗେ ସଙ୍ଗେ ହେବ । ସେ ଧରମ ମା' ପରି ନୁହନ୍ତି । ସେ ତ ଆପଣାର ମା' । ବ୍ୟାକୁଳ ହୋଇ ମା' ପାଖରେ ଅଳି କର । ପିଲା ଗୁଡ଼ି କିଣିବା ପାଇଁ ମା'ର ପଣତକାନି ଟାଣି ପଇସା ଚାହେଁ—ମା' ହୁଏତ ଅନ୍ୟ ସ୍ତ୍ରୀଲୋକଙ୍କ ସଙ୍ଗରେ ଗଳ୍ପ କରୁଛି । ପ୍ରଥମେ ମା' କୌଣସି ପ୍ରକାରେ ପଇସା ଦେବାକୁ ଚାହେଁ ନାହିଁ । କହେ, ନା 'ସେ ମନା କରିଯାଇଛନ୍ତି, ଆସିଲେ କହିଦେବି, ଏକ୍ଷଣି ଗୁଡ଼ି ଆଣି ଗୋଟାଏ କାଣ୍ଡ କରିବୁ ।' ଯେତେବେଳେ ପିଲା କାନ୍ଦିବାକୁ ଲାଗେ, କୌଣସି ମତେ ଛାଡ଼େନାହିଁ, ସେତେବେଳେ ମା' ଅନ୍ୟ ସ୍ତ୍ରୀଲୋକଙ୍କୁ କହେ, 'ରହ ମା, ଏ ପିଲାଟାକୁ ଟିକିଏ ବୁଝେଇ ଦେଇ ଆସେ ।' ଏହି କଥା କହି ଚାବିଟା ନେଇ ଖଡ଼ଖଡ଼ କରି ବାକ୍ସ ଖୋଲି ଗୋଟାଏ ପଇସା ପକାଇ ଦିଏ । ତୁମ୍ଭେମାନେ ସେହିପରି ମା'ଙ୍କ ପାଖରେ ଅଳି କର, ସେ ନିଶ୍ଚୟ ଦେଖାଦେବେ । ମୁଁ ଶିଖ୍‌ମାନଙ୍କୁ ଏହିକଥା କହିଥିଲି । ସେମାନେ ଦକ୍ଷିଣେଶ୍ୱର କାଳୀ ମନ୍ଦିରକୁ ଆସିଥିଲେ, ମା' କାଳୀଙ୍କ ମନ୍ଦିର ସମ୍ମୁଖରେ ବସି ସେମାନଙ୍କ ସଙ୍ଗରେ କଥା ହୋଇଥିଲା । ସେମାନେ କହିଥିଲେ, 'ଈଶ୍ୱର ଦୟାମୟ' ସେ ସର୍ବଦା ଆମ୍ଭମାନଙ୍କୁ ଦେଖୁଅଛନ୍ତି, ଆମ୍ଭମାନଙ୍କୁ ଧର୍ମ, ଅର୍ଥାଦି ଦେଉଛନ୍ତି, ଆହାର ଯୋଗାଉଛନ୍ତି । ମୁଁ କହିଲି, ଯଦି କାହାର ପିଲାପିଲି ହୁଅନ୍ତି, ସେମାନଙ୍କ ଖବର, ସେମାନଙ୍କର ଖାଇବା ଦାୟିତ୍ୱ, ବାପ ନେବ ନାହିଁ ତ କଅଣ ବ୍ରାହ୍ମଣପଡ଼ାର ଲୋକେ ଆସି ନେବେ ?

ସଦରଓ୍ୱାଲା—ମହାଶୟ ! ତେବେ ସେ କଅଣ ଦୟାମୟ ନୁହନ୍ତି ।

ଶ୍ରୀରାମକୃଷ୍ଣ—ତାହା କାହିଁକି ହେ ? ସେପରି ଗୋଟାଏ କହିଲି; ସେ ଯେ ବଡ଼ ଆପଣାର ଲୋକ ! ତାଙ୍କ ଉପରେ ଆମ୍ଭମାନଙ୍କର ଜୋର ଚଳେ । ଆପଣା ଲୋକଙ୍କୁ ଏପରି କଥା ପର୍ଯ୍ୟନ୍ତ କୁହାଯାଏ, 'ଶଳା ଦେବୁନାହିଁ ?'

## (୬)

## ଅହଙ୍କାର ଓ ସଦରଓ୍ୱାଲା ।

ଶ୍ରୀରାମକୃଷ୍ଣ (ସଦରଓ୍ୱାଲାଙ୍କ ପ୍ରତି)—ଆଚ୍ଛା, ଅଭିମାନ ଅହଙ୍କାର ଇତ୍ୟାଦି ଜ୍ଞାନରୁ ହୁଏ—ନା ଅଜ୍ଞାନରୁ ହୁଏ ?

"ଅହଙ୍କାର ତମୋଗୁଣ, ଅଜ୍ଞାନରୁ ଉତ୍ପନ୍ନ ହୁଏ । ଏହି ଅହଙ୍କାର ଆଢୁଆଳ ଅଛି, ସେଥିପାଇଁ ଈଶ୍ୱରଙ୍କୁ ଦେଖାଯାଏ ନାହିଁ । 'ଅସି ମଲେ ଘୁରିବେ ଜଞ୍ଜାଳ' ।"

"ଅହଂକାର କରିବା ବୃଥା । ଏହି ଶରୀର, ଐଶ୍ୱର୍ଯ୍ୟ କିଛି ରହିବ ନାହିଁ । ଗୋଟାଏ ମାତାଲ ଦୁର୍ଗା ପ୍ରତିମା ଦେଖୁଥିଲା । ପ୍ରତିମାର ସାଜସଜା ଦେଖି କହୁଛି, 'ମା', ଯେତେ ସାଜସଜା ହେଉ, ଦୁଇ ତିନିଦିନ ପରେ ତୁମକୁ ଟାଣି ଗଙ୍ଗାରେ ପକାଇଦେବେ । (ସମସ୍ତଙ୍କର ହାସ୍ୟ) । ସେଥିପାଇଁ ସମସ୍ତଙ୍କୁ କହୁଛି ଜଜ୍ ହୁଅ ବା ଅନ୍ୟ କିଛି ହୁଅ ସବୁ ଦୁଇଦିନ ପାଇଁ । ତେଣୁ ଅଭିମାନ ଅହଙ୍କାର ତ୍ୟାଗ କରିବା ଉଚିତ ।"

## ବ୍ରାହ୍ମସମାଜ ଓ ସାମ୍ୟ; ଲୋକଙ୍କର ଭିନ୍ନ ଭିନ୍ନ ପ୍ରକୃତି ।

"ସତ୍ତ୍ୱ, ରଜଃ ଓ ତମୋଗୁଣର ଭିନ୍ନ ଭିନ୍ନ ସ୍ୱଭାବ । ତମୋଗୁଣୀର ଲକ୍ଷଣ ଅହଙ୍କାର, ନିଦ୍ରା, ଅତିରିକ୍ତ ଭୋଜନ, କାମ, କ୍ରୋଧ ଏହିସବୁ । ରଜୋଗୁଣୀ ବେଶି କାର୍ଯ୍ୟରେ ଜଡ଼ିତ, ପୋଷାକ ପତ୍ର ଫିଟ୍‌ଫାଟ୍, ଘର ପରିଷ୍କାର ପରିଚ୍ଛନ୍ନ, ବୈଠକଖାନାରେ ରାଣୀର ଛବି, ଯେତେବେଳେ ଈଶ୍ୱର ଚିନ୍ତା କରେ, ସେତେବେଳେ ପାଟବସ୍ତ୍ର, ମଠା ପିନ୍ଧେ, ଗଳାରେ ରୁଦ୍ରାକ୍ଷର ମାଳା, ପୁଣି ସେଥିରେ ମଝିରେ ମଝିରେ ଗୋଟାଏ ଗୋଟାଏ ସୁନାର ରୁଦ୍ରାକ୍ଷ; ଯଦି କେହି ଠାକୁର ଘର ଦେଖିବାକୁ ଆସେ, ତେବେ ସଙ୍ଗରେ ନେଇ ବୁଲି ବୁଲି ଦେଖାଏ, ଆଉ କହେ ଏଣେ ଆସନ୍ତୁ, ଆଉ ଅଛି, ଶ୍ୱେତ ପଥରର, ମାର୍ବଲ୍ ପଥରର ଚଟାଣ ଅଛି, ଗୋଲେଇ ଖିଲଣର ନାଟମନ୍ଦିର ଅଛି । ଆଉ ଲୋକଙ୍କୁ ଦେଖାଇ ଦେଖାଇ ଦାନ କରେ । ସତ୍ତ୍ୱଗୁଣୀ ଲୋକ ଅତି ଶାନ୍ତ ଶିଷ୍ଟ; ଲୁଗାପଟା ସାଧାରଣ ଧରଣର, ରୋଜଗାର ପେଟଚଳା ପର୍ଯ୍ୟନ୍ତ ; କେତେବେଳେ ହେଲେ ଲୋକଙ୍କୁ ଖୋସାମଦ କରି ଧନ ଅର୍ଜନ କରେ ନାହିଁ, ଘରର ମରାମତି ନାହିଁ, ପିଲାମାନଙ୍କର ପୋଷାକ ପାଇଁ ଭାବନା ନାହିଁ; ମାନ ସମ୍ଭ୍ରମ ପାଇଁ ବ୍ୟସ୍ତ ହୁଏନାହିଁ; ଈଶ୍ୱର ଚିନ୍ତା, ଦାନ, ଧ୍ୟାନ, ସମସ୍ତ ଗୋପନରେ—ଲୋକେ ଜାଣିପାରନ୍ତି ନାହିଁ; ମଶାରି ଭିତରେ ଧ୍ୟାନ କରେ; ଲୋକ ଭାବନ୍ତି ବାବୁଙ୍କର ରାତିରେ ନିଦ ହୋଇନାହିଁ । ତେଣୁ ଦିନରେ ଘୁମାଉଛନ୍ତି । ସତ୍ତ୍ୱଗୁଣ ସିଢ଼ିର ଶେଷ ପାହାଚ, ତା' ଉପରେ ଛାତ । ସତ୍ତ୍ୱଗୁଣ ଆସିବା ମାତ୍ରେ ଈଶ୍ୱର ଲାଭର ଆଉ ଡେରି ହୁଏ ନାହିଁ—ଆଉ ଟିକିଏ ଅଗ୍ରସର ହେଲେ ତାଙ୍କୁ ପାଇବ ।"

(ସଦରଓ୍ୱାଲାଙ୍କ ପ୍ରତି)—ତୁମେ କହିଥିଲ ସବୁ ଲୋକ ସମାନ । କିନ୍ତୁ ଦେଖ କେତେ ଭିନ୍ନ ଭିନ୍ନ ପ୍ରକୃତି ।

''ଆଉ ମଧ ମନୁଷ୍ୟଙ୍କ ଭିତରେ ନାନା ପ୍ରକାର ଶ୍ରେଣୀ ଅଛି;—ନିତ୍ୟଜୀବ, ମୁକ୍ତ ଜୀବ, ମୁମୁକ୍ଷୁ ଜୀବ, ବଦ୍ଧଜୀବ । ନାରଦ, ଶୁକଦେବ ଏମାନେ ନିତ୍ୟଜୀବ, ଯେପରି ଷ୍ଟିମ୍ ବୋଟ୍ (ଜଳ ଜାହାଜ) ନିଜେ ଅନ୍ୟ ପାରିକୁ ଯାଇପାରେ ଓ ବଡ଼ ଜୀବ-ଜନ୍ତୁ ଏପରିକି ହାତୀ ପ୍ରଭୃତିଙ୍କୁ ପାରି କରିପାରେ । ନିତ୍ୟଜୀବ ନାୟବ ସ୍ୱରୂପ; ଗୋଟାଏ ତାଲୁକ ଶାସନ କରିବା ପରେ ଆଉ ଗୋଟାଏ ତାଲୁକକୁ ଶାସନ କରିବାକୁ ଯାଏ । ମୁମୁକ୍ଷୁ ଜୀବ, ଯେଉଁମାନେ ସଂସାର ଜାଲରୁ ମୁକ୍ତ ହେବାପାଇଁ ବ୍ୟାକୁଳ ହୋଇ ପ୍ରାଣପଣେ ଚେଷ୍ଟା କରୁଛନ୍ତି । ଏମାନଙ୍କ ମଧ୍ୟରୁ ଜଣେ ଦୁଇଜଣ ଜାଲରୁ ପଳାଇ ଯାଇପାରନ୍ତି, ସେମାନଙ୍କୁ କହନ୍ତି ମୁକ୍ତଜୀବ । ନିତ୍ୟଜୀବ ମାନେ ଗୋଟାଏ ଗୋଟାଏ ସିଆଣିଆ ମାଛ ପରି କେତେବେଳେ ହେଲେ ଜାଲରେ ପଡ଼ନ୍ତି ନାହିଁ ।''

''କିନ୍ତୁ ବଦ୍ଧଜୀବ—ସଂସାରୀ ଜୀବ—ସେମାନଙ୍କର ହୋସ ନାହିଁ । ସେମାନେ ଜାଲରେ ପଡ଼ିଅଛନ୍ତି, ଅଥଚ ଏପରି ଜ୍ଞାନ ନାହିଁ ଯେ, ସେମାନେ ଜାଲରେ ବଦ୍ଧ ହୋଇ ଅଛନ୍ତି । ଏମାନଙ୍କ ସମ୍ମୁଖରେ ହରିକଥା ହେଲେ ସେଠାରୁ ଚାଲିଯାଆନ୍ତି—ସେମାନେ କହନ୍ତି, ମରିବା ସମୟରେ ହରିକଥା ଶୁଣିବା, ବର୍ତ୍ତମାନ କାହିଁକି ? ପୁଣି ମୃତ୍ୟୁ ଶଯ୍ୟାରେ ଶୋଇ ସ୍ତ୍ରୀ କିମ୍ବା ପିଲାମାନଙ୍କୁ କହନ୍ତି, 'ପ୍ରଦୀପରେ ଏତେ ସଳିତା କାହିଁକି, ଗୋଟାଏ ସଳିତା ଦିଅ, ନୋହିଲେ ତେଲ ପୋଡ଼ିଯିବ, ଆଉ ସ୍ତ୍ରୀ ଓ ପିଲାମାନଙ୍କୁ ମନେପକାଇ କାନ୍ଦନ୍ତି ଆଉ କହନ୍ତି, ହାୟ ! ମୁଁ ମଲେ ଏମାନଙ୍କର କଅଣ ହେବ ! ବଦ୍ଧଜୀବ ଯେଉଁଥିରେ ଏତେ ଦୁଃଖ ଭୋଗ କରନ୍ତି, ତାହା ବାରମ୍ବାର କରନ୍ତି, ଯେପରି ଓଟ କଣ୍ଟା ଘାସ ଖାଇ ମୁହଁରୁ ଝର ଝର ହୋଇ ରକ୍ତ ପଡ଼େ, ତଥାପି କଣ୍ଟାଘାସ ଛାଡ଼ିବ ନାହିଁ । ଏଣେ ପୁଅ ମରିଯାଇଛି, ଶୋକରେ କାତର, ପୁଣି ବର୍ଷ ବର୍ଷ ଧରି ପିଲା ହେବେ, ଝିଅର ବିଭାଘରରେ ସର୍ବସ୍ୱାନ୍ତ ହେଲା, ପୁଣି ବର୍ଷକୁ ବର୍ଷ ପୁଅଝିଅ ହେବେ, କହେ କଅଣ କରିବି, ଅଦୃଷ୍ଟରେ ଥିଲା ! ଯଦି ତୀର୍ଥ କରିବାକୁ ଯାଏ, ନିଜେ ଈଶ୍ୱର ଚିନ୍ତା କରିବାକୁ ଅବସର ପାଏନାହିଁ—କେବଳ ସ୍ତ୍ରୀର ଗଣ୍ଠିଲି ବୁହାଇ ପ୍ରାଣଯାଏ, ଠାକୁର ମନ୍ଦିରକୁ ଯାଇ ପିଲାମାନଙ୍କୁ ଚରଣାମୃତ ଖୁଆଇବାରେ ଆଉ ଗଡ଼ାଗଡ଼ି ହେବାରେ ବ୍ୟସ୍ତ । ବଦ୍ଧଜୀବ ନିଜର ଓ ସ୍ତ୍ରୀର ପେଟ ପାଇଁ ଦାସତ୍ୱ କରେ—ଆଉ ମିଥ୍ୟାକଥା, ପ୍ରବଞ୍ଚନା, ଖୋସାମଦ୍ କରି ଧନ ଅର୍ଜନ କରେ । ଯେଉଁମାନେ ଈଶ୍ୱର ଚିନ୍ତା କରନ୍ତି, ଈଶ୍ୱରଙ୍କର ଧ୍ୟାନରେ ମଗ୍ନ ହୁଅନ୍ତି, ବଦ୍ଧଜୀବ ସେମାନଙ୍କୁ ପାଗଳ ବୋଲି ଉଡ଼ାଇଦିଏ । (ସଦରଓ୍ୱାଲାଙ୍କ ପ୍ରତି)—ମନୁଷ୍ୟ କେତେ ପ୍ରକାର ଦେଖ, ତୁମେ ସବୁ ଏକ ପ୍ରକାର କହିଥିଲ । ଭିନ୍ନ ଭିନ୍ନ ପ୍ରକୃତି, କାହାର ବେଶି ଶକ୍ତି, କାହାର କମ୍ ।''

## ବଦ୍ଧଜୀବ ମୃତ୍ୟୁକାଳରେ ଈଶ୍ୱରଙ୍କ ନାମ କରେନାହିଁ ।

"ସଂସାରାସକ୍ତ ବଦ୍ଧଜୀବ ମୃତ୍ୟୁକାଳରେ କେବଳ ସଂସାର କଥା କହନ୍ତି । ବାହାରେ ମାଳା ଜପିଲେ, ଗଙ୍ଗାସ୍ନାନ କଲେ, ତୀର୍ଥକୁ ଗଲେ କଅଣ ହେବ ? ସଂସାରାସକ୍ତି ଭିତରେ ଥିଲେ ମୃତ୍ୟୁକାଳରେ ସେଇଟି ଦେଖାଯାଏ । ଏଣୁତେଣୁ କେତେ ବକେ, ହୁଏତ ବିକାରର ଖିଆଲରେ ହଳଦୀ, ହାଣ୍ଡି-ଫୁଟା, ତେଜପତ୍ର ବୋଲି ଚିତ୍କାର କରିଉଠେ । ଶୁକପକ୍ଷୀ ସାଧାରଣ ସମୟରେ ରାଧାକୃଷ୍ଣ କହେ, କିନ୍ତୁ ବିରାଡ଼ି ଧରିଲେ ନିଜର ଶବ୍ଦ ବାହାରେ କ୍ୟାଁ କ୍ୟାଁ କରେ ।"

"ଗୀତାରେ ଅଛି ମୃତ୍ୟୁ କାଳରେ ଯାହା ମନେକରିବ, ପରଲୋକରେ ତାହାହିଁ ହେବ । ଭରତ ରାଜା ହରିଣ ହରିଣ ଚିନ୍ତା କରି ଦେହ ତ୍ୟାଗ କରିଥିଲେ, ତେଣୁ ତାଙ୍କର ହରିଣ ଜନ୍ମ ହୋଇଥିଲା । ଈଶ୍ୱର ଚିନ୍ତା କରି ଦେହତ୍ୟାଗ କଲେ ଈଶ୍ୱର ଲାଭ ହୁଏ, ପୁଣି ଏ ସଂସାରକୁ ଆସିବାକୁ ହୁଏନାହିଁ ।"

ବ୍ରାହ୍ମଭକ୍ତ—ମହାଶୟ, ଜଣେ ସବୁ ସମୟରେ ଈଶ୍ୱର ଚିନ୍ତା କରୁଛି, କିନ୍ତୁ ମୃତ୍ୟୁ ସମୟରେ କରିନପାରିଲେ କଅଣ ଏହି ସୁଖ ଦୁଃଖମୟ ସଂସାରକୁ ପୁଣି ଆସିବାକୁ ହେବ ? କାହିଁକି, ଆଗେ ତ ଈଶ୍ୱର ଚିନ୍ତା କରିଥିଲା ?

ଶ୍ରୀରାମକୃଷ୍ଣ—ଜୀବ ଈଶ୍ୱର ଚିନ୍ତା କରେ କିନ୍ତୁ ଈଶ୍ୱରଙ୍କଠାରେ ବିଶ୍ୱାସ ନାହିଁ, ପୁଣି ଭୁଲିଯାଏ, ସଂସାରରେ ଆସକ୍ତ ହୁଏ । ଯେପରି ହାତୀକୁ ସ୍ନାନ କରାଇଦେଲ; ପୁଣି ଧୂଳି କାଦୁଅ ବୋଳିହୁଏ । ମନମତ୍ତକରୀ । ତେବେ ହାତୀକୁ ସ୍ନାନ କରାଇ ଯଦି ହାତୀଶାଳାରେ ବାନ୍ଧିଦେଇପାର, ତାହାହେଲେ ଆଉ ଧୂଳି କାଦୁଅ ବୋଳି ହୋଇପାରିବ ନାହିଁ । ଯଦି ଜୀବ ମୃତ୍ୟୁକାଳରେ ଈଶ୍ୱର ଚିନ୍ତା କରେ, ତାହାହେଲେ ମନ ଶୁଦ୍ଧ ହୁଏ, ଆଉ ସେ ମନ କାମିନୀ-କାଞ୍ଚନରେ ପୁଣି ଆସକ୍ତ ହେବାର ଅବସର ପାଏନାହିଁ ।

"ଈଶ୍ୱରଙ୍କଠାରେ ବିଶ୍ୱାସ ନାହିଁ, ତେଣୁ ଏତେ କର୍ମଭୋଗ । ଲୋକେ କହନ୍ତି ଯେ, ଗଙ୍ଗାସ୍ନାନ ସମୟରେ ତୁମର ପାପଗୁଡ଼ାକ ତୁମକୁ ଛାଡ଼ି ଗଙ୍ଗାତୀରର ଗଛ ଉପରେ ବସିଥାଆନ୍ତି । ଯହୁଁ ତୁମେ ଗଙ୍ଗାସ୍ନାନ କରି ତୀରକୁ ଉଠିଛ, ସଙ୍ଗେ ସଙ୍ଗେ ପାପଗୁଡ଼ାକ ତୁମର ବେକମୁଣ୍ଡାରେ ଚାପି ବସନ୍ତି । (ସମସ୍ତଙ୍କର ହାସ୍ୟ) । ଦେହ ତ୍ୟାଗ ସମୟରେ ଯେପରି ଈଶ୍ୱର ଚିନ୍ତା ହୁଏ, ସେଥିପାଇଁ ଆଗରୁ ଉପାୟ କରିବାକୁ ହେବ । ଉପାୟ-ଅଭ୍ୟାସଯୋଗ । ଈଶ୍ୱର ଚିନ୍ତା ଅଭ୍ୟାସ କଲେ ଶେଷ ଦିନରେ ମଧ ତାଙ୍କୁ ମନେପଡ଼ିବ ।"

ବ୍ରାହ୍ମଭକ୍ତ—ବେଶ୍ କଥା ହେଲା । ଅତି ସୁନ୍ଦର କଥା !

ଶ୍ରୀରାମକୃଷ୍ଣ—କଅଣ ଏଣୁ ତେଣୁ ବକିଲି ! ତେବେ ମୋର ଭାବ କଅଣ ଜାଣ ? ମୁଁ ଯନ୍ତ୍ର, ସେ ଯନ୍ତ୍ରୀ, ମୁଁ ଘର ସେ ଘରଣୀ, ମୁଁ ଗାଡ଼ି ସେ ଚାଳକ, ମୁଁ ରଥ ସେ ରଥୀ, ଯେପରି ଚଳାନ୍ତି, ସେପରି ଚଳେ, ଯେପରି କରାନ୍ତି, ସେପରି କରେ ।

## (୭)
## ସଂକୀର୍ତ୍ତନାନନ୍ଦରେ ।

ତ୍ରୈଲୋକ୍ୟ ପୁଣି ଗୀତ ଗାଇଲେ । ସଙ୍ଗରେ ଖୋଳ କରତାଳ ବାଜିବାକୁ ଲାଗିଲା । ଶ୍ରୀରାମକୃଷ୍ଣ ମଧ୍ୟ ପ୍ରେମରେ ଉନ୍ମତ୍ତ ହୋଇ ନୃତ୍ୟ କରିବାକୁ ଲାଗିଲେ, ନୃତ୍ୟ କରୁ କରୁ ଅନେକ ଥର ସମାଧିସ୍ଥ ହେଲେ । ସମାଧିସ୍ଥ ଅବସ୍ଥାରେ ଠିଆ ହୋଇଅଛନ୍ତି, ସ୍ପନ୍ଦହୀନ ଦେହ, ସ୍ଥିର ନେତ୍ର ସହାସ୍ୟ ବଦନ, କୌଣସି ପ୍ରିୟ ଭକ୍ତର ସ୍କନ୍ଧରେ ହାତ ଦେଇଅଛନ୍ତି । ପୁଣି ଭାବାନ୍ତରରେ ମତ୍ତ ମାତଙ୍ଗ ପରି ନୃତ୍ୟ । ବାହ୍ୟଦଶା ପ୍ରାପ୍ତ ହୋଇ ଗୀତରେ ଆଁଖର ଦେବାକୁ ଲାଗିଲେ—

'ନାଚ ମା, ଭକ୍ତ ବୃନ୍ଦ ବେଢ଼େ ବେଢ଼େ,
ଆପନି ନେଚେ ନାଚାଓ ଗୋ ମା;
(ଆବାର ବଲି) ହ୍ରିଦିପଦ୍ମେ ଏକବାର ନାଚ ମା,
ନାଚ ଗୋ ବ୍ରହ୍ମମୟୀ ସେଇ ଭୁବନେମୋହନ ରୂପେ ।'

ସେ ଅପୂର୍ବ ଦୃଶ୍ୟ ! ମାତୃଗତ ପ୍ରାଣ, ପ୍ରେମରେ ମତୁଆଲା ସେହି ସ୍ୱର୍ଗୀୟ ବାଳକର ନୃତ୍ୟ ! ବ୍ରାହ୍ମଭକ୍ତମାନେ ତାଙ୍କୁ ବେଷ୍ଟନ କରି ନୃତ୍ୟ କରୁଛନ୍ତି, ସତେ ଯେପରି ଲୁହାକୁ ଚୁମ୍ବକ ଧରିଅଛି । ସମସ୍ତେ ଉନ୍ମତ୍ତ ହୋଇ ବ୍ରହ୍ମନାମ କରୁଛନ୍ତି, ପୁଣି ବ୍ରହ୍ମଙ୍କର ସେହି ମଧୁର ନାମ, ମା—ନାମ କରୁଛନ୍ତି । ଅନେକ ବାଳକଙ୍କ ପରି 'ମା ମା' କହି କାନ୍ଦୁଛନ୍ତି ।

କୀର୍ତ୍ତନାନ୍ତେ ସମସ୍ତେ ଆସନ ଗ୍ରହଣ କଲେ । ବର୍ତ୍ତମାନ ମଧ୍ୟ ସମାଜର ସନ୍ଧ୍ୟାକାଳୀନ ଉପାସନା ହୋଇନାହିଁ । ହଠାତ୍ ଏହି କୀର୍ତ୍ତନାନନ୍ଦରେ ସମସ୍ତ ନିୟମ କେଉଁଆଡ଼େ ଭାସିଯାଇଛି ! ବିଜୟକୃଷ୍ଣ ରାତିରେ ବେଦୀରେ ବସିବେ ଏହିପରି ବନ୍ଦୋବସ୍ତ ହୋଇଛି । ବର୍ତ୍ତମାନ ରାତି ପ୍ରାୟ ଆଠଟା ହୋଇଛି ।

ସମସ୍ତେ ଆସନ ଗ୍ରହଣ କରିଛନ୍ତି । ଶ୍ରୀରାମକୃଷ୍ଣ ମଧ୍ୟ ବସିଛନ୍ତି । ସମ୍ମୁଖରେ ବିଜୟ । ବିଜୟଙ୍କର ଶାଶୁ ଓ ଅନ୍ୟାନ୍ୟ ସ୍ତ୍ରୀ ଭକ୍ତମାନେ ତାହାଙ୍କୁ ଦର୍ଶନ କରିବେ ଏବଂ ତାଙ୍କ ସଙ୍ଗରେ କଥା କହିବେ ବୋଲି ସମ୍ବାଦ ପଠାଇଲେ । ସେ ଗୋଟିଏ ଘର ଭିତରକୁ ଯାଇ ସେମାନଙ୍କ ସଙ୍ଗରେ ଦେଖାକଲେ ।

କିୟତ୍‌କ୍ଷଣ ପରେ ଫେରିଆସି ବିଜୟଙ୍କୁ କହିଲେ, "ଦେଖ, ତୁମ ଶାଶୁଙ୍କର କିପରି ଭକ୍ତି ! କହନ୍ତି, ସଂସାର କଥା ଆଉ କହିବେ ନାହିଁ, ଗୋଟିଏ ଢେଉ ଯାଇଛି ତ ଅନ୍ୟ ଗୋଟିଏ ଢେଉ ଆସୁଛି । ମୁଁ କହିଲି, ଆହେ ! ତୁମର ଆଉ ସେଥିରେ କଅଣ ! ତୁମର ତ ଜ୍ଞାନ ହୋଇଛି । ତୁମର ଶାଶୁ ସେଥିରେ କହନ୍ତି, ମୋର ପୁଣି କଅଣ ଜ୍ଞାନ ହୋଇଛି । ବର୍ତ୍ତମାନ ମଧ୍ୟ ବିଦ୍ୟାମାୟା ଓ ଅବିଦ୍ୟାମାୟାକୁ ଅତିକ୍ରମ କରି ନାହିଁ; କେବଳ ଅବିଦ୍ୟାକୁ ପାର ହେଲେ ହେବନାହିଁ, ବିଦ୍ୟାମାୟାକୁ ମଧ୍ୟ ପାର ହେବାକୁ ହେବ, ତେବେ ତ ଜ୍ଞାନ ହେବ ! ଆପଣ ତ ସେହି କଥା କହନ୍ତି ।"

ଏହିସବୁ କଥା ହେଉଅଛି, ଏପରି ସମୟରେ ଶ୍ରୀଯୁକ୍ତ ବେଣୀପାଲ ଆସି ଉପସ୍ଥିତ ହେଲେ ।

ବେଣୀପାଲ (ବିଜୟଙ୍କ ପ୍ରତି) — ମହାଶୟ, ତେବେ ଗାତ୍ରୋତ୍ଥାନ କରନ୍ତୁ, ଅନେକ ଡେରି ହୋଇଯାଇଛି ।

ବିଜୟ — ମହାଶୟ, ଆଉ ଉପାସନାରେ କି ଦରକାର ! ଆପଣମାନଙ୍କର ଏଠାରେ ଆଗେ ପାୟସର ବ୍ୟବସ୍ଥା, ତା'ପରେ ବିରି ଡାଲି ଓ ଅନ୍ୟାନ୍ୟ ତରକାରୀର ବ୍ୟବସ୍ଥା । (ସମସ୍ତଙ୍କର ହାସ୍ୟ) ।

ଶ୍ରୀରାମକୃଷ୍ଣ (ସହାସ୍ୟ) — ଯେ ଯେପରି ଭକ୍ତ, ସେ ସେହିପରି ଆୟୋଜନ କରନ୍ତି । ସତ୍ତ୍ୱଗୁଣୀ ଭକ୍ତ ପାୟସ ଦିଏ, ରଜୋଗୁଣୀ ଭକ୍ତ ପଚାଶ ପ୍ରକାର ବ୍ୟଞ୍ଜନ ଦେଇ ଭୋଗ ଦିଏ, ତମୋଗୁଣୀ ଭକ୍ତ ଛାଗଳ ଓ ଅନ୍ୟାନ୍ୟ ବଳିଦିଏ ।

ବିଜୟ ଉପାସନା କରିବାକୁ ବେଦୀ ଉପରେ ବସିବେକି ନାହିଁ ଭାବିବାକୁ ଲାଗିଲେ ।

## (୮)

## ବିଜୟଙ୍କ ପ୍ରତି ଉପଦେଶ । ବ୍ରାହ୍ମସମାଜ ଓ ଲେକ୍ଚର । ଆଚାର୍ଯ୍ୟଙ୍କର କାର୍ଯ୍ୟ ।

ବିଜୟ (ଶ୍ରୀରାମକୃଷ୍ଣଙ୍କ ପ୍ରତି) — ଆପଣ ଅନୁଗ୍ରହ କରନ୍ତୁ, ତା'ପରେ ମୁଁ ବେଦୀ ଉପରେ ବସି କହିବି ।

ଶ୍ରୀରାମକୃଷ୍ଣ — ଅଭିମାନ ନଥିଲେ ହେଲା । 'ମୁଁ ଲେକ୍ଚର ଦେଉଛି, ତୁମେମାନେ ଶୁଣ', ଏ ଅଭିମାନ ନ ରହିଲେ ହେଲା । ଅହଂକାର ଜ୍ଞାନରେ ହୁଏନାହିଁ, ଅଜ୍ଞାନରେ ହୁଏ ।

"ଯେ ନିରହଙ୍କାର, ତାହାର ହିଁ ଜ୍ଞାନ ହୁଏ, ନୀଚ ଜାଗାରେ ବୃଷ୍ଟି ଜଳ ଜମେ, ଉଚ୍ଚ ଜାଗାରୁ ଗଡ଼ିଯାଏ ।"

"ଯେତେକ୍ଷଣ ଅହଙ୍କାର ଥାଏ, ସେତେକ୍ଷଣ ଜ୍ଞାନ ହୁଏନାହିଁ, ଆଉ ମୁକ୍ତି ମଧ୍ୟ ହୁଏନାହିଁ । ଏହି ସଂସାରକୁ ଫେରିଆସିବାକୁ ହୁଏ । ବାଛୁରୀ ହମ୍ବା ହମ୍ବା (ମୁଁ ମୁଁ) କରେ, ତେଣୁ ଏତେ ଯନ୍ତ୍ରଣା । କଂସେଇ କାଟେ, ଚମଡ଼ାରେ ଯୋତା ତିଆରି ହୁଏ, ପୁଣି ଢୋଲ ପ୍ରଭୃତି ବାଜାର ଚମଡ଼ା ହୁଏ, ସେ ଢୋଲକୁ କେତେ ପିଟାଯାଏ, କଷ୍ଟର ଶେଷ ନାହିଁ ! ଶେଷରେ ନାଡ଼ୀରୁ ତନ୍ତ ହୁଏ, ସେହି ତନ୍ତରେ ଯେତେବେଳେ ଭିଣାଯନ୍ତ୍ର ତିଆରି ହୁଏ, ସେହି ତନ୍ତରେ ତୁହୁଁ ତୁହୁଁ (ତୁମେ ତୁମେ) କହିବାକୁ ଲାଗେ, ସେତେବେଳେ ଯାଇ ନିସ୍ତାର ହୁଏ । ବର୍ତ୍ତମାନ ଆଉ ହମ୍ବା ହମ୍ବା (ମୁଁ ମୁଁ) କହୁନାହିଁ, କହୁଛି ତୁହୁଁ ତୁହୁଁ (ତୁମେ, ତୁମେ) ଅର୍ଥାତ୍ ହେ ଈଶ୍ୱର, ତୁମେ କର୍ତ୍ତା, ମୁଁ ଅକର୍ତ୍ତା: ତୁମେ ଯନ୍ତ୍ରୀ, ମୁଁ ଯନ୍ତ୍ର: ତୁମେ ହିଁ ସବୁ ।"

## ଠାକୁର ଶ୍ରୀରାମକୃଷ୍ଣ ଓ ଗୁରୁବାଦ ।

"ଗୁରୁ, ବାବା ଓ କର୍ତ୍ତା, ଏହି ତିନି କଥାରେ ମୋ ଦେହରେ ଯେପରି କଣ୍ଟା ବିନ୍ଧେ । ମୁଁ ମାଆର ପୁଅ, ମୁଁ ଚିରକାଳ ବାଳକ, ମୁଁ ପୁଣି 'ବାବା' କଅଣ ? ଈଶ୍ୱର କର୍ତ୍ତା, ମୁଁ ଅକର୍ତ୍ତା, ସେ ଯନ୍ତ୍ରୀ ମୁଁ ଯନ୍ତ୍ର ।"

"ଯଦି କେହି ମୋତେ ଗୁରୁ କହେ, ମୁଁ କହେ, 'ଦୂର୍ ଶାଲା, ଗରୁ କଅଣରେ ? କେବଳ ସଚ୍ଚିଦାନନ୍ଦଙ୍କ ବ୍ୟତୀତ ଅନ୍ୟ କେହି ଗୁରୁ ନାହାନ୍ତି । ତାଙ୍କ ବିନା ଆଉ ଉପାୟ ନାହିଁ । ସେ ହିଁ ଏକମାତ୍ର ଏହି ଭବସାଗରର କାଣ୍ଡାରୀ ।"

(ବିଜୟଙ୍କ ପ୍ରତି)—"ଆଚାର୍ଯ୍ୟଗିରି କରିବା ବଡ଼ କଠିନ । ସେଥିରେ ନିଜର ହାନି ହୁଏ । ଏପରି ଦଶଜଣ ମାନୁଛନ୍ତି ଦେଖି ଗୋଡ଼ ଉପରେ ଗୋଡ଼ ରଖି କହେ, 'ମୁଁ କହୁଛି ଆଉ ତୁମେମାନେ ଶୁଣ ।' ଏହି ଭାବଟା ବଡ଼ ଖରାପ । ତା'ର ଏହି ପର୍ଯ୍ୟନ୍ତ । ବର୍ତ୍ତମାନ ଟିକିଏ ମାନ, ଲୋକେ ନିଶ୍ଚୟ କହିବେ, 'ଆହା, ବିଜୟବାବୁ ବେଶ୍ କହନ୍ତି, ଲୋକଟା ଖୁବ୍ ଜ୍ଞାନୀ' । 'ମୁଁ କହୁଛି' ଏ ଜ୍ଞାନ କର ନାହିଁ । ମୁଁ ମାଆଙ୍କୁ କହେ, 'ମା', ତୁମେ ଯନ୍ତ୍ରୀ, ମୁଁ ଯନ୍ତ୍ର, ଯେପରି କରାଅ, ସେପରି କରେ, ଯେପରି କୁହାଅ, ସେପରି କହେ ।"

ବିଜୟ (ବିନୀତ ଭାବରେ)—ଆପଣ କହନ୍ତୁ, ତେବେ ମୁଁ ଯାଇ ବସିବି ।

ଶ୍ରୀରାମକୃଷ୍ଣ (ହସି ହସି)—ମୁଁ କଅଣ କହିବି; ଜହ୍ନମାମୁଁ ସମସ୍ତଙ୍କର ମାମୁଁ । ତୁମେ ହିଁ, ତାଙ୍କୁ କହ । ଯଦି ଆନ୍ତରିକତା ଥାଏ, ତାହାହେଲେ କୌଣସି ଭୟ ନାହିଁ ।

ବିଜୟ ପୁଣି ଅନୁନୟ କରିବାରେ ଶ୍ରୀରାମକୃଷ୍ଣ କହିଲେ, "ଯାଆ ଯେପରି ପଦ୍ଧତି ଅଛି, ସେପରି କର । ତାଙ୍କ ଉପରେ ଆନ୍ତରିକତା ରହିଲେ ହେଲା ।"

ତଦନନ୍ତର ବିଜୟ ବେଦୀରେ ଆସନ ଗ୍ରହଣ କରି ବ୍ରାହ୍ମସମାଜର ପଦ୍ଧତି ଅନୁସାରେ ଉପାସନା କଲେ । ବିଜୟ ପ୍ରାର୍ଥନା ସମୟରେ ମା' ମା' କରି ଡାକିବାକୁ ଲାଗିଲେ । ସମସ୍ତଙ୍କର ମନ ଦ୍ରବୀଭୂତ ହେଲା ।

ଉପାସନାନ୍ତେ ଭକ୍ତମାନଙ୍କର ସେବା ପାଇଁ ଭୋଜନର ଆୟୋଜନ ହେଲା । ସତରଞ୍ଜି ଗାଲିଚା ପ୍ରଭୃତି ଉଠାଇ ପତ୍ର ପଡ଼ିବାର ବ୍ୟବସ୍ଥା ହେଲା, ଭକ୍ତମାନେ ସମସ୍ତେ ବସିଲେ । ଠାକୁର ଶ୍ରୀରାମକୃଷ୍ଣଙ୍କର ମଧ୍ୟ ଆସନ ହେଲା । ସେ ବସି ଶ୍ରୀଯୁକ୍ତ ବେଣୀପାଲ ପ୍ରଦତ୍ତ ଉପାଦେୟ ଲୁଚି କଚୁରି ପାମ୍ପଡ଼ ନାନାବିଧ ମିଷ୍ଟାନ୍ନ ଦଧି, କ୍ଷୀର ଇତ୍ୟାଦି ଭଗବାନଙ୍କୁ ନିବେଦନ କରି ଆନନ୍ଦରେ ପ୍ରସାଦ ଗ୍ରହଣ କଲେ ।

## (୯)

## ମା—କାଳୀ ବ୍ରହ୍ମ—ପୂର୍ଣ୍ଣଜ୍ଞାନ ପରେ ଅଭେଦ ।

ଆହାରାନ୍ତେ ପାନ ଖାଇ ଘରକୁ ଫେରିବା ପାଇଁ ଉଦ୍ୟୋଗ କରୁଅଛନ୍ତି । ଯିବା

ପୂର୍ବରୁ ଠାକୁର ରାମକୃଷ୍ଣ ବିଜୟଙ୍କ ସହିତ ଏକାନ୍ତରେ ବସି କଥା କହୁଛନ୍ତି । ସେଠାରେ ମାଷ୍ଟର ମଧ୍ୟ ଥିଲେ ।

## ବ୍ରାହ୍ମସମାଜ ଓ ଈଶ୍ୱରଙ୍କ ପ୍ରତି ମାତୃଭାବ ।

ଶ୍ରୀରାମକୃଷ୍ଣ (ବିଜୟଙ୍କ ପ୍ରତି)—ତୁମେ ତାଙ୍କୁ ମା' ମା' କହି ପ୍ରାର୍ଥନା କରୁଥିଲ । ଏ ଖୁବ୍ ଭଲ । କଥାରେ ଅଛି, ମାଆର ଟାଣ ବାପ ଅପେକ୍ଷା ବେଶି ।

''ମା' ଉପରେ ଜୋର ଚଳେ, ବାପ ଉପରେ ଜୋର ଚଳେ ନାହିଁ । ତ୍ରୈଲୋକ୍ୟଙ୍କ ମାଆର ଜମିଦାରୀରୁ ଗାଡ଼ି ଗାଡ଼ି ଧନ ଆସୁଥିଲା, ସଙ୍ଗରେ ଥିଲେ ଅନେକ ଲାଲପଗଡ଼ି ପିନ୍ଧା ଓ ହାତରେ ଲାଠି ଧରିଥିବା ଦରୱାନ୍ । ତ୍ରୈଲୋକ୍ୟ ରାସ୍ତାରେ ଲୋକବାକ ନେଇ ଠିଆ ହୋଇଥିଲେ । ସେ ଜୋର କରି ସବୁ ଧନ କାଢ଼ିନେଲେ । ମାଆର ଧନ ଉପରେ ଖୁବ୍ ଜୋର ଚଳେ । କହନ୍ତି କଅଣ ନା ପୁଅ ନାମରେ ସେପରି ନାଲିସ୍ ଚଳେନାହିଁ ।

ବିଜୟ—ବ୍ରହ୍ମ ଯଦି ମା, ତାହାହେଲେ ସେ ସାକାର ନା ନିରାକାର ?''

ଶ୍ରୀରାମକୃଷ୍ଣ—ଯେ ବ୍ରହ୍ମ, ସେହି କେବଳ କାଳୀ (ଆଦ୍ୟାଶକ୍ତି) । ଯେତେବେଳେ ନିଷ୍କ୍ରିୟ, ସେତେବେଳେ ତାହାକୁ ବ୍ରହ୍ମ ବୋଲି କହୁ । ଯେତେବେଳେ ସୃଷ୍ଟି, ସ୍ଥିତି, ପ୍ରଳୟ ଏହିସବୁ କାର୍ଯ୍ୟ କରନ୍ତି, ସେତେବେଳେ ତାଙ୍କୁ ଶକ୍ତି ବୋଲି କହୁ । ସ୍ଥିର ଜଳ ବ୍ରହ୍ମର ଉପମା । ଜଳ ହଲୁଛି ଦୋହଲୁଛି, ଶକ୍ତି ବା କାଳୀର ଉପମା । କାଳୀ ଅର୍ଥାତ୍ ଯେ ମହାକାଳର (ବ୍ରହ୍ମର) ସହିତ ରମଣ କରନ୍ତି । କାଳୀ 'ସାକାର ଆକାର ନିରାକାର ।' ତୁମର ଯଦି ନିରାକାର ବୋଲି ବିଶ୍ୱାସ ହୁଏ, ତୁମେ କାଳୀଙ୍କୁ ସେହିପରି ଚିନ୍ତା କରିବ । ଗୋଟାକୁ ଦୃଢ଼ କରି ତାଙ୍କର ଚିନ୍ତା କଲେ, ସେ ନିଜେ ମଧ୍ୟ ଜଣାଇଦେବେ, ସେ କିପରି । ଶ୍ୟାମପୁକୁରରେ ପହଞ୍ଚିଲେ ତେଲିପଡ଼ା ମଧ୍ୟ ଜାଣିପାରିବ । ସେତେବେଳେ ଜାଣିପାରିବ ଯେ, ସେ କେବଳ ଅଛନ୍ତି (ଅସ୍ତି ମାତ୍ରମ୍) ତାହା ନୁହେଁ । ସେ ତୁମ ପାଖରେ ଆସି କଥା କହିବେ—ମୁଁ ଯେପରି ତୁମ ସଙ୍ଗରେ କଥା କହୁଛି । ବିଶ୍ୱାସ କର, ସବୁ ହୋଇଯିବ । ଆଉ ଗୋଟିଏ କଥା: —ତୁମର ନିରାକାର ବୋଲି ଯଦି ବିଶ୍ୱାସ ହୁଏ, ସେହି ବିଶ୍ୱାସ ଦୃଢ଼ କରି କର । କିନ୍ତୁ ମନମାନା ବୁଦ୍ଧି (Dogmatism) କର ନାହିଁ । ତାଙ୍କ ସମ୍ବନ୍ଧରେ ଏପରି କଥା ଜୋର କରି କହନା ଯେ, ସେ ଏହା ହୋଇପାରନ୍ତି, ଆଉ ଏହା ହୋଇପାରନ୍ତି ନାହିଁ । କହ 'ମୋର ବିଶ୍ୱାସ ସେ ନିରାକାର, ପୁଣି କେତେ କଅଣ ହୋଇପାରନ୍ତି ସେ ଜାଣନ୍ତି;ମୁଁ ଜାଣେନାହିଁ, ବୁଝିପାରେ ନାହିଁ ।' ମନୁଷ୍ୟର ଏକ ଛଟାଙ୍କି ବୁଦ୍ଧିରେ ଈଶ୍ୱରଙ୍କର ସ୍ୱରୂପ କ'ଣ ବୁଝାଯାଏ ? ସେରିକିଆ ଘଡ଼ିରେ କ'ଣ ଚାରିସେର ଦୁଧ ଧରେ ? ସେ ଯଦି କୃପା ନ କରନ୍ତି, କେତେବେଳେ ଦର୍ଶନ ଦିଅନ୍ତି, ପୁଣି ବୁଝାଇ ଦିଅନ୍ତି, ତାହାହେଲେ ବୁଝାଯାଏ: ନଚେତ୍ ନୁହେଁ ।

''ଯେ ବ୍ରହ୍ମ, ସେହି କେବଳ ଶକ୍ତି । ଅଭେଦ ।''

ପ୍ରସାଦ ବଲେ ମାତୃଭାବେ ଆମି ତତ୍ତ୍ୱ କରି ଯାଁରେ ।
ସେଟା ଚାତରେ କି ଭାଙ୍ଗବୋ ହାଣ୍ଡି, ବୋଝନାରେ ମନ ଠାରେ ଠୋରେ ।''

'ଆମି ତତ୍ତ୍ୱ କରି ଯାଁରେ' ଅର୍ଥାତ୍ ମୁଁ ସେହି ବ୍ରହ୍ମଙ୍କୁ ତତ୍ତ୍ୱ କରୁଛି । ତାଙ୍କୁ ହିଁ ମା' ମା' ବୋଲି ଡାକୁଛି । ପୁଣି ରାମପ୍ରସାଦ ଏକଥା ମଧ୍ୟ କହୁଛନ୍ତି—

''ଆମି କାଳୀବ୍ରହ୍ମ ଜେନେ ମର୍ମ ଧର୍ମାଧର୍ମ ସବ ଛେଡ଼େଛି ।''

''ଅଧର୍ମ ଅର୍ଥାତ୍ ଅସତ୍ କର୍ମ । ଧର୍ମ ଅର୍ଥାତ୍ ବୈଧୀ କର୍ମ—ଏତେ ଦାନ କରିବାକୁ ହେବ, ଏତେ ବ୍ରାହ୍ମଣ ଭୋଜନ କରାଇବାକୁ ହେବ, ଏହି ସବୁ ଧର୍ମ ।''

ବିଜୟ—ଧର୍ମାଧର୍ମ ତ୍ୟାଗ କଲେ କଅଣ ବାକି ଥାଏ ?

ଶ୍ରୀରାମକୃଷ୍ଣ—ଶୁଦ୍ଧାଭକ୍ତି । ମୁଁ ମାଆଙ୍କୁ କହିଥିଲି, ମା' ! ଏହି ନିଅ ତୁମର ଧର୍ମ, ଏହି ନିଅ ତୁମର ଅଧର୍ମ, ମୋତେ ଶୁଦ୍ଧାଭକ୍ତି ଦିଅ: ଏହି ନିଅ ତୁମର ପୁଣ୍ୟ, ଏହି ନିଅ ତୁମର ପାପ, ମୋତେ ଶୁଦ୍ଧାଭକ୍ତି ଦିଅ; ଏହି ନିଅ ତୁମର ଜ୍ଞାନ, ଏହି ନିଅ ତୁମର ଅଜ୍ଞାନ, ମୋତେ ଶୁଦ୍ଧାଭକ୍ତି ଦିଅ । ଦେଖ, ମୁଁ ଜ୍ଞାନ ମଧ୍ୟ ଚାହେଁନାହିଁ । ମୁଁ ଲୋକମାନ୍ୟ ମଧ୍ୟ ଚାହେଁ ନାହିଁ । ଧର୍ମାଧର୍ମ ଛାଡ଼ିଲେ ଶୁଦ୍ଧାଭକ୍ତି—ନିର୍ମଳ, ନିଷ୍କାମ, ଅହୈତୁକୀ ଭକ୍ତି—ବାକି ରହେ ।

## ବ୍ରାହ୍ମସମାଜ ଓ ଆଦ୍ୟାଶକ୍ତି ।

ବ୍ରାହ୍ମଭକ୍ତ—ସେ ଆଉ ତାଙ୍କର ଶକ୍ତି କ'ଣ ତଫାତ୍ ?

ଶ୍ରୀରାମକୃଷ୍ଣ—ପୂର୍ଣ୍ଣଜ୍ଞାନ ପରେ ଅଭେଦ । ଯେପରି ମଣିର ଜ୍ୟୋତିଃ ଆଉ ମଣି ଅଭେଦ । ମଣିର ଜ୍ୟୋତିଃ ଭାବିବା ମାତ୍ରେ ମଣି ଭାବିବାକୁ ହୁଏ । କିନ୍ତୁ ଏ ଅଭେଦ ଜ୍ଞାନ ପୂର୍ଣ୍ଣଜ୍ଞାନ ନ ହେଲେ ହୁଏନାହିଁ । ପୂର୍ଣ୍ଣଜ୍ଞାନରେ ସମାଧି ହୁଏ, ଚତୁର୍ବିଂଶତି ତତ୍ତ୍ୱ ଛାଡ଼ି ଚାଲିଯାଏ—ତେଣୁ ଅହଂତତ୍ତ୍ୱ ମଧ୍ୟ ରହେନାହିଁ । ସମାଧିରେ କଅଣ ବୋଧହୁଏ, ମୁଖରେ କୁହାଯାଏ ନାହିଁ । ଖସି ଆସିଲେ ଟିକିଏ ଆଭାସ କୁହାଯାଏ । ଯେତେବେଳେ ସମାଧି ଭଙ୍ଗ ପରେ 'ଓଁ ଓଁ' କହେ, ସେତେବେଳେ ମୁଁ ଏକଶହ ହାତ ଖସି ଆସିଛି । ବ୍ରହ୍ମ ବେଦ ବିଧିର ପାର, ମୁଖରେ କୁହାଯାଏ ନାହିଁ । ଯେଉଁଠାରେ 'ମୁଁ' 'ତୁମେ' ନାହିଁ ।

''ଯେତେକ୍ଷଣ 'ମୁଁ' 'ତୁମେ' ଅଛୁ, ଯେତେକ୍ଷଣ ମୁଁ ପ୍ରାର୍ଥନା କି ଧ୍ୟାନ କରୁଛି, ଏ ଜ୍ଞାନ ଅଛି, ସେତେକ୍ଷଣ 'ତୁମେ' (ଈଶ୍ୱର) ପ୍ରାର୍ଥନା ଏ ଜ୍ଞାନ ମଧ୍ୟ ଅଛି, ଈଶ୍ୱରଙ୍କୁ ବ୍ୟକ୍ତି ବୋଲି ବୋଧ ଅଛି । ତୁମେ ପ୍ରଭୁ, ମୁଁ ଦାସ, ତୁମେ ପୂର୍ଣ୍ଣ, ମୁଁ ଅଂଶ, ତୁମେ ମା, ମୁଁ ପୁଅ, ଏ ବୋଧ ରହିବ । ଏହି ଭେଦ ବୋଧ, ମୁଁ ଗୋଟିଏ ତୁମେ ଗୋଟିଏ । ଏ ଭେଦ ବୋଧ ସେହି ମଧ୍ୟ କରାଉଅଛନ୍ତି । ସେଥିପାଇଁ ସ୍ତ୍ରୀ, ପୁରୁଷ, ଆଲୋକ, ଅନ୍ଧକାର, ଏହିସବୁ ଭେଦ ବୋଧ ହେଉଛି । ଯେତେକ୍ଷଣ ଏହି ଭେଦ ବୋଧ, ସେତେକ୍ଷଣ ଶକ୍ତି (Personal God) ମାନିବାକୁ ହେବ । ହଜାର ବିଚାର କର, 'ମୁଁ' ଆଉ ଯାଏ ନାହିଁ । ପୁଣି ସେ ସେତେବେଳେ ବ୍ୟକ୍ତି ହୋଇ ଦେଖାଦିଅନ୍ତି ।''

''ତେଣୁ ଯେତେକ୍ଷଣ 'ମୁଁ' ଅଛି, ସେତେକ୍ଷଣ ଭେଦବୁଦ୍ଧି ଅଛି, ସେତେକ୍ଷଣ ବ୍ରହ୍ମ ନିର୍ଗୁଣ କହିବାକୁ ବାଟ ନାହିଁ । ସେତେକ୍ଷଣ ସଗୁଣ ବ୍ରହ୍ମ ମାନିବାକୁ ହେବ । ଏହି ସଗୁଣ ବ୍ରହ୍ମଙ୍କୁ ବେଦ, ପୁରାଣ, ତନ୍ତ୍ରରେ କାଳୀ ବା ଆଦ୍ୟାଶକ୍ତି କୁହାଯାଉଛି ।''

## ବ୍ରାହ୍ମସମାଜ ଓ ବେଦାନ୍ତ ପ୍ରତିପାଦ୍ୟ ବ୍ରହ୍ମ ।

ବିଜୟ—ଏହି ଆଦ୍ୟାଶକ୍ତିଙ୍କୁ ଦର୍ଶନ ଓ ଏହି ବ୍ରହ୍ମଜ୍ଞାନ, କି ଉପାୟରେ ହୋଇପାରେ ?

ଶ୍ରୀରାମକୃଷ୍ଣ—ବ୍ୟାକୁଳ ହୃଦୟରେ ତାଙ୍କୁ ପ୍ରାର୍ଥନା କର । ଆଉ କାନ୍ଦ । ଏହାଦ୍ୱାରା ଚିତ୍ତଶୁଦ୍ଧି ହେବ । ସେତେବେଳେ ନିର୍ମଳ ଜଳରେ ସୂର୍ଯ୍ୟଙ୍କର ପ୍ରତିବିମ୍ବ ଦେଖିବାକୁ ପାଇବ । ଭକ୍ତର ମୁଁ ରୂପ ଦର୍ପଣରେ ସେହି ସଗୁଣ ଆଦ୍ୟାଶକ୍ତିଙ୍କୁ ଦର୍ଶନ କରିବ । କିନ୍ତୁ ଦର୍ପଣ ଖୁବ୍ ପରିଷ୍କାର ଥିବା ଦରକାର । ମଇଳା ରହିଲେ ଠିକ୍ ପ୍ରତିବିମ୍ବ ପଡ଼ିବ ନାହିଁ ।

''ଯେତେକ୍ଷଣ 'ମୁଁ' ରୂପକ ଜଳରେ ସୂର୍ଯ୍ୟଙ୍କୁ ଦେଖିବାକୁ ହୁଏ, ସେତେକ୍ଷଣ ପ୍ରତିବିମ୍ବ ସୂର୍ଯ୍ୟ ବ୍ୟତୀତ ସତ୍ୟ ସୂର୍ଯ୍ୟଙ୍କୁ ଦେଖିବାର ଉପାୟ ନାହିଁ, ସେତେକ୍ଷଣ ପ୍ରତିବିମ୍ବ ସୂର୍ଯ୍ୟ ହିଁ ଷୋଳଅଣା ସତ୍ୟ । ଯେତେକ୍ଷଣ ମୁଁ ସତ୍ୟ, ସେତେକ୍ଷଣ ପ୍ରତିବିମ୍ବ ସୂର୍ଯ୍ୟ ମଧ୍ୟ ସତ୍ୟ ଷୋଳଅଣା ସତ୍ୟ । ସେହି ପ୍ରତିବିମ୍ବ ସୂର୍ଯ୍ୟ ହିଁ ଆଦ୍ୟାଶକ୍ତି ।''

''ବ୍ରହ୍ମଜ୍ଞାନ ଯଦି ଚାହଁ—ସେହି ପ୍ରତିବିମ୍ବକୁ ଧରି ସତ୍ୟ ସୂର୍ଯ୍ୟ ଦିଗରେ ଯାଅ । ସେ ହିଁ ସଗୁଣ ବ୍ରହ୍ମ ଯେ ପ୍ରାର୍ଥନା ଶୁଣନ୍ତି, ତାଙ୍କୁ କହ, ସେହି କେବଳ ବ୍ରହ୍ମଜ୍ଞାନ ଦେବେ । କାହିଁକି ନା, ଯେ ସଗୁଣ ବ୍ରହ୍ମ, ସେହି ମଧ୍ୟ ନିର୍ଗୁଣ ବ୍ରହ୍ମ, ଯେ ଶକ୍ତି ସେହି ମଧ୍ୟ ବ୍ରହ୍ମ । ପୂର୍ଣ୍ଣଜ୍ଞାନ ପରେ ଅଭେଦ ।''

''ମା' ବ୍ରହ୍ମଜ୍ଞାନ ମଧ୍ୟ ଦିଅନ୍ତି । କିନ୍ତୁ ଶୁଦ୍ଧ ଭକ୍ତ ପ୍ରାୟ ବ୍ରହ୍ମଜ୍ଞାନ ଚାହେଁନାହିଁ । ଆଉ ଜ୍ଞାନଯୋଗ ବଡ଼ କଠିନ ପଥ । ବ୍ରାହ୍ମସମାଜର ତୁମେମାନେ ଜ୍ଞାନୀ ନୁହଁ, ତୁମେମାନେ ଭକ୍ତ । ଯେଉଁମାନେ ଜ୍ଞାନୀ, ସେମାନଙ୍କର ବିଶ୍ୱାସ ଯେ, ବ୍ରହ୍ମ ସତ୍ୟ ଆଉ ଜଗତ୍ ମିଥ୍ୟା, ସ୍ୱପ୍ନବତ୍ ! ମୁଁ ତୁମେ ସବୁ ସ୍ୱପ୍ନବତ୍ ।''

## ବ୍ରାହ୍ମସମାଜ ଓ ବିଦ୍ୱେଷଭାବ ।

''ସେ ଅନ୍ତର୍ଯ୍ୟାମୀ ! ତାଙ୍କୁ ସରଳ ମନରେ, ଶୁଦ୍ଧ ମନରେ ପ୍ରାର୍ଥନା କର । ସେ ସବୁ ବୁଝାଇଦେବେ । ଅହଂକାର ତ୍ୟାଗ କରି ତାଙ୍କର ଶରଣାଗତ ହୁଅ, ସବୁ ପାଇବ ।''

''ଆପନାତେ ଆପନି ଥେକୋ ମନ, ଯେଓନାକୋ କାରୁ ଘରେ,
ଯା ଚାବି ତା' ବସେ ପାବି, ଖୋଁଜୋ ନିଜ ଅନ୍ତଃପୁରେ ।
ପରମଧନ ଏୀ ପରଶମଣି, ଯା ଚାବି ତା ଦିତେ ପାରେ;
କତ ମଣି ପଡ଼େ ଆଛେ, ଚିନ୍ତାମଣିର ନାଚଦୁୟାରେ ।''

''ଯେତେବେଳେ ବାହାର ଲୋକଙ୍କ ସଙ୍ଗରେ ମିଶିବ, ସେତେବେଳେ ସମସ୍ତଙ୍କୁ

ଭଲପାଇବ, ମିଶି ଯେପରି ଏକ ହୋଇଯିବ—ବିଦ୍ୱେଷଭାବ ଆଉ ରଖିବ ନାହିଁ । 'ସେ ବ୍ୟକ୍ତି ସାକାର ମାନନ୍ତି, ନିରାକାର ମାନନ୍ତି ନାହିଁ;ସେ ନିରାକାର ମାନନ୍ତି, ସାକାର ମାନନ୍ତି ନାହିଁ, ସେ ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟିଆନ୍' ଏହା କହି ନାକ ଟେକି ଘୃଣା କରନାହିଁ । ସେ ଯାହାଙ୍କୁ ଯେପରି ବୁଝାଇଛନ୍ତି । ସମସ୍ତଙ୍କର ଭିନ୍ନ ଭିନ୍ନ ପ୍ରକୃତି ଜାଣିବ, ଜାଣି ସେମାନଙ୍କ ସଙ୍ଗରେ ମିଶିବ ଯେତେଦୂର ପାର । ଆଉ ଭଲ ପାଇବ । ତାହାପରେ ନିଜ ଘରକୁ ଯାଇ ଶାନ୍ତି ଆନନ୍ଦ ଭୋଗ କରିବ । 'ହୃଦୟରୂପୀ ଘରେ ଜ୍ଞାନଦୀପ ଜାଳି ବ୍ରହ୍ମମୟୀଙ୍କ ମୁଖ ଦେଖ ।' ନିଜ ଘରେ ସ୍ୱ ସ୍ୱରୂପକୁ ଦେଖିବାକୁ ପାଇବ ।''

''ଗୋପାଳ ଯେତେବେଳେ ଗୋରୁ ଚରାଇବାକୁ ଯାଏ, ସେତେବେଳେ ଗୋରୁ ସବୁ ଗୋଠକୁ ଯାଇ ଏକ ହୋଇଯାଆନ୍ତି । ଏକ ଗୋଠର ଗୋରୁ । ପୁଣି ଯେତେବେଳେ ସନ୍ଧ୍ୟା ସମୟରେ ନିଜ ଘରକୁ ଯାଆନ୍ତି, ସେତେବେଳେ ପୁଣି ପୃଥକ ହୋଇଯାଆନ୍ତି । ନିଜ ଘରେ 'ନିଜେ ନିଜେ ରହେ ।''

## ସନ୍ନ୍ୟାସ ଓ ସଞ୍ଚୟ, ଅର୍ଥର ସଦ୍‌ବ୍ୟବହାର ।

ରାତ୍ରି ଦଶଟା ପରେ ଠାକୁର ରାମକୃଷ୍ଣ ଦକ୍ଷିଣେଶ୍ୱର କାଳୀ ମନ୍ଦିରଠାକୁ ଫେରିଯିବା ପାଇଁ ଗାଡ଼ିରେ ଉଠିଲେ । ସଙ୍ଗରେ ଜଣେ ଦୁଇଜଣ ସେବକ ଭକ୍ତ । ଗଭୀର ଅନ୍ଧକାର, ଗଛତଳେ ଗାଡ଼ି ଠିଆ ହୋଇଅଛି । ଶ୍ରୀଯୁକ୍ତ କେଶବ, ବେଣୀପାଲ, ରାମଲାଲ* ପାଇଁ ଲୁଚି ମିଷ୍ଟାନ୍ନାଦି ନେଇ ଗାଡ଼ିରେ ଚଢ଼ାଇଦେବାକୁ ଆସିଲେ ।

ବେଣୀପାଲ—ମହାଶୟ ! ରାମଲାଲ ଆସିପାରିନାହାନ୍ତି, ତାଙ୍କ ପାଇଁ ଖାଇବା ଜିନିଷ ଏମାନଙ୍କ ହାତରେ ଦେବାକୁ ଇଚ୍ଛା କରେ । ଆପଣ ଅନୁମତି କରନ୍ତୁ ।

ଶ୍ରୀରାମକୃଷ୍ଣ (ବ୍ୟସ୍ତ ହୋଇ)—ଆହେ ବାବୁ ବେଣୀପାଲ । ତୁମେ ମୋ ସଙ୍ଗରେ ସେସବୁ ଦିଅନା । ସେଥିରେ ମୋର ଦୋଷ ହେବ । ମୋ ସଙ୍ଗରେ କୌଣସି ଜିନିଷ ସଞ୍ଚୟ କରିନେବା ଠିକ୍ ନୁହେଁ । ତୁମେ କିଛି ମନେ କରିବ ନାହିଁ ।

ବେଣୀପାଲ—ଆଜ୍ଞା, ଆପଣ ଆଶୀର୍ବାଦ କରନ୍ତୁ ।

ଶ୍ରୀରାମକୃଷ୍ଣ—ଆଜି ଖୁବ୍ ଆନନ୍ଦ ହେଲା । ଦେଖ, ଅର୍ଥ ଯାହାର ଦାସ, ସେହି ମନୁଷ୍ୟ ! ଯେଉଁମାନେ ଅର୍ଥର ବ୍ୟବହାର ଜାଣନ୍ତି ନାହିଁ, ସେମାନେ ମନୁଷ୍ୟ ହେଲେ ମଧ ମନୁଷ୍ୟ ନୁହନ୍ତି । ମନୁଷ୍ୟର ଆକୃତି କିନ୍ତୁ ପଶୁର ବ୍ୟବହାର । ଧନ୍ୟ ତୁମେ ! ଏତେଗୁଡ଼ିଏ ଭକ୍ତଙ୍କୁ ଆନନ୍ଦ ଦେଲ ।



* ଶ୍ରୀଯୁକ୍ତ ରାମଲାଲ—ଠାକୁର ରାମକୃଷ୍ଣଙ୍କର ଭ୍ରାତୃଷ୍ପୁତ୍ର ଓ କାଳୀମନ୍ଦିରର ପୂଜାରୀ ।

# ଊନବିଂଶ ପରିଚ୍ଛେଦ

## (୧)

## ଶ୍ରୀରାମକୃଷ୍ଣ ବଡ଼ବଜାରରେ ମାରୁଓ୍ୱାଡ଼ି ଭକ୍ତଙ୍କ ମନ୍ଦିରରେ ।

ଆଜି ଠାକୁର ୧୨ ନଂ ମଲ୍ଲିକ ଷ୍ଟ୍ରୀଟ୍ ବଡ଼ବଜାରକୁ ଶୁଭାଗମନ କରୁଅଛନ୍ତି । ମାରୁଓ୍ୱାଡ଼ି ଭକ୍ତମାନେ ଅନ୍ନକୂଟ କରିଛନ୍ତି—ଠାକୁରଙ୍କୁ ନିମନ୍ତ୍ରଣ । ଦୁଇଦିନ ହେଲା, ଶ୍ୟାମାପୂଜା ହୋଇଯାଇଛି । ସେଦିନ ଠାକୁର ଦକ୍ଷିଣେଶ୍ୱର ଠାରେ ଭକ୍ତଙ୍କ ସଙ୍ଗରେ ଆନନ୍ଦ କରିଥିଲେ । ତାହାପରେ ପୁଣି ଭକ୍ତଙ୍କ ସଙ୍ଗରେ ସିଁଥି ବ୍ରାହ୍ମସମାଜରେ ଉତ୍ସବକୁ ଯାଇଥିଲେ । ଆଜି ସୋମବାର, ୨୦ ତାରିଖ ଅକ୍ଟୋବର, ୧୮୮୪ ଖ୍ରୀଷ୍ଟାବ୍ଦ । କାର୍ତ୍ତିକ ଶୁକ୍ଳ ପ୍ରତିପଦ ଦ୍ୱିତୀୟା ତିଥି । ବଡ଼ ବଜାରରେ ବର୍ତ୍ତମାନ ମଧ୍ୟ ଦୀପାବଳୀର ଆମୋଦ ଚାଲୁଅଛି ।

ଅନ୍ଦାଜ ବେଳ ୩ଟା ସମୟରେ ମାଷ୍ଟର ଛୋଟ ଗୋପାଳଙ୍କ ସଙ୍ଗରେ ବଡ଼ବଜାରରେ ଆସି ଉପସ୍ଥିତ । ଠାକୁର ସ୍ନାନବସ୍ତ୍ର କିଣିବାକୁ କହିଥିଲେ—ସେଗୁଡ଼ିକ କିଣିଛନ୍ତି । ତାହା ଗୋଟିଏ ହାତରେ, କାଗଜରେ ମୋଡ଼ା ଅଛି । ମଲ୍ଲିକ ଷ୍ଟ୍ରୀଟ୍‌ରେ ଦୁଇଜଣଯାକ ପହଞ୍ଚି ଦେଖନ୍ତି, ଲୋକରେ ଲୋକାରଣ୍ୟ—ଗୋରୁଗାଡ଼ି, ଜମା ହୋଇଛି । ୧୨ ନମ୍ବର ନିକଟବର୍ତ୍ତୀ ହୋଇ ଦେଖିଲେ, ଠାକୁର ଗାଡ଼ିରେ ବସିଛନ୍ତି, ଗାଡ଼ି ଆସିପାରୁନାହିଁ । ଭିତରେ ବାବୁରାମ, ରାମ ଚଟ୍ଟୋପାଧ୍ୟାୟ ! ଗୋପାଳ ଓ ମାଷ୍ଟରଙ୍କୁ ଦେଖି ଠାକୁର ହସୁଛନ୍ତି ।

ଠାକୁର ଗାଡ଼ିରୁ ଓହ୍ଲାଇଲେ । ସଙ୍ଗରେ ବାବୁରାମ, ଆଗେ ଆଗେ ମାଷ୍ଟର ପଥ ଦେଖାଇ ନେଇଯାଉଛନ୍ତି । ମାରୁଓ୍ୱାଡ଼ିମାନଙ୍କ ଘରଠାରେ ପହଞ୍ଚି ଦେଖନ୍ତି, ତଳେ କେବଳ ଲୁଗାର ଗଣ୍ଠିଲି ଅଗଣାରେ ପଡ଼ିଅଛି । ମଝିରେ ମଝିରେ ଗୋରୁ ଗାଡ଼ିରେ ମାଲ ବୋଝାଇ ହେଉଅଛି । ଠାକୁର ଭକ୍ତଙ୍କ ସଙ୍ଗରେ ଦୁଇତାଲାକୁ ଉଠିଲେ । ମାରୁଓ୍ୱାଡ଼ି ମାନେ ମଧ୍ୟ ଆସି ତାହାଙ୍କୁ ଗୋଟିଏ ତିନିତାଲା ଘରେ ବସାଇଲେ । ସେ ଘରେ ମା' କାଳୀଙ୍କ ଫଟୋ ରହିଅଛି-ଠାକୁର ଦେଖି ନମସ୍କାର କଲେ । ଠାକୁର ଆସନ ଗ୍ରହଣ କଲେ ଓ ସହାସ୍ୟରେ ଭକ୍ତଙ୍କ ସଙ୍ଗରେ କଥା କହୁଅଛନ୍ତି ।

ଜଣେ ମାରୁଓ୍ୱାଡ଼ି ଆସି ଠାକୁରଙ୍କର ପଦସେବା କରିବାକୁ ଲାଗିଲେ । ଠାକୁର କହିଲେ, ଥାଉ ଥାଉ । ପୁଣି କଅଣ ଭାବି କହିଲେ, ଆଚ୍ଛା ଟିକିଏ କର । ପ୍ରତ୍ୟେକ କଥାଟି କରୁଣାପୂର୍ଣ୍ଣ ।

ମାଷ୍ଟରଙ୍କୁ କହିଲେ, ସ୍କୁଲର କଅଣ ଛୁଟି ?

ମାଷ୍ଟର—ଆଜ୍ଞା, ଛୁଟି ।

ଶ୍ରୀରାମକୃଷ୍ଣ (ସହାସ୍ୟରେ)—କାଲି ପୁଣି ଅଧରଙ୍କ ସେଠାରେ ଚଣ୍ଡୀର ଗୀତ ।

ମାରୁଓ୍ୱାଡ଼ି ଭକ୍ତ ଗୃହସ୍ୱାମୀ ପଣ୍ଡିତଜୀଙ୍କୁ ଠାକୁରଙ୍କ ପାଖକୁ ପଠାଇଦେଲେ । ପଣ୍ଡିତଜୀ ଆସି ଠାକୁରଙ୍କୁ ପ୍ରଣାମ କରି ଆସନ ଗ୍ରହଣ କଲେ । ପଣ୍ଡିତଜୀଙ୍କ ସହିତ ଅନେକ ଈଶ୍ୱରୀୟ କଥା ହେଉଅଛି ।

## ଶ୍ରୀରାମକୃଷ୍ଣଙ୍କର କାମନା । ଭକ୍ତି କାମନା । ଭାବ, ଭକ୍ତି, ପ୍ରେମ । ପ୍ରେମର ମାନେ ।

ଅବତାର ବିଷୟକ କଥା ହେବାକୁ ଲାଗିଲା ।

ଶ୍ରୀରାମକୃଷ୍ଣ—ଭକ୍ତଙ୍କ ପାଇଁ ଅବତାର, ଜ୍ଞାନୀଙ୍କ ପାଇଁ ନୁହେଁ ।

ପଣ୍ଡିତଜୀ—ପରିତ୍ରାଣାୟ ସାଧୁନାମ୍ ବିନାଶାୟାଚ ଦୃଷ୍କୃତାମ୍ । ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।।

"ଅବତାର, ପ୍ରଥମ, ଭକ୍ତର ଆନନ୍ଦ ପାଇଁ ଆସନ୍ତି;ଆଉ ଦ୍ୱିତୀୟ, ଦୁଷ୍ଟର ଦମନ ପାଇଁ । ଜ୍ଞାନୀ କିନ୍ତୁ କାମନା ଶୂନ୍ୟ ।

ଶ୍ରୀରାମକୃଷ୍ଣ (ସହାସ୍ୟରେ)—ମୋର କିନ୍ତୁ ସବୁ କାମନା ଯାଇନାହିଁ । ମୋର ଭକ୍ତିକାମନା ଅଛି ।

ଏହି ସମୟରେ ପଣ୍ଡିତଜୀଙ୍କ ପୁତ୍ର ଆସି ଠାକୁରଙ୍କର ପାଦବନ୍ଦନା କରି ଆସନ ଗ୍ରହଣ କଲେ ।

ଶ୍ରୀରାମକୃଷ୍ଣ (ପଣ୍ଡିତଜୀଙ୍କ ପ୍ରତି)—ଆଚ୍ଛାଜୀ ! ଭାବ କାହାକୁ କହନ୍ତି, ଆଉ ଭକ୍ତି କାହାକୁ କହନ୍ତି ?

ପଣ୍ଡିତଜୀ—ଈଶ୍ୱରଙ୍କୁ ଚିନ୍ତା କରି ମନୋବୃତ୍ତି କୋମଳ ହୋଇଯାଏ, ତାହାର ନାମ ଭାବ, ଯେପରି ସୂର୍ଯ୍ୟ ଉଠିଲେ ବରଫ ତରଳି ଯାଏ ।

ଶ୍ରୀରାମକୃଷ୍ଣ—ଆଚ୍ଛାଜୀ, ପ୍ରେମ କାହାକୁ କହନ୍ତି ?

ପଣ୍ଡିତଜୀ ହିନ୍ଦିରେ ବରାବର କଥା କହୁଛନ୍ତି । ଠାକୁର ମଧ ତାଙ୍କ ସହିତ ମଧୁର ହିନ୍ଦିରେ କଥା କହୁଅଛନ୍ତି । ପଣ୍ଡିତଜୀ ଠାକୁରଙ୍କର ପ୍ରଶ୍ନର ଉତ୍ତରରେ ପ୍ରେମର ଅର୍ଥ ଏକରକମ ବୁଝାଇଦେଲେ ।

ଶ୍ରୀରାମକୃଷ୍ଣ (ପଣ୍ଡିତଜୀଙ୍କ ପ୍ରତି)—ନା, ପ୍ରେମ ମାନେ ତାହାନୁହେଁ । ପ୍ରେମ ମାନେ ଈଶ୍ୱରଙ୍କଠାରେ ଏପରି ଶ୍ରଦ୍ଧା ଯେ, ଜଗତ୍ ତ ଭୁଲ୍ ହୋଇଯିବ, ପୁଣି ନିଜର ଦେହ, ଯାହା ଏତେ ପ୍ରିୟ, ତାହା ମଧ ଭୁଲ ହୋଇଯିବ । ଚୈତନ୍ୟଦେବଙ୍କର ହୋଇଥିଲା ।

ପଣ୍ଡିତଜୀ—ଆଜ୍ଞା ହଁ ଯେପରି ମାତାଲ ହେଲେ ହୁଅନ୍ତି ।

ଶ୍ରୀରାମକୃଷ୍ଣ—ଆଚ୍ଛାଜୀ, କାହାର ଭକ୍ତି ହୁଏ, କାହାର ହୁଏନାହିଁ, ଏହାର ମାନେ କଅଣ ?

ପଣ୍ଡିତଜୀ—ଈଶ୍ୱରଙ୍କର ବୈଷମ୍ୟ ନାହିଁ । ସେ କଳ୍ପତରୁ, ଯେ ଯାହା ଚାହେଁ, ସେ ତାହା ପାଏ । ତେବେ କଳ୍ପତରୁ ପାଖକୁ ଯାଇ ଚାହିଁବାକୁ ହୁଏ ।

ପଣ୍ଡିତଜୀ ହିନ୍ଦିରେ ଏ ସମସ୍ତ କହୁଛନ୍ତି । ଠାକୁର ମାଷ୍ଟରଙ୍କ ଆଡ଼କୁ ଚାହିଁ ଏହି କଥାଗୁଡ଼ିକର ଅର୍ଥ କହିଦେଉଛନ୍ତି ।

## ସମାଧି ତତ୍ତ୍ୱ

ଶ୍ରୀରାମକୃଷ୍ଣ—ଆଚ୍ଛାଜୀ, ସମାଧି କିପରି ସବୁ କହ ଦେଖି ।

ପଣ୍ଡିତଜୀ—ସମାଧି ଦୁଇ ପ୍ରକାର-ସବିକଳ୍ପ ଆଉ ନିର୍ବିକଳ୍ପ । ନିର୍ବିକଳ୍ପ ସମାଧିରେ ଆଉ ବିକଳ୍ପ ନାହିଁ—

ଶ୍ରୀରାମକୃଷ୍ଣ—ହଁ 'ତଦାକାର କାରିତ ।' ଧ୍ୟାତା, ଧ୍ୟେୟ ଭେଦ ରହେନାହିଁ । ଆଉ ଚେତନ ସମାଧି ଓ ଜଡ଼ ସମାଧି । ନାରଦ, ଶୁକଦେବ ଏମାନଙ୍କର ଚେତନ ସମାଧି । କିପରି ଜୀ ?

ପଣ୍ଡିତଜୀ—ଆଜ୍ଞା, ହଁ ।

ଶ୍ରୀରାମକୃଷ୍ଣ— ଉନ୍ମନା ସମାଧି; ସ୍ଥିତ ସମାଧି, କିପରି ଜୀ ?

ପଣ୍ଡିତଜୀ ଚୁପ କରି ରହିଲେ; କୌଣସି କଥା କହିଲେ ନାହିଁ ।

ଶ୍ରୀରାମକୃଷ୍ଣ—ଆଚ୍ଛାଜୀ, ଜପ ତପ କଲେ ତ ସିଦ୍ଧି ହୋଇପାରେ—ଯେପରି ଗଙ୍ଗା ଉପରେ ଚାଲିଯାଇ ହୁଏ ?

ପଣ୍ଡିତଜୀ—ଆଜ୍ଞା ତା' ହୁଏ, ଭକ୍ତ କିନ୍ତୁ ତାହା ଚାହେଁନାହିଁ ।

ଆଉ କିଛି କଥାବାର୍ତ୍ତା ପରେ ପଣ୍ଡିତଜୀ କହିଲେ, ଏକାଦଶୀ ଦିନ ଦକ୍ଷିଣେଶ୍ୱରରେ ଆପଣଙ୍କୁ ଦର୍ଶନ କରିବାକୁ ଯିବି ।

ଶ୍ରୀରାମକୃଷ୍ଣ—ଆହା, ତୁମର ପୁଅଟି ବେଶ୍ !

ପଣ୍ଡିତଜୀ—ନାହିଁ ମହାରାଜ ! ନଦୀର ଗୋଟିଏ ଢେଉ ଯାଉଛି ତ ଅନ୍ୟ ଗୋଟିଏ ଢେଉ ଆସୁଛି । ସବୁ ହିଁ ଅନିତ୍ୟ ।

ଶ୍ରୀରାମକୃଷ୍ଣ—ତୁମ ଭିତରେ ସାର ଅଛି ।

ପଣ୍ଡିତଜୀ କିୟତ୍‌କ୍ଷଣ ପରେ ପ୍ରଣାମ କଲେ; କହିଲେ, ତେବେ ପୂଜା କରିବାକୁ ଯାଉଛି ?

ଶ୍ରୀରାମକୃଷ୍ଣ—ଆରେ ବୈଠୋ, ବୈଠୋ !

ପଣ୍ଡିତଜୀ ପୁଣି ବସିଲେ ।

ଠାକୁର ହଠଯୋଗ କଥା ପକାଇଲେ । ପଣ୍ଡିତଜୀ ହିନ୍ଦିରେ ଠାକୁରଙ୍କ ସହିତ ଏହି ସମ୍ବନ୍ଧରେ ଆଳାପ କରୁଛନ୍ତି । ଠାକୁର କହିଲେ, ହଁ ଏହା ଏକ ପ୍ରକାର ତପସ୍ୟା ସତ, କିନ୍ତୁ ହଠଯୋଗୀ ଦେହାଭିମାନୀ ସାଧୁ—କେବଳ ଦେହ ଦିଗରେ ମନ ।

ପୁଣି ପଣ୍ଡିତଜୀ ବିଦାୟ ଗ୍ରହଣ କଲେ । ପୂଜା କରିବାକୁ ଯିବେ । ଠାକୁର ପଣ୍ଡିତଜୀଙ୍କ ପୁତ୍ରଙ୍କ ସହିତ କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ—କିଛି ନ୍ୟାୟ-ବେଦାନ୍ତ , ଆଉ ଦର୍ଶନ ଶାସ୍ତ୍ର ପଢ଼ିଲେ ଶ୍ରୀମଭାଗବତ ବେଶ୍ ବୁଝାଯାଏ । ଠିକ୍ ତ ?

ପୁତ୍ର—ହଁ, ମହାରାଜ ! ସାଂଖ୍ୟ ଦର୍ଶନ ପଢ଼ିବା ବଡ଼ ଦରକାର ।

ଏହିପରି କଥା ମଝିରେ ମଝିରେ ଚାଲିଲା ।

ଠାକୁର ତକିଆରେ ଟିକିଏ ଭରାଦେଇ ଶୋଇଲେ । ପଣ୍ଡିତଙ୍କ ପୁତ୍ର ଓ କେତେ ଭକ୍ତ ତଳେ ବସିଅଛନ୍ତି । ଠାକୁର ଶୋଇ ଶୋଇ ଗୀତ ଗାଇଲେ—

ହରିସେ ଲାଗି ରହେ ରେ ଭାଇ, ତେରା ବନତ ବନତ ବନି ଯାଇ,
ତେରା ବିଗଡ଼ି ବାତ ବନି ଯାଇ ।
ଅଙ୍କା ତାରେ ବଙ୍କା ତାରେ, ତାରେ ସୁଜନ କଶାଇ,
ଶୁଗା ପଢ଼ାୟକେ ଗଣିକା ତାରେ, ତାରେ ମିରାବାଈ ।

## (୨)

## ଅବତାର କଅଣ ବର୍ତ୍ତମାନ ନାହାନ୍ତି ?

ଗୃହସ୍ୱାମୀ ଆସି ପ୍ରଣାମ କଲେ । ସେ ମାରୁଓ୍ୱାଡ଼ି ଭକ୍ତ, ଠାକୁରଙ୍କୁ ବଡ଼ ଭକ୍ତି କରନ୍ତି । ପଣ୍ଡିତଜୀଙ୍କର ପୁଅଟି ବସିଛନ୍ତି । ଠାକୁର ପ୍ରଶ୍ନ କଲେ, ପାଣିନି ବ୍ୟାକରଣ କ'ଣ ଏ ଦେଶରେ ପଢ଼ାହୁଏ ?

ମାଷ୍ଟର—ଆଜ୍ଞା, ପାଣିନି ?

ଶ୍ରୀରାମକୃଷ୍ଣ—ହଁ, ଆଉ ନ୍ୟାୟ, ବେଦାନ୍ତ ଏସବୁ ପଢ଼ାହୁଏ ?

ଗୃହସ୍ୱାମୀ ସେ ସବୁ କଥାରେ ମତ ନଦେଇ ପ୍ରଶ୍ନ କରୁଅଛନ୍ତି ।

ଗୃହସ୍ୱାମୀ—ଆଜ୍ଞା, ଏହି ଆଶୀର୍ବାଦ କରନ୍ତୁ, ଯେଉଁଥିରେ ସଂସାର ପ୍ରତି ମନ କମିଯାଏ ।

ଶ୍ରୀରାମକୃଷ୍ଣ (ସହାସ୍ୟରେ)—କେତେ ଅଛି ? ଆଠଅଣା ? (ହାସ୍ୟ) ।

ଗୃହସ୍ୱାମୀ—ଆଜ୍ଞା, ତାହା ଆପଣ ଜାଣନ୍ତି । ମହାତ୍ମାଙ୍କର ଦୟା ନହେଲେ କିଛି ହେବନାହିଁ ।

ଶ୍ରୀରାମକୃଷ୍ଣ—ତାଙ୍କୁ ସନ୍ତୁଷ୍ଟ କଲେ ସମସ୍ତେ ସନ୍ତୁଷ୍ଟ ହେବେ । ମହାତ୍ମାଙ୍କ ହୃଦୟରେ ସେ ତ ଅଛନ୍ତି ।

ଗୃହସ୍ୱାମୀ—ତାଙ୍କୁ ପାଇଲେ ଆଉ ଚିନ୍ତା ନାହିଁ । ତାଙ୍କୁ ଯଦି କେହି ପାଏ, ତେବେ ସେ ସବୁ ଛାଡ଼େ । ଟଙ୍କା ପାଇଲେ ପଇସାର ଆନନ୍ଦ ଛାଡ଼ିଦିଏ ।

ଶ୍ରୀରାମକୃଷ୍ଣ—କିଛି ସାଧନ କରିବା ଦରକାର । ସାଧନ କଲେ କ୍ରମେ ଆନନ୍ଦ ଲାଭ ହୁଏ । ମାଟିର ଅନେକ ତଳେ ଯଦି ଗରାରେ ଭରା ଧନ ଥାଏ, ଆଉ ଯଦି କେହି ସେହି ଧନ ଚାହେଁ, ତାହାହେଲେ ପରିଶ୍ରମ କରି ଖୋଳିଯିବାକୁ ହୁଏ । ମୁଣ୍ଡ ଦେଇ ଝାଳ ବହେ, କିନ୍ତୁ ଅନେକ ଖୋଳିବା ପରେ ଗରାରେ ଯେତେବେଳେ ଫାଉଡ଼ା ଲାଗେ ଟଂ କରି ବାଜେ, ସେତେବେଳେ ଯାଇ ଆନନ୍ଦ ହୁଏ । ଯେତେ ଟଂ ଟଂ ବାଜିବ, ସେତେ ହିଁ ଆନନ୍ଦ । ରାମଙ୍କୁ ଡାକିଯାଅ, ତାଙ୍କର ଚିନ୍ତା କର । ରାମ ହିଁ ଯୋଗାଡ଼ କରିଦେବେ ।

ଗୃହସ୍ୱାମୀ—ମହାରାଜ, ଆପଣ ହିଁ ରାମ ।

ଶ୍ରୀରାମକୃଷ୍ଣ—ସେ କଅଣ, ନଦୀର ହିଲ୍ଲୋଳ, ହିଲ୍ଲୋଳର କ'ଣ ନଦୀ ?

ଗୃହସ୍ୱାମୀ—ମହାତ୍ମାଙ୍କ ଭିତରେ ହିଁ ରାମ ଅଛନ୍ତି । ରାମଙ୍କୁ ତ ଦେଖାଯାଏ ନାହିଁ । ଆଉ ବର୍ତ୍ତମାନ ଅବତାର ନାହାନ୍ତି ।

ଶ୍ରୀରାମକୃଷ୍ଣ (ସହାସ୍ୟରେ)—କିପରି ଜାଣିଲ ଅବତାର ନାହାନ୍ତି ? ଗୃହସ୍ୱାମୀ ଚୁପ୍ ହୋଇ ରହିଲେ ।

ଶ୍ରୀରାମକୃଷ୍ଣ—ଅବତାରଙ୍କୁ ସମସ୍ତେ ଚିହ୍ନି ପାରନ୍ତି ନାହିଁ । ନାରଦ ଯେତେବେଳେ ରାମଚନ୍ଦ୍ରଙ୍କୁ ଦର୍ଶନ କରିବାକୁ ଗଲେ, ରାମ ଉଠିପଡ଼ି ସାଷ୍ଟାଙ୍ଗ ହୋଇ ପ୍ରଣାମ କଲେ, ଆଉ କହିଲେ, ଆମେମାନେ ସଂସାରୀ ଜୀବ, ଆପଣଙ୍କ ପରି ସାଧୁ ସବୁ ନ ଆସିଲେ କିପରି ପବିତ୍ର ହେବୁ ? ପୁଣି ଯେତେବେଳେ ସତ୍ୟପାଳନ ପାଇଁ ବନକୁ ଗଲେ, ସେତେବେଳେ ଦେଖିଲେ ରାମଙ୍କର ବନବାସ କଥା ଶୁଣିବା ଦିନଠାରୁ ଋଷିମାନେ ଆହାର ତ୍ୟାଗ କରି ଅନେକ ପଡ଼ି ରହିଛନ୍ତି ! ରାମ ଯେ ସାକ୍ଷାତ୍ ପରଂବ୍ରହ୍ମ, ତାହା ସେମାନେ ଜାଣନ୍ତି ନାହିଁ ।

ଗୃହସ୍ୱାମୀ—ଆପଣ ମଧ୍ୟ ସେହି ରାମ ।

ଶ୍ରୀରାମକୃଷ୍ଣ—ରାମ ! ରାମ ! ସେକଥା କହିବା ଠିକ୍ ନୁହେଁ ।

ଏହାକହି ଠାକୁର ହାତ ଯୋଡ଼ି କରି ପ୍ରଣାମ କଲେ ଓ କହିଲେ—"ଓହି ରାମ ଘଟ ଘଟମେ ଲେଟା, ଓହି ରାମ ଜଗତ୍ ପସେରା ! ମୁଁ ତୁମମାନଙ୍କର ଦାସ । ସେହି ରାମ ହିଁ ଏହିସବୁ ମନୁଷ୍ୟ ଜୀବଜନ୍ତୁ ହୋଇଛନ୍ତି ।"

ଗୃହସ୍ୱାମୀ—ମହାରାଜ, ଆମ୍ଭେମାନେ ତ ତାହା ଜାଣୁନା—

ଶ୍ରୀରାମକୃଷ୍ଣ—ତୁମେ ଜାଣ ଆଉ ନ ଜାଣ, ତୁମେ ରାମ ।

ଗୃହସ୍ୱାମୀ—ଆପଣଙ୍କର ରାଗ ଦ୍ୱେଷ ନାହିଁ ।

ଶ୍ରୀରାମକୃଷ୍ଣ—କାହିଁକି ? ଯେଉଁ ଗାଡ଼ିବାଲାର କଲିକତାକୁ ଆସିବାର କଥା ଥିଲା, ସେ ତିନିଅଣା ପଇସା ନେଇଗଲା, ଆଉ ଆସିଲା ନାହିଁ, ତାହା ଉପରେ ତ ଖୁବ୍ ରାଗିଗଲି ! କିନ୍ତୁ ଭାରି ଖରାପ ଲୋକ, ଦେଖନା, କେତେ କଷ୍ଟ ଦେଲା ।

## (୩)

## ବଡ଼ବଜାରର ଅନ୍ନକୂଟ—ମହୋତ୍ସବ ମଧ୍ୟରେ । ଢ ମୟୁର ମୁକୁଟଧାରୀଙ୍କ ପୂଜା ।

ଠାକୁର ଶ୍ରୀରାମକୃଷ୍ଣ କିୟତ୍କ୍ଷଣ ବିଶ୍ରାମ କରୁଅଛନ୍ତି । ଏଣେ ମାରୁଓ୍ୱାଡ଼ି ଭକ୍ତମାନେ ବାହାରେ ଛାତ ଉପରେ ଭଜନ ଇତ୍ୟାଦି ଆରମ୍ଭ କରିଅଛନ୍ତି । ଶ୍ରୀଶ୍ରୀମୟୂର ମୁକୁଟଧାରୀଙ୍କର ଆଜି ମହୋତ୍ସବ । ଭୋଗର ସମସ୍ତ ଆୟୋଜନ ହୋଇଅଛି । ଠାକୁର ଦର୍ଶନ କରିବାକୁ ଆହ୍ୱାନ କରି ସେମାନେ ଶ୍ରୀରାମକୃଷ୍ଣଙ୍କୁ ନେଇଗଲେ । ମୟୂର ମୁକୁଟଧାରୀଙ୍କୁ ଦର୍ଶନ

କରି ଠାକୁର ପ୍ରଣାମ କଲେ ଓ ନିର୍ମାଲ୍ୟ ଧାରଣ କଲେ ।

ବିଗ୍ରହ ଦର୍ଶନ କରି ଠାକୁର ଭାବରେ ମୁଗ୍‌ଧ । ହାତଜୋଡ଼ି କରି କହୁଛନ୍ତି, ପ୍ରାଣ ହେ ଗୋବିନ୍ଦ ମମ ଜୀବନ ! ଜୟ ଗୋବିନ୍ଦ, ଗୋବିନ୍ଦ, ବାସୁଦେବ, ସଚ୍ଚିଦାନନ୍ଦ ବିଗ୍ରହ ! ହା କୃଷ୍ଣ, ହେ କୃଷ୍ଣ, ଜ୍ଞାନ କୃଷ୍ଣ, ମନ କୃଷ୍ଣ, ପ୍ରାଣ କୃଷ୍ଣ, ଆତ୍ମା କୃଷ୍ଣ, ଦେହ କୃଷ୍ଣ, ଜାତ କୃଷ୍ଣ, କୂଳ କୃଷ୍ଣ, ପ୍ରାଣ ହେ ଗୋବିନ୍ଦ ମମ ଜୀବନ !

ଏହି କଥାଗୁଡ଼ାକ କହୁ କହୁ ଠାକୁର ଠିଆରେ ଠିଆରେ ସମାଧିସ୍ଥ ହେଲେ । ଶ୍ରୀଯୁକ୍ତ ରାମ ଚାଟାର୍ଜୀ ଠାକୁରଙ୍କୁ ଧରି ରହିଲେ ।

ଅନେକକ୍ଷଣ ପରେ ସମାଧି ଭଙ୍ଗ ହେଲା ।

ଏଣେ ମାରୁଓ୍ୱାଡ଼ି ଭକ୍ତମାନେ ସିଂହାସନସ୍ଥ ମୟୂର ମୁକୁଟଧାରୀ ବିଗ୍ରହକୁ ବାହାରକୁ ନେଇଯିବାକୁ ଆସିଲେ । ବାହାରେ ଭୋଗର ଆୟୋଜନ ହୋଇଛି ।

ଶ୍ରୀରାମକୃଷ୍ଣଙ୍କର ସମାଧିଭଙ୍ଗ ହୋଇଅଛି । ମହାନନ୍ଦରେ ମାରୁଓ୍ୱାଡ଼ି ଭକ୍ତମାନେ ସିଂହାସନସ୍ଥ ବିଗ୍ରହକୁ ଘରର ବାହାରକୁ ନେଇଯାଉଛନ୍ତି । ଠାକୁର ମଧ୍ୟ ସଙ୍ଗେ ସଙ୍ଗେ ଯାଉଛନ୍ତି । ଭୋଗ ହେଲା ସମୟରେ ମାରୁଓ୍ୱାଡ଼ି ଭକ୍ତମାନେ ଲୁଗାର ଆଡୁଆଳ କଲେ ! ଭୋଗାନ୍ତେ ଆଳତି ଓ ଗୀତ ହେବାକୁ ଲାଗିଲା । ଶ୍ରୀରାମକୃଷ୍ଣ ବିଗ୍ରହକୁ ଚାମର ବ୍ୟଜନ କରୁଛନ୍ତି ।

ଏଥର ବ୍ରାହ୍ମଣ ଭୋଜନ ହେଉଅଛି । ଏହି ଛାତ ଉପରେ ଠାକୁରଙ୍କ ସମ୍ମୁଖରେ ଏହି କାର୍ଯ୍ୟ ନିଷ୍ପନ୍ନ ହେଲା । ଠାକୁର ଶ୍ରୀରାମକୃଷ୍ଣଙ୍କୁ ମାରୁଓ୍ୱାଡ଼ିମାନେ ଖାଇବାକୁ ଅନୁରୋଧ କଲେ । ଠାକୁର ବସିଲେ, ଭକ୍ତମାନେ ମଧ୍ୟ ପ୍ରସାଦ ପାଇଲେ ।

## ବଡ଼ବଜାରଠାରୁ ରାଜପଥରେ, 'ଦୀପାବଳୀ' ଦୃଶ୍ୟ ମଧ୍ୟରେ ।

ଠାକୁର ବିଦାୟ ଗ୍ରହଣ କଲେ । ସନ୍ଧ୍ୟା ହୋଇଅଛି । ରାସ୍ତାରେ ବଡ଼ ଭିଡ଼ ! ଠାକୁର କହିଲେ, 'ଆମ୍ଭେମାନେ ନୋହିଲେ ଗାଡ଼ିରୁ ଓହ୍ଲାଉଛୁ, ଗାଡ଼ି ପଛକୁ ବୁଲି ଆସୁ ।' ରାସ୍ତାରେ ଟିକିଏ ଯାଉ ଯାଉ ଠାକୁର ଦେଖିଲେ, ଗାୟକମାନେ ଗର୍ତ୍ତପରି ଗୋଟିଏ ଘର ସାମନାରେ ଦୋକାନ ଖୋଲି ବସିଅଛନ୍ତି ! ସେ ଘରକୁ ପ୍ରବେଶ କରିବାକୁ ହେଲେ ମୁଣ୍ଡ ଟିକିଏ ନୁଆଁଇ ପ୍ରବେଶ କରିବାକୁ ହୁଏ । ଠାକୁର କହୁଛନ୍ତି, କି କଷ୍ଟ ଏହି ଟିକକ ଭିତରେ ବନ୍ଦ ହୋଇ ରହନ୍ତି । ସଂସାରୀଙ୍କର କିପରି ସ୍ୱଭାବ । ଏଥିରେ ପୁଣି ଏତେ ଆନନ୍ଦ !

ଗାଡ଼ି ବୁଲି ପାଖକୁ ଆସିଲା । ଠାକୁର ପୁଣି ଗାଡ଼ିରେ ଉଠିଲେ । ଭିତରେ ଠାକୁରଙ୍କ ସଙ୍ଗରେ ବାବୁରାମ, ମାଷ୍ଟର ଓ ରାମ ଚାଟାର୍ଜୀ ।

ଛୋଟ ଗୋପାଳ ଗାଡ଼ିର ଛାତ ଉପରେ ବସିଲେ ।

ଜଣେ ଭିଖାରିଣୀ, ପୁଅ କୋଳରେ, ଗାଡ଼ି ସମ୍ମୁଖକୁ ଆସି ଭିକ୍ଷା ଚାହିଁଲା । ଠାକୁର ଦେଖି, ମାଷ୍ଟରଙ୍କୁ କହିଲେ, ହଇହେ, ପଇସା ଅଛି ? ଗୋପାଳ ପଇସା ଦେଲେ ।

ବଡ଼ବଜାର ଦେଇ ଗାଡ଼ି ଚାଲିଅଛି । ଦୀପାବଳୀର ଭାରି ଧୂମ୍ । ଅନ୍ଧକାର ରାତ୍ରି, କିନ୍ତୁ ଦୀପାଲୋକରେ ଆଲୋକମୟ । ବଡ଼ବଜାରର ଗଳିରୁ ଗାଡ଼ି ଯାଇ ଚିତ୍‌ପୁର ରୋଡ଼ରେ ପହଞ୍ଚିଲା । ସେ ସ୍ଥାନ ମଧ୍ୟ ଆଲୋକମୟ ଓ ଲୋକାରଣ୍ୟ । ଲୋକମାନେ ଆଗ୍ରହ ସହକାରେ ଦୁଇ ପାର୍ଶ୍ୱର ସୁସଜ୍ଜିତ ବିପଣୀଗୁଡ଼ିକ ଦର୍ଶନ କରୁଥିଲେ । କେଉଁଠାରେ ବା ମିଷ୍ଟାନ୍ନର ଦୋକାନ, ପାତ୍ରସ୍ଥିତ ନାନାବିଧ ମିଷ୍ଟାନ୍ନରେ ସୁଶୋଭିତ, କେଉଁଠାରେ ମଧ୍ୟ ଗୋଲାପ-ଅତର ଦୋକାନ, ନାନାବିଧ ସୁନ୍ଦର ଚିତ୍ରରେ ସୁଶୋଭିତ । ଦୋକାନଦାରଗଣ ମନୋହର ବେଶ ଧାରଣ କରି ଗୋଲାପଜଳ ପାତ୍ର ହସ୍ତରେ ଧରି ଦର୍ଶକବୃନ୍ଦଙ୍କ ଉପରେ ଗୋଲାପଜଳ ବର୍ଷଣ କରୁଥିଲେ । ଗାଡ଼ି ଗୋଟିଏ ଅତରବାଲା ଦୋକାନ ସାମ୍ନାରେ ଆସି ଠିଆହେଲା । ଠାକୁର ପାଞ୍ଚବର୍ଷର ବାଳକପରି ଛବି ଓ ରୋଶଣୀ ଦେଖି ଆହ୍ଲାଦ ପ୍ରକାଶ କରୁଛନ୍ତି । ଚତୁର୍ଦ୍ଦିଗରେ କୋଳାହଳ । ଠାକୁର ଉଚ୍ଚସ୍ୱରରେ କହୁଛନ୍ତି,—ଆଉ ଆଗକୁ ଯାଇ ଦେଖ, ଆଉ ଆଗକୁ ଯାଇ ଦେଖ । ପୁଣି କହୁ କହୁ ହସୁଛନ୍ତି । ବାବୁରାମଙ୍କୁ ଉଚ୍ଚହାସ୍ୟ କରି କହୁଛନ୍ତି, ଆରେ, ଆଗକୁ ଯାଅ; କଅଣ କରୁଛୁ ?

## ଆଗେଇ ଯାଅ । ଶ୍ରୀରାମକୃଷ୍ଣଙ୍କର ସଞ୍ଚୟ କରିବାର ଶକ୍ତି ନାହିଁ ।

ଭକ୍ତମାନେ ହସିବାକୁ ଲାଗିଲେ, ବୁଝିଲେ ଠାକୁର କହୁଛନ୍ତି, ଈଶ୍ୱରଙ୍କ ଦିଗରେ ଆଗେଇ ଯାଅ, ନିଜର ବର୍ତ୍ତମାନ ଅବସ୍ଥାରେ ସନ୍ତୁଷ୍ଟ ହୋଇ ରହ ନାହିଁ । ବ୍ରହ୍ମଚାରୀ କାଠୁରିଆକୁ କହିଲେ, ଆଗେଇ ଯାଅ । କାଠୁରିଆ ଆଗେଇ କ୍ରମେ କ୍ରମେ, ଚନ୍ଦନ ଗଛର ବଣ, ପୁଣି କିଛିଦିନ ପରେ ଆଗେଇ ଯାଇ ଦେଖେ, ରୂପାର ଖଣି, ପୁଣି ଆଗେଇ ଯାଇ ଦେଖେ ସୁନାର ଖଣି, ଶେଷରେ ଦେଖେ ହୀରା ମାଣିକ । ତେଣୁ ଠାକୁର ବାରମ୍ବାର କହୁଛନ୍ତି, ଆଗେଇ ଯାଅ, ଆଗେଇ ଯାଅ । ଗାଡ଼ି ଚାଲିବାକୁ ଲାଗିଲା । ମାଷ୍ଟର କିଣି ଆଣିଥିବା ଲୁଗା ଠାକୁର ଦେଖୁଛନ୍ତି । ଦୁଇଖଣ୍ଡ ଗାଧୁଆ ଲୁଗା ଆଉ ଦୁଇଖଣ୍ଡ ପିନ୍ଧାଲୁଗା । ଠାକୁର କିନ୍ତୁ କେବଳ ଗାଧୁଆ ଲୁଗା କିଣିବାକୁ କହିଥିଲେ । ଠାକୁର କହିଲେ; ଗାଧୁଆ ଲୁଗା ଦୁଇଖଣ୍ଡ ସଙ୍ଗରେ ଦିଅ, ବରଂ ଅନ୍ୟ ଲୁଗାଗୁଡ଼ିକ ବର୍ତ୍ତମାନ ନେଇଯାଅ, ତୁମ ପାଖରେ ରଖିଦେବ । ଖଣ୍ଡେ ବରଂ ଦିଅ ।

ମାଷ୍ଟର—ଆଜ୍ଞା, ଖଣ୍ଡେ ଫେରାଇ ନେଇଯିବି ?

ଶ୍ରୀରାମକୃଷ୍ଣ—ତାହା ନହେଲେ ଦୁଇଖଣ୍ଡ ଯାକ ନେଇଯାଅ ।

ମାଷ୍ଟର—ଆଜ୍ଞା ।

ଶ୍ରୀରାମକୃଷ୍ଣ—ପୁଣି ଯେତେବେଳେ ଦରକାର ହେବ, ସେତେବେଳେ ଆଣିଦେବ । ଦେଖ, କାଲି ବେଣୀପାଲ ରାମଲାଲ ପାଇଁ ଖାଇବା ଜିନିଷ ଦେବାକୁ ଆସିଥିଲେ । ମୁଁ କହିଲି, ମୋ ସଙ୍ଗରେ କୌଣସି ଜିନିଷ ଦିଅନାହିଁ । ସଞ୍ଚୟ କରିବାର ଶକ୍ତି ନାହିଁ ।

ମାଷ୍ଟର—ଆଜ୍ଞା ହଁ, ତେବେ କ'ଣ କରାଯିବ । ଏହି ସାଦା ଦୁଇଖଣ୍ଡ ଫେରାଇ ନେଇଯିବି ।

ଶ୍ରୀରାମକୃଷ୍ଣ (ସସ୍ନେହରେ)—ମୋ ମନରେ କିଛି କଷ୍ଟ ହେଲେ, ତୁମମାନଙ୍କ ପକ୍ଷରେ ଭଲ ନୁହେଁ,—ଏ ତ ନିଜର କଥା । ଯେତେବେଳେ ଦରକାର ହେବ, କହିବି ।

ମାଷ୍ଟର (ବିନୀତ ଭାବରେ)—ଆଜ୍ଞା ।

ଗାଡ଼ି ଗୋଟିଏ ଦୋକାନ ସାମନାରେ ଆସି ଠିଆ ହେଲା । ସେଠାରେ ଚିଲମ ବିକ୍ରି ହେଉଛି । ଶ୍ରୀରାମକୃଷ୍ଣ ରାମ ଚାଟାର୍ଜୀଙ୍କୁ କହିଲେ, ରାମ ପଇସାଟାକର ଚିଲମ କିଣି ନିଅ ।

ଠାକୁର ଜଣେ ଭକ୍ତଙ୍କ କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ—ମୁଁ ତାକୁ କହିଲି କାଲି ବଡ଼ବଜାରକୁ ଯିବି, ତୁ ଚାଲ । ସେ କ'ଣ କହିଲା ଜାଣ ? 'ଟ୍ରାମ୍‌ରେ ଚାରିପଇସା ଭଡ଼ା ଲାଗିବ; କିଏ ଯିବ ?' ବେଣୀପାଲଙ୍କ ଉଦ୍ୟାନକୁ କାଲି ଯାଇଥିଲା । ସେଠାରେ ପୁଣି ଆଚାର୍ଯ୍ୟଗିରି କଲା ! କେହି କହି ନାହାନ୍ତି, ନିଜେ ନିଜେ କହେ—ଯେପରି ଲୋକେ ଜାଣିବେ ଯେ, ମୁଁ ବ୍ରାହ୍ମସମାଜର ଜଣେ । (ମାଷ୍ଟରଙ୍କ ପ୍ରତି)—ହଇହେ, ଏ କ'ଣ କହ ଦେଖି, କହେ, ଗଲେ ଅଣାଏ ଖର୍ଚ୍ଚ ଲାଗିବ ।

ମାରୁଆଡ଼ି ଭକ୍ତଙ୍କର ଅନ୍ନକୂଟର କଥା ପୁଣି ପଡ଼ିଲା ।

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)—ଏଠାରେ ଯାହା ଦେଖିଲ ବୃନ୍ଦାବନରେ ମଧ୍ୟ ତାହା । *ରାଖାଲ ପ୍ରଭୃତି ବୃନ୍ଦାବନରେ ଏହିସବୁ ଦେଖୁଛନ୍ତି । ତେବେ ସେଠାରେ ଅନ୍ନକୂଟ ଆହୁରି ଅଧିକ ଉଚ୍ଚ, ଲୋକବାକ ମଧ୍ୟ ଅନେକ ବେଶୀ, ଗୋବର୍ଦ୍ଧନ ପର୍ବତ ଅଛି, ଏହିସବୁ ପ୍ରଭେଦ ।

## ହିନ୍ଦୁଧର୍ମ ସନାତନ ଧର୍ମ ।

''କିନ୍ତୁ ମାରଓ୍ୱାଡ଼ିମାନଙ୍କର କିପରି ଭକ୍ତି ଦେଖୁଛ ! ଯଥାର୍ଥରେ ହିଁ ହିନ୍ଦୁଭାବ । ସନାତନ ଧର୍ମ । —ଠାକୁରଙ୍କୁ ନେଇଯିବା ସମୟରେ କେତେ ଆନନ୍ଦ ଦେଖିଲ, ଆନନ୍ଦ ଏହି ଭାବରେ ଯେ, ଭଗବାନଙ୍କର ସିଂହାସନ ଆମେମାନେ ବହନ କରି ନେଇଯାଉଅଛୁ ।''

''ହିନ୍ଦୁଧର୍ମ ହିଁ ସନାତନ ଧର୍ମ ! ଇଦାନୀଂ ଯେ ସମସ୍ତ ଧର୍ମ ଦେଖୁଛ ଏସବୁ ତାଙ୍କ ଇଚ୍ଛାରେ ହେବ ଓ ଯିବ । ରହିବ ନାହିଁ । ସେଥିପାଇଁ ମୁଁ କହେ, ଇଦାନୀଂ ଯେ ସମସ୍ତେ ଭକ୍ତ, ସେମାନଙ୍କର ମଧ୍ୟ ଚରଣେଭ୍ୟୋ ନମଃ । ହିନ୍ଦୁଧର୍ମ ପ୍ରଥମରୁ ଅଛି ଆଉ ସର୍ବଦା ରହିବ ।'' ମାଷ୍ଟର ଘରକୁ ଫେରିଯିବେ । ଠାକୁରଙ୍କର ଚରଣ ବନ୍ଦନା କରି ଶୋଭାବଜାର ପାଖରେ ଓହ୍ଲାଇଲେ । ଠାକୁର ଆନନ୍ଦ କରି କରି ଗାଡ଼ିରେ ଯାଉଛନ୍ତି ।''



*ରାଖାଲ ସେତେବେଳେ (ଅକ୍ଟୋବର ମାସରେ) ବୃନ୍ଦାବନରେ ଥିଲେ ।

# ବିଂଶ ପରିଚ୍ଛେଦ

## (୧)

## ଦକ୍ଷିଣେଶ୍ୱରରେ ଭକ୍ତଙ୍କ ସଙ୍ଗରେ ।

ଚାଲ ଭାଇ, ପୁଣି ଦର୍ଶନ କରିବାକୁ ଯିବା । ସେହି ମହାପୁରୁଷଙ୍କୁ, ସେହି ବାଳକଙ୍କୁ ଦେଖିବା: ଯେ ମା' ବ୍ୟତୀତ ଆଉ କିଛି ଜାଣନ୍ତି ନାହିଁ;ଯେ ଆମମାନଙ୍କ ପାଇଁ ଦେହ ଧାରଣ କରି ଆସିଛନ୍ତି—ସେ କହିଦେବେ, କିପରି ଏହି କଠିନ ଜୀବନ ସମସ୍ୟା ସମାଧାନ କରିବାକୁ ହେବ, ସନ୍ନ୍ୟାସୀଙ୍କୁ କହିଦେବେ, ଗୃହୀଙ୍କୁ କହିଦେବେ । ଅବାରିତ ଦ୍ୱାର ଦକ୍ଷିଣେଶ୍ୱର କାଳୀମନ୍ଦିର ଠାରେ ଆମମାନଙ୍କ ପାଇଁ ଅପେକ୍ଷା କରୁଛନ୍ତି । ଚାଲ ଚାଲ, ତାଙ୍କୁ ଦର୍ଶନ କରିବା ।

''ଅନନ୍ତ ଗୁଣାଧାର ପ୍ରସନ୍ନମୂରତି, ଯାହାଙ୍କ କଥା ଶୁଣିଲେ ଆଖିରୁ ଅଶ୍ରୁ ଝରିପଡ଼େ ।''

ଚାଲ ଭାଇ, ସେହି ଅହେତୁକ କୃପାସିନ୍ଧୁ, ପ୍ରିୟଦର୍ଶନ, ଈଶ୍ୱର ପ୍ରେମରେ ନିଶିଦିନ ମତୁଆଲା, ସହାସ୍ୟ ବଦନ ଠାକୁର ଶ୍ରୀରାମକୃଷ୍ଣଙ୍କୁ ଦର୍ଶନ କରି ମାନବ-ଜୀବନ ସାର୍ଥକ କରିବା ।

ଆଜି ରବିବାର, ୨୬ ତାରିଖ ଅକ୍ଟୋବର ୧୮୮୪ ଖ୍ରୀଷ୍ଟାବ୍ଦ । ହେମନ୍ତ କାଳ । କାର୍ତ୍ତିକର ଶୁକ୍ଳା ସପ୍ତମୀ ତିଥି ।

ସମୟ ଦୁଇପ୍ରହର । ଠାକୁରଙ୍କର ସେହି ପୂର୍ବ ପରିଚିତ ଘରେ ଭକ୍ତମାନେ ସମବେତ ହୋଇଅଛନ୍ତି । ସେହି ଘରର ପଶ୍ଚିମ ଭାଗରେ ଅର୍ଦ୍ଧଚନ୍ଦ୍ରାକାର ବାରଣ୍ଡା । ବାରଣ୍ଡାର ପଶ୍ଚିମରେ ଉଦ୍ୟାନ—ପଥ ଉତ୍ତର ଦକ୍ଷିଣରେ ଯାଇଅଛି । ପଥର ପଶ୍ଚିମରେ ମା' କାଳୀଙ୍କର ପୁଷ୍ପୋଦ୍ୟାନ, ତା' ପରେ ହିଁ ପୋସ୍ତା;ତତ୍‌ପରେ ପବିତ୍ର ସଲିଳା ଦକ୍ଷିଣ-ବାହିନୀ ଗଙ୍ଗା ।

ଭକ୍ତମାନେ ଅନେକେ ଉପସ୍ଥିତ ଅଛନ୍ତି । ଆଜି ଆନନ୍ଦର ହାଟ । ଆନନ୍ଦମୟ ଠାକୁର ରାମକୃଷ୍ଣଙ୍କର ଈଶ୍ୱର-ପ୍ରେମ ଭକ୍ତ-ମୁଖଦର୍ପଣରେ ମୁକୁରିତ ହେଉଥିଲା । କି ଆଶ୍ଚର୍ଯ୍ୟ ! ଆନନ୍ଦ କେବଳ ମୁଖଦର୍ପଣରେ କାହିଁକି ? ବାହାର ଉଦ୍ୟାନରେ ବୃକ୍ଷ ପତ୍ରରେ, ନାନାବିଧ ଯେ କୁସୁମ -ଫୁଟି ରହିଅଛି ତନ୍ମଧ୍ୟରେ, ବିଶାଳ ଭାଗୀରଥୀ ବକ୍ଷରେ, ରବିକର-ପ୍ରଦୀପ୍ତ-ନୀଳ ନଭୋମଣ୍ଡଳରେ, ମୁରାରିଚରଣଚ୍ୟୁତ ଗଙ୍ଗାବାରିକଣାବାହୀ ଶୀତଳ ସମୀରଣ ମଧ୍ୟରେ ଏହି ଆନନ୍ଦ ପ୍ରତିଭାସିତ ହେଉଥିଲା । କି ଆଶ୍ଚର୍ଯ୍ୟ । ସତ୍ୟ ସତ୍ୟ ହିଁ 'ମଧୁମତିରଜଃ' ଉଦ୍ୟାନର ଧୂଳି ପର୍ଯ୍ୟନ୍ତ ମଧୁମୟ ! —ଇଚ୍ଛାହୁଏ, ଗୋପନରେ ବା ଭକ୍ତ ସଙ୍ଗରେ ଏହି ଧୂଳି ଉପରେ ଗଡ଼ିଯିବି । ଇଚ୍ଛାହୁଏ, ଉଦ୍ୟାନର ଏକପାର୍ଶ୍ୱରେ ଠିଆହୋଇ ସମସ୍ତ ଦିନ ଏହି ମନୋହରୀ ଗଙ୍ଗାବାରୀ ଦର୍ଶନ କରିବି । ଇଚ୍ଛାହୁଏ, ଏହି ଉଦ୍ୟାନର ତରୁଲତାଗୁଳ୍ମ ପତ୍ରପୁଷ୍ପୋଶୋଭିତ ସ୍ନିଗ୍ଧୋଜ୍ଜ୍ୱଳ ବୃକ୍ଷଗୁଡ଼ିକୁ ଆତ୍ମୀୟଜ୍ଞାନରେ ସାଦର ସମ୍ଭାଷଣ ଓ

ପ୍ରେମାଲିଙ୍ଗନ ଦାନ କରିବି । ଏହି ଧୂଳିର ଉପର ଦେଇ ଠାକୁର ରାମକୃଷ୍ଣ ପଦଚାରଣ କରନ୍ତି ! ଏହି ବୃକ୍ଷଲତାଗୁଳ୍ମ ମଧ୍ୟ ଦେଇ ସେ କ'ଣ ଅହରହଃ ଯାତାୟତ କରନ୍ତି ! ଇଚ୍ଛା ହୁଏ, ଜ୍ୟୋତିର୍ମୟ ଗଗନ ଆଡ଼କୁ ଅନନ୍ୟଦୃଷ୍ଟି ହୋଇ ଅନାଇଁ ରହିବି । କାହିଁକି ନା, ଦେଖୁଅଛି ଭୂଲୋକ ଦ୍ୟୁଲୋକ ସମସ୍ତ ହିଁ ପ୍ରେମାନନ୍ଦରେ ଭାସୁଛି !

ମନ୍ଦିରର ପୂଜାରୀ, ଦୌବାରିକ, ପରିଚାରକ, କାହିଁକି ସମସ୍ତଙ୍କୁ ପରମାତ୍ମୀୟ ବୋଧ ହେଉଅଛି—କାହିଁକି ଏ ସ୍ଥାନ ବହୁଦିନାନ୍ତେ ଦୃଷ୍ଟ ଜନ୍ମଭୂମି ପରି ମଧୁର ଲାଗୁଅଛି ? ଆକାଶ, ଗଙ୍ଗା, ଦେବମନ୍ଦିର, ଉଦ୍ୟାନପଥ, ବୃକ୍ଷ, ଲତା, ଗୁଳ୍ମ, ସେବକଗଣ, ଆସନରେ ଉପବିଷ୍ଟ ଭକ୍ତଗଣ, ସମସ୍ତେ ଯେପରି ଏକ ଜିନିଷରେ ତିଆରି ବୋଲି ବୋଧ ହେଉଛି । ଯେଉଁ ଜିନିଷରେ ନିର୍ମିତ ଶ୍ରୀରାମକୃଷ୍ଣ; ଏମାନେ ମଧ୍ୟ ବୋଧ ହେଉଛି, ସେହି ଜିନିଷରେ ହେବେ । ଯେପରି ଗୋଟିଏ ମହଣର ଉଦ୍ୟାନ, ଗଛପତ୍ର, ଫଳପତ୍ର, ସବୁ ମହଣର, ଉଦ୍ୟାନର ପଥ, ଉଦ୍ୟାନର ମାଳି, ଉଦ୍ୟାନ ନିବାସୀଗଣ, ଉଦ୍ୟାନ ମଧ୍ୟସ୍ଥିତ ଗୃହ, ସମସ୍ତ ହିଁ ମହଣର । ଏଠାକାର ସମସ୍ତ ଯେପରି ଆନନ୍ଦ ଦେଇ ଗଢ଼ା ।

ଶ୍ରୀମନମୋହନ, ଶ୍ରୀଯୁକ୍ତ ମହିମାଚରଣ, ମାଷ୍ଟର ଉପସ୍ଥିତ ଥିଲେ । କ୍ରମେ ଈଶାନ, ହୃଦୟ ଓ ହାଜରା ଆସିଲେ । ଏମାନଙ୍କ ବ୍ୟତୀତ ଅନେକ ଭକ୍ତ ଥିଲେ । ବଳରାମ, ରାଖାଲ ଏମାନେ ସେତେବେଳେ ଶ୍ରୀବୃନ୍ଦାବନ ଧାମରେ । ଏହି ସମୟରେ ନୂତନ ଭକ୍ତମାନେ ଆସନ୍ତି, ଯାଆନ୍ତି; ନାରାୟଣ, ପଲଟୁ, ଛୋଟ ନରେନ୍, ତେଜଚନ୍ଦ୍ର, ବିନୋଦ, ହରିପଦ, ବାବୁରାମ ଆସି ମଝିରେ ମଝିରେ ରହନ୍ତି । ରାମ, ସୁରେଶ, କେଦାର ଓ ଦେବେନ୍ଦ୍ରାଦି ଭକ୍ତଗଣ ପ୍ରାୟ ଆସନ୍ତି-କେହି କେହି ସପ୍ତାହାନ୍ତେ, କେହି ଦୁଇ ସପ୍ତାହ ପରେ । ଲାଟୁ ରହନ୍ତି । ଯୋଗୀନଙ୍କର ଘର ନିକଟ, ସେ ପ୍ରାୟ ପ୍ରତ୍ୟହ ଯାତାୟତ କରନ୍ତି । ନରେନ୍ଦ୍ର ମଝିରେ ମଝିରେ ଆସନ୍ତି, ଆସିଲା ମାତ୍ରେ ଆନନ୍ଦର ହାଟ ! ନରେନ୍ଦ୍ର ତାଙ୍କର ସେହି ଦେବ ଦୁର୍ଲଭ କଣ୍ଠରେ ଭଗବାନଙ୍କର ନାମଗୁଣ କରନ୍ତି; ଏପରି ଠାକୁରଙ୍କର ନାନାବିଧ ଭାବ ଓ ସମାଧି ହୁଏ । ଗୋଟାଏ ଯେପରି ଉତ୍ସବ ଆରମ୍ଭ ହୁଏ । ଠାକୁରଙ୍କର ଭାରି ଇଚ୍ଛା, ପିଲାଭିତରୁ କେହି ତାଙ୍କ ପାଖରେ ରାତ୍ରିଦିନ ରହନ୍ତେ, କାହିଁକି ନା, ସେମାନେ ସଂସାରରେ ବିବାହାଦିସୂତ୍ରରେ ବା ବିଷୟ କର୍ମରେ ଆବଦ୍ଧ ହୋଇନାହାନ୍ତି । ବାବୁରାମଙ୍କୁ ରହିବାକୁ କହନ୍ତି, ସେ ମଝିରେ ମଝିରେ ରହନ୍ତି । ଶ୍ରୀଯୁକ୍ତ ଅଧର ସେନ ପ୍ରାୟ ଆସନ୍ତି ।

ଘର ମଧ୍ୟରେ ଭକ୍ତମାନେ ବସିଅଛନ୍ତି । ଠାକୁର ରାମକୃଷ୍ଣ ବାଳକ ପରି ଠିଆ ହୋଇ କଅଣ ଭାବୁଛନ୍ତି । ଭକ୍ତମାନେ ଚାହିଁଅଛନ୍ତି ।

## ଅବ୍ୟକ୍ତ ଓ ବ୍ୟକ୍ତ,
## The Undifferenciated and Differenciated,

ଶ୍ରୀରାମକୃଷ୍ଣ (ମନମୋହନଙ୍କ ପ୍ରତି)—ସବୁ ରାମମୟ ଦେଖୁଛି । ତୁମେମାନେ ସବୁ ବସିଅଛ; ଦେଖୁଛି ରାମ ହିଁ ସବୁ ଗୋଟିଏ ଗୋଟିଏ ହୋଇଛନ୍ତି ।

ମନମୋହନ—ରାମ ହିଁ ସବୁ ହୋଇଛନ୍ତି, ତେବେ ଆପଣ ଯେପରି କହନ୍ତି, 'ଆପୋ ନାରାୟଣ', କିନ୍ତୁ କେଉଁ ଜଳ ପିଆଯାଏ, କେଉଁ ଜଳରେ ମୁଖ ଧୁଆ ଚଳେ; କେଉଁ ଜଳରେ ବାସନ ମଜା ।

ଶ୍ରୀରାମକୃଷ୍ଣ—ହଁ, କିନ୍ତୁ ଦେଖୁଛି ସେ ହିଁ କେବଳ ସବୁ । ଜୀବ ଜଗତ୍ ସେ ହୋଇଛନ୍ତି । ଏହି କଥା କହୁ କହୁ ଠାକୁର ଛୋଟ ଖଟଟିରେ ବସିଲେ ।

## ସତ୍ୟ କଥା

ଶ୍ରୀରାମକୃଷ୍ଣ (ମହିମାଚରଣଙ୍କ ପ୍ରତି)—ହଇ ହେ, ସତ୍ୟ କଥା କହିବାକୁ ହେବ ବୋଲି କଅଣ ମୋର ଶୁଚିରୋଗ ହେଲା ନା କଅଣ ? ଯଦି ହଠାତ୍ କହେ ଖାଇବି ନାହିଁ, ତେବେ କ୍ଷୁଧା ପାଇଲେ ମଧ୍ୟ ଖାଇବାର ଶକ୍ତି ନାହିଁ । ଯଦି କହେ ଝାଉଁତଳକୁ ମୋର ଗଡୁ ନେଇ ଅମୁକ ଲୋକକୁ ଯିବାକୁ ହେବ, ଅନ୍ୟକେହି ନେଇଗଲେ ତାକୁ ପୁଣି ଫେରିଯିବାକୁ କହିବାକୁ ହେବ । ଓ ବାବା କଅଣ ହେଲା ! ଏହାର କଅଣ କୌଣସି ଉପାୟ ନାହିଁ ?

## ସଞ୍ଚୟ ଓ ସନ୍ନ୍ୟାସୀ ।

"ପୁଣି ସଙ୍ଗରେ କିଛି ଆଣିବାର ଶକ୍ତି ନାହିଁ । ପାନ କିମ୍ବା ଖାଇବାର କୌଣସି ଜିନିଷ ସଙ୍ଗରେ ନେବାର ଶକ୍ତି ନାହିଁ । ତାହାହେଲେ ସଞ୍ଚୟ ହେଲା କି ନା ? ହାତରେ ମାଟି ନେଇ ଆସିବାକୁ ଶକ୍ତି ନାହିଁ !"

ଏହି ସମୟରେ ଜଣେ ଲୋକ ଆସି କହିଲା, ମହାଶୟ ! ହୃଦୟ ଯଦୁ ମଲ୍ଲିକଙ୍କ ଘରଠାକୁ ଆସିଛନ୍ତି, ଫାଟକ ପାଖରେ ଠିଆ ହୋଇଛନ୍ତି, ଆପଣଙ୍କ ସଙ୍ଗରେ ଦେଖା କରିବାକୁ ଚାହାନ୍ତି । ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)—ହୃଦୁଙ୍କ ସଙ୍ଗରେ ଥରେ ଦେଖାକରି ଆସେ । ତୁମେମାନେ ବସ ।

ଏହା କହି କଳା ବାର୍ଣ୍ଣିସ କରା ଚଟିଜୋତା ପିନ୍ଧି ସେ ପୂର୍ବଦିଗର ଫାଟକ ଅଭିମୁଖରେ ଚାଲିଲେ । ସଙ୍ଗରେ କେବଳ ମାଷ୍ଟର ।

ଲାଲସୁରୁକିର ଉଦ୍ୟାନ ପଥ । ସେହି ପଥରେ ଠାକୁର ପୂର୍ବାସ୍ୟ ହୋଇ ଯାଉଛନ୍ତି । ପଥରେ ତତ୍ତ୍ୱାବଧାରକ ଠିଆ ହୋଇଥିଲେ, ଠାକୁରଙ୍କୁ ପ୍ରଣାମ କଲେ । ଦକ୍ଷିଣରେ ପ୍ରାଙ୍ଗଣର ଫାଟକ ରହିଲା, ସେଠାରେ ଶ୍ମଶ୍ରୁଧାରୀ ଦୌବାରିକଗଣ ବସିଥିଲେ । ବାମ ଦିଗରେ ବୈଠକଖାନା । ତତ୍‌ପରେ ପଥର ଦୁଇ ଦିଗରେ କୁସୁମବୃକ୍ଷ, ଅଦୂରେ ପଥର ଠିକ୍ ଦକ୍ଷିଣଦିଗରେ ଗାଜିତଳା ଓ ମା' କାଳୀଙ୍କର ପୁଷ୍କରିଣୀର ସୋପାନାବଳି—ଶୋଭିତ ଘାଟ । କ୍ରମେ ପୂର୍ବଦ୍ୱାର, ବାମଦିଗରେ ଦ୍ୱାରବାନମାନଙ୍କର ଘର ଓ ଦକ୍ଷିଣରେ ତୁଳସୀ ମଞ୍ଚ । ଉଦ୍ୟାନର ବାହାରକୁ ଆସି ଦେଖନ୍ତି, ଯଦୁ ମଲ୍ଲିକଙ୍କର ଉଦ୍ୟାନ ଫାଟକ ପାଖରେ ହୃଦୟ ଦଣ୍ଡାୟମାନ ।

## ( ୨ )
## ସେବକ ସନ୍ନିକଟରେ !

ହୃଦୟ କୃତାଞ୍ଜଳିପୁଟରେ ଦଣ୍ଡାୟମାନ । ଦର୍ଶନ ମାତ୍ରେ ରାଜପଥର ଉପରେ ଦଣ୍ଡ ପରି ନିପତିତ ହେଲେ । ଠାକୁର ଉଠିବାକୁ କହିଲେ, ହୃଦୟ ପୁଣି ହାତଯୋଡ଼ି ବାଳକ ପରି କାନ୍ଦିବାକୁ ଲାଗିଲେ ।

କି ଆଶ୍ଚର୍ଯ୍ୟ ! ଠାକୁର ଶ୍ରୀରାମକୃଷ୍ଣ ମଧ୍ୟ କାନ୍ଦୁଅଛନ୍ତି ! ଚକ୍ଷୁ କୋଣରେ କେତେ ଟୋପା ଲୁହ ଦେଖାଗଲା ! ଅଶ୍ରୁବାରି ହାତଦେଇ ପୋଛି ପକାଇଲେ—ଯେପରି ଚକ୍ଷୁର ଲୁହ ପଡ଼ିନାହିଁ । ଏ କଅଣ ! ଯେଉଁ ହୃଦୟ ତାଙ୍କୁ ଏତେ ଯନ୍ତ୍ରଣା ଦେଇଥିଲେ, ତାଙ୍କ ପାଇଁ ଦୌଡ଼ି ଆସିଛନ୍ତି । ଆଉ କାନ୍ଦୁଛନ୍ତି ।

ଶ୍ରୀରାମକୃଷ୍ଣ—ବର୍ତ୍ତମାନ ଯେ ଆସିଲୁ ?

ହୃଦୟ (କାନ୍ଦି କାନ୍ଦି)—ତୁମ ସଙ୍ଗରେ ଦେଖା କରିବାକୁ ଆସିଲି । ମୋର ଦୁଃଖ ଆଉ କାହା ପାଖରେ କହିବି ?

ଶ୍ରୀରାମକୃଷ୍ଣ (ସାନ୍ତ୍ୱନାର୍ଥ ସହାସ୍ୟରେ)—ସଂସାରେ ଏହିପରି ଦୁଃଖ ଅଛି । ସଂସାର କରିବାକୁ ଗଲେ ହିଁ ସୁଖ ଦୁଃଖ ଅଛି । (ମାଷ୍ଟରଙ୍କୁ ଦେଖାଇ) ଏମାନେ ଥରେ ଥରେ ସେଥିପାଇଁ ଆସନ୍ତି । ଆସି ଈଶ୍ୱରୀୟ କଥା କିଛିଟା ଶୁଣିଲେ ମନରେ ଶାନ୍ତି ହୁଏ ।

ଶ୍ରୀରାମକୃଷ୍ଣ—ତୋର କେଉଁଥିରେ ଦୁଃଖ ?

ହୃଦୟ (କାନ୍ଦି କାନ୍ଦି)—ଆପଣଙ୍କ ସଙ୍ଗ ଛାଡ଼ିଛି ବୋଲି ଦୁଃଖ ।

ଶ୍ରୀରାମକୃଷ୍ଣ—ତୁ ତ କହିଲୁ, 'ତୁମ ଭାବ ତୁମଠାରେ ଥାଉ, ମୋର ଭାବ ମୋଠାରେ ଥାଉ !'

ହୃଦୟ—ହଁ, ତାହା ତ କହିଥିଲି—ମୁଁ କଅଣ ଜାଣେ ?

ଶ୍ରୀରାମକୃଷ୍ଣ—ଆଜି ତେବେ ଯାଆ, ଆଉଦିନେ ଆସିବୁ, ସେତେବେଳେ ବସି କଥା କହିବି । ଆଜି ରବିବାର ଅନେକ ଲୋକ ଆସିଛନ୍ତି, ସେମାନେ ବସି ରହିଛନ୍ତି । ଏଥର ଦେଶରେ ଧାନ ଫସଲ କିପରି ହୋଇଛି ?

ହୃଦୟ—ହଁ, ତାହା ଏକ ପ୍ରକାର ମନ୍ଦ ହୋଇନାହିଁ ।

ଶ୍ରୀରାମକୃଷ୍ଣ—ଆଜି ତେବେ ଯାଆ, ଆଉ ଦିନେ ଆସିବୁ ।

ହୃଦୟ ପୁଣି ସାଷ୍ଟାଙ୍ଗ ହୋଇ ପ୍ରଣାମ କଲେ ।

ଠାକୁର ସେହି ପଥ ଦେଇ ଫେରିଆସିଲେ । ସଙ୍ଗରେ ମାଷ୍ଟର ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—ମୋର ସେବା ଯେତେ କରିଛି, ଯନ୍ତ୍ରଣା ମଧ୍ୟ ସେହିପରି ଦେଇଛି । ମୁଁ ଯେତେବେଳେ ପେଟ ରୋଗରେ ହାଡ଼ ଦୁଇଖଣ୍ଡ ହୋଇଯାଇଛି—କିଛି ଖାଇପାରୁ ନାହିଁ, ସେତେବେଳେ ମୋତେ କହେ, "ହେଇ ଦେଖ, ମୁଁ କିପରି ଖାଉଛି,

ତୁମର ମନ ଗୁଣରେ ଖାଇପାରୁ ନାହିଁ ।'' ପୁଣି କହେ, ''ବୋକା—ମୁଁ ନଥିଲେ ତୁମର ସାଧୁଗିରି ବାହାରି ଯାଆନ୍ତା !'' ଦିନେ ଏହିପରି ଏତେ ଯନ୍ତ୍ରଣା ଦେଲା ଯେ, ପୋସ୍ତା ଉପରେ ଠିଆହୋଇ କୁଆର ଜଳରେ ଦେହ ତ୍ୟାଗ କରିବାକୁ ଯାଇଥିଲି ।

ମାଷ୍ଟର ଶୁଣି ଅବାକ୍ ହୋଇ ରହିଲେ । ବୋଧହୁଏ ଭାବିବାକୁ ଲାଗିଲେ ଏପରି ଲୋକ ପାଇଁ ଠାକୁର ଅଶ୍ରୁବାରି ବିସର୍ଜନ କରୁଥିଲେ ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—''ଆଚ୍ଛା ଏତେ ସେବା କରୁଥିଲା, ତେବେ କାହିଁକି ଏହାର ଏପରି ହେଲା ? ପିଲାକୁ ଯେପରି ମନୁଷ୍ୟ କରନ୍ତି, ସେହିପରି ମୋତେ ଦେଖିଛି । ମୁଁ ତ ରାତିଦିନ ବେହୋସ ହୋଇଥାଏ, ତାହା ଭିତରେ ମଧ ଅନେକ ଦିନ ଧରି ରୋଗ ଭୋଗିଛି । ସେ ଯେପରି ମୋତେ ରଖେ, ସେହିପରି ମୁଁ ରହେ ।'' ମାଷ୍ଟର କଅଣ କହିବେ, ଚୁପ୍ କରି ରହିଲେ । ହୁଏତ ଭାବୁଥିଲେ ଯେ ହୃଦୟ ବୋଧହୁଏ ନିଷ୍କାମ ହୋଇ ଠାକୁରଙ୍କର ସେବା କରିନାହାନ୍ତି ।

କଥା କହୁ କହୁ ଠାକୁର ନିଜ ଘରେ ଆସି ପହଞ୍ଚିଲେ । ଭକ୍ତମାନେ ପ୍ରତୀକ୍ଷା କରୁଥିଲେ । ଠାକୁର ପୁଣି ଛୋଟ ଖଟ ଉପରେ ଉପବିଷ୍ଟ ହେଲେ ।

## (୩)

## ଭକ୍ତଙ୍କ ସଙ୍ଗରେ–ନାନା ପ୍ରସଙ୍ଗରେ । ଭାବ, ମହାଭାବର ଗୂଢ଼ତତ୍ତ୍ୱ ।

ଶ୍ରୀଯୁକ୍ତ ମହିମାଚରଣ ଇତ୍ୟାଦିଙ୍କ ବ୍ୟତୀତ କେତେଜଣ କୋନ୍ନଗରରୁ ଭକ୍ତ ଆସିଥିଲେ । ସେମାନଙ୍କ ମଧ୍ୟରେ ଜଣେ ଠାକୁର ରାମକୃଷ୍ଣଙ୍କ ସଙ୍ଗରେ କିୟତ୍‌କାଳ ବିଚାର କରିଥିଲେ ।

କୋନ୍ନଗର ଭକ୍ତ—ମହାଶୟ ! ଶୁଣିଲି ଯେ ଆପଣଙ୍କର ଭାବ ହୁଏ, ସମାଧି ହୁଏ । କାହିଁକି ହୁଏ, ଆଉ କିପରି ହୁଏ, ଆମ୍ଭମାନଙ୍କୁ ବୁଝାଇ ଦିଅନ୍ତୁ ।

ଶ୍ରୀରାମକୃଷ୍ଣ—ଶ୍ରୀମତୀଙ୍କର ମହାଭାବ ହୁଏ, ସଖୀମାନେ କେହି ଛୁଇଁବାକୁ ଗଲେ ଅନ୍ୟ ସଖୀ କହନ୍ତି, 'କୃଷ୍ଣ ବିଳାସର ଅଙ୍ଗ ଛୁଅଁନା—ଏହାଙ୍କ ଦେହ ମଧ୍ୟରେ ବର୍ତ୍ତମାନ କୃଷ୍ଣ ବିଳାସ କରୁଛନ୍ତି ।'

''ଈଶ୍ୱର ଅନୁଭବ ନହେଲେ ଭାବ ବା ମହାଭାବ ହୁଏନାହିଁ । ଗଭୀର ଜଳରୁ ମାଛ ଆସିଲେ ଜଳ ଟହଲେ—ସେହିପରି ମାଛ ହଲି ଜଳକୁ ଘାଣ୍ଟି ପକାଏ । ତେଣୁ ଭାବୁଛି—'ହସେ କାନ୍ଦେ, ନାଚେ ଗାଏ'।''

''ଅନେକକ୍ଷଣ ଭାବରେ ରହିହୁଏ ନାହିଁ । ଦର୍ପଣ ପାଖରେ ବସି କେବଳ ମୁଖ ଦେଖିଲେ ଲୋକେ ପାଗଳ ବୋଲି ମନେ କରିବେ ।''

କୋନ୍ନଗରର ଭକ୍ତ—ଶୁଣିଛି, ଆପଣ ଈଶ୍ୱର ଦର୍ଶନ କରନ୍ତି, ତାହାହେଲେ ଆମମାନଙ୍କୁ ଦେଖାଇ ଦିଅନ୍ତୁ ।

ଶ୍ରୀରାମକୃଷ୍ଣ—ସବୁ ହିଁ ଈଶ୍ୱରାଧୀନ—ମନୁଷ୍ୟ କଅଣ କରିବେ ? ତାଙ୍କ ନାମ କରୁ କରୁ କେତେବେଳେ ମଧ୍ୟ ଧାରା ବହେ, କେତେବେଳେ ବହେନାହିଁ । ତାଙ୍କର ଧ୍ୟାନ କରିବାକୁ ଦିନେ ଦିନେ ବେଶ୍ ଉଦ୍ଦୀପନ ହୁଏ—ପୁଣି ଏକଦିନ କିଛି ହିଁ ହୁଏନାହିଁ ।

## କର୍ମଯୋଗ ଓ ଈଶ୍ୱର ଦର୍ଶନ ।

"କର୍ମ ଦରକାର, ତେବେ ଦର୍ଶନ ହୁଏ । ଦିନେ ଭାବରେ ହାଲଦାରପୁକୁର* ଦେଖିଲି । ଦେଖିଲି ଜଣେ ଲୋକ ଦଳ ଠେଲି ଜଳ ନେଉଛି, ଆଉ ଜଳ ହାତରେ ଉଠାଇ ଥରେ ଥରେ ଦେଖୁଛି । ଯେପରି ଦେଖାଗଲା, ଦଳ ନ ଆଡ଼େଇଲେ ଜଳ ଦେଖାଯାଏ ନାହିଁ—କର୍ମ ନ କଲେ ଭକ୍ତି ଲାଭ ହୁଏନାହିଁ, ଈଶ୍ୱର ଦର୍ଶନ ହୁଏନାହିଁ । ଧ୍ୟାନ ଜପ ଏହିସବୁ କର୍ମ, ତାଙ୍କର ନାମଗୁଣ କୀର୍ତ୍ତନ ମଧ୍ୟ କର୍ମ—ଦାନ, ଯଜ୍ଞ ଏହିସବୁ ମଧ୍ୟ କର୍ମ ।"

"ଲହୁଣୀ ଯଦି ଚାହଁ, ତେବେ ଦୁଧକୁ ଦହି ବସାଇବାକୁ ହୁଏ । ତା'ପରେ ନିର୍ଜନରେ ରଖିବାକୁ ହୁଏ । ପରେ ଦହି ବସିଲେ ପରିଶ୍ରମ କରି ମନ୍ଥନ କରିବାକୁ ହୁଏ । ତେବେ ଯାଇ ଲହୁଣୀ ବାହାର ହୁଏ ।"

ମହିମାଚରଣ—ଆଜ୍ଞା ହଁ, କର୍ମ ଦରକାର, ତାହା ଛଡ଼ା କଅଣ ! ଅନେକ ଖଟିବାକୁ ହୁଏ, ତେବେ ଲାଭ ହୁଏ । ଅନେକ ପଢ଼ିବାକୁ ଅଛି । ଅନନ୍ତ ଶାସ୍ତ୍ର !

## ଆଗେ ବିଦ୍ୟା (ଜ୍ଞାନ ବିଚାର) ନା ଆଗେ ଈଶ୍ୱର ଲାଭ ?

ଶ୍ରୀରାମକୃଷ୍ଣ (ମହିମାଙ୍କ ପ୍ରତି)—ଶାସ୍ତ୍ର କେତେ ପଢ଼ିବ ? ବିଚାର କଲେ କଅଣ ହେବ ? ଆଗେ ତାଙ୍କୁ ଲାଭ କରିବାକୁ ଚେଷ୍ଟା କର, ଗୁରୁ ବାକ୍ୟରେ ବିଶ୍ୱାସ କରି କିଛି କର୍ମ କର । ଗୁରୁ ନଥିଲେ, ତାଙ୍କୁ ବ୍ୟାକୁଳ ହୋଇ ପ୍ରାର୍ଥନା କର, ସେ କିପରି—ସେହି କେବଳ ଜଣାଇଦେବେ !

"ବହି ପଢ଼ି କଅଣ ଜାଣିବ ? ଯେତେକ୍ଷଣ ହାଟରେ ପହୁଞ୍ଚା ନ ଯାଏ, ସେତେକ୍ଷଣ ଦୂରରୁ କେବଳ ହୋ ହୋ ଶବ୍ଦ । ହାଟରେ ପହଞ୍ଚିଲେ ଆଉ ଏକରକମ । ସେତେବେଳେ ସ୍ପଷ୍ଟ ଦେଖିବାକୁ ପାଇବ, ଶୁଣିବାକୁ ପାଇବ । 'ଆଳୁ ନିଅ' 'ପଇସା ଦିଅ' ସ୍ପଷ୍ଟ ଶୁଣିବାକୁ ପାଇବ ।"

"ସମୁଦ୍ର ଦୂରରୁ ଘୁ ଘୁ ଶବ୍ଦ କରୁଛି । ପାଖକୁ ଗଲେ କେତେ ଜାହାଜ ଯାଉଛି, ପକ୍ଷୀ ଉଡ଼ୁଛନ୍ତି, ଢେଉ ଉଠୁଛି ଦେଖିବାକୁ ପାଇବ ।"

ବହିପଢ଼ି ଠିକ ଅନୁଭବ ହୁଏ ନାହିଁ । ଅନେକ ତଫାତ । ତାଙ୍କୁ ଦର୍ଶନ କଲେ ବହି, ଶାସ୍ତ୍ର, ବିଜ୍ଞାନ (science) ସବୁ ନଡ଼ାକୁଟା ପରି ବୋଧହୁଏ ।"

---

*ହୁଗୁଳି ଜିଲ୍ଲାର ଅନ୍ତଃପାତୀ କାମାରପୁକୁର ଗ୍ରାମରେ ଠାକୁର ରାମକୃଷ୍ଣଙ୍କର ଘର । ସେହି ଘର ସମ୍ମୁଖରେ ହାଲଦାରପୁକୁର ଗୋଟିଏ ପୁଷ୍କରିଣୀ ବିଶେଷ ।

"ବଡ଼ବାବୁଙ୍କ ସଙ୍ଗରେ ଆଳାପ କରିବା ଦରକାର । ତାଙ୍କର କେତେଖଣ୍ଡ ଘର, କେତୋଟି ଉଦ୍ୟାନ, କେତେ କମ୍ପାନୀର କାଗଜ, ଏସବୁ ଆଗେ ଜାଣିବାକୁ ଏତେ ବ୍ୟସ୍ତ କାହିଁକି ? ଚାକରମାନଙ୍କ ପାଖକୁ ଗଲେ ସେମାନେ ଠିଆ ହେବାକୁ ଦିଅନ୍ତି ନାହିଁ— କମ୍ପାନୀ କାଗଜର ଖବର କଅଣ ଦେବେ !"

"କିନ୍ତୁ ଜୋରଜାର କରି ବଡ଼ବାବୁଙ୍କ ସଙ୍ଗରେ ଥରେ ଆଳାପ କର, ଏପରିକି ଧକ୍କା ଖାଇ ହେଉ କିମ୍ବା ବାଡ଼ ଡେଇଁ ହେଉ,—ସେତେବେଳେ କେତେ ଘର, କେତେ ଉଦ୍ୟାନ, କମ୍ପାନୀର କାଗଜ, ସେହି କେବଳ କହିଦେବେ । ବାବୁଙ୍କ ସଙ୍ଗରେ ଆଳାପ ହେଲେ ପୁଣି ଚାକର ଦରୁଆନ୍ ସବୁ ସଲାମ୍ କରିବେ । (ସମସ୍ତଙ୍କର ହାସ୍ୟ)*"

## କର୍ମଯୋଗ ଓ ଈଶ୍ୱର ଲାଭ ।

ଜଣେ ଭକ୍ତ—ବର୍ତ୍ତମାନ ବଡ଼ବାବୁଙ୍କ ସଙ୍ଗରେ ଆଳାପ କିପରି ହେବ ? (ସମସ୍ତଙ୍କର ହାସ୍ୟ) ।

ଶ୍ରୀରାମକୃଷ୍ଣ—ତେଣୁ କର୍ମ ଦରକାର । ଈଶ୍ୱର ଅଛନ୍ତି ବୋଲି ବସି ରହିଲେ ହେବନାହିଁ । ଜୋରଜାର କରି ତାଙ୍କ ପାଖକୁ ଯିବାକୁ ହେବ । ନିର୍ଜନରେ ତାଙ୍କୁ ଡାକ, ପ୍ରାର୍ଥନା କର 'ଦେଖା ଦିଅ' ବୋଲି ବ୍ୟାକୁଳ ହୋଇ କାନ୍ଦ । କାମିନୀ କାଞ୍ଚନ ପାଇଁ ପାଗଳ ହୋଇ ବୁଲିପାର: ତେବେ ତାଙ୍କ ପାଇଁ ଟିକିଏ ପାଗଳ ହୁଅ । ଲୋକେ କହନ୍ତୁ, ଯେ ଈଶ୍ୱରଙ୍କ ପାଇଁ ଅମୁକ ଲୋକ ପାଗଳ ହୋଇଯାଇଛି । ନ ହେଲେ କିଛିଦିନ ସବୁ ତ୍ୟାଗ କରି ତାଙ୍କୁ ଏକା ଏକା ଡାକ ।

"କେବଳ 'ସେ ଅଛନ୍ତି' କହି ବସି ରହିଲେ କଅଣ ହେବ ? ହାଲଦାର ପୁକୁରରେ ବଡ଼ ମାଛ ଅଛନ୍ତି । ପୁଷ୍କରିଣୀର ବନ୍ଧରେ ଖାଲି ବସି ରହିଲେ କ'ଣ ମାଛ ମିଳେ ? ଚାରା କର, ବନଶୀ ପକାଅ । କ୍ରମେ ଗଭୀର ଜଳରୁ ମାଛ ଆସିବେ, ଜଳ ଚହଲିବ । ସେତେବେଳେ ଆନନ୍ଦ ହେବ । ହୁଏତ ମାଛଟାର କିଛି ଅଂଶ ଥରେ ଦେଖାଗଲା-ମାଛଟା ଝଟ କରି ଉଠିଲା । ଯେତେବେଳେ ଦେଖାଗଲା ସେତେବେଳେ ଆହୁରି ଆନନ୍ଦ ।"

"ଦୁଧକୁ ଦହି ପକାଇ ମନ୍ଥନ କଲେ ତେବେ ତ ଲହୁଣୀ ପାଇବ ।"

(ମହିମାଚରଣଙ୍କ ପ୍ରତି)—"ଏ ତ ଆଚ୍ଛା କଥା ହେଲା । ଈଶ୍ୱରଙ୍କୁ ଦେଖାଇ ଦିଅ, ଆଉ ସେ ଚୁପ୍ ହୋଇ ବସିରହିବେ । ଲହୁଣୀ ବାହାର କରି ମୁହଁ ପାଖରେ ଧର ! (ସମସ୍ତଙ୍କର ହାସ୍ୟ) ।"

"ଆଚ୍ଛା କଥା—ମାଛ ଧରି ହାତରେ ଦିଅ !"

"ଜଣେ ରାଜାଙ୍କୁ ଦେଖିବାକୁ ଚାହେଁ । ରାଜା ଅଛନ୍ତି ସାତ ଅଗଣା ପରେ ।

---

* "Seek ye first the kingdom of Heaven and all other things shall be added unto you."

ପ୍ରଥମ ଅଗଣା ପାର ହେଉ ନ ହେଉଣୁ, 'ରାଜା କାହାନ୍ତି ? ଯେପରି ଅଛି, ଗୋଟିଏ ଗୋଟିଏ ଅଗଣା ତ ପାର ହେବାକୁ ହେବ !''

## ଈଶ୍ୱରଲାଭର ଉପାୟ—ବ୍ୟାକୁଳତା ।

ମହିମାଚରଣ—କିପରି କର୍ମ ଦ୍ୱାରା ତାଙ୍କୁ ଲାଭ କରାଯାଏ ?

ଶ୍ରୀରାମକୃଷ୍ଣ—ଏହି କର୍ମ ଦ୍ୱାରା ତାଙ୍କୁ ଲାଭ ହେବ ଆଉ ଏ କର୍ମ ଦ୍ୱାରା ତାଙ୍କୁ ଲାଭ ହେବନାହିଁ, ତାହା ନୁହେଁ । ତାଙ୍କ କୃପା ଉପରେ ସବୁ ନିର୍ଭର । ତେବେ ବ୍ୟାକୁଳ ହୋଇ କିଛି କର୍ମ କରିଯିବାକୁ ହେବ । ବ୍ୟାକୁଳତା ରହିଲେ ତାଙ୍କର କୃପା ହୁଏ ।

''ଗୋଟିଏ ସୁଯୋଗ ହେବା ଦରକାର । ସାଧୁସଙ୍ଗ, 'ବିବେକ, ସଦ୍‌ଗୁରୁ ଲାଭ; ହୁଏତ ଜଣେ ବଡ଼ଭାଇ ସଂସାରର ଭାର ନେଲେ, ହୁଏତ ସ୍ତ୍ରୀଟି ବିଦ୍ୟାଶକ୍ତି, ବଡ଼ ଧାର୍ମିକ, କିମ୍ବା ବିବାହ ଆଦୌ ହେଲାନାହିଁ, ସଂସାରରେ ବନ୍ଧ ହେବାକୁ ହେଲାନାହିଁ;—ଏହି ସବୁ ଯୋଗାଯୋଗ ହେଲେ ହୋଇଯାଏ ।''

''ଜଣକର ଘରେ କେହି ଭାରୀ ବେରାମ—ଯିବ କି ରହିବ । କେହି କହିଲା, ସ୍ୱାତୀ ନକ୍ଷତ୍ରର ବୃଷ୍ଟି ପଡ଼ିବ, ସେହି ବୃଷ୍ଟିର ଜଳ ମଲା ମନୁଷ୍ୟର ମୁଣ୍ଡର ଖୋଳିରେ ରହିବ, ଆଉ ଗୋଟାଏ ସାପ ବେଙ୍ଗକୁ ଗୋଡ଼ାଇ ଯିବ, ବେଙ୍ଗକୁ ଚୋଟ ମାରିବା ସମୟରେ ବେଙ୍ଗଟା ଡେଇଁ ପଳାଇବ, ସଙ୍ଗେ ସଙ୍ଗେ ସେହି ସାପର ବିଷ ମଡ଼ାର ମୁଣ୍ଡ ଖୋଳିରେ ପଡ଼ିଯିବ; ସେହି ବିଷରେ ଔଷଧ ତିଆରି କରି ଯଦି ଖୁଆଇପାର ତେବେ ରକ୍ଷା । ସେତେବେଳେ ଯାହାର ଘରେ ବେରାମ, ସେହି ଲୋକ ଦିନ, ବେଳା, ନକ୍ଷତ୍ର ଦେଖି ଘରୁ ବାହାରିଲା, ଆଉ ବ୍ୟାକୁଳ ହୋଇ ଏହିସବୁ ଖୋଜିବାକୁ ଲାଗିଲା । ମନେ ମନେ ଈଶ୍ୱରଙ୍କୁ ଡାକୁଛି, 'ପ୍ରଭୁ ! ତୁମେ ଯଦି ଯୋଗାଯୋଗ କରିଦିଅ, ତେବେ ଯାଇ ହେବ ।' ଏହିପରି ଯାଉ ଯାଉ ସତକୁ ସତ ଦେଖିବାକୁ ପାଇଲା, ଗୋଟାଏ ମଡ଼ାର ଖୋଳି ପଡ଼ିରହିଛି । ଦେଖୁ ଦେଖୁ ଏକ ଅସରା ବର୍ଷା ମଧ୍ୟ ହେଲା । ସେତେବେଳେ ସେ ବ୍ୟକ୍ତି କହୁଛି, 'ହେ ଗୁରୁଦେବ ! ମଡ଼ାର ମୁଣ୍ଡରେ ଖୋଳି ତ ପାଇଲି, ପୁଣି ସ୍ୱାତୀ ନକ୍ଷତ୍ରରେ ବୃଷ୍ଟି ମଧ୍ୟ ହେଲା, ସେହି ବୃଷ୍ଟିର ଜଳ ମଧ୍ୟ ଏହି ଖୋଳିରେ ପଡ଼ିଛି, ବର୍ତ୍ତମାନ କୃପା କରି ଆଉ କେତୋଟି ଯୋଗାଯୋଗ କରିଦିଅ ପ୍ରଭୁ !' ବ୍ୟାକୁଳ ହୋଇ ଭାବୁଛି ! ଏପରି ସମୟରେ ଦେଖେ, ଗୋଟାଏ ବିଷଧର ସାପ ଆସୁଛି । ସେତେବେଳେ ସେ ଲୋକଟିର ଭାରି ଆନନ୍ଦ ହେଲା;ଆଉ ସେ ଏତେ ବ୍ୟାକୁଳ ହେଲା ଯେ, ଛାତି ଧଡ଼ ଧଡ଼ ହେବାକୁ ଲାଗିଲା ଓ ସେ କହିଲା, 'ହେ ଗୁରୁଦେବ ! ଏଥର ସାପ ମଧ୍ୟ ଆସିଛି, ଏତେ ଗୁଡ଼ିକର ଯୋଗାଯୋଗ ହେଲା !'' କୃପା କରି ବର୍ତ୍ତମାନ ଅନ୍ୟ ଯେଉଁଗୁଡ଼ିକ ବାକି ଅଛି, ସେଗୁଡ଼ିକ କରାଇଦିଅନ୍ତୁ । କହୁ କହୁ ବେଙ୍ଗ ମଧ୍ୟ ଆସିଲା, ସାପଟା ଗୋଡ଼େଇ ଯିବାକୁ ଲାଗିଲା, ମଡ଼ାର ମୁଣ୍ଡର ଖୋଳି ପାଖକୁ ଯାଇ ଚୋଟ ମାରିବାକୁ ଯିବ, ହଠାତ୍ ବେଙ୍ଗଟା ଡେଇଁ ସେପଟରେ ଯାଇ

ପଡ଼ିଲା । ଆଉ ସଙ୍ଗେ ସଙ୍ଗେ ବିଷ ଖୋଳି ଭିତରେ ପଡ଼ିଗଲା । ସେତେବେଳେ ଲୋକଟି ଆନନ୍ଦରେ ହାତତାଳି ଦେଇ ନାଚିବାକୁ ଲାଗିଲା ।''

''ସେଥିପାଇଁ କହୁଛି, ବ୍ୟାକୁଳତା ଥିଲେ ସବୁ ହୋଇଯିବ ।''

## (୪)

## ସନ୍ନ୍ୟାସାଶ୍ରମ ଓ ଗୃହସ୍ଥାଶ୍ରମ । ଈଶ୍ୱର ଲାଭ ଓ ତ୍ୟାଗ, ଠିକ୍ ସନ୍ନ୍ୟାସୀ କିଏ ?

ଶ୍ରୀରାମକୃଷ୍ଣ—ମନରୁ ସବୁ ତ୍ୟାଗ ନହେଲେ ଈଶ୍ୱର ଲାଭ ହୁଏନାହିଁ । ସାଧୁ ସଞ୍ଚୟ କରିପାରେ ନାହିଁ । ସଞ୍ଚୟ କରନ୍ତି ନାହିଁ ପକ୍ଷୀ ଆଉ ଦରବେଶ (ସାଧୁ) । ମୋର ବର୍ତ୍ତମାନର ଅବସ୍ଥା—ହାତରେ ମାଟିହାତ କରିବାକୁ ମାଟି ନେଇପାରେ ନାହିଁ । ବଟୁଆରେ ପାନ ଆଣିବା ପାଇଁ ଶକ୍ତି ନାହିଁ । ହୃଦୁ ଯେତେବେଳେ ଖୁବ ଯନ୍ତ୍ରଣା ଦେଉଛି, ସେତେବେଳେ ଏଠାରୁ କାଶୀ ଚାଲିଯିବାକୁ ମତଲବ୍ କଲି । ଭାବିଲି, 'ଲୁଗା ନେବି କିନ୍ତୁ ଟଙ୍କା କିପରି ନେବି ?' ତେଣୁ କାଶୀ ଯିବା ହେଲାନାହିଁ ।

ଶ୍ରୀରାମକୃଷ୍ଣ (ମହିମାଚରଣଙ୍କ ପ୍ରତି)—ତୁମେମାନେ ସଂସାରୀ, ତୁମେମାନେ ଏହାକୁ ରଖିବ ତାହାକୁ ରଖିବ । ସଂସାର ରଖ ଓ ଧର୍ମ ମଧ୍ୟ କର ।

ମହିମା—'ଏହା' କ'ଣ ଆଉ କରିହୁଏ ?

ଶ୍ରୀରାମକୃଷ୍ଣ—ମୁଁ ପଞ୍ଚବଟୀ ପାଖରେ ଗଙ୍ଗାଧାରରେ 'ଟଙ୍କା ମାଟି, ମାଟି ମଧ୍ୟ ଟଙ୍କା, ଟଙ୍କା ହିଁ ମାଟି, ଏହିପରି ବିଚାର କରୁ କରୁ ଯେତେବେଳେ ଟଙ୍କା ଗଙ୍ଗା ଜଳରେ ପକାଇ ଦେଲି, ସେତେବେଳେ ଟିକିଏ ଭୟ ହେଲା । ଭାବିଲି, ମୁଁ କ'ଣ ଲକ୍ଷ୍ମୀଛଡ଼ା ହେଲି ! ମା' ଲକ୍ଷ୍ମୀ ଯଦି ପଡ଼ି ବନ୍ଦ କରିଦିଅନ୍ତି, ତାହାହେଲେ କଅଣ ହେବ ! ସେତେବେଳେ ହାଜରାଙ୍କ ପରି ହିସାବୀ ବୁଦ୍ଧି କଲି । କହିଲି, ମା' ! ତୁମେ ଯେପରି ହୃଦୟରେ ରହ ! ଜଣେ ତପସ୍ୟା କରିବାରେ ଭଗବତୀ ସନ୍ତୁଷ୍ଟ ହୋଇ କହିଲେ, ତୁମେ ବର ମାଗ । ସେ କହିଲେ, ମା ! ଯଦି ବର ଦେବେ ଏହା କରନ୍ତୁ, ଯେପରି ନାତି ସଙ୍ଗରେ ସୁନା ଥାଳିରେ ଭାତ ଖାଇବି । ଗୋଟିଏ ବରରେ ନାତି, ଐଶ୍ୱର୍ଯ୍ୟ, ସୁନାର ଥାଳି ସବୁ ହେଲା । (ସମସ୍ତଙ୍କର ହାସ୍ୟ) ।

''ମନରୁ କାମିନୀ-କାଞ୍ଚନ ତ୍ୟାଗ ହେଲେ ଈଶ୍ୱରଙ୍କ ଆଡ଼କୁ ମନ ଯାଏ, ମନ ଯାଇ ଲିପ୍ତ ହୁଏ । ଯେ ମନ ବଦ୍ଧ, ସେହି ମନ ମଧ୍ୟ ମୁକ୍ତ ହୋଇପାରେ । ଈଶ୍ୱରଙ୍କ ଠାରୁ ବିମୁଖ ହେଲେ ହିଁ ବଦ୍ଧ—ନିକିତିର ତଳ କଣ୍ଟା ଉପର କଣ୍ଟାରୁ ଚଲାଡ଼୍ ହୁଏ କେତେବେଳେ ? ଯେତେବେଳେ ନିକିତିର ଗୋଟିଏ ପାଖରେ କାମିନୀ-କାଞ୍ଚନର ଭାର ପଡ଼େ ।''

''ପିଲା ଭୂମିଷ୍ଠ ହୋଇ କାହିଁକି କାନ୍ଦେ ? 'ଗର୍ଭରେ ଥିଲି, ଯୋଗରେ ଥିଲି ।' ଭୂମିଷ୍ଠ ହୋଇ ଏହା କହି କାନ୍ଦେ—'କାଁହାଏ କାଁହାଏ' ଏ କେଉଁଠାକୁ ଆସିଲି, ଈଶ୍ୱରଙ୍କର

ପାଦପଦ୍ମ ଚିନ୍ତା କରୁଥିଲି, ଏ ପୁଣି କେଉଁଠାକୁ ଆସିଲି ।''

''ତୁମମାନଙ୍କ ପକ୍ଷରେ ମନରେ ତ୍ୟାଗ—ସଂସାର ଅନାସକ୍ତ ହୋଇ କର ।''

## ସଂସାର ତ୍ୟାଗ

ମହିମା—ତାଙ୍କ ପ୍ରତି ମନ ଗଲେ ଆଉ କ'ଣ ସଂସାର ରହେ ?

ଶ୍ରୀରାମକୃଷ୍ଣ—ସେ କଅଣ ? ସଂସାରରେ ରହିବ ନାହିଁ ତ କେଉଁଠାକୁ ଯିବ ? ମୁଁ ଦେଖୁଛି, ଯେଉଁଠାରେ ରହେ, ରାମଙ୍କ ଅଯୋଧ୍ୟାରେ ଅଛି । ଏହି ଜଗତ୍ ସଂସାର ରାମଙ୍କର ଅଯୋଧ୍ୟା ।

''ରାମଚନ୍ଦ୍ର ଗୁରୁଙ୍କ ପାଖରେ ଜ୍ଞାନଲାଭ କରିବା ପରେ କହିଲେ, ମୁଁ ସଂସାର ତ୍ୟାଗ କରିବି । ଦଶରଥ ତାଙ୍କୁ ବୁଝାଇବା ପାଇଁ ବଶିଷ୍ଠଙ୍କୁ ପଠାଇଲେ । ବଶିଷ୍ଠ ଦେଖିଲେ, ରାମଙ୍କର ତୀବ୍ର ବୈରାଗ୍ୟ । ସେତେବେଳେ ସେ କହିଲେ, 'ରାମ ! ଆଗେ ମୋ ସଙ୍ଗରେ ବିଚାର କର, ତା' ପରେ ସଂସାର ତ୍ୟାଗ କର । ଆଚ୍ଛା, ପଚାରୁଛି, ସଂସାର କ'ଣ ଈଶ୍ୱରଙ୍କ ଛଡ଼ା, ତାହା ଯଦି ହୁଏ, ତୁମେ ତ୍ୟାଗ କର । ରାମ ଦେଖିଲେ, ଈଶ୍ୱର ହିଁ ଜୀବଜଗତ୍ ସବୁ ହୋଇଛନ୍ତି । ତାଙ୍କ ସତ୍ତାରେ ସମସ୍ତ ସତ୍ତାବାନ । ସେତେବେଳେ ରାମଚନ୍ଦ୍ର ଚୁପ୍ ହୋଇ ରହିଲେ ।''

''ସଂସାରରେ କାମ କ୍ରୋଧ ଏହି ସମସ୍ତଙ୍କ ସଙ୍ଗରେ ଯୁଦ୍ଧ କରିବାକୁ ହୁଏ, ନାନା ବାସନାର ସଙ୍ଗରେ ଯୁଦ୍ଧ କରିବାକୁ ହୁଏ, ଆସକ୍ତି ସଙ୍ଗରେ ଯୁଦ୍ଧ କରିବାକୁ ହୁଏ । ଯୁଦ୍ଧ କିଲ୍ଲାରେ ହେଲେ ସୁବିଧା । ଗୃହରେ ରହି ଯୁଦ୍ଧ କରିବା ଭଲ । ଖାଇବାକୁ ମିଳେ—ଧର୍ମପତ୍ନୀ ଅନେକ ପ୍ରକାର ସାହାଯ୍ୟ କରେ । କଳିରେ ଅନ୍ନଗତ ପ୍ରାଣ—ସାତ ଜାଗାରେ ଅନ୍ନପାଇଁ ବୁଲିବା ଅପେକ୍ଷା ଗୋଟିଏ ଜାଗା ବରଂ ଭଲ । ଏହି ଗୃହରେ ଅର୍ଥାତ୍ କିଲ୍ଲା ଭିତରେ ରହି ଯେପରି ଯୁଦ୍ଧ କରିବା ।''

''ଆଉ ସଂସାରରେ ରହିବ, ଝଡ଼ର ଅଇଁଠାପତ୍ର ପରି । ଝଡ଼ ଅଇଁଠା ପତ୍ରକୁ କେତେବେଳେ ଘର ଭିତରକୁ ନେଇଯାଏ, କେତେବେଳେ ମଧ୍ୟ ମଇଳାଗଦାକୁ । ପବନ ଯେଉଁଆଡ଼କୁ ନେଇଯାଏ, ପତ୍ର ମଧ୍ୟ ସେହିଆଡ଼କୁ ଯାଏ । କେତେବେଳେ ଭଲ ଜାଗାକୁ ତ କେତେବେଳେ ମନ୍ଦ ଜାଗାକୁ ! ତୁମକୁ ବର୍ତ୍ତମାନ ସଂସାରରେ ପକାଇଛନ୍ତି, ଭଲ, ବର୍ତ୍ତମାନ ସେହିଠାରେ ରହ—ପୁଣି ଯେତେବେଳେ ସେଠାରୁ ଉଠାଇ ତାହା ଅପେକ୍ଷା ଭଲ ଜାଗାକୁ ନେଇ ପକାଇବେ, ସେତେବେଳେ ଯାହା ହେବାର ହେବ ।''

## ସଂସାର ଓ ଆତ୍ମସମର୍ପଣ (Resignation) ରାମଙ୍କ ଇଚ୍ଛା ।

''ସଂସାରରେ ରଖିଛନ୍ତି ତେବେ କଅଣ କରିବ ? ସମସ୍ତ ତାଙ୍କୁ ସମର୍ପଣ କର—ତାଙ୍କୁ ଆତ୍ମସମର୍ପଣ—ତାହାହେଲେ ଆଉ କୌଣସି ଗୋଳ ରହିବ ନାହିଁ । ସେତେବେଳେ

ଦେଖିବ, ସେହି କେବଳ ସବୁ କରୁଛନ୍ତି । ସବୁ ହିଁ 'ରାମଙ୍କ ଇଚ୍ଛା ।'

ଜଣେ ଭକ୍ତ—'ରାମଙ୍କର ଇଚ୍ଛା' ଗଳ୍ପଟି କଅଣ ?

ଶ୍ରୀରାମକୃଷ୍ଣ—କୌଣସି ଗୋଟିଏ ଗ୍ରାମରେ ଜଣେ ତନ୍ତୀ ଥିଲା । ବଡ଼ ଧାର୍ମିକ, ସମସ୍ତେ ତାକୁ ବିଶ୍ୱାସ କରନ୍ତି, ଆଉ ଭଲ ପାଆନ୍ତି । ତନ୍ତୀ ହାଟକୁ ଯାଇ ଲୁଗା ବିକ୍ରିକରେ । ଖରିଦ୍‌ଦାର ଦାମ୍ ପଚାରିଲେ, କହେ, 'ରାମଙ୍କର ଇଚ୍ଛା, ସୂତାର ଦାମ୍ ଏକଟଙ୍କା, ରାମଙ୍କର ଇଚ୍ଛା, ମୁନାଫା ଦୁଇଅଣା, ଲୁଗାର ଦାମ୍ ରାମଙ୍କ ଇଚ୍ଛା ଏକଟଙ୍କା ଛଅଅଣା । ଲୋକଙ୍କର ଏତେ ବିଶ୍ୱାସ ଯେ, ତତ୍‌କ୍ଷଣାତ୍ ଦାମ୍ ପକାଇ ଦେଇ ଲୁଗା ନିଅନ୍ତି । ଲୋକଟି ଭାରି ଭକ୍ତ, ରାତ୍ରିରେ ଖାଇବା ପିଇବା ପରେ ଅନେକକ୍ଷଣ ଚଣ୍ଡୀ ମଣ୍ଡପରେ ବସି ଈଶ୍ୱର ଚିନ୍ତା କରେ, ତାଙ୍କର ନାମ ଗୁଣ କୀର୍ତ୍ତନ କରେ । ଦିନେ ଅନେକ ରାତି ହୋଇଛି, ଲୋକଟିର ନିଦ ହେଉନାହିଁ, ବସିଛି, ଥରେ ଥରେ ହୁକା ପିଉଛି, ଏପରି ସମୟରେ ସେହି ବାଟ ଦେଇ ଦଳେ ଡକାୟତ ଡକାୟତି କରିବାକୁ ଯାଉଥିଲେ । ସେମାନଙ୍କର ଜଣେ ବୋଝିଆ ଦରକାର ହେବାରୁ ତନ୍ତୀକୁ ଆସି କହିଲେ, ଆ ଆମ ସଙ୍ଗରେ—ଏହା କହି ହାତ ଧରି ଟାଣି ନେଇ ଚାଲିଲେ । ତାହାପରେ ଜଣେ ଗୃହସ୍ଥ ଘରକୁ ଯାଇ ଡକାୟତି କଲେ । କେତେଗୁଡ଼ିଏ ଜିନିଷ ତନ୍ତୀ ମୁଣ୍ଡରେ ଦେଲେ । ଏପରି ସମୟରେ ପୁଲିସ ଆସିପହଞ୍ଚିଲେ । ଡକାୟତମାନେ ପଳାଇଲେ, କେବଳ ତନ୍ତୀଟି, ମୁଣ୍ଡରେ ବୋଝ, ଧରା ପଡ଼ିଲା । ସେହି ରାତ୍ରିରେ ତାକୁ ହାଜତରେ ରଖାଗଲା । ତା' ପରଦିନ ମ୍ୟାଜିଷ୍ଟ୍ରେଟ୍ ସାହେବଙ୍କ ପାଖରେ ବିଚାର । କିନ୍ତୁ ଗ୍ରାମର ଲୋକମାନେ ଜାଣିପାରି ସବୁ ଆସି ଉପସ୍ଥିତ । ସେମାନେ ସମସ୍ତେ କହିଲେ, ହଜୁର ! ଏ ଲୋକ କେବେହେଲେ ଡକାୟତି କରିପାରେନା । ସାହେବ ସେତେବେଳେ ତନ୍ତୀକୁ ପ୍ରଶ୍ନ କଲେ, 'କିରେ, କଅଣ ହୋଇଛି ତୁ କହ ?''

''ତନ୍ତୀ କହିଲା, ହଜୁର ! ରାମଙ୍କ ଇଚ୍ଛା, ମୁଁ ରାତିରେ ଭାତ ଖାଇଲି, ତା'ପରେ ରାମଙ୍କ ଇଚ୍ଛା । ମୁଁ ଚଣ୍ଡୀ ମଣ୍ଡପରେ ବସିଛି, ରାମଙ୍କ ଇଚ୍ଛା, ଅନେକ ରାତି ହେଲା । ମୁଁ, ରାମଙ୍କ ଇଚ୍ଛା, ଭଗବାନଙ୍କର ଚିନ୍ତା କରୁଥିଲି ଆଉ ତାଙ୍କର ନାମ ଗୁଣଗାନ କରୁଥିଲି । ଏପରି ସମୟରେ ରାମଙ୍କର ଇଚ୍ଛା, ଦଳେ ଡକାୟତ ସେହି ବାଟ ଦେଇ ଯାଉଥିଲେ । ରାମଙ୍କ ଇଚ୍ଛା ସେମାନେ ମୋତେ ଧରି ଟାଣି ନେଇଗଲେ । ରାମଙ୍କ ଇଚ୍ଛା, ସେମାନେ ଜଣେ ଗୃହସ୍ଥର ଘରେ ଡକାୟତି କଲେ । ରାମଙ୍କ ଇଚ୍ଛା, ମୋର ମୁଣ୍ଡରେ ବୋଝ ଦେଲେ । ଏପରି ସମୟରେ ରାମଙ୍କ ଇଚ୍ଛା, ପୁଲିସ ଆସି ପହଞ୍ଚିଲେ । ରାମଙ୍କ ଇଚ୍ଛା ମୁଁ ଧରା ପଡ଼ିଲି । ସେତେବେଳେ ରାମଙ୍କ ଇଚ୍ଛା, ପୁଲିସମାନେ ହାଜତରେ ଦେଲେ । ଆଜି ସକାଳେ ରାମଙ୍କ ଇଚ୍ଛା, ହଜୁରଙ୍କ ପାଖକୁ ଆସିଛି ।''

''ଏପରି ଧାର୍ମିକ ଲୋକ ଦେଖି ସାହେବ ତନ୍ତୀଟିକୁ ଛାଡ଼ିଦେବାକୁ ହୁକୁମ ଦେଲେ । ତନ୍ତୀ ରାସ୍ତାରେ ବନ୍ଧୁମାନଙ୍କୁ କହିଲା, ରାମଙ୍କ ଇଚ୍ଛା, ମୋତେ ଛାଡ଼ିଦେଇଛନ୍ତି ।''

''ସଂସାର କରିବା, ସନ୍ନ୍ୟାସୀ ହେବା ସବୁ ହିଁ ରାମଙ୍କ ଇଚ୍ଛା । ତେଣୁ ତାଙ୍କ ଉପରେ ସବୁ ପକାଇ ଦେଇ ସଂସାରରେ କାର୍ଯ୍ୟ କର ।''

''ତାହା ନହେଲେ ଆଉ କଅଣ ବା କରିବ ?''

''ଜଣେ କିରାଣୀ ଜେଲ ଯାଇଥିଲା । ଜେଲ ଖଟିବା ଶେଷ ହେଲା, ସେ ଜେଲ୍‌ରୁ ବାହାରି ଆସିଲା । ବର୍ତ୍ତମାନ ଜେଲ୍‌ରୁ ଆସି ସେ କଅଣ କେବଳ ଧେଇ ଧେଇ କରି ନାଚିବ ? ନା—ସେ କିରାଣୀଗିରି କରିବ ?''

''ସଂସାରୀ ଯଦି ଜୀବନ୍ମୁକ୍ତ ହୁଏ, ସେ ମନେକଲେ ଅନାୟାସରେ ସଂସାରରେ ରହିପାରେ । ଯା'ର ଜ୍ଞାନଲାଭ ହୋଇଅଛି, ତା'ର ଏଠାରେ ବା ସେଠାରେ କିଛି ନାହିଁ । ତା'ର ସବୁ ସମାନ । ଯାହାର ସେଠାରେ ଅଛି, ତା'ର ଏଠାରେ ମଧ୍ୟ ଅଛି ।''

## କେଶବ ସେନ, ସଂସାର ଓ ଜୀବନ୍ମୁକ୍ତି ।

ଯେତେବେଳେ କେଶବ ସେନଙ୍କୁ ଉଦ୍ୟାନରେ ପ୍ରଥମଥର ଦେଖିଲି, 'କହିଥିଲି— 'ଏହାଙ୍କର ଲାଞ୍ଜ ଖସିଛି' । ସଭାରେ ସମସ୍ତ ଲୋକ ହସିଉଠିଲେ । କେଶବ କହିଲେ 'ତୁମେମାନେ ହସ ନାହିଁ, ଏହାର କିଛି ମାନେ ଅଛି, ଏହାଙ୍କୁ ପ୍ରଶ୍ନ କରେ' । ମୁଁ କହିଲି, ଯେତେଦିନ ବେଙ୍ଗ-ଫୁଲାର ଲାଞ୍ଜ ନ ଖସିଛି, ସେତେଦିନ କେବଳ ପାଣିରେ ରହିବାକୁ ହୁଏ, ହୁଡ଼ା ଉପରକୁ ଉଠି ଡେଇଁ ବୁଲିପାରେ ନାହିଁ । ଯହୁଁ ଲାଞ୍ଜ ଖସେ, ସଙ୍ଗେ ସଙ୍ଗେ ଡିଆଁ ମାରି ଶୁଖିଲା ଜାଗାରେ ପଡ଼େ । ସେତେବେଳେ ପାଣିରେ ରହେ, ପୁଣି ଶୁଖିଲା ଜାଗାରେ ମଧ୍ୟ ରହେ । ସେହିପରି ମନୁଷ୍ୟର ଯେତେଦିନ ଅବିଦ୍ୟାର ଲାଞ୍ଜ ନ ଖସିଛି, ସେତେଦିନ ସଂସାର-ଜଳରେ ପଡ଼ିଥାଏ, ଅବିଦ୍ୟାର ଲାଞ୍ଜ ଖସିଲେ—ଜ୍ଞାନ ହେଲେ, ତେବେ ଯାଇ ମୁକ୍ତ ହୋଇ ବୁଲିପାରେ, ପୁଣି ଇଚ୍ଛା କଲେ ସଂସାରରେ ମଧ୍ୟ ରହିପାରେ ।''

## (୫)

ଶ୍ରୀଯୁକ୍ତ ମହିମାଚରଣାଦି ଭକ୍ତମାନେ ବସି ଠାକୁର ରାମକୃଷ୍ଣଙ୍କର ହରିକଥାମୃତ ପାନ କରୁଛନ୍ତି । କଥାଗୁଡ଼ିକ ଯେପରି ବିବିଧ ବର୍ଣ୍ଣର ମଣିରତ୍ନ, ଯେ ପାରନ୍ତି ଗୋଟାଉ ଅଛନ୍ତି— କିନ୍ତୁ ଅଣ୍ଟି ଭରିଯାଇଛି, ଏତେ ଭାରୀ ବୋଧ ହେଉଛି ଯେ, ଉଠାଯାଏ ନାହିଁ । କ୍ଷୁଦ୍ର କ୍ଷୁଦ୍ର ଆଧାର, ଆଉ ଧାରଣା ହୁଏନାହିଁ । ସୃଷ୍ଟି ଆରମ୍ଭରୁ ଏପର୍ଯ୍ୟନ୍ତ ଯେତେ ବିଷୟରେ ମନୁଷ୍ୟ ହୃଦୟରେ ଯେତେ ପ୍ରକାର ସମସ୍ୟା ଉଦୟ ହୋଇଛି—ସେ ସବୁ ସମସ୍ୟା ପୂରଣ ହେଉଅଛି । ପଦ୍ମଲୋଚନ, ନାରାୟଣ ଶାସ୍ତ୍ରୀ, ଗୌରୀ ପଣ୍ଡିତ, ଦୟାନନ୍ଦ ସରସ୍ୱତୀ ପ୍ରଭୃତି ଶାସ୍ତ୍ରବିତ୍ ପଣ୍ଡିତମାନେ ଅବାକ୍ ହୋଇଛନ୍ତି । ଦୟାନନ୍ଦ ଠାକୁର ରାମକୃଷ୍ଣଙ୍କୁ ଯେତେବେଳେ ଦର୍ଶନ କଲେ ଓ ଯେତେବେଳେ ତାଙ୍କର ସମାଧି ଅବସ୍ଥା ଦେଖିଲେ, ସେତେବେଳେ ଆକ୍ଷେପ କରିଥିଲେ । କହିଥିଲେ, ଆମେମାନେ ଏତେ ବେଦ ବେଦାନ୍ତ କେବଳ ପଢ଼ିଛୁ, କିନ୍ତୁ ଏହି ମହାପୁରୁଷଙ୍କ ଠାରେ ତାହାର ଫଳ ଦେଖୁଅଛୁ । ଏହାଙ୍କୁ ଦେଖି ପ୍ରମାଣ ହେଲା ଯେ ପଣ୍ଡିତମାନେ କେବଳ ଶାସ୍ତ୍ର ମନ୍ଥନ କରି ଘୋଳଟା ଖାଆନ୍ତି, ଆଉ ଏପରି ମହାପୁରୁଷମାନେ

ସମସ୍ତ ଲହୁଣୀ ତକ ପାଆନ୍ତି । ପୁଣି ଇଂରାଜୀ ପଢ଼ା କେଶବଚନ୍ଦ୍ର ସେନାଦି ପଣ୍ଡିତମାନେ ମଧ୍ୟ ଠାକୁରଙ୍କୁ ଦେଖି ଅବାକ୍ ହୋଇଛନ୍ତି—କି ଆଶ୍ଚର୍ଯ୍ୟ ! ନିରକ୍ଷର ବ୍ୟକ୍ତି ଏସବୁ କଥା କିପରି କହୁଛନ୍ତି । ଏହା ତ ଠିକ୍ ଯୀଶୁଖ୍ରୀଷ୍ଟଙ୍କ ପରି କଥା । ସେହିପରି ଗଳ୍ପ କରି କରି ବୁଝାନ୍ତି—ଯେପରି ପୁରୁଷ, ସ୍ତ୍ରୀ, ପିଲା ସମସ୍ତେ ଅନାୟାସରେ ବୁଝିପାରନ୍ତି । ଯୀଶୁ, 'Father (ପିତା), Father (ପିତା)' କରି ପାଗଳ ହୋଇଥିଲେ, ଏ ମା' ମା' କରି ପାଗଳ । କେବଳ ଜ୍ଞାନର ଅକ୍ଷୟ ଭଣ୍ଡାର ନୁହେଁ—ଈଶ୍ୱର ପ୍ରେମ 'ମାଠିଆଏ ମାଠିଆଏ ଢାଳନ୍ତି, ତଥାପି ଶେଷ ହୁଏନାହିଁ । ଏ ମଧ୍ୟ ଯୀଶୁଙ୍କ ପରି ତ୍ୟାଗୀ, ତାଙ୍କ ପରି ଏହାଙ୍କର ମଧ୍ୟ ଜ୍ୱଳନ୍ତ ବିଶ୍ୱାସ । ତେଣୁ କଥାଗୁଡ଼ିକର ଏତେ ଜୋର୍ । ସଂସାରୀ ଲୋକ କହିଲେ ଏତେ ଜୋର ହୁଏନାହିଁ, କାହିଁକି ନା, ସେମାନେ ତ୍ୟାଗୀ ନୁହନ୍ତି, ସେମାନଙ୍କର ଜ୍ୱଳନ୍ତ ବିଶ୍ୱାସ କାହିଁ ? କେଶବ ସେନାଦି ପଣ୍ଡିତମାନେ ପୁଣି ଭାବନ୍ତି—ଏହି ନିରକ୍ଷର ଲୋକର ଏତେ ଉଦାର ଭାବ କିପରି ହେଲା ! କି ଆଶ୍ଚର୍ଯ୍ୟ ! କୌଣସି ରକମ ବିଦ୍ୱେଷ ଭାବ ନାହିଁ ! ସବୁ ଧର୍ମାବଲମ୍ବୀମାନଙ୍କୁ ଆଦର କରନ୍ତି—କାହା ସହିତ ଝଗଡ଼ା ନାହିଁ । ଆଜି ମହିମାଚରଣଙ୍କ ସହିତ ଠାକୁରଙ୍କର କଥାବାର୍ତ୍ତା ଶୁଣି କୌଣସି ଭକ୍ତ ଭାବୁଛନ୍ତି 'ଠାକୁର ତ ସଂସାର ତ୍ୟାଗ କରିବାକୁ କହିଲେ ନାହିଁ—ବରଂ କହୁଛନ୍ତି, ସଂସାର କିଲ୍ଲା ସ୍ୱରୂପ, ଏହି କିଲ୍ଲାରେ ରହି କାମ କ୍ରୋଧ ଇତ୍ୟାଦିର ସହିତ ଯୁଦ୍ଧ କରାଯାଇପାରିବ । ପୁଣି କହୁଛନ୍ତି, ସଂସାରରେ ରହିବ ନାହିଁ ତ କେଉଁଠାକୁ ଯିବ ? କିରାଣୀ ଜେଲ୍‌ରୁ ବାହାରି ଆସି କିରାଣୀ କାମ ହିଁ କରେ । ଅତଏବ ଏକରକମ କୁହାଗଲା, ଜୀବନ୍ମୁକ୍ତ ହୋଇ ସଂସାରରେ ମଧ୍ୟ ରହିହୁଏ । ଉଦାହରଣ ଦେଲେ—କେଶବସେନ । ତାଙ୍କୁ କହିଥିଲେ, 'ତୁମର ଲାଞ୍ଜ ଖସିଛି—ଆଉ କାହାର ଖସି ନାହିଁ ।' କିନ୍ତୁ ଗୋଟାଏ କଥା ଅଛି, ଠାକୁର କେବଳ କହୁଛନ୍ତି, 'ମଝିରେ ମଝିରେ ନିର୍ଜନରେ ରହିବାକୁ ହେବ ।' ଚାରା ଗଛ ଚାରିପାଖରେ ବାଡ଼ ଦେବାକୁ ହେବ—ନଚେତ୍ ଛେଳି ଗୋରୁ ଖାଇଯିବେ । ଗଛର ଗଣ୍ଡି ହୋଇଗଲେ ଚାରିପାଖର ବାଡ଼ ଭାଙ୍ଗିଦିଅ; ବା ନ ଦିଅ; ଏପରିକି ହାତୀ ବାନ୍ଧିଦେଲେ ମଧ୍ୟ, ଗଛର କିଛି ହେବ ନାହିଁ । ନିର୍ଜନରେ ରହି ଜ୍ଞାନଲାଭ କରି—ଈଶ୍ୱରଙ୍କଠାରେ ଭକ୍ତିଲାଭ କରି, ସଂସାରକୁ ଆସି ରହିଲେ, କିଛି ଭୟ ନାହିଁ । ସେଥିପାଇଁ ନିର୍ଜନବାସ କଥାଟି କେବଳ କହୁଛନ୍ତି ।

ଭକ୍ତମାନେ ଏହିପରି ଚିନ୍ତା କରୁଛନ୍ତି । ଠାକୁର ରାମକୃଷ୍ଣ ଅନ୍ୟ ଜଣେ ଦୁଇଜଣ ସଂସାରୀ ଭକ୍ତଙ୍କ କଥା କହିବାକୁ ଲାଗିଲେ । ଶ୍ରୀଯୁକ୍ତ କେଶବ ସେନଙ୍କ କଥାର ପରେ ହିଁ କହିଲେ,—

## ନିର୍ଲିପ୍ତ ସଂସାରୀ ଓ ଶ୍ରୀ ଦେବେନ୍ଦ୍ରନାଥ ଠାକୁର ।

ଶ୍ରୀରାମକୃଷ୍ଣ (ମହିମାଚରଣଙ୍କ ପ୍ରତି)—ମଥୁରବାବୁଙ୍କ ସଙ୍ଗରେ ଦେବେନ୍ଦ୍ର ଠାକୁରଙ୍କୁ ଦେଖିବାକୁ ଯାଇଥିଲି । ମଥୁରବାବୁଙ୍କୁ କହିଲି, 'ମୁଁ ଶୁଣିଛି, ଦେବେନ୍ଦ୍ର ଠାକୁର ଈଶ୍ୱର ଚିନ୍ତା କରନ୍ତି, ମୋର ତାଙ୍କୁ ଦେଖିବାକୁ ଇଚ୍ଛା ହୁଏ ।' ମଥୁରବାବୁ କହିଲେ, 'ଆଚ୍ଛା ବାବା ମୁଁ

ତୁମକୁ ନେଇଯିବି; ଆମେ ଦୁହେଁ ହିନ୍ଦୁ କଲେଜର ଏକ କ୍ଲାସରେ ପଢୁଥିଲୁ, ମୋ ସଙ୍ଗରେ ବେଶ୍ ଭାବ ଅଛି ।' ମଥୁରବାବୁଙ୍କ ସଙ୍ଗରେ ଅନେକ ଦିନ ପରେ ଦେଖାହେଲା । ଦେଖି ଦେବେନ୍ଦ୍ର କହିଲେ, 'ତୁମର ଟିକିଏ ବଦଳିଛି—ତୁମର ପେଟ ବଡ଼ ହୋଇଛି ।' ମଥୁରବାବୁ ମୋ କଥା କହିଲେ, 'ଏ ତୁମକୁ ଦେଖିବାକୁ ଆସିଛନ୍ତି—ଈଶ୍ୱର ଈଶ୍ୱର ବୋଲି ପାଗଳ ।' ମୁଁ ଲକ୍ଷଣ ଦେଖିବା ପାଇଁ ଦେବେନ୍ଦ୍ରଙ୍କୁ କହିଲି, ଦେଖେ ତୁମର ଦେହ ।' ଦେବେନ୍ଦ୍ର ଦେହରୁ ଜାମା କାଢ଼ିଲେ, ଦେଖିଲି—ଗୌରବର୍ଣ୍ଣ । ତାହା ଉପରେ ସିନ୍ଦୁର ବୋଳା । ସେତେବେଳେ ଦେବେନ୍ଦ୍ରଙ୍କର ବାଳ ପାଚିନାହିଁ ।

"ପ୍ରଥମେ ଯିବା ପରେ ଟିକିଏ ଅଭିମାନ ଥିବା ଦେଖିଲି । ତାହା ହେବନାହିଁ ? ଏତେ ଐଶ୍ୱର୍ଯ୍ୟ, ବିଦ୍ୟା, ମାନ, ସମ୍ଭ୍ରମ । ମୁଁ ଅଭିମାନ ଦେଖି ମଥୁରବାବୁଙ୍କୁ କହିଲି, 'ଆଚ୍ଛା ଅଭିମାନ ଜ୍ଞାନରୁ ହୁଏ, ନା ଅଜ୍ଞାନରୁ ହୁଏ ? ଯାହାର ବ୍ରହ୍ମଜ୍ଞାନ ହୋଇଛି, ତା'ର କ'ଣ ମୁଁ ପଣ୍ଡିତ, ମୁଁ ଜ୍ଞାନୀ, ମୁଁ ଧନୀ, ବୋଲି ଅଭିମାନ ରହିପାରେ ?"

"ଦେବେନ୍ଦ୍ରଙ୍କ ସଙ୍ଗରେ କଥା କହୁ କହୁ ମୋର ହଠାତ୍ ସେହି ଅବସ୍ଥାଟି ହେଲା । ସେହି ଅବସ୍ଥାଟି ହେଲେ କିଏ କିପରି ଲୋକ ଦେଖିପାରେ । ମୋର ଭିତରୁ ହୀ ହୀ କରି ଗୋଟାଏ ହସ ଉଠିଲା । ଯେତେବେଳେ ଏହି ଅବସ୍ଥାଟା ହୁଏ, ସେତେବେଳେ ପଣ୍ଡିତମାନଙ୍କୁ ତୃଣଜ୍ଞାନ ହୁଏ । ଯଦି ଦେଖେ, ପଣ୍ଡିତଙ୍କର ବିବେକ ବୈରାଗ୍ୟ ନାହିଁ, ତାଙ୍କୁ ନଡ଼ାକୁଟା ପରି ବୋଧହୁଏ, ସେତେବେଳେ ଦେଖେ ଯେପରି ଶାଗୁଣା ଖୁବ୍ ଉଚ୍ଚକୁ ଉଠୁଛି, କିନ୍ତୁ ମଡ଼ ଉପରେ ନଜର ।"

## ଯୋଗ ଓ ଭୋଗ ।

"ଦେଖିଲି ଯୋଗ ଭୋଗ ଦୁଇ ହିଁ ଅଛି—ଅନେକ ପିଲାପିଲି, ଛୋଟ ଛୋଟ, ଡାକ୍ତର ଆସିଛନ୍ତି, ତଥାପି ଏତେ ଜ୍ଞାନୀ ହୋଇ ସଂସାର ନେଇ ସର୍ବଦା ରହିବାକୁ ହୁଏ । କହିଲି, 'ତୁମେ କଳିର ଜନକ । ଜନକ "ଏପଟ ସେପଟ ଦିପଟ ରଖି ଖାଇଥିଲେ ଦୁଧ ଗିନା । ତୁମେ, ସଂସାରରେ ରହି ଈଶ୍ୱରଙ୍କଠାରେ ମନ ରଖିଛ ଶୁଣି, ତୁମକୁ ଦେଖିବାକୁ ଆସିଛି, ମୋତେ ଈଶ୍ୱରୀୟ କଥା କିଛି ଶୁଣାଅ ।"

"ସେତେବେଳେ ବେଦରୁ କିଛି କିଛି ଶୁଣାଇଲେ । କହିଲେ, ଏହି ଜଗତ୍ ଯେପରି ଗୋଟିଏ ଝାଡ଼ ପରି, ଆଉ ଜୀବ ହୋଇଛି ଗୋଟିଏ ଗୋଟିଏ ଝାଡ଼ର ଦୀପ । ମୁଁ ଏଠାରେ ପଞ୍ଚବଟୀରେ ଯେତେବେଳେ ଧ୍ୟାନ କରୁଥିଲି ଠିକ୍ ଏହିପରି ଦେଖିଲି ! ଦେବେନ୍ଦ୍ରଙ୍କ କଥା ସଙ୍ଗରେ ମିଳିଯିବା ଦେଖି ଭାବିଲି, ତେବେ ତ ଏ ଖୁବ୍ ବଡ଼ ଲୋକ ।' ବ୍ୟାଖ୍ୟା କରିବାକୁ କହିଲି, —ସେଥିରେ ସେ କହିଲେ, ଏହି ଜଗତକୁ କିଏ ଜାଣୁଥାନ୍ତା ? — ଈଶ୍ୱର ମନୁଷ୍ୟ କରିଛନ୍ତି, ତାଙ୍କର ମହିମା ପ୍ରକାଶ କରିବା ପାଇଁ । ଝାଡ଼ର ଆଲୁଅ ନଥିଲେ ସବୁ ଅନ୍ଧକାର, ଝାଡ଼ ପର୍ଯ୍ୟନ୍ତ ଦେଖାଯାଏ ନାହିଁ ।"

## ଅସଭ୍ୟତା ଓ ବ୍ରାହ୍ମସମାଜ ।

''ଅନେକ କଥାବାର୍ତ୍ତା ହେବାପରେ ଦେବେନ୍ଦ୍ର ଖୁସିହୋଇ କହିଲେ, 'ଆପଣଙ୍କୁ ଉତ୍ସବରେ ଆସିବାକୁ ହେବ ।' ମୁଁ କହିଲି, ଈଶ୍ୱରଙ୍କ ଇଚ୍ଛା—ମୋର ତ ଏହି ଅବସ୍ଥା ଦେଖୁଛ—କେତେବେଳେ କି ଭାବରେ ସେ ରଖନ୍ତି ।' ଦେବେନ୍ଦ୍ର କହିଲେ, 'ନା ଆସିବାକୁ ହେବ, ତେବେ ଲୁଗା ଆଉ ଚଦର ପିନ୍ଧି ଆସିବେ—କାରଣ ଆପଣଙ୍କୁ ଅଲୁରା ଦେଖି କେହି କିଛି କହିଲେ, ମୋତେ କଷ୍ଟ ହେବ ।' ମୁଁ କହିଲି, 'ତାହା ପାରିବି ନାହିଁ, ମୁଁ ବାବୁ ହୋଇପାରିବି ନାହିଁ' । ଦେବେନ୍ଦ୍ର ମଥୁରବାବୁ, ସବୁ ହସିବାକୁ ଲାଗିଲେ ।''

''ତା'ର ପରଦିନ ହିଁ ମଥୁରବାବୁଙ୍କ ପାଖକୁ ଦେବେନ୍ଦ୍ରଙ୍କର ଚିଠି ଆସିଲା—ମୋତେ ଉତ୍ସବ ଦେଖି ଯିବାକୁ ବାରଣ କରିଛନ୍ତି, କହିଲେ—ଅସଭ୍ୟତା ହେବ, ଦେହରେ ଚଦର ରହିବ ନାହିଁ ।''

## ନିର୍ଲିପ୍ତ ଗୃହସ୍ଥ ଓ କପ୍ତାନ ।*

ଶ୍ରୀରାମକୃଷ୍ଣ (ମହିମାଚରଣଙ୍କ ପ୍ରତି)—ଆଉ ଜଣେ ଅଛନ୍ତି—କପ୍ତାନ । ସଂସାରୀ ସତ, କିନ୍ତୁ ଭାରି ଭକ୍ତ । ତୁମେ ଆଳାପ କର ।

''କପ୍ତାନଙ୍କର ବେଦ ବେଦାନ୍ତ , ଶ୍ରୀମଦ୍ଭାଗବତ, ଗୀତା, ଅଧ୍ୟାତ୍ମ, ଏସବୁ କଣ୍ଠସ୍ଥ । ତୁମେ ଆଳାପ କଲେ ଦେଖିବ ।''

''ଖୁବ୍ ଭକ୍ତି । ମୁଁ ବରାହନଗର ରାସ୍ତାରେ ଯାଉଛି, ସେତେବେଳେ ମୋତେ ଛତା ଦେଖାନ୍ତି ।''

''ତାଙ୍କ ଘରକୁ ନେଇଯାଇ କେତେ ଯତ୍ନ—ପଙ୍ଖା କରନ୍ତି—ପାଦ ଚିପି ଦିଅନ୍ତି—ଆଉ ନାନା ପ୍ରକାର ତରକାରୀ କରି ଖୁଆନ୍ତି । ମୁଁ ଦିନେ ତାଙ୍କ ଘରେ ପାଇଖାନାରେ ବେହୋସ ହୋଇଯାଉଛି । ସେ ତ ଏଡେ ଆଚାରୀ, ପାଇଖାନା ଭିତରେ ମୋ ପାଖକୁ ଯାଇ ପାଦ ଫାଙ୍କ କରି ବସାଇଦେଲେ । ଏତେ ଆଚାରୀ ଘୃଣା କଲେ ନାହିଁ ।''

''କପ୍ତାନଙ୍କର ଅନେକ ଖରଚ ! କାଶୀରେ ଭାଇମାନେ ରହନ୍ତି, ସେମାନଙ୍କୁ ଦେବାକୁ ହୁଏ । ସ୍ତ୍ରୀ ଆଗେ କୃପଣ ଥିଲେ, ବର୍ତ୍ତମାନ ଏତେ ବିବ୍ରତ ହୋଇଛନ୍ତି ଯେ, ସବୁ ରକମ ଖର୍ଚ୍ଚ କରିପାରନ୍ତି ନାହିଁ ।''

''ତାଙ୍କର ସ୍ତ୍ରୀ ମୋତେ କହିଲେ ଯେ, କପ୍ତାନଙ୍କୁ ସଂସାର ଭଲ ଲାଗେ ନାହିଁ । ସେଥିପାଇଁ ମଝିରେ ମଝିରେ କହିଥିଲେ, ସଂସାର ଛାଡ଼ିଦେବି । ମଝିରେ ମଝିରେ ଛାଡ଼ିଦେବି କହନ୍ତି ।''

---

* କପ୍ତାନ—ଶ୍ରୀ ବିଶ୍ୱନାଥ ଉପାଧ୍ୟାୟ, ନେପାଳ ନିବାସୀ । ନେପାଳ ରାଜାଙ୍କର ଓକିଲ (Resident)—କଲିକତାରେ ରହନ୍ତି, ଅତି ସଦାଚାରନିଷ୍ଠ ବ୍ରାହ୍ମଣ ଓ ପରମ ଭକ୍ତ ।

''ତାଙ୍କ ବଂଶଯାକ ଭକ୍ତ । ତାଙ୍କର ବାପା ଯୁଦ୍ଧକୁ ଯାଆନ୍ତି । ଶୁଣିଛି, ଲଢ଼ାଇ ସମୟରେ ଏକ ହାତରେ ଶିବପୂଜା ଓ ଏକ ହାତରେ ଖୋଲା ତରବାରୀ, ଯୁଦ୍ଧ କରନ୍ତି ।''

''ଲୋକଟି ଭାରି ଆଚାରୀ । ମୁଁ କେଶବ ସେନଙ୍କ ପାଖକୁ ଯାଏ, ସେଥିପାଇଁ ଏଠାକୁ ଏକମାସ ପର୍ଯ୍ୟନ୍ତ ଆସିନଥିଲେ । କହିଲେ, କେଶବ ସେନ୍ ଭ୍ରଷ୍ଟାଚାରୀ—ଇଂରେଜଙ୍କ ସଙ୍ଗରେ ଖାଆନ୍ତି, ଝିଅକୁ ଅନ୍ୟ ଜାତିରେ ବିବାହ ଦେଇଛନ୍ତି, ଜାତି ନାହିଁ । ମୁଁ କହିଲି 'ମୋର ସେ ସବୁର କଅଣ ଦରକାର ? କେଶବ ହରିନାମ କରନ୍ତି, ଦେଖିବାକୁ ଯାଏ—ମୁଁ କୋଳି ଖାଇବି, କଣ୍ଟାରେ ମୋର କି ଦରକାର ? 'ତଥାପି ମୋତେ ଛାଡ଼ନ୍ତି ନାହିଁ; କହନ୍ତି ତୁମେ କେଶବ ସେନ୍‌ଙ୍କର ସେଠାକୁ କାହିଁକି ଯାଅ ? ସେତେବେଳେ ମୁଁ ଟିକିଏ ବିରକ୍ତ ହୋଇ କହିଲି, 'ମୁଁ ତ ଟଙ୍କା ପାଇଁ ଯାଏ ନାହିଁ—ମୁଁ ହରିନାମ ଶୁଣିବାକୁ ଯାଏ—ଆଉ ତୁମେ ଲାଟ ସାହେବଙ୍କ ଘରକୁ ଯାଅ କିପରି ? ସେମାନେ ମ୍ଳେଚ୍ଛ; ସେମାନଙ୍କ ସଙ୍ଗରେ ରହ କିପରି ? ଏହିସବୁ କହିବା ପରେ ତେବେ ଯାଇ ଟିକିଏ ଚୁପ୍ ହେଲେ ।''

''କିନ୍ତୁ ଖୁବ୍ ଭକ୍ତି । ଯେତେବେଳେ କର୍ପୂରର ଆଳତି କରି ପୂଜା କରନ୍ତି, ସେତେବେଳେ ଅନ୍ୟ ପ୍ରକାର ମନୁଷ୍ୟ । ଯେପରି ତନ୍ମୟ ହୋଇଯାଆନ୍ତି ।''

## (୬)

## ବେଦାନ୍ତ ବିଚାରରେ । ମାୟାବାଦ ଓ ଶ୍ରୀରାମକୃଷ୍ଣ ।

ଶ୍ରୀରାମକୃଷ୍ଣ (ମହିମାଚରଣଙ୍କ ପ୍ରତି)—ବେଦାନ୍ତ ବିଚାରରେ, ସଂସାର ମାୟାମୟ-ସ୍ୱପ୍ନପରି ସବୁ ମିଥ୍ୟା । ପରମାତ୍ମା, ସେ ସାକ୍ଷୀ—ସ୍ୱରୂପ—ଜାଗ୍ରତ, ସ୍ୱପ୍ନ ଓ ସୁଷୁପ୍ତି ତିନି ଅବସ୍ଥାରେ ସାକ୍ଷୀ ସ୍ୱରୂପ । ଏସବୁ ତୁମ ଭାବର କଥା । ସ୍ୱପ୍ନ ଯେତେ ସତ୍ୟ, ଜାଗରଣ ମଧ ସେତେ ସତ୍ୟ । ଗୋଟିଏ ଗଳ୍ପ କହୁଛି ଶୁଣ । ତୁମରି ଭାବର—

''ଗୋଟିଏ ଦେଶରେ ଜଣେ ଚଷା ଥାଏ । ଭାରି ଜ୍ଞାନୀ ! ଚାଷବାସ କରେ ସ୍ତ୍ରୀ ଅଛି, ଗୋଟିଏ ପିଲା ମଧ ଅନେକ ଦିନ ପରେ ହୋଇଛି; ନାମ ହାରୁ । ପିଲାଟି ପ୍ରତି ବାପ ମା' ଦୁହିଁଙ୍କର ସ୍ନେହ, କାହିଁକି ନା, ଗଣ୍ଠିର ଧନ ନୀଳମଣି । ଚଷାଟି ଧାର୍ମିକ, ଗ୍ରାମର ସମସ୍ତେ ଭଲ ପାଆନ୍ତି । ଦିନେ କ୍ଷେତରେ କାମ କରୁଛି, ଏପରି ସମୟରେ ଜଣେ ଆସି ଖବର ଦେଲା ହାରୁର କଲେରା ହୋଇଛି । ଚଷାଟି ଘରକୁ ଯାଇ ଅନେକ ଚିକିତ୍ସା କରାଇଲା । କିନ୍ତୁ ପିଲାଟି ମରିଗଲା । ଘରର ସମସ୍ତେ ଶୋକରେ କାତର ହେଲେ, କିନ୍ତୁ ଚଷାଟିର ଯେପରି କିଛି ହୋଇନାହିଁ । ଓଲଟି ପୁଣି ସମସ୍ତଙ୍କୁ ବୁଝାଏ ଯେ, ଶୋକ କରି କଅଣ ହେବ ? ତା'ର ପରଦିନ ପୁଣି ଚାଷବାସ କରିବାକୁ ଗଲା । ଘରକୁ ଫେରିଆସି ଦେଖେ, ସ୍ତ୍ରୀ ଓ ଅନ୍ୟ ସମସ୍ତେ କାନ୍ଦୁଛନ୍ତି । ସ୍ତ୍ରୀ କହିଲା, 'ତୁମେ ନିଷ୍ଠୁର—ପିଲାଟା ପାଇଁ ଥରେ ହେଲେ କାନ୍ଦିଲ ନାହିଁ ? ଚଷା ସେତେବେଳେ ସ୍ଥିର ହୋଇ କହିଲା, କାହିଁକି କାନ୍ଦୁନାହିଁ କହିବି ? ମୁଁ କାଲି ଗୋଟିଏ ଆଶ୍ଚର୍ଯ୍ୟ ସ୍ୱପ୍ନ ଦେଖିଛି । ଦେଖିଲି ଯେ, ମୁଁ ରାଜା ହୋଇଛି, ଆଉ ଆଠଟି ପିଲାର ବାପ ହୋଇଛି—ଖୁବ୍ ସୁଖରେ ଅଛି । ତାହାପରେ ନିଦ ଭାଙ୍ଗିଗଲା ।

ବର୍ତ୍ତମାନ ମହା ଭାବନାରେ ପଡ଼ିଛି—ମୋର ସେହି ଆଠପୁଅ ପାଇଁ ଶୋକ କରିବି ନା ତୁମର ଏହି ଗୋଟିଏ ପୁଅ ହାରୁ ପାଇଁ ଶୋକ କରିବି ?''

''ଚଷା ଜ୍ଞାନୀ, ତେଣୁ ଦେଖିଥିଲା ସ୍ୱପ୍ନ ଅବସ୍ଥା ଯେପରି ମିଥ୍ୟା, ଜାଗରଣ ଅବସ୍ଥା ମଧ୍ୟ ସେହିପରି ମିଥ୍ୟା, ଏକ ନିତ୍ୟବସ୍ତୁ ସେହି ଆତ୍ମା ।''

''ମୁଁ ସମସ୍ତଙ୍କୁ ନିଏ । ମୁଁ ତୁରୀୟ ପୁଣି ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ତିନି ଅବସ୍ଥାକୁ ନିଏ । ମୁଁ ବ୍ରହ୍ମ ପୁଣି ମାୟା, ଜୀବ, ଜଗତ ସମସ୍ତଙ୍କୁ ନିଏ । ସବୁ ନ ନେଲେ ଓଜନରେ କମ୍ ପଡ଼ିବ ।''

ଜଣେ ଭକ୍ତ—ଓଜନରେ କାହିଁକି କମ୍ ପଡ଼ିବ ? (ସମସ୍ତଙ୍କର ହାସ୍ୟ) ।

ଶ୍ରୀରାମକୃଷ୍ଣ—ବ୍ରହ୍ମ—ଜୀବଜଗଦ୍ ବିଶିଷ୍ଟ । ପ୍ରଥମରେ ନେତି ନେତି କରିବା ସମୟରେ ଜୀବଜଗଦ୍‌କୁ ଛାଡ଼ିଦେବାକୁ ହୁଏ । ଅହଂ ବୁଦ୍ଧି ଯେତେକ୍ଷଣ, ସେତେକ୍ଷଣ କେବଳ ସେହି ସବୁ ବୋଲି ବୋଧ ହୁଅନ୍ତି—ସେହି କେବଳ ଚତୁର୍ବିଂଶତି ତତ୍ତ୍ୱ ହୋଇଛନ୍ତି ।

''ବେଲର ସାର କହିବାକୁ ଗଲେ ରସକୁ ହିଁ ବୁଝାଏ, ସେତେବେଳେ ମଞ୍ଜି ଆଉ ଖୋଳପା ପକାଇଦେବାକୁ ହୁଏ । କିନ୍ତୁ ବେଲଟା କେତେ ଓଜନ ଥିଲା କହିବାକୁ ଗଲେ କେବଳ ରସକୁ ଓଜନ କଲେ ଚଳିବ ନାହିଁ । ଓଜନ କରିବା ସମୟରେ ରସ, ମଞ୍ଜି ଖୋଳପା ସମସ୍ତଙ୍କୁ ନେବାକୁ ହେବ । ଯାହାର ରସ, ତାହାର ହିଁ ମଞ୍ଜି ତାହାର ହିଁ ଖୋଳପା । ଯାହାଙ୍କର ନିତ୍ୟ, ତାଙ୍କର ହିଁ ଲୀଳା ।''

''ତେଣୁ ମୁଁ ନିତ୍ୟ ଲୀଳା ସମସ୍ତଙ୍କୁ ନିଏ । ମାୟା ବୋଲି ଜଗତ୍ ସଂସାରକୁ ଉଡ଼ାଇ ଦେଉନାହିଁ । ତାହାହେଲେ ତ, ଓଜନରେ କମ୍ ପଡ଼ିବ ।''

## ମାୟାବାଦ ଓ ବିଶିଷ୍ଟାଦ୍ୱୈତବାଦାଦି; ଜ୍ଞାନଯୋଗ ଓ ଭକ୍ତିଯୋଗ ।

ମହିମାଚରଣ—ଏ ବେଶ୍ ସାମଞ୍ଜସ୍ୟ—ନିତ୍ୟରୁ ଲୀଳା, ପୁଣି ଲୀଳାରୁ ନିତ୍ୟ ।

ଶ୍ରୀରାମକୃଷ୍ଣ—ଜ୍ଞାନୀମାନେ ଦେଖନ୍ତି ସମସ୍ତ ସ୍ୱପ୍ନବତ୍, ଭକ୍ତମାନେ ସବୁ ଅବସ୍ଥାକୁ ନିଅନ୍ତି, ଜ୍ଞାନୀ ଟିକିଏ ଟିକିଏ କରି ଦୁଧ ଦିଏ । ଗୋଟିଏ ଗୋଟିଏ ଗାଈ ଅଛନ୍ତି—ବାଛି ବାଛି ଖାଆନ୍ତି, ତେଣୁ ଟିକିଏ ଟିକିଏ ଦୁଧ ଦିଅନ୍ତି । ଯେଉଁମାନେ ଏତେ ବାଛନ୍ତି ନାହିଁ, ସେମାନେ ବେଶି ବେଶି ଦୁଧ ଦିଅନ୍ତି । ଉତ୍ତମ ଭକ୍ତ ନିତ୍ୟ ଲୀଳା ଦୁଇକୁ ନିଏ; ତେଣୁ ନିତ୍ୟରୁ ମନ ଖସି ଆସିଲେ ମଧ୍ୟ ତାଙ୍କୁ ସମ୍ଭୋଗ କରିପାରେ । ଉତ୍ତମ ଭକ୍ତ* ବେଶି କରି ଦୁଧ ଦିଅନ୍ତି । (ସମସ୍ତଙ୍କର ହାସ୍ୟ) ।

---

*ଉତ୍ତମ ଭକ୍ତ— ଯୋ ମାଂ ପଶ୍ୟତି ସର୍ବତ୍ର ସର୍ବଞ୍ଚ ମୟି ପଶ୍ୟତି ।
ତସ୍ୟାହଂ ନ ପ୍ରଣଶ୍ୟାମି ସ ଚ ମେ ନ ପ୍ରଣଶ୍ୟତି ।।

ମହିମାଚରଣ—ତେବେ ଦୁଧରେ ଟିକିଏ ଗନ୍ଧ ହୁଏ । (ସମସ୍ତଙ୍କର ହାସ୍ୟ) ।

ଶ୍ରୀରାମକୃଷ୍ଣ—ଗନ୍ଧ ହୁଏ ସତ, ତେବେ ଟିକିଏ ଆଉଟିବାକୁ ହୁଏ । ଟିକିଏ ଅଗ୍ନିରେ ଆଉଟି ନେବାକୁ ହୁଏ । ଜ୍ଞାନାଗ୍ନି ଉପରେ ଟିକିଏ ଦୁଧକୁ ଚଢ଼ାଇଦେବାକୁ ହୁଏ, ତାହାହେଲେ ଆଉ ଗନ୍ଧଟା ରହିବ ନାହିଁ ।

## ଓଁକାର ଓ ନିତ୍ୟଲୀଳା ଯୋଗ ।

ଶ୍ରୀରାମକୃଷ୍ଣ (ମହିମାଙ୍କ ପ୍ରତି)—ଓଁକାରର ବ୍ୟାଖ୍ୟା ତୁମେମାନେ କେବଳ କହ 'ଅକାର ଉକାର ମକାର' ।

ମହିମାଚରଣ—ଅକାର, ଉକାର, ମକାର-ଅର୍ଥାତ୍ ସୃଷ୍ଟି, ସ୍ଥିତି, ପ୍ରଳୟ ।

ଶ୍ରୀରାମକୃଷ୍ଣ—ମୁଁ ଉପମା ଦିଏ ଘଣ୍ଟାର ଟଂ ଶବ୍ଦ । ଟ-ଅ-ଅ-ମ-ମ୍ । ଲୀଳାରୁ ନିତ୍ୟରେ ଲୟ—ସ୍ଥୂଳ, ସୂକ୍ଷ୍ମ, କାରଣରୁ ମହାକାରଣରେ ଲୟ । ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତିରୁ ତୁରୀୟରେ ଲୟ । ପୁଣି ଘଣ୍ଟା ବାଜିଲା, ଯେପରି ମହାସମୁଦ୍ରରେ ଗୋଟିଏ ଭାରୀ ଜିନିଷ ପଡ଼ିଲା, ଆଉ ଢେଉ ଆରମ୍ଭ ହେଲା । ନିତ୍ୟରୁ ଲୀଳା ଆରମ୍ଭ ହେଲା, ମହାକାରଣରୁ ସ୍ଥୂଳ, ସୂକ୍ଷ୍ମ, କାରଣ ଶରୀର ଦେଖାଦେଲା—ସେହି ତୁରୀୟରୁ ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ସବୁ ଅବସ୍ଥା ଆସି ପଡ଼ିଲା । ପୁଣି ମହାସମୁଦ୍ରର ଢେଉ ମହାସମୁଦ୍ରରେ ହିଁ ଲୟ ହେଲା । ନିତ୍ୟ ଧରି ଧରି ଲୀଳା ପୁଣି ଲୀଳା ଧରି ଧରି ନିତ୍ୟ* ମୁଁ ଟଂ ଶବ୍ଦର ଉପମା ଦିଏ । ମୁଁ ଠିକ୍ ଏସବୁ ଦେଖିଛି । ମୋତେ ଦେଖାଇ ଦେଇଛନ୍ତି, ଚିତ୍ ସମୁଦ୍ର-ଅନ୍ତ ନାହିଁ, ସେଥିପାଇଁ ଏହିସବୁ ଲୀଳା ଉଠିଲା । ପୁଣି ଏଥିରେ ଲୟ ହେଲା । ଚିଦାକାଶରେ କୋଟି ବ୍ରହ୍ମାଣ୍ଡର ଉତ୍ପତ୍ତି, ପୁଣି ଏଥିରେ ଲୟ, ତୁମର ବହିରେ କଅଣ ଅଛି, ଏତେ ମୁଁ ଜାଣେ ନାହିଁ ।

ମହିମାଚରଣ—ଯେଉଁମାନେ ଦେଖିଛନ୍ତି ସେମାନେ ଶାସ୍ତ୍ର ଲେଖିନାହାନ୍ତି । ସେମାନେ ନିଜର ଭାବରେ ହିଁ ବିଭୋଳ, ସେମାନେ ଲେଖିବେ କେତେବେଳେ ! ଲେଖିବାକୁ ଗଲେ ଟିକିଏ ହିସାବୀ ବୁଦ୍ଧି ଦରକାର । ସେମାନଙ୍କ ପାଖରୁ ଶୁଣି ଅନ୍ୟ ଲୋକେ ଲେଖିଛନ୍ତି ।

---

* ନିତ୍ୟ ଧରି ଲୀଳା—Form the Absolute to the Relative, from the Infinite to the finite-from the undifferentiated to the differentiated and from the unconditioned to the conditioned and again from Relative to the Absolute.

## ସଂସାରାସକ୍ତି ଓ ବ୍ରହ୍ମାନନ୍ଦ ।

ଶ୍ରୀରାମକୃଷ୍ଣ—ସଂସାରୀମାନେ କହନ୍ତି, କାହିଁକି କାମିନୀ-କାଞ୍ଚନରୁ ଆସକ୍ତି ଯାଏ ନାହିଁ ? ତାଙ୍କୁ ଲାଭ କଲେ ଆସକ୍ତି ଯାଏ ।* ଯଦି ଥରେ କେହି ବ୍ରହ୍ମାନନ୍ଦ ପାଏ, ତାହାହେଲେ ଇନ୍ଦ୍ରିୟ ସୁଖ ଭୋଗ କରିବାକୁ ବା ଅର୍ଥ, ମାନ ସମ୍ଭ୍ରମ ପାଇଁ ଆଉ ତାହାର ମନ ଦୌଡ଼େ ନାହିଁ ।

''ଝିଡ଼ିପୋକ ଯଦି ଥରେ ଆଲୁଅ ଦେଖେ, ତା'ହେଲେ ଆଉ ଅନ୍ଧାରକୁ ଯାଏନାହିଁ ।''

''ରାବଣକୁ କୁହାଗଲା, ତୁମେ ସୀତାଙ୍କ ପାଇଁ ନାନା ରୂପ ଧରୁଛ, ଥରେ ରାମ ରୂପ ଧରି ସୀତାଙ୍କ ପାଖକୁ ଯାଉନା କାହିଁକି ? ରାବଣ କହିଲା, ''ତୁଚ୍ଛ ବ୍ରହ୍ମପଦଂ ପରବଧୂସାଥିଃ କୁତଃ—ଯେତେବେଳେ ରାମଙ୍କୁ ଚିନ୍ତାକରେ, ସେତେବେଳେ ବ୍ରହ୍ମପଦ ତୁଚ୍ଛ ହୁଏ, ପର ସ୍ତ୍ରୀ ତ ସାମାନ୍ୟ କଥା ! ସେଥିପାଇଁ ରାମରୂପ କଅଣ ଧରିବି ।''

## ସାଧନ ଓ ସିଦ୍ଧି ।

''ସେଥିପାଇଁ ସାଧନ ଭଜନ । ତାଙ୍କୁ ଚିନ୍ତା ଯେତେ କରିବ, ସେତେ ହିଁ ସଂସାରର ସାମାନ୍ୟ ଭୋଗ ଜିନିଷରେ ଆସକ୍ତି କମିବ । ତାଙ୍କ ପାଦପଦ୍ମରେ ଯେତେ ଭକ୍ତି ହେବ, ସେତେ ହିଁ ବିଷୟ ବାସନା କମି ଆସିବ, ସେତେ ହିଁ ଦେହ ସୁଖ ଦିଗରେ ନଜର କମିବ, ପର ସ୍ତ୍ରୀକୁ ମାତୃବତ୍ ବୋଧ ହେବ, ନିଜର ସ୍ତ୍ରୀକୁ ଧର୍ମର ସହାୟ ବନ୍ଧୁ ବୋଲି ବୋଧ ହେବ, ପଶୁଭାବ ଚାଲିଯିବ, ଦେବଭାବ ଆସିବ, ସଂସାର ପ୍ରତି ଏକାବେଳକେ ଅନାସକ୍ତି ହୋଇଯିବ । ସେତେବେଳେ ସଂସାରରେ ରହିଲେ ମଧ୍ୟ ଜୀବନ୍ମୁକ୍ତ ହୋଇ ବୁଲିବ । ଚୈତନ୍ୟଦେବଙ୍କର ଭକ୍ତମାନେ ଅନାସକ୍ତ ହୋଇ ସଂସାରରେ ଥିଲେ ।''

## ଜ୍ଞାନୀ ଓ ଭକ୍ତଙ୍କର ଗୂଢ଼ ରହସ୍ୟ ।

ଶ୍ରୀରାମକୃଷ୍ଣ (ମହିମାଚରଣଙ୍କ ପ୍ରତି)—ଯେ ଠିକ୍ ଭକ୍ତ, ତାହା ପାଖରେ ହଜାରେ ବେଦାନ୍ତ ବିଚାର କର, ଆଉ 'ସ୍ୱପ୍ନବତ୍' କହ, ତାହାର ଭକ୍ତି ଯିବାର ନୁହେଁ । ବୁଲି ବୁଲି ଟିକିଏ ମଧ୍ୟ ରହିବ, ମୁଷଳର ଟିକିଏ ଅଂଶ ବଣରେ ପଡ଼ିଥିଲା, ସେତିକିରେ 'ମୁଷଳଂ କୁଳ ନାଶନଂ ।'

''ଶିବ ଅଂଶରେ ଜନ୍ମିଲେ ଜ୍ଞାନୀ ହୁଅନ୍ତି, ବ୍ରହ୍ମ ସତ୍ୟ, ଜଗତ୍ ମିଥ୍ୟା, ଏହିପରି ବୋଧ ପ୍ରତି ମନ ସର୍ବଦା ଯାଏ । ବିଷ୍ଣୁ ଅଂଶରେ ଜନ୍ମିଲେ ପ୍ରେମଭକ୍ତି ହୁଏ, ସେ ପ୍ରେମଭକ୍ତି ଯିବାର ନୁହେଁ । ଜ୍ଞାନ-ବିଚାର ପରେ ଏହି ପ୍ରେମଭକ୍ତି ଯଦି କମିଯାଏ, ପୁଣି ଏକ ସମୟରେ ହୁ ହୁ କରି ବଢ଼ିଯାଏ । ଯଦୁବଂଶକୁ ଧ୍ୱଂସ କରିଥିଲା ମୁଷଳ, ସେହିପରି ।''

---

* ରସବର୍ଜଂ ରସୋଽପ୍ୟସ୍ୟ ପରଂ ଦୃଷ୍ଟ୍ୱା ନିବର୍ତ୍ତତେ ।

## (୭)
## ହାଜରା ମହାଶୟ ।*

ଠାକୁର ରାମକୃଷ୍ଣଙ୍କ ଘରର ପୂର୍ବ ବାରଣ୍ଡାରେ ହାଜରା ମହାଶୟ ବସି ଜପ କରନ୍ତି । ବୟସ ୪୬/୪୭ ବର୍ଷ ହେବ । ଠାକୁରଙ୍କ ଦେଶର ଲୋକ । ଅନେକ ଦିନରୁ ବୈରାଗ୍ୟ ହୋଇଅଛି, —ବାହାରେ ବାହାରେ ବୁଲନ୍ତି, କେବେ କେବେ ଘରେ ଯାଇ ରହନ୍ତି । ଘରେ କିଛି ଜମି ଜାଗା ଅଛି, ସେଥିରେ ହିଁ ସ୍ତ୍ରୀ-ପୁତ୍ର-କନ୍ୟାଦିଙ୍କର ଭରଣପୋଷଣ ହୁଏ । ତେବେ ପ୍ରାୟ ହଜାରେ ଟଙ୍କା ଋଣ କରିଛନ୍ତି, ତେଣୁ ହାଜରା ମହାଶୟ ସର୍ବଦା ଚିନ୍ତିତ ରହନ୍ତି ଓ କିପରି ତାହା ପରିଶୋଧ ହେବ, ସର୍ବଦା ଚେଷ୍ଟା କରନ୍ତି । କଲିକତାକୁ ସର୍ବଦା ଯାତାୟତ ଅଛି, ସେଠାରେ ଠନ୍‌ଠନବାସୀ ଶ୍ରୀଯୁକ୍ତ ଈଶାନ ଚନ୍ଦ୍ର ମୁଖୋପାଧ୍ୟାୟ ମହାଶୟ ତାଙ୍କୁ ଅତିଶୟ ଯତ୍ନ କରନ୍ତି ଓ ସାଧୁଙ୍କ ପରି ସେବା କରନ୍ତି । ଠାକୁର ରାମକୃଷ୍ଣ ତାଙ୍କୁ ଯତ୍ନ କରି ରଖିଛନ୍ତି, ଲୁଗା ଚିରିଗଲେ ଲୁଗା କିଣିଦେବା, ସବୁବେଳେ ସମ୍ବାଦ ନିଅନ୍ତି ଓ ତାଙ୍କ ସଙ୍ଗରେ ଈଶ୍ୱରୀୟ କଥା କହନ୍ତି । ହାଜରା ମହାଶୟ ବଡ଼ ତାର୍କିକ, କଥା କହୁ କହୁ ପ୍ରାୟ ତର୍କ ତରଙ୍ଗରେ ଭାସି ଏକ ଦିଗକୁ ଚାଲିଯାଆନ୍ତି । ବାରଣ୍ଡାରେ ଆସନ କରି ସର୍ବଦା ଜପର ମାଳା ନେଇ ଜପ କରନ୍ତି ।

ହାଜରା ମହାଶୟଙ୍କ ମାତା ଠାକୁରାଣୀଙ୍କର ବେରାମ ସମ୍ବାଦ ଆସିଅଛି । ରାମଲାଲଙ୍କୁ ଦେଶରୁ ଆସିବା ସମୟରେ ସେ ହାତଧରି ଅନେକ ଅନୁରୋଧ କରି କହିଥିଲେ, 'କକେଇ ମହାଶୟଙ୍କୁ❖ ମୋର ପ୍ରାର୍ଥନା ଜଣାଇ କହିବ, ସେ ଯେପରି ପ୍ରତାପକୁ କହି ଦେଶକୁ ପଠାଇ ଦିଅନ୍ତି, ଥରେ ଯେପରି ମୋ ସଙ୍ଗରେ ଦେଖାହୁଏ ।'

ଠାକୁର ସେଥିପାଇଁ ହାଜରାଙ୍କୁ କହିଥିଲେ, 'ଥରେ ଘରକୁ ଯାଇ ମାଆଙ୍କ ସଙ୍ଗରେ ଦେଖା କରି ଆସ, ସେ ରାମଲାଲକୁ ଅନେକ କରି କହିଦେଇଛନ୍ତି, ମାଆଙ୍କୁ କଷ୍ଟ ଦେଇ କେତେବେଳେ ଈଶ୍ୱରଙ୍କୁ ଡାକି ହୁଏ ? ବରଂ ଥରେ ଦେଖାଦେଇ ଚାଲିଆସିବ ।'

ଭକ୍ତଙ୍କର ବୈଠକ ଭାଙ୍ଗିବା ପରେ, ମହିମାଚରଣ ହାଜରାଙ୍କୁ ସଙ୍ଗରେ ନେଇ ଠାକୁରଙ୍କ ପାଖରେ ଉପସ୍ଥିତ ହେଲେ । ମାଷ୍ଟର ମଧ୍ୟ ଅଛନ୍ତି ।

---

* ଠାକୁର ରାମକୃଷ୍ଣଙ୍କର ଜନ୍ମଭୂମି କାମାରପୁକୁର ସନ୍ନିକଟ ମଡ଼ାଗୋଡ଼ ଗ୍ରାମରେ ଏହାଙ୍କର ଜନ୍ମଭୂମି । ମୃତ୍ୟୁକାଳରେ ଠାକୁରଙ୍କ ପ୍ରତି ଏହାଙ୍କର ଅଦ୍ଭୁତ ବିଶ୍ୱାସ ଓ ଭକ୍ତିର ପରିଚୟ ମିଳିଛି । ଏହାଙ୍କର ବୟଃକ୍ରମ ପ୍ରାୟ ୬୩/୬୪ ବର୍ଷ ହୋଇଥିଲା ।

❖ ରାମଲାଲଙ୍କର କକେଇ ମହାଶୟ-ଠାକୁର ଶ୍ରୀରାମକୃଷ୍ଣ ପରମହଂସଦେବ ।

## ମାତୃସେବା ଓ ରାମକୃଷ୍ଣ ।

ମହିମାଚରଣ (ଶ୍ରୀରାମକୃଷ୍ଣଙ୍କ ପ୍ରତି ସହାସ୍ୟରେ)—ମହାଶୟ ! ଆପଣଙ୍କ ପାଖରେ ଦରକାର ଅଛି । ଆପଣ କାହିଁକି ହାଜରାଙ୍କୁ ଘରକୁ ଯିବାକୁ କହିଛନ୍ତି ? ତାଙ୍କର ସଂସାରକୁ ପୁଣି ଯିବାକୁ ଇଚ୍ଛା ନାହିଁ ।

ଶ୍ରୀରାମକୃଷ୍ଣ—ତାଙ୍କର ମା' ରାମଲାଲ ପାଖରେ ଅନେକ ଦୁଃଖ ପ୍ରକାଶ କରିଛନ୍ତି, ତେଣୁ କହିଲି, ଅନ୍ତତଃ ତିନିଦିନ ପାଇଁ ଯାଅ, ଥରେ ଦେଖାଦେଇ ଆସିବ । ମାଆଙ୍କୁ କଷ୍ଟ ଦେଇ କ'ଣ ଈଶ୍ୱର ସାଧନ ହୁଏ ? ମୁଁ ବୃନ୍ଦାବନରେ ରହି ଯାଉଥିଲି, ସେତେବେଳେ ମାଆଙ୍କୁ ମନେପଡ଼ିଲା, ଭାବିଲି—ମା' ତ କାନ୍ଦିବେ, ସେତେବେଳେ ପୁଣି ମଥୁରବାବୁଙ୍କ ସଙ୍ଗରେ ଏଠାକୁ ଚାଲିଆସିଲି ।

"ଆଉ ସଂସାରକୁ ଗଲେ ଜ୍ଞାନୀର ଭୟ କଅଣ ?"

ମହିମାଚରଣ (ସହାସ୍ୟରେ)—ମହାଶୟ, ଜ୍ଞାନ ହେଲେ ତ ?

ଶ୍ରୀରାମକୃଷ୍ଣ (ସହାସ୍ୟରେ)—ହାଜରାଙ୍କର ସବୁ ହୋଇଛି, ଟିକିଏ ସଂସାରରେ ମନ ଅଛି—ପିଲାମାନେ ରହିଛନ୍ତି, କିଛି ଟଙ୍କା ଧାର ରହିଛି । ମାଇଁଙ୍କର ସବୁ ବେରାମ ଛାଡ଼ିଯାଇଛି, ଟିକିଏ କସୁର ଅଛି ! (ସମସ୍ତଙ୍କର ହାସ୍ୟ) ।

ମହିମା—ମହାଶୟ, କେଉଁଠି ଜ୍ଞାନ ହୋଇଛି ?

ଶ୍ରୀରାମକୃଷ୍ଣ (ସହାସ୍ୟ)—ନାହିଁ ହେ, ତୁମେ ଜାଣନା । ସମସ୍ତେ କହନ୍ତି, ହାଜରା ଜଣେ ଲୋକ, ରାସମଣିଙ୍କ ଦେବାଳୟରେ ଅଛନ୍ତି । ହାଜରାଙ୍କର ନାମ କରନ୍ତି, ଏଠାକାର ନାମ କେହି କରନ୍ତି ? (ସମସ୍ତଙ୍କର ହାସ୍ୟ) ।

ହାଜରା—ଆପଣ ନିରୂପମ—ଆପଣଙ୍କର ଉପମା ନାହିଁ, ତେଣୁ କେହି ଆପଣଙ୍କୁ ବୁଝିପାରନ୍ତି ନାହିଁ ।

ଶ୍ରୀରାମକୃଷ୍ଣ—ତେବେ ନିରୂପମ ଦ୍ୱାରା କୌଣସି କାର୍ଯ୍ୟ ହୁଏନାହିଁ, ସେଥିପାଇଁ ଏଠାକାର ନାମ କେହି କରିବେ କାହିଁକି ?

ମହିମା—ମହାଶୟ ! ସେ କଅଣ ଜାଣନ୍ତି—ଆପଣ ଯେପରି ଉପଦେଶ ଦେବେ, ସେ ତାହା ହିଁ କରିବେ ।

ଶ୍ରୀରାମକୃଷ୍ଣ—କାହିଁକି, ତୁମେ ତାଙ୍କୁ ବରଂ ପ୍ରଶ୍ନ କର, ସେ କହିଛନ୍ତି, "ତୁମ ସଙ୍ଗରେ ମୋର ଦେବା ନେବା ନାହିଁ ।"

ମହିମା—ଭାରି ତର୍କ କରନ୍ତି ।

ଶ୍ରୀରାମକୃଷ୍ଣ—ସେ ମଝିରେ ମଝିରେ ମୋତେ ପୁଣି ଶିକ୍ଷା ଦିଅନ୍ତି । (ସମସ୍ତଙ୍କର ହାସ୍ୟ) ତର୍କ ଯେତେବେଳେ କରନ୍ତି, ହୁଏତ ମୁଁ ଗାଳି ଗୁଲଜ କରି ବସିଲି । ତର୍କ ପରେ ମଶାରି ଭିତରକୁ ଯାଇ ହୁଏତ ଶୋଇଛି, ପୁଣି କଅଣ କହିଛି ମନେକରି ବାହାରି ଆସି, ହାଜରାଙ୍କୁ ପ୍ରଣାମ କରିଯାଏ—ତେବେ ଯାଇ ହୁଏ ।

## ବେଦାନ୍ତ ଓ ଶୁଦ୍ଧାତ୍ମା ।

ଶ୍ରୀରାମକୃଷ୍ଣ (ହାଜରାଙ୍କ ପ୍ରତି)—ତୁମେ ଶୁଦ୍ଧାତ୍ମାଙ୍କୁ ଈଶ୍ୱର ବୋଲି କହ କାହିଁକି ? ଶୁଦ୍ଧାତ୍ମା ନିଷ୍କ୍ରିୟ, ତିନି ଅବସ୍ଥାର ସାକ୍ଷୀ ସ୍ୱରୂପ । ଯେତେବେଳେ ସୃଷ୍ଟି, ସ୍ଥିତି, ପ୍ରଳୟ କାର୍ଯ୍ୟ ଭାବେ, ସେତେବେଳେ ତାଙ୍କୁ ଈଶ୍ୱର କହେ । ଯେପରି ଚୁମ୍ବକ-ପଥର ଅନେକ ଦୂରରେ ଅଛି, କିନ୍ତୁ ଛୁଞ୍ଚ ହଲୁଛି, ଚୁମ୍ବକ ପଥର ସ୍ଥିର ହୋଇ ରହିଛି, ନିଷ୍କ୍ରିୟ ।

## (୮)

## ସେବକ ହୃଦୟରେ ।

ମହିମାଚରଣ ଓ ହାଜରାଙ୍କ ସହିତ କଥୋପକଥନ ପରେ ଠାକୁର ରାମକୃଷ୍ଣ ଏକାକୀ ବିଚରଣ କରୁଅଛନ୍ତି—ସନ୍ଧ୍ୟା ଆଗତ ପ୍ରାୟ । ଭକ୍ତମାନଙ୍କ ମଧ୍ୟରେ ଅନେକ ବିଦାୟ ଗ୍ରହଣ କରିଥିଲେ । କେତେଜଣ ଥିଲେ, ସେମାନେ ସମସ୍ତ ଦିନ ମହାପୁରୁଷଙ୍କର ସଙ୍ଗ ଲାଭ କରି କୃତାର୍ଥ ହୋଇଛନ୍ତି, ମନରେ କେତେ ଭାବ ଉଦୟ ହେଉଅଛି । ଜଣେ ଭାବୁଅଛନ୍ତି,—

"ରାମଙ୍କର ଇଚ୍ଛା"—ଏହିଟି ତ ବେଶ୍ କଥା । ଏଥିରେ ତ Predestination ଆଉ Free will, Liberty ଆଉ Necessity ଏସବୁ ଦ୍ୱନ୍ଦ୍ୱ ମେଣ୍ଟିଯାଉଛି । ମୋତେ ଡକାଇତ ଧରିନେଲେ 'ରାମଙ୍କ ଇଚ୍ଛାରେ' ପୁଣି ମୁଁ ହୁକା ପିଉଛି 'ରାମଙ୍କ ଇଚ୍ଛାରେ' ମୁଁ ଡକାଇତ କରୁଛି ରାମଙ୍କ ଇଚ୍ଛାରେ' ମୋତେ ପୁଲିସ୍ ଧରିଲେ 'ରାମଙ୍କ ଇଚ୍ଛାରେ' ମୁଁ ସାଧୁ ହୋଇଛି 'ରାମଙ୍କ ଇଚ୍ଛାରେ' ମୁଁ ପ୍ରାର୍ଥନା କରୁଛି 'ହେ ପ୍ରଭୁ' ମୋତେ ଅସଦ୍‌ବୁଦ୍ଧି ଦିଅନା—ମୋତେ ଦେଇ ଡକାଇତ କରାଅ ନାହିଁ—ଏ ମଧ୍ୟ 'ରାମଙ୍କ ଇଚ୍ଛା' । ତେବେ ସଦ୍ ଇଚ୍ଛା ଅସଦ୍ ଇଚ୍ଛା ସେହି କେବଳ ଦେଉଛନ୍ତି । ତେଣୁ ଗୋଟିଏ କଥା ଅଛି, ଅସଦ୍ ଇଚ୍ଛା ସେ କାହିଁକି ଦେବେ—ଡକାଇତି କରିବା ଇଚ୍ଛା ସେ କାହିଁକି ଦେବେ ତା'ର ଉତ୍ତର ବୋଧହୁଏ ଏହି—ସେ ଜନ୍ତୁମାନଙ୍କ ଭିତରେ ଯେପରି ବାଘ, ସିଂହ, ସାପ କରିଛନ୍ତି, ଗଛ ଭିତରେ ଯେପରି ବିଷଗଛ ମଧ୍ୟ କରିଛନ୍ତି, ସେହିପରି ମନୁଷ୍ୟ ଭିତରେ ଚୋର ଡକାଇତ ମଧ୍ୟ କରିଛନ୍ତି । କାହିଁକି କରିଛନ୍ତି, ତାହା କିଏ କହିବ ? ଈଶ୍ୱରଙ୍କୁ କିଏ ବୁଝିବ ?"

"କିନ୍ତୁ ସେ ଯଦି ସବୁ କରିଛନ୍ତି ତାହାହେଲେ sense of responsibility ତ ଚାଲିଯିବ ! ତେଣୁ କାହିଁକି ଯିବ ? ଈଶ୍ୱରଙ୍କୁ ନ ଜାଣିଲେ ତାଙ୍କୁ ଦର୍ଶନ ନକଲେ 'ରାମଙ୍କ ଇଚ୍ଛା' ଏହିଟି ଷୋଳଅଣା ବୋଧ ହେବନାହିଁ । ତାଙ୍କୁ ଲାଭ ନକଲେ ଥରେ ଥରେ ବୋଧ ହେବ, ପୁଣି ଭୁଲ ହୋଇଯିବ ଯେତେକ୍ଷଣ ପୂର୍ଣ୍ଣ ବିଶ୍ୱାସ ନହୁଏ, ସେତେକ୍ଷଣ ପାପ ପୁଣ୍ୟ ବୋଧ, sense of responsibility ବୋଧ ରହିବ ହିଁ ରହିବ । ଠାକୁର ଯାହା ବୁଝାଇଲେ 'ରାମଙ୍କ ଇଚ୍ଛା' । ତୋତାପକ୍ଷୀ ପରି ମୁଖରେ କହିଲେ 'ରାମଙ୍କ ଇଚ୍ଛା' ହୁଏନାହିଁ ।

ଯେତେକ୍ଷଣ ଈଶ୍ୱରଙ୍କୁ ନ ଚାହିଁଛୁ, ଯେତେକ୍ଷଣ ତାଙ୍କର ଇଚ୍ଛାରେ ମୋର ଇଚ୍ଛା ଏକ ନହୋଇଛି, ଯେତେକ୍ଷଣ ମୁଁ ଯନ୍ତ୍ର ବୋଲି ଠିକ୍ ବୋଧ ନ ହୋଇଛି, ସେତେକ୍ଷଣ ସେ ପାପପୂଣ୍ୟ ବୋଧ ରଖି ଦିଅନ୍ତି,ସୁଖ ଦୁଃଖ ବୋଧ ରଖି ଦିଅନ୍ତି' ଶୁଚି ଅଶୁଚି ବୋଧ ରଖି ଦିଅନ୍ତି, ଭଲ ମନ୍ଦ ବୋଧ ରଖି ଦିଅନ୍ତି,sense of responsibility ଇତ୍ୟାଦି ରଖିଦିଅନ୍ତି । ତାହା ନ ହେଲେ ତାଙ୍କର ମାୟାର ସଂସାର କିପରି ଚଳିବ ?''

ଆଉ ଗୋଟିଏ କଥା ଆଜି ମନେ ପଡୁଛି । ଠାକୁରଙ୍କର ଭକ୍ତିର କଥା ଯେତେ ଭାବୁଛି, ସେତେ ହିଁ ଅବାକ୍ ହେଉଅଛି । କେଶବ ସେନ ହରିନାମ କରନ୍ତି, ଈଶ୍ୱର ଚିନ୍ତା କରନ୍ତି, ସଙ୍ଗେ ସଙ୍ଗେ ତାଙ୍କୁ ଦେଖିବାକୁ ଛୁଟିଛନ୍ତି—ସଙ୍ଗେ ସଙ୍ଗେ କେଶବ ଆପଣାର ଲୋକ ହେଲେ, ସେତେବେଳେ କପ୍ତାନଙ୍କର କଥା ଆଉ ଶୁଣିଲେ ନାହିଁ । ସେ ବିଲାତ ଯାଇଥିଲେ, ସାହେବମାନଙ୍କ ସଙ୍ଗରେ ଖାଇଛନ୍ତି, କନ୍ୟାକୁ ଭିନ୍ନ ଜାତିରେ ବିବାହ ଦେଇଛନ୍ତି, ଏସବୁ କଥା ଭାସିଗଲା । ''କୋଳିଟି ଖାଏ, କଣ୍ଟାରେ ମୋର କି ଦରକାର ?'' ଭକ୍ତିସୂତ୍ରରେ ସାକାରବାଦୀ, ନିରାକାରବାଦୀ ଏକ ହୁଏ, ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ୍ ଏକ ହୁଏ; ଚାରିବର୍ଣ୍ଣ ଏକ ହୁଅନ୍ତି । ଭକ୍ତିର ହିଁ ଜୟ । ଧନ୍ୟ ଠାକୁର ରାମକୃଷ୍ଣ, ତୁମର ହିଁ ଜୟ । ତୁମେ ସନାତନ ଧର୍ମର ଏହି ବିଶ୍ୱଜନୀନ ଭାବ ପୁଣି ମୂର୍ତ୍ତିମାନ କଲ । ସେଥିପାଇଁ ବୋଧହୁଏ ତୁମ ପ୍ରତି ଏତେ ଆକର୍ଷଣ ! ସବୁ ଧର୍ମାବଲମ୍ବୀମାନଙ୍କୁ ତୁମେ ପରମାତ୍ମୀୟ ଜ୍ଞାନରେ ଆଲିଙ୍ଗନ କରିଛ । ତୁମର ଗୋଟିଏ କଷଟି ପଥର ହେଉଛି ଭକ୍ତ । ତୁମେ ଏତିକିମାତ୍ର ଦେଖ—ଅନ୍ତରରେ ଈଶ୍ୱରଙ୍କଠାରେ ଶ୍ରଦ୍ଧା ଭକ୍ତି ଅଛି କି ନାହିଁ । ଯଦି ତାହା ଥାଏ, ସଙ୍ଗେ ସଙ୍ଗେ ସେ ତୁମର ପରମ ଆତ୍ମୀୟ । ହିନ୍ଦୁର ଯଦି ଭକ୍ତି ଦେଖ, ସଙ୍ଗେ ସଙ୍ଗେ ସେ ତୁମର ଆତ୍ମୀୟ । ମୁସଲମାନ ଯଦି ଆଲ୍ଲାଙ୍କର ଉପରେ ଭକ୍ତି ଥାଏ, ସେ ମଧ୍ୟ ତୁମର ପରମ ଆତ୍ମୀୟ । ତୁମେ କହ ଯେ ସବୁ ନଦୀ ଭିନ୍ନ ଭିନ୍ନ ଦିଗରୁ ଆସି ଏକ ହିଁ ସମୁଦ୍ରରେ ପତିତ ହେଉଛି । ସମସ୍ତଙ୍କର ଗନ୍ତବ୍ୟ ସ୍ଥାନ ସେହି ଏକ ହିଁ ସମୁଦ୍ର ।

ସେ ଏହି ଜଗତକୁ ସ୍ୱପ୍ନବତ୍ କହୁନାହାନ୍ତି । କହନ୍ତି, ''ତାହାହେଲେ ଓଜନରେ କମ୍ ପଡ଼ିବ ।'' ମାୟାବାଦ ନୁହେଁ—ବିଶିଷ୍ଟାଦ୍ୱୈତବାଦ, କାହିଁକି ନା ଜୀବଜଗତ୍ ଅଳୀକ କହୁ ନାହାନ୍ତି, ମନର ଭୁଲ କହୁ ନାହାନ୍ତି ! ଈଶ୍ୱର ସତ୍ୟ, ପୁଣି ମନୁଷ୍ୟ ସତ୍ୟ, ଜଗତ୍ ସତ୍ୟ ! ଜୀବଜଗତ୍‌ବିଶିଷ୍ଟବ୍ରହ୍ମ ।

ଶୁଣିଲି ଏହି ଜଗତ୍ ବ୍ରହ୍ମାଣ୍ଡ ମହାଚିଦାକାଶରୁ ଆବିର୍ଭୂତ ହେଉଅଛି, ପୁଣି କାଳକ୍ରମେ ଲୟ ହେଉଅଛି,—ମହାସମୁଦ୍ରରୁ ତରଙ୍ଗ ଉଠୁଛି, ପୁଣି କାଳକ୍ରମେ ଲୟ ହେଉଛି । ଆନନ୍ଦ-ସିନ୍ଧୁ ଜଳରେ ଅନନ୍ତ-ଲୀଳା ଲହରୀ ! ଏ ଲୀଳାର ଆଦି କେଉଁଠାରେ ? ଅନ୍ତ କେଉଁଠାରେ ? ତାହା ମୁହଁରେ କହିବାକୁ ଶକ୍ତି ନାହିଁ—ମନରେ ଚିନ୍ତା କରିବାକୁ ଶକ୍ତି ନାହିଁ । ମନୁଷ୍ୟ କେତେ ଟିକିଏ-ତା'ର ବୁଦ୍ଧି ମଧ୍ୟ କେତେ ଟିକିଏ ! ଶୁଣିଲି ମହାପୁରୁଷମାନେ ସମାଧିସ୍ଥ ହୋଇ ସେହି ନିତ୍ୟ ପରମପୁରୁଷଙ୍କୁ ଦର୍ଶନ କରୁଛନ୍ତି—ନିତ୍ୟ ଲୀଳାମୟ ହରିଙ୍କୁ

ସାକ୍ଷାତ୍‌କାର କରିଛନ୍ତି । ଅବଶ୍ୟ କରିଛନ୍ତି, କାହିଁକି ନା ଠାକୁର ରାମକୃଷ୍ଣ ମଧ୍ୟ କହୁଅଛନ୍ତି— ତେବେ ଏ ଚର୍ମ ଚକ୍ଷୁରେ ନୁହେଁ, ଦିବ୍ୟଚକ୍ଷୁ ଯାହାକୁ କହନ୍ତି ତାଙ୍କ ଦ୍ୱାରା । ଯେଉଁ ଚକ୍ଷୁ ପାଇ ଅର୍ଜ୍ଜୁନ ବିଶ୍ୱରୂପ ଦର୍ଶନ କରିଥିଲେ, ଯେଉଁ ଚକ୍ଷୁ ଦ୍ୱାରା ଋଷିମାନେ ଆତ୍ମାର ସାକ୍ଷାତ୍‌କାର କରିଥିଲେ, ଯେଉଁ ଦିବ୍ୟଚକ୍ଷୁ ଦ୍ୱାରା ଈଶା ତାଙ୍କର ପିତାଙ୍କୁ ଅହରହ ଦର୍ଶନ କରିଥିଲେ । ସେ ଚକ୍ଷୁରେ କିପରି ହୁଏ ? ଠାକୁରଙ୍କ ମୁଖରୁ ଶୁଣିଲି, ବ୍ୟାକୁଳତା ଦ୍ୱାରା ହୁଏ । ବର୍ତ୍ତମାନ ସେହି ବ୍ୟାକୁଳତା ହୁଏ କିପରି ? ସଂସାର କ'ଣ ତ୍ୟାଗ କରିବାକୁ ହେବ ? କାହିଁକି, ତାହା ତ ଆଜି କହିଲେ ନାହିଁ ।

## ( ୯ )

## ସଂନ୍ଧ୍ୟା—ସଙ୍ଗୀତ ଓ ଈଶାନ—ସମ୍ବାଦ ।

ସନ୍ଧ୍ୟା ହେଲା । ଠାକୁର ରାମକୃଷ୍ଣଙ୍କ ଘରେ ଧୂପ ଦିଆଗଲା । ସେ ଠାକୁରମାନଙ୍କୁ ପ୍ରଣାମ କରି ବୀଜମନ୍ତ୍ର ଜପି, ନାମଗାନ କରିବାକୁ ଲାଗିଲେ । ଘରର ବାହାରେ ଅପୂର୍ବ ଶୋଭା ! କାର୍ତ୍ତିକ ମାସର ଶୁକ୍ଳ ପକ୍ଷର ସପ୍ତମୀ ତିଥି । ବିମଳ ଚନ୍ଦ୍ରକିରଣରେ ଏଣେ ଦେବାଳୟ ହସୁଅଛି, ଆଉ ଏଣେ ଭାଗୀରଥୀ ବକ୍ଷ ସୁପ୍ତ ଶିଶୁ ପରି ଈଷତ୍ ବିକମ୍ପିତ ହେଉଅଛି । ଜୁଆର ପୂର୍ଣ୍ଣହୋଇ ଆସିଲା । ଆଳତିର ଶବ୍ଦ ଗଙ୍ଗାର ସ୍ନିଗ୍ଧୋଜ୍ଜ୍ୱଳ ପ୍ରବାହ ସମୁଦ୍ଭୁତ କଳ କଳ ନାଦ ସଙ୍ଗରେ ମିଳିତ ହୋଇ ବହୁଦୂର ପର୍ଯ୍ୟନ୍ତ ଗମନ କରି ଲୟ ପ୍ରାପ୍ତ ହେଉଥିଲା । ଦେବାଳୟରେ ଏକ ସମୟରେ ତିନି ମନ୍ଦିରରେ ଆଳତି—କାଳୀ ମନ୍ଦିରରେ, ବିଷ୍ଣୁ ମନ୍ଦିରରେ ଓ ଶିବ ମନ୍ଦିରରେ । ଦ୍ୱାଦଶ ଶିବ ମନ୍ଦିରରେ ଗୋଟିଏ ଗୋଟିଏ କରି ଶିବ ଲିଙ୍ଗର ଆଳତି । ପୁରୋହିତ ଶିବଙ୍କର ଗୋଟିଏ ମନ୍ଦିରରୁ ଆଉ ଗୋଟିଏ ମନ୍ଦିରକୁ ଯାଉଛନ୍ତି ; ବାମ ହସ୍ତରେ ଘଣ୍ଟି ଦକ୍ଷିଣ ହସ୍ତରେ ପଞ୍ଚପ୍ରଦୀପ, ସଙ୍ଗରେ ପରିଚାରକ—ତାହା ହସ୍ତରେ କାଁସର । ଆଳତି ହେଉଅଛି, ତତ୍ ସଙ୍ଗେ ସମସ୍ତ ଦେବାଳୟର ଦକ୍ଷିଣ ପଶ୍ଚିମ କୋଣରୁ ରୋସନ ଚୌକିବାଦ୍ୟର ସୁମଧୁର ନିନାଦ ଶୁଣାଯାଉଅଛି । ସେଠାରେ ନହବତ୍‌ଖାନା, ସନ୍ଧ୍ୟାକାଳୀନ ରାଗରାଗିଣୀ ବାଜୁଅଛି । ଆନନ୍ଦମୟୀଙ୍କର ନିତ୍ୟ ଉତ୍ସବ—ଯେପରି ଜୀବକୁ ସ୍ମରଣଇଇପ୍ତପ୍ତପ୍ତପ୍ତ କରାଇଦେଉଛି, କେହି ନିରାନନ୍ଦ ହୁଅନାହିଁ—ଐହିକ ସୁଖ ଦୁଃଖ ନିଶ୍ଚୟ ଅଛି, ଥିଲେ ଥାଉ—ଜଗଦମ୍ବା ଅଛନ୍ତି—ଆମମାନଙ୍କର ମା' ଅଛନ୍ତି—ଆନନ୍ଦ କର । ଦାସୀପୁତ୍ର ଭଲ ଖାଇବାକୁ ପାଏ ନାହିଁ, ଭଲ ପିନ୍ଧିବାକୁ ପାଏ ନାହିଁ, ଘର ନାହିଁ, ଦ୍ୱାର ନାହିଁ, ତଥାପି ଛାତିରେ ଦମ୍ଭ ଅଛି, କାରଣ ତାହାର ମା' ଅଛି । ମା'ର ଉପରେ ନିର୍ଭର । ଧର୍ମ ମା' ନୁହନ୍ତି, ଆପଣାର ମା' । 'ମୁଁ କିଏ, କେଉଁଠାରୁ ଆସିଲି, ମୋର କଅଣ ହେବ, ମୁଁ କେଉଁଠାକୁ ଯିବି, ସବୁ ମା' ଜାଣନ୍ତି । କିଏ ଏତେ ଭାବେ । ମୋର ମା' ଜାଣନ୍ତି—ମୋର ମା', ଯେ ଦେହ ମନ ପ୍ରାଣ ଆତ୍ମା ଦେଇ

ମୋତେ ଗଢ଼ିଛନ୍ତି । ମୁଁ ଜାଣିବାକୁ ମଧ ଚାହେଁ ନାହିଁ । ଯଦି ଜାଣିବାକୁ ଦରକାର ହୁଏ, ସେ ଜଣାଇଦେବେ । ଏତେ କିଏ ଭାବୁଛି ! ସମସ୍ତେ ମାଆଙ୍କର ପୁଅ, ଆନନ୍ଦ କର ।'

ବାହାରେ କୌମୁଦୀପ୍ଲାବିତ ଜଗତ୍ ହସୁଅଛି—କକ୍ଷ ମଧ୍ୟରେ ଠାକୁର ରାମକୃଷ୍ଣ ହରିପ୍ରେମାନନ୍ଦରେ ବସିଛନ୍ତି । ଈଶାନ କଲିକତାରୁ ଆସିଛନ୍ତି, ପୁଣି ଈଶ୍ୱରୀୟ କଥା ହେଉଛି । ଈଶାନଙ୍କର ଭାରି ବିଶ୍ୱାସ । କହନ୍ତି, ଯେ ଥରେ ଦୁର୍ଗା ନାମ ନେଇ ଘରୁ ଯାତ୍ରା କରନ୍ତି, ତାଙ୍କ ସଙ୍ଗରେ ଶୂଳପାଣି ଶୂଳ ହସ୍ତରେ ଯାଆନ୍ତି । ଆଉ ବିପଦରେ କ'ଣ ଭୟ ? ଶିବ ନିଜେ ରକ୍ଷା କରନ୍ତି ।

## ବିଶ୍ୱାସ ଓ ଈଶ୍ୱର ଲାଭ ।

ଶ୍ରୀରାମକୃଷ୍ଣ (ଈଶାନଙ୍କ ପ୍ରତି)—ତୁମର ଖୁବ୍ ବିଶ୍ୱାସ—ଆମମାନଙ୍କର କିନ୍ତୁ ଏତେ ନାହିଁ । ବିଶ୍ୱାସରେ ହିଁ ତାଙ୍କୁ ଲାଭ କରାଯାଏ ।

## କର୍ମଯୋଗ ଓ ଈଶାନ ।

''ତୁମେ ଜପ, ଆହ୍ନିକ, ଉପବାସ, ପୁରଶ୍ଚରଣ ଏହିସବୁ କର୍ମ କରୁଛ ! ଏହା ବେଶ୍ । ଯାହାର ଆନ୍ତରିକ ଈଶ୍ୱରଙ୍କ ପ୍ରତି ଟାଣ ଥାଏ, ତାହାଦ୍ୱାରା ସେ ଏହିସବୁ କର୍ମ କରାଇନିଅନ୍ତି ।''

''ଫଳ କାମନା ନ କରି ଏହିସବୁ କର୍ମ କରି ଯାଇପାରିଲେ ନିଶ୍ଚୟ ତାଙ୍କୁ ଲାଭ ହୁଏ ।''

## ବୈଧୀ ଭକ୍ତି ଓ ରାଗ ଭକ୍ତି: କର୍ମତ୍ୟାଗ କେତେବେଳେ ?

''ଶାସ୍ତ୍ରରେ ଅନେକ କର୍ମ କରିବାକୁ କୁହାଯାଇଛି—ସେଥିପାଇଁ କରୁଛି; ଏପରି ଭକ୍ତିକୁ ବୈଧୀଭକ୍ତି କହନ୍ତି । ଆଉ ଗୋଟିଏ ଅଛି, ରାଗଭକ୍ତି । ସେହିଟି ଅନୁରାଗରୁ ହୁଏ । ଈଶ୍ୱରଙ୍କୁ ଭଲ ପାଇଲେ ଏହା ହୁଏ—ଯେପରି ପ୍ରହ୍ଲାଦଙ୍କର । ସେପରି ଭକ୍ତି ଯଦି ଆସେ; ତାହାହେଲେ ଆଉ ବୈଧୀକର୍ମର ପ୍ରୟୋଜନ ହୁଏନାହିଁ ।''

